"ଜୀବନୀ ଲେଖିବା କଅଣ ଆପଣାର ଶକ୍ତି ଓ
ସାହସକୁ ଭାଷା ଦେଇ ପ୍ରକାଶ କରିବା ?"

**ସୀତାଦେବୀ ଖାଡ଼ାଙ୍ଗା, *ମୋର ଜୀବନ ସ୍ମୃତି***

# ଆତ୍ମମଗ୍ନା

**ଓଡ଼ିଆ ନାରୀ ଆତ୍ମଜୀବନୀକାର, ଆଲୋଚନା ଓ ଉଦ୍ଧୃତାଂଶ**

**ସଂପାଦନା**

**ସୁପ୍ରିୟା ପ୍ରଶାନ୍ତ**

"ମୁଁ କହିଲି – ଓଡ଼ିଶାକୁ ଓଲଟାଇବା ମୋର ଉଦ୍ଦେଶ୍ୟ ନୁହେଁ।
ମୁଁ ନିଜେ ମୁହଁ ମାଡ଼ି ପଡ଼ିଛି। ମୁଁ ନିଜକୁ ଓଲଟାଇବାକୁ ଚାହେଁ।"

**ବୀଣା ଦେଇ, *ଅକିଞ୍ଚନାର ଜୀବନସ୍ମୃତି***

**ଆତ୍ମମଗ୍ନା:** ଓଡ଼ିଆ ନାରୀ ଆତ୍ମଜୀବନୀକାର, ଆଲୋଚନା ଓ ଉଦ୍ଧୃତାଂଶ

ସଂପାଦନା: ସୁପ୍ରିୟା ପ୍ରଶାନ୍ତ



ପ୍ରଥମ ସଂସ୍କରଣ: ୨୦୨୪

ପ୍ରକାଶକ: କୁନୁ ବହି

ଯୋଗାଯୋଗ: ଶ୍ରୀ ହେମଦୁର୍ଗା ଶିବାହିଲ୍ସ, ମଣିକୋଣ୍ଡା, ହାଇଦ୍ରାବାଦ

ସଂପାଦକ ଫଟୋ: ପ୍ରଶାନ୍ତ

ପ୍ରଚ୍ଛଦ ଓ ଅଲଙ୍କରଣ: ବି. ଶଙ୍କର ରାଓ

**ATMAMAGNA:** Odia naree atmajibaneekara, alochana o uddhrutansha

Edited by Supriya Prasanta

First Edition: Kunu bahi 2024



Editor’s photo by Prasanta

Cover and Design: B. Shankar Rao

ISBN: 978-93-6068-913-1

ମୋର ମାଆ ଶ୍ରୀମତୀ ପ୍ରତିଭା କରଙ୍କ ହାତରେ

## କୃତଜ୍ଞତା

ଓଡ଼ିଆ ବିଭବ ଇପାଠାଗାର

ରାମକୃଷ୍ଣ ମିଶନ ବିବେକାନନ୍ଦ ପାଠାଗାର, ଭୁବନେଶ୍ୱର

ଶିକ୍ଷାସନ୍ଧାନ ପାଠାଗାର, ଭୁବନେଶ୍ୱର

ଇନଷ୍ଟିଚୁଟ୍ ଅଫ୍ କଲଚର୍ ପାଠାଗାର, କୋଲକାତା

ୟୁନିଭରସିଟି ଅଫ୍ ଇଷ୍ଟଆଙ୍ଗ୍ଲିଆ ପାଠାଗାର, ନରଓ୍ୱିଚ

ବ୍ରିଟିଶ ଲାଇବ୍ରେରୀ, ଲଣ୍ଡନ

# ସୂଚୀପତ୍ର

# ଭୂମିକା

## ସୂର୍ଯ୍ୟଂପଶ୍ୟା

ଏହି ବହିରେ ଆଲୋଚିତ ହୋଇଥିବା ଆତ୍ମଜୀବନୀଗୁଡ଼ିକ ୧୯୭୮ ମସିହାରୁ ୨୦୧୫ ମସିହା ମଧ୍ୟରେ ପ୍ରକାଶିତ ହୋଇଛି ଏବଂ ଏହି ସମସ୍ତ ୧୮୯୮ ମସିହାରୁ ୧୯୫୩ ମସିହା ମଧ୍ୟରେ ଜନ୍ମିତ ଓଡ଼ିଆ ନାରୀମାନଙ୍କ ଦ୍ୱାରା ଲିଖିତ। ଫକୀରମୋହନ ସେନାପତିଙ୍କ 'ଆତ୍ମଜୀବନ ଚରିତ' (୧୯୨୭)[୧], ଯାହାକି ଓଡ଼ିଆ ଭାଷାରେ ଲିଖିତ ପ୍ରଥମ ଆତ୍ମଜୀବନୀ, ପ୍ରକାଶ ପାଇବାର ପ୍ରାୟ ପାଞ୍ଚ ଦଶନ୍ଧିରୁ ଅଧିକ ସମୟ ପରେ ସୀତାଦେବୀ ଖାଡ଼ଙ୍ଗାଙ୍କର ଆତ୍ମଜୀବନୀ ପ୍ରକାଶ ପାଇଥିଲା। ତାଙ୍କ ଲିଖିତ "ମୋର ଜୀବନ ସ୍ମୃତି" ୧୯୭୮ ମସିହାରେ ପ୍ରକାଶ ପାଇଥିଲା, ଯାହାକି ଓଡ଼ିଆ ନାରୀ ଆତ୍ମଜୀବନୀର ପ୍ରଥମ ଉଦାହରଣ[୨]। ଯଦିଓ ସେବେଠୁଁ ଚାଳିଶ ବର୍ଷ ଉପରେ ବିତିଯାଇଛି, ୨୦୨୨ ମସିହା ସୁଦ୍ଧା ଓଡ଼ିଆ ନାରୀମାନଙ୍କ ଦ୍ୱାରା ଲିଖିତ ସଂପୂର୍ଣ୍ଣ ଆତ୍ମଜୀବନୀ ସଂଖ୍ୟା ମାତ୍ର ଉନେଇଶରେ ପହଞ୍ଚିଛି। ଏଠାରେ ଆଲୋଚିତ ହୋଇଥିବା ଅସଂପୂର୍ଣ୍ଣ ବା ଆତ୍ମଜୀବନୀ ଅଂଶଗୁଡ଼ିକ ସାହିତ୍ୟ ପତ୍ରିକା, ଖବରକାଗଜ ଏବଂ ଅପ୍ରକାଶିତ କାଗଜପତ୍ରରୁ ଉଦ୍ଧାର କରାଯାଇଛି। ଏହା ସହଜରେ ଅନୁମେୟ ଯେ ଏହିପରି ଆହୁରି କେତେକ ପୂର୍ଣ୍ଣ ଏବଂ ଆଂଶିକ ଅଥବା ଖଣ୍ଡବିଖଣ୍ଡିତ ଆତ୍ମଚରିତ ଆମର ଅଜ୍ଞାତ ରହିଥାଇପାରେ; ସେସବୁ ପ୍ରାୟ ସ୍ୱପ୍ରକାଶିତ ଏବଂ ବିଜ୍ଞାପନ କିମ୍ବା ବିକ୍ରୟର ସୁଯୋଗ ବିନା ପାଠକମାନଙ୍କ ଦୃଷ୍ଟିକୁ ଆସିବା କିମ୍ବା ଲୋକପ୍ରିୟତା ହାସଲ କରିବାର ପ୍ରାୟ କୌଣସି ସୁଯୋଗ ସେସବୁ ପୁସ୍ତକର ନାହିଁ।

ଏଠାରେ ନାରୀ ଆତ୍ମଜୀବନୀକାରମାନେ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ବିଂଶ ଶତାବ୍ଦୀ ଏବଂ ଏକବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ବ୍ୟାପିଥିବା ସମୟଖଣ୍ଡକୁ ମନେପକାଇଛନ୍ତି। ଯେକୌଣସି ସ୍ଥାନର ଇତିହାସରେ ଏତେ ବ୍ୟାପକ ସମୟ ବ୍ୟବଧାନ ଅନେକ କାରଣରୁ ଗୁରୁତ୍ୱପୂର୍ଣ୍ଣ ହେବା ଅନିବାର୍ଯ୍ୟ: ଓଡ଼ିଶାରେ ବ୍ରିଟିଶମାନଙ୍କ ଦ୍ୱାରା ଆନୁଷ୍ଠାନିକ ଶିକ୍ଷାର ପ୍ରବର୍ତ୍ତନ, ଭାଷା ଆଧାରରେ ଏକ ପୃଥକ୍ ଓଡ଼ିଶା ପ୍ରଦେଶ ଗଠନ

ପାଇଁ ଆନ୍ଦୋଳନ ତଥା ସ୍ୱାଧୀନତା ପାଇଁ ଦେଶବ୍ୟାପୀ ସଂଗ୍ରାମ ଆଦି ଘଟଣା ଯୋଗୁଁ ଏହି କାଳଖଣ୍ଡ ଓଡ଼ିଶା ପ୍ରସଙ୍ଗରେ ଅଧିକ ଗୁରୁତ୍ୱପୂର୍ଣ୍ଣ। ଏହି ଆତ୍ମଜୀବନୀକାରମାନେ ଓଡ଼ିଆ ସମାଜରେ ଘଟିଥିବା ମୂଳ ପରିବର୍ତ୍ତନଗୁଡ଼ିକର ସାକ୍ଷୀ ରୂପେ ଓଡ଼ିଶାର ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ପରିବର୍ତ୍ତନ ଉପରେ ଆଲୋକପାତ କରିଛନ୍ତି। ଏହି ଆତ୍ମଜୀବନୀକାରମାନେ ଏଠାରେ ଅବଗୁଣ୍ଠନବତୀ ନାରୀ ଯେଉଁମାନଙ୍କୁ ଅସୂର୍ଯ୍ୟଂପଶ୍ୟା କୁହାଯାଉଥିଲା, ଯେଉଁମାନଙ୍କୁ ଦିନ ଆଲୋକରେ ସୁଦ୍ଧା କେହି ଦେଖୁ ନଥିଲେ, ନିର୍ଦ୍ୱନ୍ଦ୍ୱରେ ସୂର୍ଯ୍ୟ ଆଡ଼କୁ ପାଦ ବଢ଼ାଉଥିବା ନାରୀମାନଙ୍କ ଯାତ୍ରାର ରେଖାଙ୍କନ କରନ୍ତି – ନାରୀମାନଙ୍କର ଘରକୋଣରୁ ସର୍ବସାଧାରଣ ସ୍ଥାନକୁ ଯିବାର ଇତିହାସ ଯେତିକି ଆକର୍ଷଣୀୟ, ପୃଥିବୀର ସବୁ ସ୍ଥାନ ପରି ଓଡ଼ିଶାରେ ମଧ୍ୟ ସେତିକି ଜଟିଳ ବୁଝାମଣା ଏବଂ ଅସମ୍ଭବ ବାଧାବିଘ୍ନରେ ପରିପୂର୍ଣ୍ଣ।

ଊନବିଂଶ ଏବଂ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରିଟିଶ ଭାରତର ଅନ୍ୟାନ୍ୟ ସ୍ଥାନ ପରି ଓଡ଼ିଶାରେ ମଧ୍ୟ ଘରର ଚାରିକାନ୍ଥ ମଧ୍ୟରେ ହିଁ ନାରୀ ଜଗତ ସୀମିତ ଥିଲା। ବାଲ୍ୟ ବିବାହ, ଗୃହକାର୍ଯ୍ୟ, ଗର୍ଭଧାରଣ, ପିଲାମାନଙ୍କର ଯତ୍ନ, ରୀତିନୀତି ଓ ଉପବାସ ପାଳନ ଏବଂ ସାମାଜିକ ଆଚରଣ ବିଧି ଅନୁସରଣ କରିବା ନିଶ୍ଚିତ ଭାବରେ ନାରୀମାନଙ୍କ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ଥିଲା। ସେହି ନାରୀମାନଙ୍କ ପାଇଁ ପ୍ରସିଦ୍ଧ ଲେଖକ ଭିଏସ ନାଇପାଲ କହିଛନ୍ତି, "ଉଚ୍ଚାଭିଳାଷ, ଯଦିବା ସେମାନଙ୍କ କ୍ଷେତ୍ରରେ ଏହି ଶବ୍ଦ ବ୍ୟବହାର କରାଯାଇପାରେ, ତା ହେଲେ ତାହା ନାହିଁ ନାହିଁର ଏକ କ୍ରମ ହେବ – ଅବିବାହିତ ହୋଇ ନ ରହିବା, ସନ୍ତାନସନ୍ତତି ଜନ୍ମ କରିବାରେ ଅକ୍ଷମ ନ ହେବା, ଅବାଧ୍ୟ ଝିଅ, ଭଉଣୀ, ପତ୍ନୀ, ମାଆ ଅବା ବିଧବା ନ ହେବା ଥିଲା ସେମାନଙ୍କର ଉଚ୍ଚାଭିଳାଷ।"[୩] ପରିବର୍ତ୍ତନ ଏହି ଜଗତରେ ଧୀରେ ଧୀରେ ଏବଂ ଅଧିକାଂଶ ସମୟରେ ଯନ୍ତ୍ରଣାଦାୟକ ଭାବରେ ପ୍ରବେଶ କରିଥିଲା। ଯେଉଁ ନାରୀମାନେ ଏହି ପରିବର୍ତ୍ତନର ଅଂଶ ହେବାକୁ ଇଚ୍ଛା କରିଥିଲେ, ନିଜର ପ୍ରତିକ୍ରିୟା ପ୍ରକାଶ କରିଥିଲେ ଏବଂ ସେମାନଙ୍କ ଜୀବନକୁ ଏସବୁ ପରିବର୍ତ୍ତନ ମାଧ୍ୟମରେ ରୂପାନ୍ତର ହେବାକୁ ଦେଇଥିଲେ, ସେମାନେ ଦ୍ୱିଧାପୂର୍ଣ୍ଣ ପାଦ ପକାଇଥିଲେ ଏବଂ ଏକ କଠିନ, ଅସୀମ ଯାତ୍ରା ଆରମ୍ଭ କରିଥିଲେ। ଏଠାରେ ଅନ୍ତର୍ଭୁକ୍ତ ଆତ୍ମଜୀବନୀଗୁଡ଼ିକ ଏହା ସ୍ପଷ୍ଟ କରେ ଯେ ନାରୀମାନେ ଯେତେବେଳେ ସେମାନଙ୍କର ଅନ୍ତରଙ୍ଗ ତଥା ସାମାଜିକ ପରିବେଶ ସହିତ ନିଜକୁ ସଂଶ୍ଳିଷ୍ଟ କଲେ, ସେମାନେ ସମ୍ମୁଖୀନ ହୋଇଥିବା ସମସ୍ୟା ଗୁଡ଼ିକ ଆପାତତଃ ଯେତିକି ଜଣାପଡ଼େ ତାହା ଠାରୁ ଅଧିକ ସୂକ୍ଷ୍ମ ଓ ଜଟିଳ ଥିଲା। ଏହି ଆତ୍ମଜୀବନୀକାରମାନେ ଆତ୍ମସଚେତନ ନଥିବା ମୁହୂର୍ତ୍ତରେ ସେମାନଙ୍କ ଅନ୍ତରକୁ ଦୃଷ୍ଟି ଦେବାକୁ ଆମନ୍ତ୍ରଣ କରନ୍ତି। ସାଧାରଣ ବୈଦ୍ଧିକ ଆଲୋଚନାରେ ଯାହା

ପ୍ରାୟ ଅଣଦେଖା କରାଯାଏ ତାହା ହେଉଛି ଯେତେବେଳେ ବ୍ୟକ୍ତିବୃନ୍ଦ ଏକ ବିଶାଳ ବାସ୍ତବତାର ଅଂଶ ହୁଅନ୍ତି, ସେତେବେଳେ ସେମାନଙ୍କର ବ୍ୟକ୍ତିଗତ ସ୍ୱଭାବର ମୂଲ୍ୟାଙ୍କନ ଉପରେ ଗୁରୁତ୍ୱ ଦିଆଯାଏନାହିଁ। ଅଥଚ ଯେତେବେଳେ ଏଠାରେ ଆଲୋଚିତ ନାରୀମାନଙ୍କର ଅନ୍ତର୍ନିହିତ ପ୍ରବୃତ୍ତିକୁ ବିଚାରକୁ ନିଆଯାଏ, ସେତେବେଳେ ଏହି ପୁସ୍ତକର କିଛି ଉଦ୍ଧୃତାଂଶ ମୁଖ୍ୟସ୍ରୋତ ନାରୀ ଇତିହାସର ପ୍ରତିଷ୍ଠିତ ଧାରଣାକୁ ଦୃଢ଼ କରିବାରେ ସାହାଯ୍ୟ କରିଥାଏ ସତ, କିନ୍ତୁ ଅନେକ ଗୁଡ଼ିଏ ପୂର୍ବର ଏକାଧିକ ଧାରଣାକୁ ଭ୍ରମାତ୍ମକ ଅଥବା ଦ୍ୱନ୍ଦ୍ୱାତ୍ମକ ବୋଲି ପ୍ରମାଣ କରନ୍ତି ଏବଂ ବିକଳ୍ପ ଦୃଷ୍ଟିକୋଣ ପ୍ରଦାନ କରିବାରେ ସମର୍ଥ ହୁଅନ୍ତି। ପରିବର୍ତ୍ତନର ମହାନ ଅବଧି ଉପରେ ଧ୍ୟାନ ଦେଇ ଏହି ଆତ୍ମଜୀବନୀକାରମାନେ ସେମାନଙ୍କର ବିଶେଷ ନାରୀ ଅଭିଜ୍ଞତା ଏବଂ ମୂଲ୍ୟବାନ ଦୃଷ୍ଟିକୋଣ ନିଜ ଆତ୍ମଜୀବନୀର ପୃଷ୍ଠାମାନଙ୍କରେ ପ୍ରଦାନ କରିଛନ୍ତି ଯାହାକୁ ସ୍ଥୂଳ ନିଷ୍କର୍ଷରେ ପରିଣତ କରାନଯାଇପାରେ।

## ନଅଙ୍କ ଦୁର୍ଭିକ୍ଷ ଓ ଓଡ଼ିଶାରେ ନାରୀ ଶିକ୍ଷାର ପ୍ରସାର

ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ୧୮୦୩ ମସିହା ପରଠୁଁ ଓଡ଼ିଶାରେ ସେମାନଙ୍କର ଉପସ୍ଥିତିକୁ ଦୃଢ଼ କରିବା ପାଇଁ ବିଭିନ୍ନ ପଦକ୍ଷେପ ନେଇଥିଲା। କହିବା ବାହୁଲ୍ୟ ଯେ ସେମାନଙ୍କର ଧାରଣା ଏକ ସମାଜ ସହିତ ଧକ୍କା ଖାଇଥିଲା ଯାହାର ଜୀବନଦୃଷ୍ଟି ପ୍ରାଚୀନ ଶାସ୍ତ୍ରର ରୀତିନୀତି ତଥା ଲୋକଜୀବନର ସାମୂହିକ ଅଭିଜ୍ଞତା ଉପରେ ବିକଶିତ ହୋଇଥିଲା। ଆରମ୍ଭରୁ ସାଧାରଣ ଜନତାଙ୍କ ମଧ୍ୟରେ ସାକ୍ଷରତା ନଗଣ୍ୟ ଥିଲା। ବାପ୍ଟିଷ୍ଟ ମିଶନାରୀମାନେ ୧୮୨୨ ମସିହାରେ କଟକରେ ପ୍ରଥମ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ବ୍ରିଟିଶ ଓଡ଼ିଶା ଅଧିଗ୍ରହଣ ପୂର୍ବରୁ ଅଭିଲେଖଗୁଡ଼ିକ ଅନୁସାରେ ଓଡ଼ିଶାର ପୁରପଲ୍ଲୀରେ ଚାଟଶାଳୀ ଥିଲା, ଯେଉଁଠି ଜମିଦାର, ରାଉତ, କରଣ, ମାଟିବଂଶ ଓଝା ଏବଂ ସାମନ୍ତ ପରିବାରର ବାଳକମାନେ ପାଠ ପଢୁଥିଲେ; ସଂସ୍କୃତ ଶିଖିବା ପାଇଁ ଟୋଲ୍ ମଧ୍ୟ ଥିଲା, ଯେଉଁଠି ବ୍ରାହ୍ମଣ ପରିବାରର ବାଳକମାନେ ବିଦ୍ୟା ଶିକ୍ଷା କରୁଥିଲେ। ମକତାବରେ ମୁସଲମାନ ପରିବାରର ବାଳକମାନେ ଯୋଗ ଦେଉଥିଲେ।[୪] ଏପରି ପରିବେଶରେ ଯେଉଁ ଅଳ୍ପ କେଇଜଣ ଝିଅ ନାମକୁ ମାତ୍ର ବର୍ଣ୍ଣମାଳା ଓ ଗଣନା ଶିଖିପାରୁଥିଲେ, ସେମାନେ ତାହା ନିଜ ପରିବାର ସଦସ୍ୟଙ୍କଠାରୁ ଶିଖୁଥିଲେ, ପ୍ରାୟତଃ ସେମାନଙ୍କର ଚାଟଶାଳୀ ଯାଉଥିବା ଭାଇ ବା ସଂପର୍କୀୟଙ୍କଠାରୁ ଶିଖୁଥିଲେ। ପରବର୍ତ୍ତୀ ସମୟରେ ଏପରି କାର୍ଯ୍ୟକୁ ସରକାରୀ ଭାବରେ ମଧ୍ୟ ଉତ୍ସାହିତ କରାଯାଉଥିବାର ଦୃଷ୍ଟାନ୍ତ ରହିଛି। ୩ ନଭେମ୍ବର ୧୮୬୬ରେ, 'ଉତ୍କଳ ଦୀପିକା' ସମ୍ବାଦ ପ୍ରକାଶ କରିଥିଲା ଯେ ବାଲେଶ୍ୱରର ଏକ ସ୍କୁଲର ବାର୍ଷିକ ଉତ୍ସବରେ ଯୋଗଦେବା ସମୟରେ, ସ୍ଥାନୀୟ ମାଜିଷ୍ଟ୍ରେଟ୍ ସାହେବ ତିନି ଜଣ ବାଳକଙ୍କୁ

ପୁରସ୍କୃତ କରି ପ୍ରତ୍ୟେକଙ୍କୁ ଚାରି ଟଙ୍କା ଲେଖାଏଁ ପ୍ରଦାନ କରିଥିଲେ ଯେଉଁମାନେ ନିଜ ଭଉଣୀମାନଙ୍କୁ ଘରେ ପାଠ ପଢ଼ାଉଥିଲେ।

ଊନବିଂଶ ଶତାବ୍ଦୀରେ ଯେତେବେଳେ ଓଡ଼ିଶା ପ୍ରଶାସନର ଦାୟିତ୍ୱ ବିଟ୍ରିଶମାନଙ୍କ ହାତକୁ ଗଲା, ସେତେବେଳେ ଓଡ଼ିଆମାନଙ୍କ ମଧ୍ୟରେ ମିଳିତ ଓଡ଼ିଶାର କୌଣସି ଧାରଣା ଥିଲା ପରି ମନେ ହୁଏନି।[୬] ବ୍ରିଟିଶ ଓଡ଼ିଶାର ମୁଖ୍ୟ ପ୍ରଶାସନିକ ଅଞ୍ଚଳ କଟକ ଡିଭିଜନ ବଙ୍ଗଳା ପ୍ରଦେଶ ଅଧୀନରେ ଥିଲା। ଓଡ଼ିଶାର ପଶ୍ଚିମ ଭାଗ ମାନ୍ଦ୍ରାଜ ଏବଂ କେନ୍ଦ୍ରୀୟ ପ୍ରଦେଶ ସହିତ ସଂଲଗ୍ନ ହୋଇଥିଲା। ଗଡ଼ଜାତମାନେ ବ୍ରିଟିଶମାନଙ୍କ ଅଧୀନରେ ରାଜ୍ୟ ପରିଚାଳନା କରୁଥିଲେ ହେଁ କିଛି ସ୍ୱାଧୀନତା ଉପଭୋଗ କରୁଥିଲେ। ବ୍ରିଟିଶମାନେ ବିଭିନ୍ନ ଅଞ୍ଚଳକୁ ଶାସନ କରିବା ପାଇଁ ଅନେକ ପ୍ରଶାସନିକ ଖଣ୍ଡ ସୃଷ୍ଟି କରିଥିଲେ ଏବଂ ନୂତନ ନିୟମ ଓ ଅଧିନିୟମମାନ ପ୍ରଣୟନ କରିଥିଲେ। ସାଧାରଣ ଲୋକଙ୍କ ଜୀବନ କଠିନ ଓ ଅନିଶ୍ଚିତ ଥିଲା। ମୁଖ୍ୟତଃ କୃଷି ଉପରେ ଆଧାରିତ ଏକ ଅର୍ଥନୀତିରେ ସେମାନଙ୍କୁ କେବଳ ବ୍ରିଟିଶ ପ୍ରଶାସକ ନୁହେଁ, ସ୍ଥାନୀୟ ରାଜା ଏବଂ ଜମିଦାରମାନଙ୍କ ଅତ୍ୟାଚାର ମଧ୍ୟ ସହିବାକୁ ପଡୁଥିଲା। ପ୍ରାରମ୍ଭରେ ବ୍ରିଟିଶମାନେ ଜମି ଆଇନ୍‌ରେ ଅନେକ ପରିବର୍ତ୍ତନ ଆଣିଥିଲେ। ଜମିର ସର୍ବେକ୍ଷଣ ଏବଂ ଟିକସ ସଂଗ୍ରହ ଓଡ଼ିଶାବାସୀମାନେ ଅନୁକୂଳ ଭାବେ ଗ୍ରହଣ କରିନଥିଲେ। ବ୍ରିଟିଶମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଜମି ସଂସ୍କାର ମଧ୍ୟ କୃଷକମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷର କାରଣ ହୋଇଥିଲା। ଯଦିଓ ବ୍ରିଟିଶମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି ସମସ୍ତ ପରିବର୍ତ୍ତନ ଓଡ଼ିଶାର ଅର୍ଥନୀତିରେ କିପରି ସୁଦୂର ପ୍ରସାରୀ ପ୍ରଭାବ ପକାଇଥିଲା ଏହି ଅଧ୍ୟୟନର ପର୍ଯ୍ୟବେକ୍ଷଣର ବାହାରେ, କିନ୍ତୁ ଗୋଟେ କଥା ଉପରେ ଧ୍ୟାନ ଦେବା ଜରୁରି ଯେ ନୂତନ ନୀତି ଫଳରେ ଅନେକ ଜମିଦାର ନିଜ ସମ୍ପତ୍ତି ହରାଇଥିଲେ। ଏହା ବ୍ୟତୀତ ଜମିଦାରୀ ବ୍ୟବସ୍ଥାରେ ହୋଇଥିବା ପରିବର୍ତ୍ତନଗୁଡ଼ିକ ମଧ୍ୟ ଏକ ନୂତନ ଜମିଦାର ଶ୍ରେଣୀ ସୃଷ୍ଟି କରିଥିଲା ଏବଂ ବହୁ ଦୀର୍ଘ ପ୍ରତିଷ୍ଠିତ ଖଣ୍ଡାୟତ ଜମିଦାର ଏହି ପ୍ରକ୍ରିୟାରେ ନିଜର କ୍ଷମତା ହରାଇଥିଲେ।

ପ୍ରାଚୀନ ଓଡ଼ିଶା ସାମୁଦ୍ରିକ ବ୍ୟାପାର ପାଇଁ ଜଣାଶୁଣା ଥିଲା; ଏଥି ପାଇଁ ସପ୍ତଦଶ ଶତାବ୍ଦୀରୁ ବାଲେଶ୍ୱରରେ ପିପଲି ବନ୍ଦର କାର୍ଯ୍ୟକ୍ଷମ ଥିଲା। ବାଲେଶ୍ୱରରେ ପରିବହନ ବ୍ୟବସାୟ ଥିଲା। ବ୍ରିଟିଶ ଦଖଲ ପରେ ଓଡ଼ିଶାର ସାମୁଦ୍ରିକ ବାଣିଜ୍ୟ ବହୁ ପରିମାଣରେ ପ୍ରଭାବିତ ହୋଇଥିଲା। ଉତ୍ତମ ଗୁଣାତ୍ମକ ଲୁଣ ପାଇଁ ଓଡ଼ିଶା ଏକ କେନ୍ଦ୍ର ଥିଲା; ବ୍ରିଟିଶ ପ୍ରଶାସନ ୧୮୧୪ ମସିହାରେ ଲବଣ ଆଇନରେ ପରିବର୍ତ୍ତନ ଆଣିଥିଲା, ଯାହା ଦ୍ୱାରା ଲୁଣର ମୂଲ୍ୟ ଛଅ ଗୁଣ ବୃଦ୍ଧି ପାଇଥିଲା। ତା ଛଡ଼ା ସେମାନେ କଉଡ଼ି ମୁଦ୍ରାର ବିମୁଦ୍ରୀକରଣ କରିଥିଲେ। ଜମି ଉପରେ ଅତ୍ୟଧିକ ଟିକସ, ଜମିଦାରମାନଙ୍କ ଅତ୍ୟାଚାର, ଲୁଣ ମୂଲ୍ୟରେ

ବୃଦ୍ଧି ସାଧାରଣ ଲୋକଙ୍କୁ ଏକ ଦୁଃଖଦ ଅବସ୍ଥାରେ ପକାଇଥିଲା । ବ୍ରିଟିଶ ଶାସକମାନଙ୍କ ବିରୁଦ୍ଧରେ ବ୍ୟାପକ ସନ୍ଦେହ ଓ କ୍ରୋଧ ୧୮୧୪ ମସିହାରେ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ପାଇକ ବିଦ୍ରୋହର[୬] କାରଣ ହୋଇଥିଲା । ଏହି ପାଇକ ବିଦ୍ରୋହକୁ ବ୍ରିଟିଶମାନେ ସଫଳତାର ସହିତ ଦମନ କରିଥିଲେହେଁ ଏହା କଠୋର ଜମି ନିୟମ ଦ୍ୱାରା ପ୍ରଭାବିତ ହୋଇଥିବା ସଶସ୍ତ୍ର କୃଷକ ଶ୍ରେଣୀର ଏକ ସ୍ମରଣୀୟ ବିଦ୍ରୋହ[୭] ଥିଲା ।

ଯେକୌଣସି ବାଣିଜ୍ୟ ସଂସ୍ଥାର ଆଭିମୁଖ୍ୟ ଭଳି ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀର ମୂଳ ଉଦ୍ଦେଶ୍ୟ ଥିଲା ଲାଭ କରିବା । ଦେଶବାସୀଙ୍କୁ ଧନ ପାଇଁ ଶୋଷଣ କରୁଥିବାବେଳେ ଉପନିବେଶକାରୀମାନେ ମଧ୍ୟ ନିଜ ସଭ୍ୟତାକୁ ଆଧାର କରି ଶ୍ରେଷ୍ଠତାର ଏକ ଉଚ୍ଚ ସ୍ଥାନରୁ ଦେଶବାସୀଙ୍କୁ ଶିକ୍ଷିତ ଓ ସଭ୍ୟ କରିବାକୁ ପ୍ରୟାସ କରିଥିଲେ । ବ୍ରିଟିଶ ମିଶନାରୀମାନେ ଲୋକମାନଙ୍କ ସାମାଜିକ ଜୀବନରେ ପ୍ରବେଶ କରିବାକୁ ଚେଷ୍ଟା କରୁଥିଲେ । ଯେଉଁମାନେ ସେମାନଙ୍କଠାରୁ ପଢ଼ିବା ଏବଂ ଲେଖିବା ଶିଖୁଥିଲେ, ସେମାନଙ୍କୁ ବାଇବେଲ ଶିକ୍ଷା ଦେବା ପାଇଁ ସେମାନେ ନିୟମ କରିଥିଲେ । ପ୍ରାରମ୍ଭରୁ ଜାତି, ଧର୍ମ, ଲିଙ୍ଗ, ଅର୍ଥନୈତିକ ସ୍ଥିତି ଏବଂ ଅଞ୍ଚଳ ଆଧାରରେ ଓଡ଼ିଶା ସମାଜ ବହୁ ବିଭାଜିତ ଥିଲା । ଦେଶବାସୀଙ୍କ ମଧ୍ୟରେ ପ୍ରଚଳିତ ଆଭ୍ୟନ୍ତରୀଣ ଭେଦଭାବ, ସାମ୍ପ୍ରଦାୟିକ ପାର୍ଥକ୍ୟ, ଜାତିପ୍ରଥା, ଛୁଆଁଅଛୁଆଁ ଭାବ ଏବଂ ଅନ୍ଧବିଶ୍ୱାସ ଯୋଗୁଁ ବହିରାଗତମାନଙ୍କର ସୁବିଧା ହେଲା ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରିଟିଶ ମିଶନାରୀମାନେ ଓଡ଼ିଶାରେ ଝିଅ ଓ ନାରୀମାନଙ୍କୁ ଶିକ୍ଷିତ କରିବା ପାଇଁ ପ୍ରୟାସ କରିଥିଲେ, କିନ୍ତୁ ସେମାନେ ଆଶାନୁରୂପକ ସଫଳତା ପାଇନଥିଲେ । ଧର୍ମାନ୍ତରଣ ଭୟ ଯୋଗୁଁ ମିଶନାରୀମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖାଯାଉଥିଲା । ବାପ୍ଟିଷ୍ଟ ମିଶିନାରୀ ଦ୍ୱାରା ସ୍ଥାପିତ ବିଦ୍ୟାଳୟ ସଂପର୍କରେ ନିମ୍ନୋକ୍ତ ତଥ୍ୟ ଓଡ଼ିଶାରେ ଶିକ୍ଷାର ଆରମ୍ଭ ସମୟର ଚିତ୍ର ପ୍ରଦାନ କରେ:

> ୧୮୨୨ ସାଲ ଜୁନ୍ ମାସ ତା ୧ରିଖରେ କଟକରେ ମିଶନେରୀମାନଙ୍କର ପ୍ରଥମ ଓଡ଼ିଆ ସ୍କୁଲ ସ୍ଥାପନ କରାଗଲା । ପୁଣି ଅତି ଶୀଘ୍ର ସ୍କୁଲ ସଂଖ୍ୟା ବଢ଼ାଇ ଦିଆଗଲା । ସ୍କୁଲରେ କେବଳ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ପୁସ୍ତକ ପାଠ୍ୟ ପୁସ୍ତକ ରୂପେ ବ୍ୟବହାର କରାଯାଉଥିଲା, ଯେପରିକି ଛାତ୍ରଛାତ୍ରୀମାନେ ଖ୍ରୀଷ୍ଟଧର୍ମର ଆଲୋକ ପାଇପାରିବେ । ମାତ୍ର ବାଧ ହୋଇ ଏସବୁ ସ୍କୁଲରେ ହିନ୍ଦୁ ଶିକ୍ଷକମାନଙ୍କୁ ନିଯୁକ୍ତ କରିବାକୁ ପଡ଼ିଲା, କାରଣ ସେ ପର୍ଯ୍ୟନ୍ତ ଦେଶରେ ଜଣେ ହେଲେ ଓଡ଼ିଆ

ଖ୍ରୀଷ୍ଟିଆନ ନ ଥିଲେ। ଚାରିମାସ ମଧ୍ୟରେ ପ୍ରଥମ ସ୍କୁଲର ଛାତ୍ରଛାତ୍ରୀ ସଂଖ୍ୟା ୫୦ ହୋଇଗଲା। ୧୮୨୨-୨୩ ସାଲ ମଧ୍ୟରେ ଏହିପରି ୧୫ଟି ସ୍କୁଲ ସ୍ଥାପିତ ହେଲା; ଏଥିମଧ୍ୟରୁ ତିନୋଟି କଟକ ନଗରରେ ଏବଂ ଅବଶିଷ୍ଟ ନଗରରୁ ୨/୩ ମାଇଲ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ସ୍ଥାପିତ ହୋଇଥିଲା। ଏହି ସମସ୍ତ ଛାତ୍ରଛାତ୍ରୀମାନଙ୍କର ମୋଟ ସଂଖ୍ୟା ୩୬୮ ଥିଲା, ପୁଣି ଛାତ୍ରୀ ସଂଖ୍ୟା ୬୩ ଥିଲା। କ୍ରମେ ଏହି ସଂଖ୍ୟା ବୃଦ୍ଧି ପାଇଲା।[୮]

୧୮୨୩ ଅକ୍ଟୋବର ମାସରେ ବାପ୍ଟିଷ୍ଟ ମିଶନ କଟକଠାରେ ବାଳକ ଓ ବାଳିକାମାନଙ୍କ ପାଇଁ ଏକ ଇଂରାଜୀ ଦାତବ୍ୟ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲା। ସ୍ଥାନୀୟ ୟୁରୋପିଆନ ଲୋକମାନଙ୍କର ଦାନ ଟଙ୍କାରେ ଏହି ସ୍କୁଲ ଚଳାଇବାର ବ୍ୟବସ୍ଥା ହୋଇଥିଲା। ଆରମ୍ଭରୁ ଏଥିରେ ଦେଶୀୟ ପିଲାମାନେ ପଢ଼ିବାର ସୁଯୋଗ ପାଇଥିଲେ। ଏହି ସ୍କୁଲରେ ପ୍ରଥମ ୨୦ଜଣ ଛାତ୍ରଛାତ୍ରୀଙ୍କ ମଧ୍ୟରେ ମାତ୍ର ଦୁଇଜଣ ଦେଶୀୟ ବଙ୍ଗାଳୀ ଛାତ୍ର ଥିଲେ; ସେମାନଙ୍କର ନାମ ନୀଳମାଧବ ହାଲଦାର ଓ ଗୁରୁ ନାରାୟଣ ଚାଟର୍ଜୀ। ଏହା ପରେ ଆହୁରି ପନ୍ଦରଟି ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା। ତଥାପି ଏହି ସବୁ ବିଦ୍ୟାଳୟରେ ମୋଟ ବାଳିକାଙ୍କ ସଂଖ୍ୟା ଥିଲା ମାତ୍ର ୬୩। ୧୮୩୬ ମସିହାରେ କଟକଠାରେ ଏକ ବୋର୍ଡିଂ ସ୍କୁଲ ପ୍ରତିଷ୍ଠା କରାଯାଇଥିଲା; ଓଡ଼ିଶାର ବିଭିନ୍ନ ସ୍ଥାନରେ ତିନୋଟି ବାଳିକା ବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା। ସେହି ବର୍ଷ କଟକଠାରେ ବାଳିକାମାନଙ୍କ ପାଇଁ ଏକ ମଧ୍ୟମ ଇଂରାଜୀ ବିଦ୍ୟାଳୟ ଆରମ୍ଭ ହୋଇଥିଲା।[୯]

ଦେଶବାସୀଙ୍କୁ ଶିକ୍ଷା ଦେବା ପାଇଁ ବାପ୍ଟିଷ୍ଟ ମିଶନାରୀମାନେ କରିଥିବା ପ୍ରୟାସ ଏବଂ ତାର ପ୍ରଭାବ ଉପରେ ୧୮୫୮ ମସିହାରେ "ଓଡ଼ିଶା ମିଶନର ଉତ୍‌ଥାନ ଏବଂ ପ୍ରଗତି: ଏକ ସଂକ୍ଷିପ୍ତ ଆଲେଖ୍ୟ"ରେ ଲିଖିତ ଏକ ଅଂଶ:

> ମିଶନର ପ୍ରାରମ୍ଭ କାଳରେ ଓଡ଼ିଆ ଭାଷାରେ ଶିକ୍ଷା ଉପରେ ଯଥେଷ୍ଟ ଧ୍ୟାନ ଦିଆଯାଇଥିଲା ଏବଂ ଉଭୟ ବାଳକବାଳିକାମାନଙ୍କ ପାଇଁ ଅନେକ ଗୁଡ଼ିଏ ଦିନ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା। ଏଗୁଡ଼ିକରେ ପ୍ରୟୋଜନ ଦୃଷ୍ଟିରୁ ସ୍ଥାନୀୟ ଶିକ୍ଷକମାନଙ୍କ ଦ୍ୱାରା ଶିକ୍ଷା ଦିଆଯାଉଥିଲା, କିନ୍ତୁ ମିଶନାରୀମାନେ ଏବଂ ବିଶେଷ କରି ସେମାନଙ୍କର ପତ୍ନୀମାନେ ଏସବୁକୁ ଖୁବ୍ ଯତ୍ନର ସହ ପରିଦର୍ଶନ କରୁଥିଲେ। ପିଲାମାନଙ୍କୁ ପର୍ଯ୍ୟାୟକ୍ରମେ ପରୀକ୍ଷା କରାଯାଉଥିଲା ଏବଂ ଖ୍ରୀଷ୍ଟ ଧର୍ମସାହିତ୍ୟକୁ

ପୁଙ୍ଖାନୁପୁଙ୍ଖ ଭାବେ ପଚରା ଯାଉଥିଲା। ଆମେ ଏବେ ବି ବହୁ ଜଣଙ୍କୁ ଭେଟୁ ଯୋଉମାନେ କୋଉ ବିଦ୍ୟାଳୟରେ ଶିକ୍ଷାପ୍ରାପ୍ତ ହୋଇଥିଲେ କୁହନ୍ତି ଏବଂ ସାହେବ ଓ ମେମ୍ ଦେଇଥିବା ଟିପ୍ପଣୀକୁ ମନେପକାନ୍ତି। ଏହି ବିଦ୍ୟାଳୟଗୁଡ଼ିକରେ ଅନେକେ ଶିକ୍ଷା ଗ୍ରହଣ କଲେ ଯାହା ଅନ୍ୟଥା ସମ୍ଭବ ହୋଇନଥାନ୍ତା; ବହୁ ଖ୍ରୀଷ୍ଟଧର୍ମୀୟ ଜ୍ଞାନ ବିସ୍ତାର କରାଯାଇପାରିଲା; ମିଶନାରୀମାନେ ସ୍ଥାନୀୟ ଲୋକମାନଙ୍କ ଉପରେ କିଛି ପରିମାଣର ପ୍ରଭାବ ହାସଲ କରିପାରିଲେ ଯାହା ମିଶନ ଆରମ୍ଭରେ ଗୁରୁତ୍ୱପୂର୍ଣ ଥିଲା ଏବଂ ବୋଧହୁଏ ଅନ୍ୟ କୌଣସି ଉପାୟରେ ଏହା ସମ୍ଭବ ହେଇପାରିନଥାନ୍ତା। ତଥାପି ବିଦ୍ୟାଳୟଗୁଡ଼ିକୁ ଯେଉଁ ମହାନ ଉଦ୍ଦେଶ୍ୟ ପାଇଁ ପ୍ରତିଷ୍ଠା କରାଯାଇଥିଲା, ତାହାର ଫଳ ମିଳିଲାନି। ବହୁ ବର୍ଷର ପରିଶ୍ରମ ଏବଂ ଖର୍ଚ୍ଚ ପରେ ଏହା ଅତ୍ୟନ୍ତ ନିରାଶାଜନକ ଅନୁଭବ ଯେ ଯେଉଁମାନେ ଶିକ୍ଷା ପାଇଥିଲେ, ସେମାନଙ୍କ ମଧ୍ୟରୁ କେହି ଜଣେ ହେଲେ ବି ଖ୍ରୀଷ୍ଟଧର୍ମକୁ ଆପଣେଇଲେନି।[୧୦]

ଯଦି ୧୮୬୬ ମସିହାରେ ଓଡ଼ିଶା ମହାଦୁର୍ଭିକ୍ଷର ସମ୍ମୁଖୀନ ହୋଇନଥାନ୍ତା, ତେବେ ଏହିଠାରେ ଶିକ୍ଷାର କି ପ୍ରକାର ଅଗ୍ରଗତି ହୋଇଥାନ୍ତା ତାହା ବର୍ତ୍ତମାନ କହିବା କଷ୍ଟସାଧ୍ୟ। ଏହି ସମୟରେ ମିଶନାରୀମାନେ ଅନାଥ ପିଲାମାନଙ୍କ ପାଇଁ ବହୁ ଅନାଥ ଆଶ୍ରମ ପ୍ରତିଷ୍ଠା କଲେ ଯାହା ପରବର୍ତ୍ତୀ ସମୟରେ ଶିକ୍ଷା କେନ୍ଦ୍ରରେ ବିକଶିତ ହେଲା। ମିଶନାରୀମାନେ ମଧ୍ୟ ଦୁର୍ଭିକ୍ଷରେ ପୀଡ଼ିତ ଦେଶବାସୀମାନଙ୍କର ସେବା କଲେ। ସେମାନେ ନିଜ ସମ୍ପ୍ରଦାୟ ଦ୍ୱାରା ପରିତ୍ୟକ୍ତ ଗରିବ ହିନ୍ଦୁମାନଙ୍କର ଯତ୍ନ ନେଲେ। ଦୁର୍ଭିକ୍ଷ ପୂର୍ବରୁ ଦେଶବାସୀଙ୍କ ମଧ୍ୟରେ ଧର୍ମାନ୍ତରଣ ହେବାର ବିରଳ ଉଦାହରଣ ଥିଲା; ଯେଉଁମାନେ ଧର୍ମ ପରିବର୍ତ୍ତନ କରିଥିଲେ ସେମାନଙ୍କୁ ସାମାଜିକ ବାଛନ୍ଦ ଭାବେ କଠୋର ଦଣ୍ଡ ଭୋଗିବାକୁ ପଡ଼ିଥିଲା।

ଅବଶ୍ୟ ନଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ ସମୟରେ ଧର୍ମାନ୍ତରଣରେ ବୃଦ୍ଧି ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ଛୋଟ ଛୋଟ ଖ୍ରୀଷ୍ଟିଆନ ବସତି ସ୍ଥାପନ ହୋଇଥିଲା। ଦୁର୍ଭିକ୍ଷ ପ୍ରପୀଡ଼ିତ ଦରିଦ୍ର, ଭୂମିହୀନ ଦେଶବାସୀ ମିଶନାରୀମାନଙ୍କଠୁଁ କରୁଣା ଓ ସମର୍ଥନ ପାଇଥିଲେ ଯେତେବେଳେ ସାମାଜିକ ନିୟମ ଯୋଗୁଁ ନିଜ ଗୋଷ୍ଠୀ ସେମାନଙ୍କୁ ଦୂର୍ ଦୂର୍ ମାର୍ ମାର୍ କରୁଥିଲା। ଓଡ଼ିଆ ଆଧୁନିକ ସାହିତ୍ୟର ନିର୍ମାତା ଫକୀରମୋହନ ସେନାପତି ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ ସେ ମଧ୍ୟ ନିଜ ଜୀବନର ଏକ ନିର୍ଦ୍ଦିଷ୍ଟ ସମୟରେ

ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିବା କଥା ଚିନ୍ତା କରିଥିଲେ।[୧୧] ପରେ ସେ ଉତ୍କଳ ବ୍ରାହ୍ମ ସମାଜ[୧୨]ରେ ଯୋଗ ଦେଇଥିଲେ। ପ୍ରଥମ ଓଡ଼ିଆ ସ୍ନାତକ ତଥା ଆଧୁନିକ ଓଡ଼ିଶାର ଅନ୍ୟତମ ସ୍ଥପତି ମଧୁସୂଦନ ଦାସ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଥିଲେ[୧୩]। ସେହି ସମୟର ଅନେକ ଶିକ୍ଷିତ ଓଡ଼ିଆ ନିଜର ମୂଲ୍ୟବୋଧ ଉପରେ ପ୍ରଶ୍ନ କରିବା ଆରମ୍ଭ କରିଥିଲେ ଏବଂ ବିକଳ୍ପ ଚିନ୍ତାଧାରା ଓ ମୂଲ୍ୟବୋଧର ଅନୁସନ୍ଧାନରେ ଲାଗିପଡ଼ିଥିଲେ।

ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାରେ ମୁଦ୍ରିତ ପତ୍ରପତ୍ରିକାର ବିକାଶ ହୋଇଥିଲା। ଶିକ୍ଷିତ ଓଡ଼ିଆ ଲୋକେ ସେମାନଙ୍କ ଚାରିପାଖରେ ଘଟୁଥିବା ଘଟଣାଗୁଡ଼ିକ ଦ୍ୱାରା ଗଭୀର ଭାବରେ ଉଦ୍‌ବେଳିତ ହୋଇଥିଲେ। ସେମାନଙ୍କ ମଧ୍ୟରେ ଆଞ୍ଚଳିକ ପରିଚୟବୋଧ ଏବଂ ଆତ୍ମସଚେତନତାର ଅଭିବୃଦ୍ଧି ଘଟିଥିଲା। ସେମାନଙ୍କ ମତରେ ଓଡ଼ିଆମାନଙ୍କର ବ୍ରିଟିଶ ପ୍ରଶାସନିକ ବ୍ୟବସ୍ଥା ମଧ୍ୟରେ ପ୍ରବେଶ ନଥିବାରୁ ଏବଂ ସଙ୍କଟ ସମୟରେ ସିଧାସଳଖ ନିଜର ଦାବି ଉପସ୍ଥାପନ କରିବାର କିମ୍ବା ଯୋଗାଯୋଗ କରିବାର ବାଟ ନଥିବାରୁ, ସେମାନେ ଚିରକାଳ ଦୁରାବସ୍ଥା ଭୋଗୁଛନ୍ତି। ସେମାନେ ଅନୁଭବ କଲେ ଯେ ଓଡ଼ିଆ ସମ୍ବାଦପତ୍ରର ଅଭାବରେ ଓଡ଼ିଆଙ୍କ ସମସ୍ୟା ସଠିକ୍ ଭାବରେ ବ୍ରିଟିଶ ଅଧିକାରୀମାନଙ୍କ ନିକଟରେ ଉପସ୍ଥାପିତ ହେଉନାହିଁ ଏବଂ ଓଡ଼ିଶାର ବ୍ୟାପକ ବିପର୍ଯ୍ୟୟକୁ ରୋକା ଯାଇପାରୁନାହିଁ। ଏହିସବୁ ସମସ୍ୟା ଓ ସମ୍ଭାବନାକୁ ଦୃଷ୍ଟିରେ ରଖି ପ୍ରଥମ ସାପ୍ତାହିକ ଓଡ଼ିଆ ଖବରକାଗଜ "ଉତ୍କଳ ଦୀପିକା"[୧୪] ଗୌରୀ ଶଙ୍କର ରାୟଙ୍କ ସମ୍ପାଦନାରେ ୧୮୬୬ ମସିହା ଅଗଷ୍ଟ ମାସରେ ଓଡ଼ିଆମାନଙ୍କର ଜ୍ୱଳନ୍ତ ପ୍ରସଙ୍ଗଗୁଡ଼ିକୁ ସାମନାକୁ ଆଣିବା ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହୋଇଥିଲା। ଆଉ କିଛି ସମ୍ବାଦପତ୍ର ଓ ପତ୍ରିକା ଏହାର ଅନୁସରଣ କଲା। ଏହିସବୁ ସମ୍ବାଦପତ୍ରରେ ଲେଖୁଥିବା ନୂତନ ଉତ୍ସାହ ଓ ଚିନ୍ତନଧାରୀ ଓଡ଼ିଆ ଲେଖକମାନେ ନିଜ ଲେଖାରେ ପରିବର୍ତ୍ତନଧର୍ମୀ ଚିନ୍ତାଧାରା ଏବଂ ଭାବନା ପ୍ରକାଶ କରିବାକୁ ଆରମ୍ଭ କଲେ।

ସେତେବେଳେ ଶିକ୍ଷିତ ଓଡ଼ିଆ ଦେଶବାସୀଙ୍କ ଅଭାବ ହେତୁ ସରକାରୀ କାର୍ଯ୍ୟାଳୟରେ ପ୍ରଶାସନିକ ପଦବୀଗୁଡ଼ିକ ବଙ୍ଗୀୟମାନଙ୍କ ଦ୍ୱାରା ପୂର୍ଣ୍ଣ ହେଉଥିଲା। ଶିକ୍ଷାର ପ୍ରସାର ସହିତ ଏହି ଦୃଶ୍ୟ ଧୀରେ ଧୀରେ ବଦଳିବାକୁ ଆରମ୍ଭ ହେଲା ଏବଂ ଓଡ଼ିଆ ଦେଶବାସୀ ବିଭିନ୍ନ ପଦବୀରେ ନିଯୁକ୍ତି ପାଇଲେ, ଯାହା ଓଡ଼ିଶାରେ ବେତନ ପ୍ରାପ୍ତ ଚାକିରିଆ ଶ୍ରେଣୀର ମୂଳଦୁଆ ପକାଇଲା। ସରକାରୀ ଚାକିରିର ପ୍ରତିଶ୍ରୁତି, ଛୋଟ ହେଉ କି କ୍ଷମତାସମ୍ପନ୍ନ ହେଉ, ଏବଂ ଏହି ଚାକିରିଗୁଡ଼ିକ ପ୍ରଦାନ କରୁଥିବା ସୁଯୋଗ ସାଧାରଣ ଲୋକମାନେ ଭଲ ଭାବେ କଳନା କରିପାରିଥିବେ। ଫଳରେ ସରକାରୀ ବିଦ୍ୟାଳୟମାନଙ୍କରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କ ସଂଖ୍ୟା ଧୀରେ ଧୀରେ ବୃଦ୍ଧି ପାଇଲା

ଏବଂ ଲୋକମାନେ କେବଳ ସେମାନଙ୍କର ପାରମ୍ପରିକ ବୃତ୍ତିର ଭୂମିକାରେ ସୀମିତ ନରହି ସରକାରୀ ଚାକିରି ପାଇବା ଦିଗରେ ଚେଷ୍ଟିତ ହେଲେ। ଊନବିଂଶ ଶତାବ୍ଦୀ ଓଡ଼ିଆ ସମାଜରେ ଏକ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଧୀର ଅଭିବୃଦ୍ଧି ସହିତ ଏହି ତଥ୍ୟକୁ ସଂଯୁକ୍ତ କରାଯାଇପାରେ।

ଓଡ଼ିଆ ସମାଜ ଏଭଳି ସୁଦୂରପ୍ରସାରୀ ପରିବର୍ତ୍ତନ ଦେଇ ଗତି କରୁଥିବାବେଳେ ନାରୀମାନଙ୍କ ସହ ଜଡ଼ିତ ପ୍ରସଙ୍ଗଗୁଡ଼ିକ ମଧ୍ୟ କ୍ରମେ ଅଧିକ ଧ୍ୟାନ ପାଇଲା, ଯଦିଓ ନାରୀମାନଙ୍କର ସମସ୍ୟାକୁ ଆଦୌ ସମସ୍ୟା ବୋଲି ଧରାଯାଉଥିବା ପରି ମନେହୁଏନା। ନାରୀମାନଙ୍କ ସମସ୍ୟା ମଧ୍ୟରୁ ପ୍ରଥମେ ସତୀଦାହ ପ୍ରଥାକୁ ସରକାରୀ ଆଇନ୍ ଅନୁସାରେ ୧୮୨୯ ମସିହାରୁ ନିଷିଦ୍ଧ କରାଯାଇଥିଲା। ସେ ସମୟର ସମ୍ବାଦପତ୍ରରେ ରିଲିଫ୍ ବଣ୍ଟନ ଏବଂ ଜମି ବିବାଦ ସହ ଜଡ଼ିତ ଅଦାଲତର ସମ୍ବାଦ ସହ ନାରୀମାନଙ୍କ ବିଷୟରେ ଖବର ପାଇଁ ସ୍ୱଳ୍ପ କିଛି ସ୍ଥାନ ପ୍ରଦାନ ହେବା ଦୃଶ୍ୟ ହେଲା। ସେକାଳରେ ନାରୀ ନିର୍ଯ୍ୟାତନାର ଉଦାହରଣ ସମାଜରେ କମ୍ ନଥିଲା। ଫକୀରମୋହନ ସେନାପତିଙ୍କ ସଂପାଦିତ ପାକ୍ଷିକ ସମ୍ବାଦ ପତ୍ରିକା "ବାଲେଶ୍ୱର ସମ୍ବାଦ ବାହିକା"ରେ ଅକ୍ଟୋବର ୧୮୭୨ରେ ନିମ୍ନୋକ୍ତ ସମ୍ବାଦଟି ପ୍ରକାଶ ପାଇଥିଲା:

> "ଦୁଇ ସପ୍ତାହ ଅତୀତ ହେଲା ଛଣପୁର ଗ୍ରାମରେ ଗୋଟିଏ ୨୨ ବର୍ଷ ଯୁବତୀ ସ୍ତ୍ରୀ, ପୁତ୍ର ନୋହିବା ଆଦି ଗଞ୍ଜଣା ସହି ନପାରି ବୁଡ଼ିମରିଅଛି। ଏହି ମକଦମା ସାନୀ ତଦାରଖ କରିବା ନିମନ୍ତେ ବାଲେଶ୍ୱର ଡିଭିଜନର ସବ୍ ଇନ୍ସପେକ୍ଟର ଘଟଣାସ୍ଥଳକୁ ଯାଇଥିଲେ। ସେ ଭୂଆସୁଣୀମାନଙ୍କ ପ୍ରତି ପ୍ରହାରାଦି ଅତ୍ୟାଚାର କରିଥିବା ବିଷୟର ଖଣ୍ଡିଏ ଦୀର୍ଘପତ୍ର ଆମ୍ଭେମାନେ ପ୍ରାପ୍ତ ହୋଇଅଛୁଁ, ତାହା ଆଗାମୀରେ ପ୍ରଚାର କରିବାର ବାସନା ରହିଲା।"

ଏହିପରି ଆଉ ଏକ ଅପମୃତ୍ୟୁର ଖବର "ଓଡ଼ିଆ ଓ ନବ ସମ୍ବାଦ" (ସାପ୍ତାହିକ ସମ୍ବାଦ ପତ୍ର)ରେ ୧୮୮୭, ଡିସେମ୍ବର ୧୨ ତାରିଖରେ ବାହାରି ଥିଲା – "ଖୁରୁଧା ମଉଜାରେ ଜଣେ ଚାଷୁଣୀ କୂପରେ ପଡ଼ି ମରି ଯାଇଅଛି ସତ୍ୟ, ମାତ୍ର ଗ୍ରାମବାସୀଏ କହନ୍ତି ଯେ ସ୍ୱାମୀ କର୍ତ୍ତୃକ ଦଣ୍ଡିତା ହୋଇ କୂପପତିତା ହୋଇଥିଲା। ସତ୍ୟାସତ୍ୟ ଈଶ୍ୱର ଜାଣନ୍ତି।"

କ୍ରମେ ବାଲ୍ୟ ବିଧବାମାନଙ୍କ ପୁନର୍ବାର ବିବାହ କରିବା ପ୍ରସଙ୍ଗରେ ଲେଖା ସ୍ଥାନ ପାଇଲା। ଏହି ଲେଖାଗୁଡ଼ିକୁ ବା ନୂତନ ଚିନ୍ତନକାରୀମାନଙ୍କୁ ଯେ ସବୁବେଳେ

ସକରାତ୍ମକ ପ୍ରତିକ୍ରିୟା ମିଳୁଥିଲା ତାହା ନୁହେଁ। ବିଧବା ବିବାହ ପ୍ରସଙ୍ଗ ଉପରେ "ପୁରୁଷୋତ୍ତମ" ପତ୍ରିକାରେ ୨୪ ଜୁଲାଇ ୧୮୮୨ରେ ସମ୍ବାଦଟି ଏହିପରି ଥିଲା:

> "ଆଜିକାଲି ବଙ୍ଗଳାରେ ନାନାସ୍ଥାନରେ ଶାସ୍ତ୍ରମତ ବିଧବା ବିବାହର ପ୍ରସ୍ତାବ ଲାଗିଅଛି। ଶ୍ରୀଯୁକ୍ତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ମହାଶୟ ଏ ବିଷୟରେ ବହୁଳ ଅର୍ଥ ବ୍ୟୟ ଏବଂ ଅସୀମ ଯତ୍ନ କରି ସୁଦ୍ଧା ମନୋରଥ ସଫଳ କରିପାରିନାହାନ୍ତି। ଦେଖାଯାଉ ଆମ୍ଭମାନଙ୍କର ବଙ୍ଗୀୟ ନବ୍ୟ ଦଳ କେତେଦୂର କୃତକାର୍ଯ୍ୟ ହୋଇପାରିବେ। ଯେତେବେଳେ ବିଧବା ବିବାହ ଯୁକ୍ତିସିଦ୍ଧ ଏବଂ ଶାସ୍ତ୍ର ସଙ୍ଗତ ତେତେବେଳେ ଏ ପ୍ରଥା ଯାଦିଚ କେତେକ କାଳ ହେଲା ବଙ୍ଗଳାରୁ ଲୋପ ପାଇଅଛି ତଥାଚ ସେ ପ୍ରଥାକୁ ପୁନଃ ପ୍ରଚ୍ଚର ପକ୍ଷେ କୌଣସି କ୍ଷତି ନାହିଁ, ବରଂ ଶ୍ରେୟସ୍କର ଅଟେ। ଆଗେ ଭୃଣ ହତ୍ୟା ଗୁଡ଼ିକ ତ କ୍ଷାନ୍ତ ପଡ଼ିବ।"

ନାରୀଶିକ୍ଷା ଦିଗରେ ମଧ୍ୟ ବହୁପ୍ରକାର ପଦକ୍ଷେପ ନିଆଗଲା। ଦୁର୍ଭିକ୍ଷ ପରବର୍ତ୍ତୀ ଅବସ୍ଥାରେ ନାରୀମାନଙ୍କ ମଧ୍ୟରେ ସାକ୍ଷରତା କ୍ରମାଗତ ବୃଦ୍ଧି ପାଇଲା। ସେତେବେଳର ପରିବେଶ କଳ୍ପନା କଲେ ମନଶ୍ଚକ୍ଷୁରେ ଭାସି ଉଠନ୍ତି କିଛି ଖ୍ରୀଷ୍ଟିଆନ ମହିଳା ମିଶନାରୀ, ଯେଉଁମାନେ ଘରେ ଘରେ ଯାଇ ନାରୀମାନଙ୍କୁ ଶିକ୍ଷା ଦେବାକୁ ଚେଷ୍ଟା କରୁଥିଲେ। ଉଲ୍ଲେଖଯୋଗ୍ୟ, ବ୍ରିଟିଶ ମହିଳା ଶ୍ରୀମତୀ ସ୍ମିଥ ୧୮୬୯ ମସିହାରେ କେବଳ ଛଅ ଜଣ ଗୃହିଣୀଙ୍କୁ ନେଇ ତାଙ୍କ ଘରେ ଶିକ୍ଷାଦାନ ଆରମ୍ଭ କରିଥିଲେ। ୧୮୭୨ ମସିହା ସୁଦ୍ଧା ତାଙ୍କ ବାସଭବନରେ ୧୨୬ ଜଣ ନାରୀ ଶିକ୍ଷିତ ହୋଇଥିଲେ। ୧୮୬୯ ମସିହାରେ ଅବିନାଶ ଚ୍ଚଟାର୍ଜୀ କଟକର ବାଲୁବାଜରରେ ଥିବା ତାଙ୍କ ବାସଭବନରେ ଏକ ବାଳିକା ବିଦ୍ୟାଳୟ ଆରମ୍ଭ କରିଥିଲେ; ପରେ ଏହି ବିଦ୍ୟାଳୟର ନାମ କଟକ ହିନ୍ଦୁ ବାଳିକା ଉଚ୍ଚ ବିଦ୍ୟାଳୟ ଭାବରେ ନାମିତ ହେଲା। ଏହି ବିଦ୍ୟାଳୟଟି ୧୮୭୩ ମସିହାରେ ସରକାରଙ୍କଠାରୁ ଆର୍ଥିକ ସହାୟତା ପାଇଥିଲା। ସେହି ବିଦ୍ୟାଳୟକୁ ୧୮୮୩ ମସିହାରେ ଏକ ମଧ୍ୟମ ଇଂରାଜୀ ବିଦ୍ୟାଳୟକୁ ଉନ୍ନୀତ କରାଯାଇଥିଲା। ପରବର୍ତ୍ତୀ ସମୟରେ ଏହା ଓଡ଼ିଶାରେ ନାରୀ ଶିକ୍ଷା ପାଇଁ ଏକ ପ୍ରସିଦ୍ଧ କେନ୍ଦ୍ରରେ ପରିଣତ ହୋଇ ରେଭେନ୍ସା ହିନ୍ଦୁ ବାଳିକା ବିଦ୍ୟାଳୟ ଭାବରେ ପରିଚିତ ହେଲା।

ସରକାରୀ ବିଦ୍ୟାଳୟମାନଙ୍କରେ ନାମଲେଖା ବୃଦ୍ଧି ଲକ୍ଷ୍ୟରେ ବାଳିକାମାନଙ୍କୁ ବୃତ୍ତି ପ୍ରଦାନ କରାଯାଉଥିଲା। ୧୮୭୩-୭୪ ଶେଷ ସୁଦ୍ଧା ପୁରୀ ଜିଲ୍ଲାରେ ସାତଟି ବାଳିକା ବିଦ୍ୟାଳୟ ଏବଂ କଟକ ଜିଲ୍ଲାରେ ଅଣଚ୍ଚାଳିଶଟି ବାଳିକା ବିଦ୍ୟାଳୟ ଥିଲା।

ଅବଶ୍ୟ ଏହି ବିଦ୍ୟାଳୟରେ ପଢୁଥିବା ଅଧିକାଂଶ ଝିଅ ଧର୍ମାନ୍ତରୀତ ବା ଦେଶୀ ଖ୍ରୀଷ୍ଟିଆନ ଏବଂ ବଙ୍ଗାଳୀ ପରିବାରର ଥିଲେ। ବାସ୍ତବରେ ଏହି ବିଦ୍ୟାଳୟମାନଙ୍କରେ ଖୁବ୍ କମ୍ ଓଡ଼ିଆ ହିନ୍ଦୁ ଝିଅ ପଢୁଥିଲେ। ଓଡ଼ିଆ ହିନ୍ଦୁ ପରିବାରର ଝିଅମାନଙ୍କୁ ଯୌବନ ପ୍ରାପ୍ତ ହେବାର ବହୁ ପୂର୍ବରୁ ବିଭା ଦିଆଯାଉଥିଲା କାରଣ ସାଧାରଣ ବିଶ୍ୱାସ ଥିଲା ଯେ ଯଦି କୌଣସି କନ୍ୟା ବିବାହ ପୂର୍ବରୁ ରଜସ୍ୱଳା ହୁଏ, ତାର ପୂର୍ବପୁରୁଷ ଓ ପରିବାର ନର୍କରେ ପଡ଼ନ୍ତି।[୧୫] ୧୮୯୯ ମସିହାରେ ଜନ୍ମିତ ରମାଦେବୀ ଚୌଧୁରୀ କିମ୍ବା ୧୯୦୪ ମସିହାରେ ଜନ୍ମିତ ସୀତାଦେବୀ ଖାଡ଼ଙ୍ଗା, ଦିହେଁ ଧନୀ, ସମ୍ଭ୍ରାନ୍ତ ହିନ୍ଦୁ ପରିବାରରେ ଜନ୍ମ ହେଇ ବି ଘରୋଇ ଭାବେ ପାଠ ପଢ଼ିଥିଲେ, ବିଦ୍ୟାଳୟକୁ ଯାଇନଥିଲେ। ଝିଅମାନେ ଘରେ ରହିବା, ଘର କାମରେ ସାହାଯ୍ୟ କରିବା ଏବଂ ଶାଶୁଘରକୁ ଗଲେ ସେଠାରେ ପରିବାରର ଯତ୍ନ ନେବା ଏବଂ ଘରର ଦାୟିତ୍ୱ ବହନ କରିବା ଥିଲା ପ୍ରଚଳିତ ପ୍ରଥା। ଝିଅମାନଙ୍କୁ ଶିକ୍ଷିତ କରିବା ନିମନ୍ତେ ପୁରୁଣା ଚିନ୍ତାଧାରା ବିରୋଧରେ ଯେଉଁ ଯୁକ୍ତି ଦିଆଯାଉଥିଲା ସେସବୁ ଥିଲା ଏହିପରି: ଯଦି ଝିଅମାନେ ପଢ଼ିବାକୁ ଶିଖିବେ, ସେମାନେ ନିଜ ପିଲାମାନଙ୍କୁ ଶିକ୍ଷା ଦେଇପାରିବେ, ସେମାନେ ଘର ଖର୍ଚ୍ଚର ହିସାବ ରଖିପାରିବେ, ସେମାନେ ନିଜ ଶାଶୁ ତଥା ଗୃହର ବୟସ୍କମାନଙ୍କୁ ପୁରାଣ ପଢ଼ି ଶୁଣାଇପାରିବେ। ବୋଧହୁଏ ଏହିପରି ଉଦ୍ଦେଶ୍ୟଗୁଡ଼ିକୁ ଉପସ୍ଥାପିତ କରୁଥିବା ବ୍ୟକ୍ତିମାନେ ଅନୁମାନ କରୁନଥିଲେ ଯେ ନାରୀମାନଙ୍କ ସ୍ଥିତି ବଦଳିଯିବ କିମ୍ବା ଏହା ପରିବାରରେ ଥିବା କ୍ଷମତାର ସମୀକରଣକୁ ନଷ୍ଟ କରିଦେବ। ୧୮୮୭ରେ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର 'ଓଡ଼ିଆ'ର ଏକ ସମ୍ବାଦରେ ଆମେରିକାରେ ସ୍ତ୍ରୀଲୋକଙ୍କ କର୍ମକ୍ଷେତ୍ରରେ ସଫଳତା ବର୍ଣ୍ଣନା ଓ ଶେଷରେ ବିସ୍ମୟସୂଚକ ଚିହ୍ନର ବ୍ୟବହାର ସେ ସମୟର ମନୋଭାବକୁ ସୂଚାଏ:

> "ଆମେରିକାର ସ୍ତ୍ରୀଲୋକମାନେ ପୁରୁଷଙ୍କୁ ବଳି ଗଲେଣି, ସ୍ତ୍ରୀ ଡାକ୍ତର ଗଳି ଗଳି ବୁଲୁ ଅଛନ୍ତି। ସ୍ତ୍ରୀ ବାରିଷ୍ଟର ଓ ସ୍ତ୍ରୀ କେରାଣି ଅନେକ। ଗୋଟିଏ ସ୍ତ୍ରୀଲୋକ ଏକ ଜିଲ୍ଲାର ଜଜ୍ ହୋଇ ଅଛନ୍ତି। ସ୍ତ୍ରୀଲୋକ ଜାହାଜର ପାଇଲେଟ୍, ରାଜପଥ ପରିଷ୍କାରର କାନ୍ତରାଟକାର ହୋଇ ଅଛନ୍ତି। ଦୁଇ ଗୋଟି ନଗରରେ ଯୋଡ଼ିଏ ସ୍ତ୍ରୀ ମିଉନିସିପାଲିଟି କାଉନ୍ସିଲ୍ ମେମ୍ବର ହୋଇଛନ୍ତି। ଆମେରିକାର ରାଜକୀୟ ପ୍ରଧାନ କର୍ତ୍ତୃତ୍ୱପଦ ଅର୍ଥାତ୍ ପ୍ରେସିଡେଣ୍ଟ୍ ପଦ ପାଇବା ନିମନ୍ତେ ଜଣେ ସ୍ତ୍ରୀଲୋକ ଚେଷ୍ଟା କରୁ ଅଛନ୍ତି। ସ୍ତ୍ରୀଲୋକମାନେ ନିତାନ୍ତ ଅବଳା ନୁହନ୍ତି!"

ତଥାପି ନାରୀ ଶିକ୍ଷା ଦିଗରେ ଦେଶବାସୀଙ୍କ ମଧ୍ୟରେ ଅନିଚ୍ଛା ଏବଂ ଉଦାସୀନତା କମ୍ ହେଇନଥିଲା। ସରକାରୀ ଓ ବ୍ୟକ୍ତିଗତ ସ୍ତରରେ ନାରୀଶିକ୍ଷା ନିମନ୍ତେ ଜନସାଧାରଣଙ୍କ

ମନୋଭାବ ପରିବର୍ତ୍ତନ କରିବାକୁ ପ୍ରଚେଷ୍ଟା ଜାରି ରହିଲା। ମିଶ୍ର ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ବାଳିକାମାନଙ୍କ ଉପସ୍ଥାନକୁ ପ୍ରୋତ୍ସାହିତ କରିବା ପାଇଁ ସରକାର ୧୩ ଜାନୁଆରୀ ୧୮୭୬ ମସିହାର ସଂକଳ୍ପ ଅନୁଯାୟୀ ଏହାର ଶିକ୍ଷାନୀତିରେ ସଂଶୋଧନ ଆଣିଥିଲେ। ଏହା ସହ ସ୍ୱତନ୍ତ୍ର ବାଳିକା ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ଯୋଜନା କରାଯାଇଥିଲା। ଓଡ଼ିଶାରେ ନାରୀଶିକ୍ଷାକୁ ପ୍ରୋତ୍ସାହିତ କରିବା ପାଇଁ ବାଳିକାମାନଙ୍କ ପାଇଁ ପୃଥକ୍ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଜେଏ ହପକିନ୍ସ[୧୬] ପରାମର୍ଶ ଦେଇଥିଲେ। ବିଦ୍ୟାଳୟରେ ବାଳିକାମାନଙ୍କ ସଂଖ୍ୟା ବଢ଼ାଇବା ପାଇଁ ଗ୍ରାମ ବିଦ୍ୟାଳୟର ଶିକ୍ଷକମାନଙ୍କୁ ବାର୍ଷିକ ଛଅ ଟଙ୍କା ପୁରସ୍କାର ପ୍ରଦାନ କରାଯାଉଥିଲା। ୧୮୭୬-୭୭ ମସିହାରେ ପୁରୀରେ ଏହି ନୀତି ପ୍ରଥମେ କାର୍ଯ୍ୟକାରୀ ହୋଇଥିଲା ଏବଂ ସେହି ବିଦ୍ୟାଳୟରେ ବାଳିକାମାନଙ୍କର ସଂଖ୍ୟାରେ ଉଲ୍ଲେଖନୀୟ ବୃଦ୍ଧି ଘଟିଥିଲା। ନାରୀମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଉପରେ ଖବର 'ମୟୂରଭଞ୍ଜ' ସମ୍ବାଦ ପତ୍ରିକା ୧୮୮୦ ମସିହାରେ ପ୍ରକାଶ କରିଥିଲା:

> "ବର୍ତ୍ତମାନ ସ୍ତ୍ରୀ ଶିକ୍ଷାର କ୍ରମଶଃ ଉନ୍ନତି ହେଉଅଛି। ସାଧାରଣ ଶିକ୍ଷା ବିଭାଗର ଡାଇରେକ୍ଟର ଏହି ରିପୋର୍ଟ ଦେଇ ଅଛନ୍ତି ଯେ ଗତ ମାର୍ଚ୍ଚ ମାସରେ ଯେ ବର୍ଷ ଶେଷ ଯାଇଅଛି ସେଥି ମଧ୍ୟରେ ୧୧୪ ଗୋଟି ବାଳିକା ବିଦ୍ୟାଳୟ ସ୍ଥାପିତ ହୋଇଅଛି। ଏହାକୁ ଘେନି ଭାରତବର୍ଷରେ ୧୧୨୧୫ ଗୋଟିଏ ବାଳିକା ସ୍କୁଲ ସ୍ଥାପିତ ହେଲା।"[୧୭]

୧୮୮୨-୮୩ ମସିହାରେ ହଣ୍ଟର କମିଶନଙ୍କ ସୁପାରିଶ କ୍ରମେ ଶିକ୍ଷୟିତ୍ରୀ ଏବଂ ମହିଳା ବିଦ୍ୟାଳୟ ପରିଦର୍ଶକମାନଙ୍କୁ ବାଳିକାମାନଙ୍କ ନାମଲେଖାକୁ ଆହୁରି ଉନ୍ନତ କରିବାକୁ ନିଯୁକ୍ତ କରାଯାଇଥିଲା। ୧୮୮୨-୮୩ ମସିହାରେ ନିର୍ଦ୍ଦେଶ ଅନୁଯାୟୀ ମୋଟ ବାଳିକା ସଂଖ୍ୟା ୨୪୧୬ ଥିଲା, ସେଥି ମଧ୍ୟରୁ ୮୨୩ ଜଣ ବାଳିକା ବିଦ୍ୟାଳୟରେ ପଢୁଥିଲେ। ଓଡ଼ିଶାରେ ସେତେବେଳେ ତେତିଶଟି ବାଳିକା ବିଦ୍ୟାଳୟ ଥିଲା ଯେଉଁଥିରୁ ପଚିଶଟି ବାଲେଶ୍ୱରରେ, ଛଅଟି କଟକ ଜିଲ୍ଲା ଏବଂ ଦୁଇଟି ପୁରୀ ଜିଲ୍ଲାରେ ଥିଲା। ୧୮୮୯-୯୦ ମସିହାରେ ସରସ୍ୱତୀ ବାଇ ପ୍ରଥମ ଓଡ଼ିଆ ଝିଅ ଭାବେ କଟକ ସହରରୁ ମଧ୍ୟମ ଇଂରାଜୀ ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ଅଧିକନ୍ତୁ, ଏହି ସମୟ ମଧ୍ୟରେ ବାଳିକାମାନଙ୍କୁ ଧ୍ୟାନରେ ରଖି ପୁସ୍ତକ ଲେଖାଯାଇଥିଲା। କନକ ମଞ୍ଜରୀ ଦେବୀଙ୍କ ଦ୍ୱାରା ଲିଖିତ ଏକ ପ୍ରାଥମିକ ପାଠ "ବାଳିକା ପାଠ"[୧୮] ୧୮୯୭ ମସିହାରେ ପ୍ରକାଶିତ ହୋଇଥିଲା। ଏଥିରେ ରାମାୟଣ ଏବଂ ମହାଭାରତର କାହାଣୀ ଅନ୍ତର୍ଭୁକ୍ତ ହୋଇଥିଲା। ଏହା ବ୍ୟତୀତ ସାଧାରଣ ଜ୍ଞାନ ଏବଂ ପ୍ରବନ୍ଧଗୁଡ଼ିକ ଏକ ଆଦର୍ଶ ଗୃହିଣୀ, ବିଶ୍ୱସ୍ତ ଓ

ଧର୍ମପରାୟଣା ପତ୍ନୀ ହେବାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇଥିଲା। ଏଥିରେ ଓଡ଼ିଆ ରାନ୍ଧଣା ଆଦି ବିଷୟରେ ମଧ୍ୟ ଉଲ୍ଲେଖ କରାଯାଇଥିଲା।

୧୯୦୧ ମସିହାରେ ସିମଳା ଶିକ୍ଷା ସମ୍ମିଳନୀରେ ମଡ଼େଲ ପ୍ରାଥମିକ ବିଦ୍ୟାଳୟ, ତାଲିମ ବିଦ୍ୟାଳୟ ପ୍ରତିଷ୍ଠା ଏବଂ ବିଦ୍ୟାଳୟଗୁଡ଼ିକର କର୍ମଚାରୀ ଏବଂ ଇନ୍ସପେକ୍ଟରଙ୍କ ସଂଖ୍ୟା ବୃଦ୍ଧି ପାଇଁ ସୁପାରିଶ କରାଯାଇଥିଲା। ୧୯୦୨ ମସିହାରେ ମିଶନାରୀମାନେ ବାଳିକା ପ୍ରାଥମିକ ବିଦ୍ୟାଳୟର ଶିକ୍ଷକମାନଙ୍କୁ ତାଲିମ ଦେବା ପାଇଁ କଟକଠାରେ ମହିଳାମାନଙ୍କ ପାଇଁ ଏକ ପ୍ରଶିକ୍ଷଣ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ଏହି ସମସ୍ତ ପଦକ୍ଷେପ ସତ୍ତ୍ୱେ ୧୯୦୫ ସୁଦ୍ଧା ପରଦା ବ୍ୟବସ୍ଥା, ବାଲ୍ୟ ବିବାହ, ନାରୀ ଶିକ୍ଷା ପ୍ରତି ଲୋକଙ୍କ ଅନିଚ୍ଛା ଏବଂ ଶିକ୍ଷୟିତ୍ରୀଙ୍କ ଅଭାବ ହେତୁ ଓଡ଼ିଶାରେ ନାରୀଶିକ୍ଷାର ଅଗ୍ରଗତି ସନ୍ତୋଷଜନକ ନଥିଲା। ୧୯୦୫-୧୯୩୬ ଅବଧି ମଧ୍ୟରେ କଟକଠାରେ ବାଳିକାମାନଙ୍କ ପାଇଁ କେବଳ ଗୋଟିଏ ଉଚ୍ଚ ବିଦ୍ୟାଳୟ ଥିଲା। କଟକ, ପୁରୀ ଏବଂ ସମ୍ବଲପୁରରେ ତିନୋଟି ଇଂରାଜୀ ବିଦ୍ୟାଳୟ ଏବଂ ପାଞ୍ଚଟି ଭାଷା ବିଦ୍ୟାଳୟ ଥିଲା। କଟକଠାରେ ପ୍ରଥମ ବାଳିକା ଉଚ୍ଚ ବିଦ୍ୟାଳୟ ୧୯୦୬ ମସିହାରେ ରେବା ରାୟଙ୍କ[୧୯] ଦ୍ୱାରା ଖୋଲା ଯାଇଥିଲା। ପରବର୍ତ୍ତୀ ସମୟରେ ଏହା ରେଭେନ୍ସା ବାଳିକା ଉଚ୍ଚ ବିଦ୍ୟାଳୟ ଭାବରେ ନାମିତ ହୋଇଥିଲା। ୧୯୦୭ ମସିହାରେ ରେଭେନ୍ସା ବାଳିକା ଉଚ୍ଚ ବିଦ୍ୟାଳୟର ପ୍ରାଥମିକ ଏବଂ ମଧ୍ୟମ ଇଂରାଜୀ ଶ୍ରେଣୀରେ ନାମ ଲେଖାଇଥିବା ବାଳିକାଙ୍କ ସଂଖ୍ୟା ୧୧୨ ଥିଲାବେଳେ ମାଧ୍ୟମିକ ଶ୍ରେଣୀରେ ଏହା ମାତ୍ର ୪୫ ଥିଲା। ଏହା ଲକ୍ଷ୍ୟ କରାଯାଇପାରେ ଯେ ୧୯୦୫ ମସିହାରେ ଓଡ଼ିଶାର ସାକ୍ଷରତା ହାର ମାତ୍ର ୨.୪୩ ପ୍ରତିଶତ ଥିଲା; ଭାରତରେ ସାକ୍ଷରତା ହାର ୧୨ ପ୍ରତିଶତ ପାଖାପାଖି ଥିଲା।[୨୦]

୧୯୦୮-୧୯୦୯ ମସିହାରେ ରେଭେନ୍ସା ହିନ୍ଦୁ ବାଳିକା ବିଦ୍ୟାଳୟକୁ ଏକ ବାଳିକା ଉଚ୍ଚ ବିଦ୍ୟାଳୟରେ ଉନ୍ନୀତ କରାଯାଇଥିଲା। ଚନ୍ଦ୍ରମୁଖୀ ଷଡ଼ଙ୍ଗୀ ଏବଂ ନର୍ମଦା କର ନାମ୍ନୀ ଦୁଇ ଜଣ ଓଡ଼ିଆ ଝିଅ ୧୯୧୦ ମସିହାରେ ଏହି ବିଦ୍ୟାଳୟରୁ ମାଟ୍ରିକ୍ ବା ମାଧ୍ୟମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ଉଲ୍ଲେଖଯୋଗ୍ୟ, ଚନ୍ଦ୍ରମୁଖୀ ଷଡ଼ଙ୍ଗୀ (୧୮୯୪-୧୯୭୨) ହେଲେ ଗଙ୍ଗାଧର ଷଡ଼ଙ୍ଗୀଙ୍କ ନାତୁଣୀ; ଗଙ୍ଗାଧର ଷଡ଼ଙ୍ଗୀ ପ୍ରଥମ ଓଡ଼ିଆ ହିନ୍ଦୁ ଥିଲେ ଯିଏକି ୨୩ ମାର୍ଚ୍ଚ ୧୮୨୮ ମସିହାରେ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଥିଲେ।[୨୧] ପ୍ରଥମ ଓଡ଼ିଆ ମହିଳା ସ୍ନାତକ ଭାବେ ପରିଗଣିତ ନର୍ମଦା କର (୧୮୯୩-୧୯୮୦) ଏକ ମଧ୍ୟବିତ୍ତ ବ୍ରାହ୍ମ ପରିବାରରୁ ଆସିଥିଲେ। ତାଙ୍କ ପିତା ବିଶ୍ୱନାଥ କର ସେ ସମୟର ଅଗ୍ରଣୀ ସାହିତ୍ୟ ପତ୍ରିକା "ଉତ୍କଳ ସାହିତ୍ୟ"ର ସମ୍ପାଦକ ଥିଲେ। ନାରୀଶିକ୍ଷାକୁ ପ୍ରୋତ୍ସାହନ ଦେବା ପାଇଁ ବିହାର ଏବଂ ଓଡ଼ିଶା ସରକାର ୦୮/

୦୬/୧୯୧୪ ରେଜୋଲ୍ୟୁସନ ନମ୍ବର ୧୨୮ଇ ଦ୍ୱାରା ନାରୀଶିକ୍ଷା କମିଟି ନିଯୁକ୍ତ କରିଥିଲେ। ୧୯୧୫-୧୬ ମସିହାରେ କଟକ ରେଭେନ୍ସା ବାଳିକା ଉଚ୍ଚ ବିଦ୍ୟାଳୟରେ ଇଣ୍ଟରମିଡ଼ିଏଟ୍ କଳା ଶ୍ରେଣୀ ଖୋଲାଯାଇଥିଲା। ଏହି ସ୍ତରରେ ୧୯୨୪-୨୫ ବର୍ଷରେ ନଅ ଜଣ ଛାତ୍ରୀ ଥିଲେ; ୧୯୧୫-୧୬ରେ ଏହି ସଂଖ୍ୟା ମାତ୍ର ତିନି ଥିଲା।[୨୨]

"ସମ୍ବଲପୁର ହିତୈଷିଣୀ" ସମ୍ବାଦ ପତ୍ରିକାର ସମ୍ପାଦକ ଦିନବନ୍ଧୁ ଗଡ଼ନାୟକ ୧୯୧୩ ମସିହାରେ 'ନାରୀଶିକ୍ଷା' ନାମକ ଏକ ପୁସ୍ତକ ଲେଖିଥିଲେ ଯେଉଁଥିରେ ବାଳିକା ଓ ନାରୀମାନଙ୍କୁ ବିଭିନ୍ନ ପ୍ରସଙ୍ଗରେ ବ୍ୟବହାରିକ ପରାମର୍ଶ ଦିଆଯାଇଥିଲା। ବାଳିକାମାନଙ୍କୁ ଧନ୍ଦାମୂଳକ ଶିକ୍ଷା ଏବଂ ଦକ୍ଷତା ପ୍ରଦାନ କରିବା ପାଇଁ ୧୯୨୦ ମସିହାରେ କଟକସ୍ଥିତ ମିଶନ ବାଳିକା ବିଦ୍ୟାଳୟରେ ଏକ ଶିଳ୍ପ ବିଭାଗ ଖୋଲାଯାଇଥିଲା। ଏହି ସମୟ ମଧ୍ୟରେ କଟକସ୍ଥିତ ଦୁଇଟି ଅନୁଷ୍ଠାନ - ହିନ୍ଦୁ ମହିଳା ପ୍ରତିଷ୍ଠାନ ଏବଂ ତାଲିମ ବିଦ୍ୟାଳୟ - ବାପ୍ଟିଷ୍ଟ ମିଶନାରୀ ସୋସାଇଟି ଦ୍ୱାରା ସରକାରଙ୍କ ଆର୍ଥିକ ସହାୟତାରେ ପରିଚାଳିତ ହେଉଥିଲା। ୧୯୨୯ ସେପ୍ଟେମ୍ବର ମାସରେ ବାଲ୍ୟ ବିବାହ ପ୍ରଥାକୁ ବନ୍ଦ କରିବାକୁ ସାରଦା ଆଇନ୍ ପ୍ରଣୟନ କରାଯାଇଥିଲା, ଯାହା ପରୋକ୍ଷ ଭାବେ ନାରୀଶିକ୍ଷାର ପ୍ରସାରକୁ ତ୍ୱରାନ୍ୱିତ କରିଥିଲା।

୧୯୩୦ ମସିହାରେ ପାଞ୍ଚଜଣ ଛାତ୍ରୀ ରେଭେନ୍ସା ମହାବିଦ୍ୟାଳୟରେ ନାମ ଲେଖାଇଥିଲେ, ଯାହା ଓଡ଼ିଶାରେ ନାରୀଶିକ୍ଷା ଇତିହାସରେ ଏକ ମାଇଲଖୁଣ୍ଟ ଭାବେ ପରିଗଣିତ ହୁଏ। ୧୯୩୬ ମସିହାରେ ରେଭେନ୍ସା ମହାବିଦ୍ୟାଳୟରେ କେବଳ ଚାରିଜଣ ସ୍ନାତକୋତ୍ତର ଛାତ୍ରୀ ଥିଲେ। ୧୯୩୨ ମସିହାରେ ରେଭେନ୍ସା ମହାବିଦ୍ୟାଳୟରେ ଛାତ୍ରୀ ଜୀବନର ଅନୁଭୂତିକୁ ସ୍ମରଣ କରି ସୁକୃତି ମହାପାତ୍ର ଲେଖିଛନ୍ତି:

> ସେତେବେଳେ ବିଏ କ୍ଲାସ୍‌ରେ ଛାତ୍ରୀ ଥିଲୁ ଆମେ ୩ ଜଣ। ଏମ୍ ଏ ପଢ଼ିବା ବେଳେ ୬ଜଣ ଛାତ୍ରଙ୍କ ମଧ୍ୟରେ ମୁଁ ଥିଲି ଏକମାତ୍ର ଛାତ୍ରୀ। ଏହି ବିରାଟ ଛାତ୍ର ଜନତା ଭିତରେ ଆମେ କେତେଜଣ ଛାତ୍ରୀ ଯେ କିପରି ଚଳପ୍ରଚଳନ କରୁଥିଲୁ ବର୍ତ୍ତମାନର ଛାତ୍ରୀସମାଜ ବୋଧହୁଏ ଧାରଣା କରିପାରିବେ ନାହିଁ। ପ୍ରଫେସର କ୍ଲାସ୍‌ରେ ପ୍ରଶ୍ନ ପଚାରିଲେ ଆମେ ଉତ୍ତର ଦେବାକୁ ସଙ୍କୋଚବୋଧ କରୁଥିଲୁ। ଯେତେବେଳେ କ୍ଲାସ୍ ଶେଷ ହୁଏ ସେତେବେଳେ ସ୍ରୋତ ପରି ପୁଅପିଲାମାନେ ବାହାରିଆସନ୍ତି। ଆମେ ସଙ୍କୋଚରେ କାନ୍ଥକୁ ଆଉଜି ଛିଡ଼ାହେଇଯାଉ। ଅସୀମ ସମୁଦ୍ରରେ ଗୋଟାଏ ନୌକା ପରି ଆମେ ନିଜକୁ ମନେ କରୁଥିଲୁ।

ଘୋଡ଼ା ଗାଡ଼ିର କବାଟ ଅଳ୍ପ ଫାଙ୍କ ବା ବୁଜା ଅବସ୍ଥାରେ ପ୍ରତିଦିନ କଲେଜ ଯାଉ। ଓହ୍ଲାଇ ସିଧା ଆମ ଲେଡ଼ିଜ୍ କମନ୍ ରୁମ୍‌ରେ ଯାଇ ବସୁ। ଘଣ୍ଟା ବାଜେ, ଅଧ୍ୟାପକ କ୍ଲାସ୍‌ରେ ନ ପଶିବା ପର୍ଯ୍ୟନ୍ତ ଆମେ କରପଟିଆ ହୋଇ କାନ୍ଥକୁ ଆଉଜି ବାରଣ୍ଡାରେ ଠିଆ ହେଇଥାଉ। ଅଧ୍ୟାପକଙ୍କ ସହିତ କ୍ଲାସ୍‌ରେ ପଶୁ। ଆମ ପାଇଁ ଖଣ୍ଡିଏ ଡେସ୍କ୍ ପଡ଼ିଥାଏ, ଅଧ୍ୟାପକଙ୍କ ଡାହାଣ ହାତ ଆଡ଼କୁ। ମୋର ପାଠ୍ୟାବସ୍ଥାରେ କ୍ଲାସ୍‌ରେ କେବେ କାହା ସାଙ୍ଗରେ ପାଟି ଫିଟାଇଛି ବୋଲି ମନେ ପଡ଼େ ନାହିଁ। ଦରକାର ପଡ଼ିଲେ ସନ୍ତର୍ପଣରେ କନିକା ଲାଇବ୍ରେରୀକୁ ଯାଇ ଗୋଟିଏ କୋଣରେ ବସୁ। ବୃଦ୍ଧ ଲାଇବ୍ରେରିଆନ୍ ଦାମବାବୁ ସ୍ନେହ ଓ ଦୟାପରବଶ ହୋଇ ଆମକଥା ବୁଝୁଥିଲେ।[୨୩]

ନାରୀମାନଙ୍କ ମଧ୍ୟରେ ଉଚ୍ଚଶିକ୍ଷାର ପ୍ରସାରକୁ ତ୍ୱରାନ୍ୱିତ କରିବା ପାଇଁ ରେଭେନ୍ସା ଉଚ୍ଚ ବାଳିକା ବିଦ୍ୟାଳୟକୁ ୧୯୪୬ ମସିହାରେ ଏକ ସ୍ନାତକ ମହାବିଦ୍ୟାଳୟକୁ ଉନ୍ନୀତ କରାଯାଇଥିଲା ଏବଂ ଏହାର ନାମ ଶୈଳାବାଳା ମହିଳା ମହାବିଦ୍ୟାଳୟ ଭାବରେ ନାମିତ କରାଯାଇଥିଲା। ସ୍ୱାଧୀନତା ପୂର୍ବ ଯୁଗରେ ଏହା ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମହିଳା ମହାବିଦ୍ୟାଳୟ ଥିଲା।

ନାରୀମାନଙ୍କ ମଧ୍ୟରେ ଉଚ୍ଚଶିକ୍ଷାର ଅଗ୍ରଗତି ଓଡ଼ିଶାରେ ଏକ ସନ୍ତୋଷଜନକ ପର୍ଯ୍ୟାୟରେ ପହଞ୍ଚିବାକୁ ବର୍ଷ ବର୍ଷ ଲାଗିଥିଲା। ବ୍ରିଟିଶ ପ୍ରଶାସନ ପୁରୀ, କଟକ ଏବଂ ବାଲେଶ୍ୱର ପରି ଉପକୂଳବର୍ତ୍ତୀ ଅଞ୍ଚଳ ଉପରେ ଅଧିକ ଧ୍ୟାନ ଦେଉଥିବାରୁ ଗଡ଼ଜାତ ଅଞ୍ଚଳର ନାରୀମାନେ ଶିକ୍ଷା କ୍ଷେତ୍ରରେ ପଛୁଆ ଥିଲେ। ଯଦିଓ ଓଡ଼ିଶାର ଜନସଂଖ୍ୟାର ପ୍ରାୟ ତିରିଶ ପ୍ରତିଶତ ଆଦିବାସୀ ଅଟନ୍ତି, ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଏପର୍ଯ୍ୟନ୍ତ ସେମାନେ ଏକ ଅବହେଳିତ ସ୍ଥାନରେ ରହିଛନ୍ତି। ତଥାପି ମିଶନାରୀ, ସରକାର ତଥା ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କର ନିରନ୍ତର ଉଦ୍ୟମ ଶିକ୍ଷିତ ନାରୀମାନଙ୍କ ସଂଖ୍ୟାରେ ଉଲ୍ଲେଖନୀୟ ବୃଦ୍ଧି ଘଟାଇଲା। ରାଜା ଏବଂ ଧନୀ ଜମିଦାରଙ୍କ ଉଦାରତା ମଧ୍ୟ ଏହି କାର୍ଯ୍ୟରେ ବହୁତ ସହଯୋଗ କରିଥିଲା। ଶ୍ରୀବତ୍ସ ପଣ୍ଡା, ବୈରାଗୀ ଚରଣ ମିଶ୍ର, ଗୌରୀ ଶଙ୍କର ରାୟ, ମଧୁସୂଦନ ଦାସ, ଫକୀରମୋହନ ସେନାପତି, ବିଶ୍ୱନାଥ କର, ଶୈଳବାଳା ଦାସ ଏବଂ ରେବା ରାୟଙ୍କ ପରି ସମାଜ ସଂସ୍କାରକ ତଥା ଚିନ୍ତକମାନଙ୍କ ଅବଦାନ ମଧ୍ୟ ଉଲ୍ଲେଖନୀୟ। ଏହି ପରିପ୍ରେକ୍ଷୀରେ ନୂତନ ବିଦ୍ୟାଳୟମାନଙ୍କରେ କାର୍ଯ୍ୟକରୁଥିବା ଶିକ୍ଷକମାନଙ୍କ ଭୂମିକା ଓ ଅବଦାନକୁ ମଧ୍ୟ ପ୍ରଶଂସା ନକରି ରହି ହୁଏନା। ସେମାନେ ବହୁ କଠିନ ଓ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଯେତିକି ପରିଶ୍ରମ କରିବା କଥା ତାଠୁଁ ଅନେକ ବେଶି ପରିଶ୍ରମ କରୁଥିଲେ।

ସେମାନଙ୍କର ବ୍ୟକ୍ତିଗତ ଉଦ୍ୟମ ଓ ପ୍ରତିବଦ୍ଧତା ଯୋଗୁ ହିଁ ଅନେକ ଝିଅ ଲେଖାପଢ଼ା ଶିଖିପାରିଥିଲେ। ଅପର୍ଣ୍ଣା ଦେବୀଙ୍କ ଶିକ୍ଷାଗୁରୁ ହୁଅନ୍ତୁ କି ବୀଣା ଦେଈଙ୍କୁ ପଢ଼ାଇବାକୁ ରାଜି ହେଇଥିବା ଶିକ୍ଷାଗୁରୁ, ସେମାନଙ୍କ ଭଳି ଅନେକ ଅଜଣା ଶିକ୍ଷକ ନିଜର କାର୍ଯ୍ୟକୁ ଗଭୀର ନିଷ୍ଠା ଓ କର୍ତ୍ତବ୍ୟବୋଧ ସହ ସଂପାଦନ କରି ଓଡ଼ିଶାରେ ଶିକ୍ଷାର, ବିଶେଷ କରି ନାରୀଶିକ୍ଷାର ବିକାଶରେ ପ୍ରମୁଖ ଭୂମିକା ନେଇଥିଲେ।

## ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଆ ଲେଖିକା

ବିଂଶ ଶତାବ୍ଦୀର ଓଡ଼ିଶା ଏକ ସାମାଜିକ ତଥା ରାଜନୈତିକ ଅସ୍ଥିରତାର ସମୟ ଥିଲା ଯାହା ନୂତନ ଚିନ୍ତାଧାରା ଚେର ଧରିବା ଓ ବଢ଼ିବା ପାଇଁ ଏକ ଉର୍ବର ମାଟି ପ୍ରଦାନ କଲା। ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟ ଚେତନାର ଅଭିବୃଦ୍ଧି ତଥା ଆଞ୍ଚଳିକ ପରିଚୟ ପାଇଁ ତୀବ୍ର କାମନା ବିଦ୍ୟମାନ ହୋଇ ସେମାନଙ୍କ ଭାବଧାରାରେ ଅନେକ ପରିବର୍ତ୍ତନ ଆଣିଲା। ଓଡ଼ିଆ ପତ୍ରପତ୍ରିକା ଏବଂ ବହିଗୁଡ଼ିକର ଉପଲବ୍ଧତା ତଥା ଛାପା କଳ ପ୍ରତିଷ୍ଠା ହେତୁ ଏକ ପାଠକଗୋଷ୍ଠୀ ସୃଷ୍ଟି ହେଲା। ଏହି ପତ୍ରିକାଗୁଡ଼ିକର ସଂଖ୍ୟା ଓ ବିତରଣ କମ୍ ଥିଲେ ବି ସେଗୁଡ଼ିକ ପ୍ରଭାବଶାଳୀ ଥିଲେ ଏବଂ ସାମାଜିକ ସଂସ୍କାର ସମ୍ବନ୍ଧୀୟ ଆଲୋଚନାରେ ଅଂଶଗ୍ରହଣକାରୀ ଭାବରେ, ବିଶେଷ କରି ଓଡ଼ିଆ ଭାଷାଭାଷୀମାନଙ୍କ ମଧ୍ୟରେ ଭିନ୍ନ ଦୃଷ୍ଟିକୋଣ ଆଣିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ।

ଓଡ଼ିଆ ସମାଜ ଉପରେ ବାହ୍ୟ ପ୍ରଭାବ ସାମାଜିକ ତଥା ସାଂସ୍କୃତିକ କ୍ଷେତ୍ରରେ ସ୍ପଷ୍ଟ ଦେଖାଯାଉଥିଲା; ଏହି ପରିବର୍ତ୍ତନ ସେହି ସମୟ ମଧ୍ୟରେ ଲିଖିତ ସାହିତ୍ୟର ଗଠନ, ପରିପାଟୀ ଏବଂ ବିଷୟବସ୍ତୁରେ ପ୍ରତିଫଳିତ ହୋଇଥିଲା। ନାରୀ ଚରିତ୍ରମାନେ ଏହି କାଳଖଣ୍ଡରେ ପ୍ରକାଶିତ କାହାଣୀ ଏବଂ ଉପନ୍ୟାସର କେନ୍ଦ୍ର ପାଲଟିଥିଲେ। ଫକୀରମୋହନ ସେନାପତିଙ୍କ "ପେଟେଣ୍ଟ ମେଡ଼ିସିନ୍"[୨୪] ଗଳ୍ପରେ ନିଶାସକ୍ତ ସ୍ୱାମୀକୁ ଭଲ ବାଟକୁ ଆଣିବା ପାଇଁ ନାୟିକା ତାଙ୍କ ସ୍ୱାମୀଙ୍କୁ ଝାଡୁରେ ପିଟିବାର ରୋଚକ ଚିତ୍ର ଦେଖିବାକୁ ମିଳିଥାଏ। ପାରମ୍ପରିକ ତ୍ୟାଗର ମୂର୍ତ୍ତି ବଦଳରେ ରେବା ରାୟଙ୍କ "ସନ୍ନ୍ୟାସୀ"[୨୫] ଗଳ୍ପରେ ଜଣେ ନିଷ୍ଠୁର ମାତାଙ୍କର ଚିତ୍ର ଦେଖିବାକୁ ମିଳେ, ଯିଏ ନିଜ ସ୍ୱାର୍ଥ ଓ ଅହଙ୍କାର ପାଇଁ ପୁଅର ସୁଖକୁ ଗୌଣ ମନେକରନ୍ତି। ଏହି ସମୟର ଲିଖିତ ସାହିତ୍ୟରେ ନାରୀମାନଙ୍କର ବିବିଧ ଚରିତ୍ର ଦେଖିବାକୁ ମିଳିଥାଏ ଏବଂ କ୍ରମେ ସେମାନଙ୍କ ମଧ୍ୟରେ ବିଦ୍ରୋହଭାବର ଅବଦମିତ ଅଗ୍ନିକଣା ଦେଖିବାକୁ ମିଳେ। ଉପେନ୍ଦ୍ର କିଶୋର ଦାସଙ୍କ "ମଲାଜହ୍ନ" ଉପନ୍ୟାସରେ (୧୯୨୮) ଜଣେ ଅରଜବତୀ ଝିଅ ତାର ଦୁଇଗୁଣା ବୟସର ଜଣେ ପତ୍ନୀହରା ଲୋକ ସହ ବିବାହକୁ ବିରୋଧ କରି ଭାବେ:

"ବୁଢ଼ା ହଉ, ଅସୁନ୍ଦର ଅଗୁଣର ହଉପଛକେ, ଘରର ଚଳନ୍ତି ଜିନିଷ ପରି ଏ ଝିଅଗୁଡ଼ାଙ୍କୁ ଗୋଟାଏ କାହା ବେକରେ ଛନ୍ଦିଦେଲେ ଏ ମାଆମାନଙ୍କର କର୍ତ୍ତବ୍ୟ ସରେ ପରା! ଖାଲି ଝିଅ ଖାଇପିଇ ସୁଖରେ ରହିଲେ ହେଲା। କିନ୍ତୁ ଯାହା ପାଇଁ ଏ ସୁଖ ଲୋଡ଼ା, ତାକୁ କଅଣ ଭୁଲ୍‌ରେ ବି କିଏ ପଚାରେ ଏ ବିଷୟରେ କିଛି?"[୨୬]

କୁନ୍ତଳା କୁମାରୀ ସାବତ (୧୯୦୧-୧୯୩୮) ନିଜ ଉପନ୍ୟାସଗୁଡ଼ିକରେ ନାରୀମାନଙ୍କର ବାସ୍ତବ ଅବସ୍ଥା ଏବଂ ସେମାନଙ୍କ ଉପରେ ଲଦା ଯାଇଥିବା ପ୍ରତିବନ୍ଧକଗୁଡ଼ିକର ବର୍ଣ୍ଣନା କରିଛନ୍ତି। ୧୯୨୨ ମସିହାରୁ ୧୯୨୮ ମସିହା ମଧ୍ୟରେ ଲେଖାଯାଇଥିବା ତାଙ୍କର ପ୍ରମୁଖ ଉପନ୍ୟାସଗୁଡ଼ିକ ଓଡ଼ିଶାରେ ନାରୀ ଜୀବନର ବାସ୍ତବ ଚିତ୍ର ପ୍ରଦାନ କରେ। ତାଙ୍କ ଲିଖିତ "କାଳୀବୋହୂ" ବାଲ୍ୟବିବାହ ବିଷୟବସ୍ତୁକୁ ନେଇ ଏକ ସାମାଜିକ ଉପନ୍ୟାସ। ଲକ୍ଷ୍ମୀ ଦଶ ବର୍ଷ ବୟସରେ ବିଧବା ହୁଏ। ଯେତେବେଳେ ସେ ନିଜ ଜୀବନ ବିଷୟରେ ଚିନ୍ତା କରେ, ସେତେବେଳେ ସେ ବାଧ୍ୟ ହୋଇ ମାନିନେଇଥିବା ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ କ୍ରୋଧରେ ପରିପୂର୍ଣ୍ଣ ହୁଏ:

ସେ କିପାଁ ଆଜି ଏକାନ୍ତ ନିରାଶ୍ରୟ ନିଃସଙ୍ଗ ଜୀବନ ବହନ କରି ଏ ଜଗତରେ ବଞ୍ଚିଛି? କିପାଁ ଜଗତର ସମଗ୍ର ଭୋଗ ତା ପାଇଁ ବାରଣ? କିପାଁ ନାରୀତ୍ୱ, ମାତୃତ୍ୱରୁ ଆଜି ସେ ବଞ୍ଚିତ? କି ଦୋଷରୁ, କି ପାପରୁ ଏ ଦାବ ଦହନ? ଲକ୍ଷ୍ମୀ କେବଳ ଦିବାରାତ୍ର ତାହା ହିଁ ଭାବୁଥିଲା। ବିବାହ, ପାତିବ୍ରତ୍ୟ ଇତ୍ୟାଦି କୌଣସି ବିଷୟ ସେ ବୁଝିପାରିଲା ନାହିଁ। ବିବାହ କଅଣ? କାହାକୁ ସେ ବିବାହ କରିଥିଲା, କିଏ ତାହାର ପତି, ତାହାର ପାତିବ୍ରତ୍ୟର ଦାବୀ କିଏ କରେ? ଏହା ସେ ଏକାନ୍ତରେ, ପୋଖରୀ ହୁଡ଼ାରେ ବସି ଭାବେ। ସଞ୍ଜ ବୁଡ଼ିଯାଏ, ଦୀପ ଲାଗେ, ଠାକୁର ଘରେ ଆରତି ହୁଏ; କିନ୍ତୁ ଲକ୍ଷ୍ମୀ ଉଠିପାରେ ନାହିଁ। ସେ ଅପାର ଚିନ୍ତାରେ ମଗ୍ନ ଥାଏ। (ପୃଷ୍ଠା ୪, କାଳୀ ବୋହୂ, ୧୯୪୦ ତୃତୀୟ ସଂସ୍କରଣ, ଭାରତ ତପୋବନ ସଂଘ, କଟକ)[୨୭]

କୁନ୍ତଳା କୁମାରୀଙ୍କ ସାମାଜିକ ଉପନ୍ୟାସ "ନଅ ତୁଣ୍ଡି"ରେ ରତନୀ ନିଜ ଗାଁରେ "ଜବରବୁକୁ" ଝିଅ ଭାବରେ ଜଣାଶୁଣା, କିନ୍ତୁ ନିଜର ନିର୍ଭୀକ ବ୍ୟକ୍ତିତ୍ୱ ହେତୁ ସେ ଜଣେ ସଂସ୍କାରବାଦୀ ଜମିଦାରଙ୍କୁ ବିବାହ କରିଲା। ଧୀରେ ଧୀରେ ସେ ନିଜକୁ ଜଣେ ସମାଜ ସେବୀ ଭାବେ ରୂପାନ୍ତରିତ କରି ନିଜ ଜୀବନକୁ ନାରୀ କଲ୍ୟାଣ ଉଦ୍ଦେଶ୍ୟରେ

ଉତ୍ସର୍ଗ କଲା। କୁନ୍ତଳା କୁମାରୀଙ୍କ ଲିଖିତ "ପରଶମଣି" ଓ "ରଘୁ ଅରକ୍ଷିତ" ମଧ୍ୟ ନାରୀକୈନ୍ଦ୍ରିକ ଓ ଉତ୍କଳୀୟ ନାରୀ ଜୀବନର ନିଛକ ଚିତ୍ର ପ୍ରଦାନ କରିଥାଏ।

ବର୍ମାରେ ତୃତୀୟ ପଢ଼ିର ଖ୍ରୀଷ୍ଟିଆନ ପରିବାରରେ ଜନ୍ମ ହୋଇଥିବା କୁନ୍ତଳା କୁମାରୀ ରେଭେନ୍ସା ବାଳିକା ବିଦ୍ୟାଳୟ ଏବଂ କଟକ ମେଡ଼ିକାଲ କଲେଜରେ ଶିକ୍ଷାଗ୍ରହଣ କରିଥିଲେ। ମାତ୍ର ଏକୋଇଶ ବର୍ଷ ବୟସରେ ଜଣେ ଡାକ୍ତରୀ ଛାତ୍ରୀ ରୂପେ ସେ ୧ ୯ ୨ ୨ ମସିହାରେ "ଅନ୍ତୁଡ଼ିଶାଳରେ ଅନାଚାର" ଶୀର୍ଷକ ପ୍ରବନ୍ଧ ଲେଖିଥିଲେ, ଯେଉଁଥିରେ ଗର୍ଭବତୀ ନାରୀମାନେ ଶିଶୁ ଜନ୍ମ ଦେବା ସମୟରେ ସମ୍ମୁଖୀନ ହେଉଥିବା ଅସ୍ୱାଭାବିକ ତଥା ଜୀବନ ପ୍ରତି ବିପଦପୂର୍ଣ୍ଣ ପରିସ୍ଥିତିଗୁଡ଼ିକ ବିଷୟରେ ବର୍ଣ୍ଣନା କରିଥିଲେ।[୨୮] ରମାଦେବୀ ଚୌଧୁରୀଙ୍କ ଆତ୍ମଲିପିରେ ପ୍ରଥମ ସନ୍ତାନ ଜନ୍ମର ଅନୁଭୂତି ପଢ଼ିବା ବେଳେ କୁନ୍ତଳା କୁମାରୀଙ୍କ ପ୍ରବନ୍ଧ ସ୍ୱତଃ ମନକୁ ଆସେ। ନାରୀ, ଗରିବ ତଥା ଅବହେଳିତ ବର୍ଗର ଉନ୍ନତି ପାଇଁ ଜଣେ ଅକ୍ଳାନ୍ତ ପରିଶ୍ରମୀ ଓ ଉତ୍ସର୍ଗୀକୃତ କର୍ମୀ ରୂପେ କୁନ୍ତଳା କୁମାରୀ ସମାଜର ବହୁ କୁସଂସ୍କାର ବିରୁଦ୍ଧରେ କଲମ ମାଧ୍ୟମରେ ସ୍ୱର ଉତ୍ତୋଳନ କରିଥିଲେ। ସେହି ସମୟର ଦ୍ୱନ୍ଦ୍ୱ ଓ ବିରୋଧାଭାସଗୁଡ଼ିକ ତାଙ୍କ ଚେତନାର ଅଂଶ ଥିଲା ଯାହାକୁ ସେ ନିଜ କବିତା ଏବଂ ଉପନ୍ୟାସରେ ସ୍ପଷ୍ଟ ଓ ସାବଲୀଳ ଭାବେ ପ୍ରକାଶ କରିଥିଲେ। ପାଠକମାନଙ୍କ ଉପରେ ତାଙ୍କର ପ୍ରଭାବ ଏତେ ମାତ୍ରାରେ ଥିଲା ଯେ ବ୍ରିଟିଶ ସରକାର ୧ ୯୩୦ ମସିହାରେ ତାଙ୍କର ଦେଶପ୍ରେମ ଆଧାରିତ ଦୀର୍ଘ କବିତା "ଆହ୍ୱାନ" ଉପରେ ପ୍ରତିବନ୍ଧକ ଲଗାଇଥିଲେ। ସଇଁତିରିଶ ବର୍ଷ ବୟସରେ ନିଜର ପ୍ରଥମ ଶିଶୁ ପ୍ରସବ ଦେବା ସମୟରେ ମୃତ୍ୟୁ ପୂର୍ବରୁ ତାଙ୍କୁ ନାରୀ ମୁକ୍ତିର ଏକ ମଶାଲ ଭାବରେ ଧରାଯାଉଥିଲା।

ଏହି ଅଶାନ୍ତ କାଳଖଣ୍ଡର ଅନେକ ନାରୀ ସେମାନଙ୍କର ଲେଖା ପତ୍ରିକାରେ ପ୍ରକାଶ କରିବାରେ ଆଗ୍ରହୀ ହୋଇଥିଲେ। ଏଭଳି ପରିବର୍ତ୍ତନ ମଧ୍ୟରେ ନାରୀମାନଙ୍କୁ ଅବଳାଦୁର୍ବଳା ଭାବରେ ଦେଖିବାର ପରିବେଶ ବଳବତ୍ତର ରହିଥିଲା; ଏହା ସତ୍ତ୍ୱେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବହୁ ସଂଖ୍ୟାରେ ଲେଖିକା ପତ୍ରପତ୍ରିକାରେ ଲେଖିବା ଆରମ୍ଭ କରିଥିଲେ।[୨୯] ରେବା ରାୟ, ନର୍ମଦା କର, ସୁପ୍ରଭା କର ଏବଂ ଅନ୍ନପୂର୍ଣ୍ଣା ପଟ୍ଟନାୟକଙ୍କ ଭଳି ଲେଖିକାମାନେ "ଉତ୍କଳ ସାହିତ୍ୟ", "ଆଶା", "ମୁକୁର" ଏବଂ "ସହକାର" ଭଳି ଅଗ୍ରଣୀ ସାହିତ୍ୟ ପତ୍ରିକାରେ ନିୟମିତ ଲେଖୁଥିଲେ। ସେମାନଙ୍କ ଲେଖାମାନଙ୍କରେ ପ୍ରତିଫଳିତ ପରିବର୍ତ୍ତନ ଏବଂ ଉତ୍ସାହର ସ୍ୱର ଚତୁଃପାର୍ଶ୍ୱରେ ବିସ୍ତୃତ ନୈରାଶ୍ୟ ତାର ସମ୍ପୂର୍ଣ୍ଣ ବିପରୀତ ଥିଲା - ଏସବୁ ମଧ୍ୟରେ ଏକ ନୂତନ ବାସ୍ତବତା ଅସ୍ପଷ୍ଟ ରୂପ ନେଇଥିଲା।

ଏହି ସମୟରେ ନାରୀମାନଙ୍କୁ ସାହିତ୍ୟ ପତ୍ରିକାଗୁଡ଼ିକର ସମ୍ପାଦନା କ୍ଷେତ୍ରରେ ମଧ୍ୟ ଦେଖିବାକୁ ମିଳେ। ରେବା ରାୟ ୧୮୯୨ ମସିହାରୁ ୧୮୯୯ ମସିହା ଯାଏ "ଆଶା" ପତ୍ରିକା ସମ୍ପାଦନା କରିଥିଲେ ଯାହା ନିୟମିତ ଭାବରେ ନାରୀ ଶିକ୍ଷାର ଗୁରୁତ୍ୱ ଉପରେ ପ୍ରବନ୍ଧ ପ୍ରକାଶ କରୁଥିଲା। ବସନ୍ତ କୁମାରୀ ଦେବୀଙ୍କ ଦ୍ୱାରା ସମ୍ପାଦିତ "ପରିଚରିକା"[୩୦] ୧୯୧୭-୧୯୨୦ ମସିହା ପର୍ଯ୍ୟନ୍ତ ପ୍ରକାଶିତ ଏବଂ ଏହି ପତ୍ରିକା କେବଳ ଲେଖିକାମାନଙ୍କର ଲେଖା ପ୍ରକାଶ କରୁଥିଲା। ବିଭିନ୍ନ ପ୍ରସଙ୍ଗରେ ଲେଖୁଥିବା ପ୍ରାୟ ପଚିଶ ଜଣ ଲେଖିକା ଏଥିରେ ସହଯୋଗ କରିଥିଲେ। ସେମାନଙ୍କ ମଧ୍ୟରେ ନିୟମିତ ଯୋଗଦାନକାରୀମାନେ ଥିଲେ: କୋକିଳା ଦେବୀ, ଚନ୍ଦ୍ରମଣି ଦେଈ, ସରୋଜିନୀ ଦାସ, ଦୁର୍ଗା ଦେବୀ, ନିହାର ନଳିନୀ ଦାସ, ପ୍ରମିଳା ସୁନ୍ଦରୀ ଦେବୀ, ରତ୍ନବାଳା ଦେବୀ, ସରଳା ସୁନ୍ଦରୀ ଦେବୀ, ଏବଂ ହେମ ନଳିନୀ ଦେବୀ।

ଆତ୍ମଅଭିବ୍ୟକ୍ତିର ଇଚ୍ଛାକୁ ନିଜ ଭିତରେ ସମାହିତ କରିବାକୁ ସଂଘର୍ଷ କରୁଥିବାବେଳେ, ଯେତେବେଳେ ସମାଜର ଦାବି ସେମାନଙ୍କୁ ନୀରବ ଏବଂ ସଙ୍କୁଚିତ କରିବାକୁ ଚାହୁଁଥିଲା, ଏହି ଲେଖିକାମାନେ ନିଶ୍ଚିତ ଭାବରେ ନିଜ ଲେଖା ମାଧ୍ୟମରେ ମନୋଭାବନା ପ୍ରକାଶ କରିବାକୁ ଏବଂ ନାରୀମାନଙ୍କ ବିଷୟରେ ବିତର୍କରେ ଭାଗ ନେବାକୁ ଓ ନିଜର ସାମାଜିକ ଭୂମିକା ତୁଲାଇବାକୁ ଏକ ଅପୂରଣୀୟ ଉତ୍ସାହ ଅନୁଭବ କରିଥିବେ। କୁନ୍ତଳା କୁମାରୀ ସାବତ, ସୀତାଦେବୀ ଖାଡ଼ଙ୍ଗା ଏବଂ ସରଳା ଦେବୀଙ୍କର ଅନେକ ଲେଖାରେ ପ୍ରାରମ୍ଭିକ ନାରୀବାଦୀ ଚେତନା ସ୍ପଷ୍ଟ ଭାବରେ ଅନୁଭବ କରାଯାଇପାରେ। ସେମାନେ କେବଳ ପ୍ରଶାନ୍ତିମୟ ଆତ୍ମବିଶ୍ୱାସରେ ଲେଖିନାହାଁନ୍ତି, ବରଂ ସେମାନଙ୍କର କାର୍ଯ୍ୟ ମାଧ୍ୟମରେ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଛନ୍ତି।

ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ ଓଡ଼ିଆରେ ନାରୀମାନେ ପଞ୍ଚଦଶ ଶତାବ୍ଦୀରୁ ଲେଖାଲେଖି ଆରମ୍ଭ କରିଥିଲେ। ମଧ୍ୟଯୁଗର ଲେଖିକାମାନଙ୍କ ମଧ୍ୟରେ ମାଧବୀ ଦାସୀ[୩୧], ବୃନ୍ଦାବତୀ ଦାସୀ[୩୨], ନିଶଙ୍କ ରାୟ ରାଣୀ[୩୩], ନରେନ୍ଦ୍ର ନାରୀ[୩୪], ରାଣୀ ମୋହନ କୁମାରୀ[୩୫] ଏବଂ ବିଷ୍ଣୁପ୍ରିୟା ଦେବୀଙ୍କ[୩୬] ଭଳି ବ୍ୟକ୍ତି ବିଶେଷଙ୍କୁ ଅନ୍ତର୍ଭୁକ୍ତ କରାଯାଏ, କିନ୍ତୁ ସେମାନେ ପ୍ରାୟତଃ ଭକ୍ତିଭାବପୂର୍ଣ୍ଣ କବିତା ଲେଖିଥିଲେ।[୩୭] ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ ହିଁ ଓଡ଼ିଆ ଲେଖିକାମାନେ ସାଂସ୍କୃତିକ, ରାଜନୈତିକ ତଥା ବିଭିନ୍ନ ଚିନ୍ତାଧାରା ଓ ସାମାଜିକ ସମସ୍ୟା ପ୍ରସଙ୍ଗରେ ଲେଖିବା ଆରମ୍ଭ କରିଥିଲେ। ଐତିହାସିକ ଦୃଷ୍ଟିକୋଣରୁ ଏହି ଲେଖାଗୁଡ଼ିକ ମହତ୍ତ୍ୱପୂର୍ଣ୍ଣ ଥିଲା – ନିରାଶାଜନକ ବାତାବରଣ ମଧ୍ୟରେ ଲେଖୁଥିବା ଏହି ନାରୀମାନଙ୍କ ମଧ୍ୟରେ ଯଥେଷ୍ଟ ଆତ୍ମବିଶ୍ୱାସ ଥିଲା, ଯାହା ଫଳରେ ସେମାନେ ସେମାନଙ୍କର ସୃଜନଶୀଳ ଏବଂ ବୌଦ୍ଧିକ ଦକ୍ଷତାକୁ ଉପଯୁକ୍ତ ଭାବରେ

ବ୍ୟବହାର କରିପାରିଲେ। ଏହି ସମୟର ଲେଖିକାମାନଙ୍କ ପାଇଁ ଲେଖିବା କେବଳ ଆତ୍ମଅଭିବ୍ୟକ୍ତିର ମାଧ୍ୟମ ନୁହେଁ ବରଂ ଆତ୍ମପରିପୂର୍ଣ୍ଣତାର ମାଧ୍ୟମ ହୋଇଗଲା। ସେମାନେ ସେମାନଙ୍କର ଅଭ୍ୟନ୍ତରରେ ନୂତନ ରୂପେ ଆବିଷ୍କାର କରିଥିବା ଆତ୍ମବିଶ୍ୱାସ ଓ ସୃଜନର ଝରକୁ ଦେଖି ପୁଲକିତ ହେଲେ। ସେମାନଙ୍କ ମଧ୍ୟରୁ ଅଧିକାଂଶ ସାଧାରଣତଃ ଏହି ଅବଧିରେ ସ୍ୱୀକାର କରିନଥିଲେ ଯେ ସେମାନଙ୍କ ଲେଖିବାର ଆଭିମୁଖ୍ୟ ସେମାନଙ୍କର ଉଚ୍ଚାଭିଳାଷ ଥିଲା କିମ୍ବା ସେମାନେ ନିଜ ଲେଖା ପାଇଁ ପାଠକୀୟ ସ୍ୱୀକୃତି ଲୋଡୁଥିଲେ। ସେମାନଙ୍କ ମଧ୍ୟରେ ହାତଗଣତି ଲେଖିକା ଥିଲେ ଯେଉଁମାନେ ଏକ ସୃଜନଶୀଳ ଅସ୍ତିତ୍ୱ ପ୍ରଦର୍ଶନ କରିଥିଲେ ଯାହାକି ସେମାନଙ୍କ ସାମାଜିକ କାଳଖଣ୍ଡଠାରୁ ସ୍ୱାଧୀନ ଥିଲା। ସେମାନେ ବଞ୍ଚିବାର ଅବରୋଧିତ ଆନନ୍ଦକୁ ପାଳନ କରୁଥିଲେ। ସେମାନେ ସଚ୍ଚୋଟ ଥିଲେ, ସ୍ପଷ୍ଟ ଥିଲେ ଏବଂ ନିଜ ଜୀବନ ସହ ଜଡ଼ିତ ବିଷୟଗୁଡ଼ିକ ଉପରେ ନିଜର ମତାମତ ଦେବାକୁ ପଛଘୁଞ୍ଚା ଦେଇନଥିଲେ।

## ବିଂଶ ଶତାବ୍ଦୀ ଓଡ଼ିଶାର ସର୍ବସାଧାରଣ ସ୍ଥାନରେ ନାରୀ

ଓଡ଼ିଶାରେ ଶିକ୍ଷାର ଅଗ୍ରଗତି ଏବଂ ବାଳିକା ବିଦ୍ୟାଳୟମାନ ଖୋଲିବା ସହିତ ଅଳ୍ପ ସଂଖ୍ୟକ ନାରୀ କାର୍ଯ୍ୟକ୍ଷେତ୍ରରେ ମଧ୍ୟ ଯୋଗ ଦେଇଥିଲେ। ତଥାପି ଓଡ଼ିଶାରେ ସର୍ବସାଧାରଣ ସ୍ଥାନ ପୁରୁଷ ପ୍ରାଧାନ୍ୟ ରହିଥିଲା। ବ୍ରିଟିଶ ବିରୁଦ୍ଧରେ ଆନ୍ଦୋଳନ ସମଗ୍ର ଭାରତରେ ଶକ୍ତି ହାସଲ କରୁଥିଲା। ମହାତ୍ମା ଗାନ୍ଧୀଙ୍କ ଆଗମନ ସହିତ ଭାରତୀୟ ଜାତୀୟ କଂଗ୍ରେସର ବ୍ୟାପକ ଆଦର୍ଶଗତ ତଥା ସାଂଗଠନିକ ପରିବର୍ତ୍ତନ ହୋଇଥିଲା। ଗାନ୍ଧୀଜୀଙ୍କର ଅହିଂସା ଏବଂ ଅସହଯୋଗ ଆଦର୍ଶ ଓଡ଼ିଆ ଜାତୀୟତାବାଦୀ ନେତାମାନଙ୍କ ମଧ୍ୟରେ ଅତୁଳନୀୟ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିଥିଲା। ମହାତ୍ମା ଗାନ୍ଧୀ ପ୍ରଥମ ଥର ପାଇଁ ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖରେ ଓଡ଼ିଶା ଗସ୍ତ କରିଥିଲେ। ସେ କାଠଯୋଡ଼ି ନଦୀ କୂଳରେ ଏକ ସାଧାରଣ ସଭାକୁ ସମ୍ବୋଧିତ କରିବା ପୂର୍ବରୁ ବିନୋଦ ବିହାରୀରେ ପ୍ରାୟ ଚାଳିଶ ଜଣ ମହିଳାଙ୍କର ଏକ ଛୋଟ ସମାବେଶରେ ଭାଷଣ ଦେଇଥିଲେ। ତାଙ୍କ ପ୍ରେରଣା ପାଇ ଅଳ୍ପ ସଂଖ୍ୟକ ନାରୀ କଂଗ୍ରେସର ସଦସ୍ୟ ହୋଇ ଗାନ୍ଧୀଜୀଙ୍କ ପଦଯାତ୍ରାରେ ଯୋଗ ଦେଇଥିଲେ। ୧୯୨୨ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଗୟା ଅଧିବେଶନରେ ରମାଦେବୀ ଚୌଧୁରୀ ଏବଂ ହୀରାମଣି ଦେବୀ[୩୮] ଯୋଗ ଦେଇଥିଲେ। ୧୯୨୮ ଡିସେମ୍ବର ମାସରେ ଜାତୀୟ କଂଗ୍ରେସର କଲିକତା ଅଧିବେଶନରେ ରମାଦେବୀ ଚୌଧୁରୀ, ସରଳା ଦେବୀ, ସରୋଜିନୀ ଚୌଧୁରୀ, ଜାହ୍ନବୀ ଦେବୀ, କୋକିଳା ଦେବୀ, ରାସମଣି ଦେବୀ ପ୍ରତିନିଧିତ୍ୱ କରିଥିଲେ।

ଲବଣ ସତ୍ୟାଗ୍ରହ ଓଡ଼ିଆ ନାରୀମାନଙ୍କ ପାଇଁ ଏକ ପ୍ରକୃତ ରାଜନୈତିକ ଜୀବନର ଆରମ୍ଭକୁ ଚିହ୍ନିତ କରେ। ଏହା ବହୁ ସଂଖ୍ୟାରେ ନାରୀମାନଙ୍କୁ ସାଧାରଣ କ୍ଷେତ୍ରକୁ ଆଣିଥିଲା। ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଏବଂ ଜଗତସିଂହପୁର ଜିଲ୍ଲାର କୁଜଙ୍ଗ ଲବଣ ସତ୍ୟାଗ୍ରହର ଦୁଇଟି ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ଥିଲା ଯେଉଁଠି ନାରୀମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ରମାଦେବୀ ଚୌଧୁରୀଙ୍କ ନେତୃତ୍ୱରେ ୧୯୩୦ ମସିହା ଏପ୍ରିଲ ୨୦ ତାରିଖରେ ଇଞ୍ଚୁଡ଼ିରେ ଲବଣ ସତ୍ୟଗ୍ରହରେ ପନ୍ଦର ଶହରୁ ଅଧିକ ମହିଳା ଅଂଶଗ୍ରହଣ କରିଥିଲେ।[୩୯] ୧୯୩୦ ମଇ ମାସରେ ପାଞ୍ଚ ଶହରୁ ଅଧିକ ମହିଳା କୁଜଙ୍ଗ ରାଣୀ ଭାଗ୍ୟବତୀ ପାଟ ମହାଦେଈଙ୍କ ଡକରା ପାଇ କୁଜଙ୍ଗରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ।

ନାରୀବାଦୀ ଗବେଷକ ଜେରାଲ୍ଡାଇନ୍ ଫୋର୍ବସ୍[୪୦] ଯୁକ୍ତି କରିଛନ୍ତି ଯେ ମହାତ୍ମା ଗାନ୍ଧୀଙ୍କ ଭାରତୀୟ ରାଜନୈତିକ ପ୍ରେକ୍ଷାପଟରେ ଆର୍ବିଭାବ ପୂର୍ବରୁ ନାରୀମାନେ ଭାରତରେ ସର୍ବସାଧାରଣ ସ୍ଥାନରେ ପହଞ୍ଚି ସାରିଥିଲେ। ଏହି ଦାବି ଆଶିଂକ ରୂପେ ସତ୍ୟ ହୋଇପାରେ, କିନ୍ତୁ ଓଡ଼ିଶା ପ୍ରସଙ୍ଗରେ ଏହା ସତ୍ୟ ବୋଲି କୁହାଯାଇପାରିବନାହିଁ। ନାରୀମାନଙ୍କ ଅଂଶଗ୍ରହଣର ମାତ୍ରା, ନାରୀମାନଙ୍କ ମଧ୍ୟରେ ଆତ୍ମସଚେତନତାର ପ୍ରଦର୍ଶନ ତଥା ନାରୀମାନଙ୍କ ପ୍ରସଙ୍ଗରେ ବିତର୍କ ସ୍ୱାଧୀନତା ଆନ୍ଦୋଳନ ସମୟରେ ଯେପରି ହୋଇଥିଲା ସେପରି ଏହା ପୂର୍ବରୁ ହୋଇଥିବାର ମନେହୁଏନା। ଏଥି ସହିତ ଏହି ସମୟରେ ସର୍ବସାଧାରଣ କ୍ଷେତ୍ରରେ ନାରୀମାନଙ୍କ ଅଂଶଗ୍ରହଣକୁ ନେଇ ପ୍ରଶ୍ନଗୁଡ଼ିକ ସ୍ୱତନ୍ତ୍ର ପରିଚୟ ଅପେକ୍ଷା ସାମାଜିକ ଏକତ୍ୱ ଉପରେ ଗୁରୁତ୍ୱାରୋପ କରିଥିଲା। ସ୍ୱାଧୀନତା, କର୍ତ୍ତୃତ୍ୱ, ବ୍ୟକ୍ତିତ୍ୱବାଦ ଏବଂ ସର୍ବୋପରି ନାରୀମାନଙ୍କର ସ୍ୱତନ୍ତ୍ର ପରିଚୟ ସମ୍ବନ୍ଧୀୟ ପ୍ରଶ୍ନଗୁଡ଼ିକ ଧୀରେ ଧୀରେ ବିତର୍କ ଓ ଆଲୋଚନାରେ ସ୍ଥାନ ପାଇଲା ଯେହେତୁ ନାରୀମାନେ ଶିକ୍ଷା ପାଇଲେ ଏବଂ ବାହ୍ୟଜଗତ ସହ ସଂଶ୍ଳିଷ୍ଟ ହୋଇ ସେମାନଙ୍କର ଅସ୍ତିତ୍ୱ ବିଷୟରେ ସଚେତନ ହେଲେ। ଭାରତ ସ୍ୱାଧୀନତା ହାସଲ କରିବା ବେଳକୁ ଓଡ଼ିଶାର ନାରୀ ଅଗ୍ରଦୂତମାନଙ୍କୁ ବିଭିନ୍ନ ଭୂମିକାରେ ଦେଖିବାକୁ ମିଳିଥିଲା ଯାହା ପାରମ୍ପରିକ ଭାବରେ କେବଳ ପୁରୁଷମାନଙ୍କ ପାଇଁ ଉର୍ଦ୍ଦିଷ୍ଟ ଥିଲା। ଏହି ନାରୀମାନଙ୍କର ଏକ ବିଶାଳ ପରିବର୍ତ୍ତନର କାଳଖଣ୍ଡରେ ବଞ୍ଚିବାର ସ୍ମୃତି ରହିଥିଲା; ଉପନିବେଶକାରୀଙ୍କଠାରୁ ସ୍ୱାଧୀନତା ପାଇବା, ସ୍ୱତନ୍ତ୍ର ଆଞ୍ଚଳିକ ପରିଚୟ ପ୍ରାପ୍ତ ହେବା[୪୧], ନୂତନ ରାଷ୍ଟ୍ର ନିର୍ମାଣର ପ୍ରଥମ ଦିନଗୁଡ଼ିକର ସାକ୍ଷୀ ହେବା ଏବଂ ଏକ ନୂତନ ସାମାଜିକ ଶୃଙ୍ଖଳା ପାଇଁ ଆଶା ବାନ୍ଧିବା ଥିଲା ସେମାନଙ୍କ ସମୃଦ୍ଧ ଅଭିଜ୍ଞତାର ଅଂଶ। ସେମାନେ ଏକ ଦୃଢ଼ ଭିତ୍ତିଭୂମି ସ୍ଥାପନ କରିଥିଲେ ଯାହା ଉପରେ ସ୍ୱାଧୀନତା ପରେ ଜନ୍ମ ନେଇଥିବା ଓଡ଼ିଆ ନାରୀମାନେ ପୁଷ୍ଟ

ହୋଇଥିଲେ ଏବଂ ବିଂଶ ଶତାବ୍ଦୀର ତୃତୀୟ ତଥା ଚତୁର୍ଥ ପାଦରେ ଓଡ଼ିଶାରେ ଘଟୁଥିବା ପରିବର୍ତ୍ତନଗୁଡ଼ିକର ଅଂଶ ବିଶେଷ ହୋଇଥିଲେ ।

## ଆତ୍ମମଗ୍ନା

୧୯୭୮ ମସିହାରେ ଯେତେବେଳେ ସୀତାଦେବୀ ଖାଡ଼ଙ୍ଗା (୧୯୦୧-୧୯୮୩) ତାଙ୍କ ଆତ୍ମଜୀବନୀ ଲେଖିଲେ, ସେତେବେଳେ ସେ ତାଙ୍କ ଜୀବନର ଶେଷ ଭାଗରେ ପାଦ ଦେଇସାରିଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଞ୍ଜାମରେ ସେ ଜଣେ ପେସାଦାର ନାଟ୍ୟକାର ଭାବରେ ସଫଳତା ପାଇଥିଲେ, ତାଙ୍କର ନାଟକଗୁଡ଼ିକ ତାଙ୍କୁ ବହୁ ଲୋକପ୍ରିୟତା ପ୍ରଦାନ କରିଥିଲା । ରମାଦେବୀ ଚୌଧୁରୀ (୧୮୯୯-୧୯୮୫) ତାଙ୍କ ଆତ୍ମଜୀବନୀ ପ୍ରକାଶ କରିବା ବେଳକୁ ଓଡ଼ିଶାରେ ଜଣେ ସ୍ୱାଧୀନତା ସଂଗ୍ରାମୀ ତଥା ସମାଜ ସେବୀ ଭାବରେ ଗଭୀର ସମ୍ମାନ ପାଉଥିଲେ । ୧୯୬୯ ମସିହାରେ ଭୁବନେଶ୍ୱରରେ ଏକ ମହିଳା ମହାବିଦ୍ୟାଳୟ ତାଙ୍କ ନାମରେ ପ୍ରତିଷ୍ଠିତ ହୋଇଥିଲା । ବୀଣା ଦେଈ (୧୯୦୪-୨୦୦୩) ସତୁରି ବର୍ଷ ବୟସରେ ତାଙ୍କ ଆତ୍ମଜୀବନୀ ପ୍ରକାଶ କରିଥିଲେ ଏବଂ ସେତେବେଳକୁ ଡାକ୍ତର ଭାବରେ ଏକ ଗୌରବମୟ କର୍ମମୟ ଜୀବନ ଉପଭୋଗ କରିସାରିଥିଲେ । ଯେତେବେଳେ ଗୋଦାବରୀ ଦେବୀ (୧୯୧୬-୧୯୯୩) ପୁରୀର ଏକ ମହିଳା ଶିବିରରେ ଯୋଗଦେବାକୁ ସେ କିପରି ନିଜ ଗାଁ ବିରୁଦ୍ଧରେ ଠିଆ ହୋଇଥିଲେ ମନେ ପକାଇ ସ୍ମୃତିରୁ ଖିଏ ଲେଖିଲେ, ସେତେବେଳେ ପାଠକମାନେ ତାଙ୍କ ପକ୍ଷରେ ଥିଲେ ।

ଓଡ଼ିଆ ନାରୀ ଆତ୍ମଜୀବନୀକାରମାନେ, ଯେଉଁମାନେ ନିଜର ଜୀବନ କାହାଣୀକୁ କାଗଜରେ ଲିପିବଦ୍ଧ କରିଛନ୍ତି, ଦେଖିଲେ ଯେ ସମାଜ ଧୀରେ ଧୀରେ ଏହାର କଠୋର ନୈତିକ ଏବଂ ସାମାଜିକ ନିୟମମାନରୁ ମୁକ୍ତ ହୋଇ ନୂତନ ଜୀବନଶୈଳୀକୁ ସ୍ଥାନ ଦେଉଛି । ସେମାନେ ଏକ ନୂତନ ରାଷ୍ଟ୍ର ନିର୍ମାଣର ପ୍ରଥମ ଦିନ ଗୁଡ଼ିକରେ ବଞ୍ଚିବା ସହିତ ଏହାର ନୂତନ ରାଜନୈତିକ ଶାସନ ବ୍ୟବସ୍ଥା ସହିତ ମୋହଭଙ୍ଗର ଅନୁଭୂତି ମଧ୍ୟ ଅଙ୍ଗେ ନିଭାଇଥିଲେ । ପରିବର୍ତ୍ତିତ ମୂଲ୍ୟବୋଧ ସହିତ ଖାପ ଖୁଆଇବାବେଳେ ସେମାନେ କିଛି ପାରମ୍ପରିକ ମୂଲ୍ୟବୋଧକୁ ଧରି ରଖିଥିଲେ ହେଁ ଅନେକ ଆଧୁନିକ ମୂଲ୍ୟବୋଧକୁ ଆଦରି ନେଇଥିଲେ ଯାହା ଏକ ନୂତନ ସାମାଜିକ ବାସ୍ତବତାର ମୂଳଦୁଆ ପକାଇଥିଲା । ସେମାନେ କୁତ୍ସା ଓ ସମାଲୋଚନାକୁ ଧ୍ୟାନ ନ ଦେବାର କଳାକୁ ଆୟତ୍ତ କରିଥିଲେ ଏବଂ କଠୋର ବିରୋଧର ସାମନାରେ କିପରି ଛିଡ଼ା ହେବାକୁ ହୁଏ ତାହା ମଧ୍ୟ ଜାଣିଥିଲେ । ସେମାନେ ପ୍ରତିକୂଳ ଜନମତକୁ ଭୟ କରୁନଥିଲେ । ଯେଉଁମାନେ

ଭାରତର ସ୍ୱାଧୀନତା ସମୟରେ ଜନ୍ମ ହୋଇଥିଲେ କିମ୍ବା ଷାଠିଏ ଓ ସତୁରି ଦଶକରେ ବଢ଼ିଥିଲେ ସେମାନଙ୍କ ପାଇଁ ଉଚ୍ଚଶିକ୍ଷାର ଦ୍ୱାର ଉନ୍ମୁକ୍ତ ଥିଲା ଏବଂ ସର୍ବସାଧାରଣ ସ୍ଥାନ ଆଉ ନିଷେଧ ନଥିଲା। ଏହି ନାରୀମାନେ ସେମାନଙ୍କର ପୂର୍ବଜମାନଙ୍କର ସାହସ ଓ କାର୍ଯ୍ୟର ଫସଲ ଅମଳ କଲେ ଏବଂ ସ୍ୱତଃପ୍ରବୃତ୍ତ ଭାବେ ଆତ୍ମପ୍ରତ୍ୟୟ ଓ ଉଚ୍ଚାକାଂକ୍ଷାର ସହିତ ଆଗକୁ ବଢ଼ିଲେ। ସର୍ବସାଧାରଣ ସ୍ଥାନରେ ଅଧିକରୁ ଅଧିକ ନାରୀମାନେ ଭାଗ ନେବା ଆରମ୍ଭ ହେଲା ଏବଂ ସେମାନେ ବିଭିନ୍ନ ପ୍ରସଙ୍ଗରେ ନିଜର ଦୃଷ୍ଟିକୋଣ ପ୍ରକାଶ କରିବାକୁ ସୁଯୋଗ ପାଇଲେ। ତେବେ ଏସବୁ ପରିବର୍ତ୍ତନର ପ୍ରେକ୍ଷାପଟ୍ଟରେ ଅଳ୍ପ କେତେ ଜଣ ଓଡ଼ିଆ ନାରୀ ନିଜକୁ ଆତ୍ମଜୀବନୀର ବିଷୟ ଭାବରେ କଳ୍ପନା କରିବାର ପ୍ରେରଣା କେଉଁଠୁ ପାଇଲେ ? ସେମାନେ ନିଜକୁ ଆତ୍ମଜୀବନୀକାର ରୂପେ ଦେଖିବାକୁ କାହିଁକି ଇଚ୍ଛା କଲେ ? ନାରୀମାନେ ନିଜ ଚାରିପାର୍ଶ୍ୱର ଜଗତ ସହିତ ସଂଶ୍ଲିଷ୍ଟ ହେବା ଫଳରେ ସେମାନଙ୍କ ଜୀବନରେ ଯେଉଁସବୁ ପରିବର୍ତ୍ତନ ଘଟିଥିଲା ତାହା ଆଦୌ ଆକସ୍ମିକ ନଥିଲା। ସେଥିପାଇଁ ହୁଏତ ସେମାନେ ନିଜ ନିଜ ଜୀବନର କାହାଣୀକୁ ଲିପିବଦ୍ଧ କରିବାର ଏବଂ ସେମାନଙ୍କ ଜୀବନର ଏକ ସମନ୍ୱିତ ବର୍ଣ୍ଣନା ଉପସ୍ଥାପନ କରିବାର ଆବଶ୍ୟକତା ଅନୁଭବ କରିଥିବେ। ସମସ୍ତେ ନ ହେଲେ ବି ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ପଷ୍ଟ ଭାବରେ ଜାଣିଥିଲେ ଯେ ସେମାନଙ୍କ ଜୀବନ ବିଶ୍ୱ ନାରୀ ଇତିହାସର ଏକ ଅଂଶ, ଯେହେତୁ ସେମାନେ ନାରୀ ଭାବରେ ବ୍ୟବସ୍ଥିତ ଭେଦଭାବର ଶିକାର ହୋଇଥିଲେ, ଅବଳାଦୁର୍ବଳା ଉକ୍ତିଟିକୁ ନିଜ ଉପରେ ଲଦି ଦିଆଯାଇଥିବାର ଅନୁଭବ କରିଥିଲେ, କିନ୍ତୁ ଏସବୁ ପ୍ରତିବନ୍ଧକର ସାମ୍ନା କରି ସେମାନେ ସଫଳତାର ସହ ଭବିଷ୍ୟତ ପିଢ଼ିର ନାରୀମାନଙ୍କ ପାଇଁ ସମ୍ମାନର ସହ ଚାଲିବାକୁ ପଥ ପ୍ରସ୍ତୁତ କରିଥିଲେ।

ଏଠାରେ ଆଲୋଚିତ ଅଧିକାଂଶ ନାରୀ ଆତ୍ମଜୀବନୀକାରମାନେ କାହିଁକି ନିଜ ଆତ୍ମଜୀବନୀ ଲେଖିବାକୁ ମନ ବଳେଇଲେ ତାର ଏକ ଏକ ପ୍ରକାର ସ୍ୱୀକାରୋକ୍ତି ପ୍ରଦାନ କରିଛନ୍ତି। ଆତ୍ମଜୀବନୀକାରମାନେ ନିଜ ଜୀବନର କାହାଣୀ ଲେଖିବା ପାଇଁ ନିଜ ନିଷ୍ପତ୍ତିକୁ ଯଥାର୍ଥ ବୋଲି ଦର୍ଶାଇବାର ଏକ କାରଣ ମଧ୍ୟରେ ସେମାନଙ୍କ ଜୀବନର ସତ୍ୟ ପ୍ରକାଶ କରିବା ସମୟରେ ଅନୁଭବ କରିଥିବା ଏକ ନିର୍ଦ୍ଦିଷ୍ଟ ଆତ୍ମସଚେତନତାକୁ ଦାୟୀ କରାଯାଇପାରେ। ସେମାନେ ନିଜ ଜୀବନ କାହାଣୀ ଲେଖିବା ପାଇଁ କାହିଁକି ଆଗ୍ରହୀ ହେଲେ ସେ ସମ୍ବନ୍ଧରେ ବିବୃତ୍ତି ମଧ୍ୟରେ ଗାନ୍ଧିଜୀଙ୍କ ବାର୍ତ୍ତା ବିସ୍ତାର କରିବାର ଆବଶ୍ୟକତା ଓ ସେମାନଙ୍କ ଜୀବନରେ ଏହାର ପ୍ରଭାବ, ଖ୍ୟାତି ଇଚ୍ଛା କିମ୍ବା କେବଳ ହଜିଯାଇଥିବା ସମୟକୁ ମନେପକାଇବା ପରି ଅଭିଳାଷା ରହିଛି। ରମାଦେବୀ ଚୌଧୁରୀଙ୍କ ଶବ୍ଦରେ:

ମୋର ଅତୀତ ଜୀବନର କଥା ମୁଁ ଲେଖି ରଖେ ବୋଲି ସରଳା ଦେବୀ ମୋତେ ଅନୁରୋଧ କଲେ। ମୁଁ ପଚାରିଲି - କଅଣ ଲେଖିବି ? ପନ୍ଦରବର୍ଷ ଯେ ବାପାମାଆଙ୍କ ପାଖରେ ଥିଲି ସେତେବେଳେ ତ ସାଧାରଣ ଝିଅ ପରି ଜୀବନ କଟାଇଛି – ଉଲ୍ଲେଖଯୋଗ୍ୟ କାମ କଅଣ ବା କରିଛି ? ବାହାହୋଇ ଶାଶୁଘରକୁ ଯେ ଆସିଲି, ପିଲା ଜନ୍ମ କରିବା, ତାକୁ ପାଳିବା, ଘରକାମ କରିବାରେ ପନ୍ଦର ବର୍ଷ କଟିଲା। ସେହି ପନ୍ଦର ବର୍ଷ ଭିତରେ ମୋ ଜୀବନକୁ ମୁଁ ଯେପରି ନିୟନ୍ତ୍ରଣ କରିଛି, ଘରକରଣା ଭିତରେ ସାର୍ବଜନୀନ କାମ କରିବା ପାଇଁ ମୁଁ ନୀରବରେ ଯେଉଁ ଉଦ୍ୟମ କରିଛି ତାହା ଅବଶ୍ୟ ମୋ ଶ୍ରେଣୀର ଅର୍ଥାତ୍ ପଢ଼ାଶୁଣା କରିନଥିବା ଝିଅବୋହୂଙ୍କ ପାଇଁ କାମରେ ଆସିପାରେ। ପାଠ ବଳ ନଥାଇ କେବଳ ଗୁଣ ବଳରେ ଯେ ମଣିଷ ଦେଶ ତଥା ସମାଜସେବା କାମ କରିପାରେ, ଏ ପ୍ରମାଣ ମୋ ଜୀବନରୁ ମିଳିବ। କେତେ ବଡ଼ ବଡ଼ ଜୀବନୀ ତ ଲୋକେ ପଢୁନାହାନ୍ତି ଏବଂ ପଢ଼ିଲେ ବି ଜୀବନରେ ଗ୍ରହଣ କରୁନାହାନ୍ତି – ମୁଁ ବା କି ଛାର ଲୋକ ଯେ ମୋ କଥାର କଅଣ ମୂଲ୍ୟ ଅଛି ?[୪୨]

ରମାଦେବୀଙ୍କ ପରି ଅନ୍ୟମାନେ ମଧ୍ୟ ସେମାନଙ୍କର ଅନୁଭୂତି ବାଣ୍ଟିଛନ୍ତି ଯାହା ଦ୍ୱାରା ପାଠକେ ଜାଣିପାରିବେ ଯେ ସେମାନେ ଏକ ଭିନ୍ନ ସମୟଖଣ୍ଡରେ କିପରି ନିଜର ଜୀବନ ଅତିବାହିତ କରିଥିଲେ। ଏହି ସବୁ କ୍ଷେତ୍ରରେ ଯାହା ଦେଖାଯାଏ ଏକ ନିର୍ଦ୍ଦିଷ୍ଟ ଯୁଗରେ ବି ସମାନ ଚିନ୍ତାଧାରା ଦ୍ୱାରା ପରିବେଷ୍ଟିତ ହୋଇଥିଲେ ହେଁ ସେମାନଙ୍କର ବ୍ୟକ୍ତିତ୍ୱ, ସ୍ୱଭାବ ଓ ପ୍ରବୃତ୍ତି ଭିନ୍ନ। ବୀଣା ଦେଈ ଏବଂ ସରଳା ଦେବୀଙ୍କ ବିଦ୍ରୋହୀ ପ୍ରକୃତି ଅନେକ ଆତ୍ମଜୀବନୀକାରଙ୍କ ଶାନ୍ତ ଓ ସହନଶୀଳ ପ୍ରକୃତିର ବିପରୀତ। ଏହି ଆତ୍ମଜୀବନୀକାରମାନେ ସମାଜରେ ନାରୀମାନଙ୍କ ସ୍ଥିତିକୁ ଦେଖିବା ସହିତ ସେମାନଙ୍କ ଜୀବନ ଏବଂ ସମାଜଠୁଁ ରଖୁଥିବା ଆଶା ଓ ଅଭିପ୍ସାକୁ ଦେଖିବା ପାଇଁ ବିଭିନ୍ନ ଦୃଷ୍ଟିକୋଣ ପ୍ରଦାନ କରିଛନ୍ତି। ସେମାନେ ଯେଉଁ ନୀତି ଓ ଆଦର୍ଶଗୁଡ଼ିକ ପାଇଁ ଛିଡ଼ା ହୋଇଥିଲେ, ସେସବୁ ପାଇଁ ସେମାନଙ୍କୁ ମୂଲ୍ୟାଙ୍କନ କରିବା ବେଳେ ସେମାନଙ୍କର ବ୍ୟକ୍ତିତ୍ୱର ମୌଳିକ ସ୍ୱଭାବକୁ ମଧ୍ୟ ଗୁରୁତ୍ୱ ଦେବା ଆବଶ୍ୟକ। ସେମାନେ କାହିଁକି ନିଜ ଆତ୍ମଜୀବନୀ ଲେଖିବାକୁ ଚାହିଁଲେ ସେଗୁଡ଼ିକର ବ୍ୟାଖ୍ୟା ତଥାପି ପାଠକମାନଙ୍କୁ ସେମାନଙ୍କର ଆତ୍ମଲିପିକୁ ପଢ଼ିବାର ଏକ ଉପାୟ ଏବଂ ସମ୍ଭବତଃ ସେମାନଙ୍କ ଜୀବନକୁ ତଥା ସେମାନଙ୍କୁ ଅନ୍ତରଙ୍ଗ ଭାବେ ଜାଣିବାର ବାଟ ଦେଖାଇଥାଏ।

ଏଠାରେ ଅଧ୍ୟୟନ କରାଯାଇଥିବା ଏକୋଇଶି ଜଣ ନାରୀ ଆତ୍ମଜୀବନୀକାରଙ୍କୁ ପାଞ୍ଚଟି ବର୍ଗରେ ଗୋଷ୍ଠୀଭୁକ୍ତ କରାଯାଇପାରେ ଯାହାକୁ ଆଧାର କରି ସେମାନେ ନିଜର ଆତ୍ମପରିଚୟ ଦେଇଛନ୍ତି। ତାହା ହେଲା: ଗାନ୍ଧୀବାଦୀ, ସମାଜ ସେବୀ, ଲେଖିକା, କର୍ମଜୀବି, ଏବଂ ସ୍ମୃତିର କାରିଗର। ଏମିତି କରାଯାଇଥିବା ଗୋଟେ ଗୋଟେ ବର୍ଗରେ ଏକାଧିକ ଆତ୍ମଜୀବନୀକାର ରହିପାରିବେ, ତେଣୁ ଏଠାରେ ଉଲ୍ଲେଖ କରିବା ଅନାବଶ୍ୟକ ଯେ ଏହା କେବଳ ଏକ ସ୍ଥୂଳ ବର୍ଗୀକରଣର ଆବଶ୍ୟକତା ପୂରଣ କରେ।

## (୧) ଗାନ୍ଧୀବାଦୀ

ପ୍ରାଚୀନ କାଳରୁ ଗୃହର ଚାରିକୋଣ ମଧ୍ୟରେ ଆବଦ୍ଧ ରହୁଥିବା ନାରୀମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା ମୁକ୍ତ ହେବାର ବାଟ ଖୋଲିଥିଲା। କିନ୍ତୁ ଅଳ୍ପ କେତେକ ନାରୀ ଏହାର ସୁଯୋଗ ପାଇଥିଲେ। ସର୍ବସାଧାରଣ ସ୍ଥାନରେ ନାରୀମାନଙ୍କ ଅଂଶଗ୍ରହଣ ବ୍ରିଟିଶ ଭାରତର ସ୍ଥାନ ବିଶେଷରେ ଭିନ୍ନ ଭିନ୍ନ ଥିଲା। ସ୍ୱାଧୀନତା ଆନ୍ଦୋଳନ ଭାରତୀୟ ନାରୀମାନଙ୍କ ଜୀବନରେ ସୁଦୂରପ୍ରସାରୀ ପରିବର୍ତ୍ତନ ଆଣିଥିଲା। ସ୍ୱାଧୀନତା ଆନ୍ଦୋଳନ, ବିଶେଷ କରି ଏହା ଗାନ୍ଧୀଜୀଙ୍କ ଅହିଂସା ଓ ଅସହଯୋଗ କୌଶଳ ଦ୍ୱାରା ପରିବର୍ତ୍ତିତ ହେବା ପରେ, ଓଡ଼ିଶାରେ ବହୁ ସଂଖ୍ୟକ ନାରୀଙ୍କ ଜୀବନରେ ପରିବର୍ତ୍ତନ ଆଣି ସେମାନଙ୍କୁ ଏକ ନୂତନ ଜଗତ ସହିତ ଯୋଡ଼ିଥିଲା। ସେମାନଙ୍କ ମଧ୍ୟରୁ ଅନେକ ପରଦାପ୍ରଥା ଭାଙ୍ଗିଥିଲେ ଏବଂ ସର୍ବସାଧାରଣ କ୍ଷେତ୍ରରେ ହେଉଥିବା କାର୍ଯ୍ୟରେ ଭାଗ ନେଇଥିଲେ। ସେମାନଙ୍କ ମଧ୍ୟରୁ କେତେକ କାରାଗାରକୁ ଯାଇଥିଲେ, ସମାଜର ଦୁର୍ବଳ ତଥା ନିଷ୍ପେଷିତମାନଙ୍କ ପାଇଁ କାର୍ଯ୍ୟ କରିଥିଲେ, ଏପରିକି ଜାତିପ୍ରଥାର କଠୋର ନିୟମକୁ ଉଲ୍ଲଂଘନ କରିଥିଲେ ଏବଂ ନେତୃତ୍ୱର ଭୂମିକା ଗ୍ରହଣ କରିଥିଲେ ଯାହା କେହି କେବେ କଳ୍ପନା କରିନଥିଲେ। ଏହା ସେମାନଙ୍କ ଜୀବନରେ ଏକ ଅବିସ୍ମରଣୀୟ ମୋଡ଼ ଆଣିଥିଲା। ତେଣୁ ଏହା ଆଦୌ ବିସ୍ମୟକର ନୁହେଁ ଯେ ଏହି ସାହସୀ ଗାନ୍ଧୀବାଦୀ ନାରୀମାନଙ୍କ ମଧ୍ୟରୁ କେତେ ଜଣ କେବଳ ବ୍ରିଟିଶ ଶାସନ ବିରୁଦ୍ଧରେ ନୁହେଁ, ବରଂ ଏକ ସାମନ୍ତବାଦୀ, ଜାତିଭିତ୍ତିକ ସମାଜର ଉତ୍ପୀଡ଼କ ଭାବନା ଓ ଚିନ୍ତାଧାରାଗୁଡ଼ିକ ବିରୁଦ୍ଧରେ ମଧ୍ୟ ସଂଗ୍ରାମର କାହାଣୀ ଲେଖିଛନ୍ତି।

ଏହି ଗାନ୍ଧୀବାଦୀ ନାରୀମାନଙ୍କର ଆତ୍ମଜୀବନୀ ପଢ଼ିବାବେଳେ ଗାନ୍ଧୀଜୀଙ୍କ ଚିନ୍ତା ଓ ଆଦର୍ଶର ନାରୀମାନଙ୍କ ଉପରେ ଯେଉଁ ମୁକ୍ତିଦାୟକ ପ୍ରଭାବ ପଡ଼ିଥିଲା ତାହା ଦେଖିବାକୁ ମିଳେ। ଗାନ୍ଧୀଜୀ ସେମାନଙ୍କ ଦିଗନ୍ତକୁ ଆଶାତୀତ ଭାବେ ବ୍ୟାପକ କରିଦେଲେ। ସେ ସେମାନଙ୍କୁ ଘରର ଚାରିକୋଣ ଭିତରୁ ବାହାରିବାକୁ ପ୍ରେରଣା ଦେଲେ, ସେମାନଙ୍କ

ମଧ୍ୟରେ ଆତ୍ମପ୍ରତ୍ୟୟ ଜାଗ୍ରତ କଲେ, ସେମାନଙ୍କ ସମ୍ମୁଖରେ ନୂତନ ଦିଗନ୍ତର ଉନ୍ମୋଚନ କଲେ ଏବଂ ରାଷ୍ଟ୍ରନିର୍ମାଣକୁ ବୁଝିବା ଦିଗରେ ସେମାନଙ୍କୁ ସାହାଯ୍ୟ କଲେ। ବ୍ରିଟିଶ ଭାରତ ଏବଂ ଗାନ୍ଧୀଜୀଙ୍କ ଉପରେ ସମାନ୍ତରାଳ କାହାଣୀ ହେବା ସହ ଏହି ଆତ୍ମଜୀବନୀଗୁଡ଼ିକ ଓଡ଼ିଶାରେ ଜାତୀୟ ଆନ୍ଦୋଳନର ପ୍ରସାର ଉପରେ ଅସାଧାରଣ ଦୃଷ୍ଟିକୋଣ ପ୍ରଦାନ କରେ।

ଗାନ୍ଧୀଜୀଙ୍କ ଓଡ଼ିଶା ଗସ୍ତ ଏବଂ ବିଭିନ୍ନ ସ୍ଥାନରେ ପଦଯାତ୍ରା ଅନେକ ସ୍ୱାଧୀନତା ସଂଗ୍ରାମୀ ତଥା ଐତିହାସିକମାନଙ୍କ ଦ୍ୱାରା ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି। ପଦଯାତ୍ରା ସମୟରେ ନାରୀ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆୟୋଜକ ଏବଂ ପାଣ୍ଠି ସଂଗ୍ରହକାରୀ ଭୂମିକାରେ ଦେଖିବାକୁ ମିଳେ। କଟକଠାରେ ଗାନ୍ଧୀଜୀଙ୍କ ସହ ସାକ୍ଷାତ ବିଷୟରେ ରମାଦେବୀ ଚୌଧୁରୀ ଲେଖିଛନ୍ତି:

> ଗାନ୍ଧୀଜୀ ସଭାକୁ ଆସିବା ବେଳ ଯହୁଁ ଯହୁଁ ପାଖ ହେଉଥାଏ, ତହୁଁ ତହୁଁ ବାୟୁମଣ୍ଡଳ ଶାନ୍ତ ଓ ଗମ୍ଭୀର ହେଉଥାଏ। ଆମେ ସ୍ତ୍ରୀଲୋକ ପ୍ରାୟ ଚାଳିଶ ଜଣ ହେବ ସଜାଡ଼ି ହୋଇ ବସିଗଲୁ। ବାହାରେ ନାନା ଧ୍ୱନି ଶୁଣାଗଲା। ଗାନ୍ଧୀଜୀ, କସ୍ତୁରବା ଓ ଦେବଦାସ ଗାନ୍ଧୀ ଆସିଲେ। ଆଉ କିଏ କିଏ ମଧ୍ୟ ଆସିଲେ। ଗାନ୍ଧୀଜୀ ଅଳ୍ପ ଦୁଇଚାରିପଦ କଥା କହିଲେ। ତା ଭିତରେ ଗହଣା ଛାଡ଼ିବା ଓ ତାଙ୍କୁ ତାହା ଦାନ ଦେବା କଥା ମଧ୍ୟ ଥିଲା। ମୁଦି, କାନଫୁଲ ପ୍ରଭୃତି ଛୋଟ ଛୋଟ ଗହଣା କେତେଜଣ ଦେଲେ। କିଛି ଟଙ୍କା ମଧ୍ୟ ଦେଲେ। ମୁଁ ସତ୍ୟଭାମାପୁରର ଦନ୍ଥୁଡ଼ା ପଥରକୁଣ୍ଡି ଲଗା ଅରଟରେ କାଟିଥିବା ସୂତାରୁ ମୋଡ଼ାଟିଏ ନେଇଯାଇଥିଲି। ମୁଁ କାଳେ ଗହଣା ଦେଇଦେବି, ଏହି ଆଶଙ୍କାରେ ମାଆ ମୋତେ କହିଥିଲେ – "ସେ ଗହଣା ମାଗିଲେ କଅଣ ହେଲା, ତୁ ଦେହରୁ କାଢ଼ି ଗହଣା କିଛି ଦେବୁନାହିଁ।" ମୁଁ ତାଙ୍କର ସବୁ କଥାକୁ ଯେପରି ମାନେ ଏ କଥାଟି ମଧ୍ୟ ମାନି ଗହଣା ଦେଲିନାହିଁ। ଅନ୍ୟମାନେ ଟଙ୍କା ଓ ଗହଣା ଦେଲେ। ମୁଁ ସୂତା ମୋଡ଼ାଟିଏ ତାଙ୍କ ହାତକୁ ଦେଲାରୁ ସେ ମୋ ଆଡ଼କୁ ଟିକିଏ ଚାହିଁଲେ। ସେ ଚାହାଣିରେ କଅଣ ଥିଲା କେଜାଣି ଆଜି ମଧ୍ୟ ତାକୁ ମନେପକାଉଛି।[୪୩]

ଗାନ୍ଧୀଜୀଙ୍କ ଆହ୍ୱାନକୁ ଗ୍ରହଣ କରି ଅନେକ ଓଡ଼ିଆ ନାରୀ ବିଳାସପୂର୍ଣ୍ଣ ଜୀବନ ତ୍ୟାଗ କରି ଦେଶର ସେବା ପାଇଁ ଉତ୍ସର୍ଗୀକୃତ ଏକ ସରଳ ନିରାଡ଼ମ୍ବର ଜୀବନକୁ ଆଦରି

ନେଇଥିଲେ। ଏହି ଗାନ୍ଧୀବାଦୀ ନାରୀମାନଙ୍କ ଆତ୍ମଜୀବନୀରେ ନାରୀମାନଙ୍କର ସର୍ବସାଧାରଣ କ୍ଷେତ୍ରରେ ପାଦ ଦେବାର ରୋମାଞ୍ଚକର କାହାଣୀ ବର୍ଣ୍ଣିତ ଯାହା ସେମାନଙ୍କ ପାଇଁ ନିଷିଦ୍ଧ ଥିଲା ଏବଂ ଗାନ୍ଧୀଜୀଙ୍କ ଆଇନ୍ ଅମାନ୍ୟ ଆହ୍ୱାନର ଜବାବରେ ସମ୍ଭବପର ହୋଇଥିଲା। ସେମାନଙ୍କର କାହାଣୀକୁ ଆତ୍ମସଚେତନତାର ବିପ୍ଳବ ରୂପେ ଚିନ୍ତା କରାଯାଇପାରେ ଯାହା ଗାନ୍ଧୀଜୀ ଏବଂ ସ୍ୱାଧୀନତା ଆନ୍ଦୋଳନର ରୂପ ନେଇ ଆସିଥିଲା। ଗାନ୍ଧୀଜୀ କୌଣସି ମୁହୂର୍ତ୍ତରେ ଏତେ ମାନବୀୟ ମନେ ହେଇ ନାହାନ୍ତି ଯେଉଁ କ୍ଷଣରେ ଅନ୍ନପୂର୍ଣ୍ଣା ମହାରଣା ମହାତ୍ମାଙ୍କୁ ପ୍ରଥମଥର ଦେଖିବାର ସୁଯୋଗ ପାଇଛନ୍ତି। ନିଜର ସମ୍ବେଦନଶୀଳ କିଶୋରୀ ମନ ଉପରେ ଗାନ୍ଧୀଜୀଙ୍କ ପ୍ରଭାବକୁ ଅନ୍ନପୂର୍ଣ୍ଣା ଅନେକ ବର୍ଷର ବ୍ୟବଧାନ ପରେ ନିଜ ଆତ୍ମଜୀବନୀ "ଅମୃତ ଅନୁଭବ"ରେ ଏମିତି ବର୍ଣ୍ଣନା କରିଛନ୍ତି:

> ଆମକୁ ଦେଖିବା ମାତ୍ରେ ରମାଦେବୀ ଆଦେଶ ଦେଲେ ଭିଡ଼ ସମ୍ଭାଳିବାକୁ ଚାଲିଯାଅ। ଆମେ ହେଉଛୁ ହିନ୍ଦୁସ୍ତାନୀ ସେବାଦଳ ଦ୍ୱାରା ତାଲିମ ପାଇଥିବା ସ୍ୱେଚ୍ଛାସେବିକା! ବୀର ଦର୍ପରେ ଦୁମୁଦୁମୁ ହେଇ ଭିଡ଼ ସମ୍ଭାଳିବାକୁ ଧାଇଁଲା ବେଳକୁ ପଛଆଡ଼ୁ ଗୋଟିଏ ବୃଦ୍ଧର ସ୍ନେହବୋଳା କଣ୍ଠସ୍ୱର ଶୁଭିଲା –ଏ ଝିଅ! କୁଆଡ଼େ ଧାଇଁଛ ? ( ଏ ଲଡ଼କୀ, କାହାଁ ଭାଗ୍ ରହି ହୋ ?) ଆମକୁ ତ ରାଷ୍ଟ୍ର ଭାଷା ଜଣା! ହିନ୍ଦୀ ଭାଷା ଶୁଣି ପଛକୁ ଚାହିଁଦେଇ ଦେଖିଲି – ଗାନ୍ଧିଜୀ ଗୋଟିଏ ଗଛ ମୂଳେ ଶୋଇଛନ୍ତି। ଗୋଟିଏ ଲଣ୍ଠନ ଆଲୁଅ ଧିକି ଧିକି ହେଇ ଜଳୁଛି। ଜଣେ ଖଦୀ ପିନ୍ଧା ଇଂରେଜ ମହିଳା ଓ ଆଉ ଜଣେ ସେଠାରେ କଣ କରୁଛନ୍ତି। ନିଜର ଯୋଗ୍ୟତା ସୂଚେଇବାକୁ ବଡ଼ ତେଜରେ ଜବାବ ଦେଲି–ଭିଡ଼ ସମ୍ଭାଳିବାକୁ ଯାଉଛୁ। ସେ ଭଙ୍ଗାଦାନ୍ତ ଦେଖାଇ ହସି ହସି କହିଲେ, ହଉ ଯାଅ। ଲଭ୍ ଆଟ୍ ଫାର୍ଷ୍ଟ ସାଇଟ୍ ବୋଲି ଇଂରାଜୀରେ କଣ ଗୋଟାଏ କଥା ଅଛି ପରା ? ସେଇ କଥାଟା ଘଟିଗଲା। ଦୁଇପଦ କଥା ଟିକିଏ ହସ – ଯେମିତି ଜନ୍ମଜନ୍ମାନ୍ତରର ପରିଚୟ। ଅତି ଆପଣାର, ଅତି ପରିଚିତ, ଠିକ୍ ଆମ ମନୋନୀତ ସାଙ୍ଗ ହେଇଗଲେ ଗାନ୍ଧିଜୀ।[୪୪]

ନାରୀମାନେ ଘରୁ ବାହାରି ମଦ ଦୋକାନ ସମ୍ମୁଖରେ ପିକେଟିଂ କରିଥିଲେ, ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରି ଗ୍ରାମ ତଥା ସହର ପରିକ୍ରମା କରିଥିଲେ, ଆଇନ ଅମାନ୍ୟ କରି କାରାଗାରକୁ ଯାଇଥିଲେ। ସେମାନେ ଅସ୍ପୃଶ୍ୟତା ନିବାରଣ, କୁଟୀର ଶିଳ୍ପଗୁଡ଼ିକର ପୁନରୁତ୍ଥାନ ଭଳି ଗଠନମୂଳକ କାର୍ଯ୍ୟରେ ନିଜକୁ ନିଯୁକ୍ତ କରିଥିଲେ। ଗାନ୍ଧୀଜୀଙ୍କ ବାର୍ତ୍ତା

କେବଳ ବ୍ରିଟିଶମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରେ ସୀମିତ ନଥିଲା ବରଂ ପ୍ରଚଳିତ ଅନ୍ଧବିଶ୍ୱାସ ଓ କୁସଂସ୍କାରସବୁର ମୂଳୋତ୍ପାଟନ କରିବା ଥିଲା। ସରଳ ଭାବରେ କହିବାକୁ ଗଲେ, ପରିବର୍ତ୍ତନ ଉପରେ ଗାନ୍ଧୀଜୀଙ୍କ ଗୁରୁତ୍ୱ ତିନି ସ୍ତରର ଥିଲା – ସାମାଜିକ ସ୍ତରରେ ଗାନ୍ଧୀବାଦୀମାନେ ଅସ୍ପୃଶ୍ୟତା, ଜାତିଗତ ଭେଦଭାବ, ଅସମତା ଇତ୍ୟାଦି ସାମାଜିକ ବ୍ୟାଧିକୁ ବିରୋଧ କରୁଥିଲେ; ରାଜନୈତିକ ସ୍ତରରେ ସେମାନଙ୍କର ସଂଗ୍ରାମ ବ୍ରିଟିଶ ଶାସନ ବିରୁଦ୍ଧରେ ଥିଲା ଏବଂ ବ୍ୟକ୍ତିଗତ ସ୍ତରରେ ସେମାନେ ଚିନ୍ତାର ଶୁଦ୍ଧତା ଏବଂ ସରଳ ଜୀବନଯାପନ ମାଧ୍ୟମରେ ଆଧ୍ୟାତ୍ମିକ ଉତ୍ତରଣ ଖୋଜୁଥିଲେ।

ଗାନ୍ଧୀଜୀ ପ୍ରଚଳିତ ସ୍ଥିତି ଏବଂ ନାରୀମାନଙ୍କ ପରଦାସୀନତା ଓ ପରନିର୍ଭରଶୀଳତାକୁ ବିରୋଧ କରି ଉଦ୍‌ବୋଧନ ଦେଉଥିଲେ। ସେ ସ୍ୱାଧୀନତାର ଧାରଣାକୁ ନାରୀମାନଙ୍କ ଆତ୍ମନିର୍ଭରଶୀଳତା ସହିତ ଯୋଡ଼ିଥିଲେ ଏବଂ ନାରୀମାନଙ୍କ ପ୍ରସଙ୍ଗରେ ନିୟମିତ ଏବଂ ବିସ୍ତୃତ ଭାବରେ ଲେଖୁଥିଲେ।[୪୫] ତାଙ୍କ ଆହ୍ୱାନରେ ନାରୀମାନେ ଅହିଂସାତ୍ମକ ଜୀବନ ଶୈଳୀ ଅନୁସରଣ କରିଥିଲେ, ଶାରୀରିକ ଶ୍ରମକୁ ଆପଣେଇଥିଲେ ଏବଂ ସେମାନଙ୍କ ଉଦାହରଣ ମାଧ୍ୟମରେ ଜନସାଧାରଣଙ୍କ ମଧ୍ୟରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଥିଲେ। ଗାନ୍ଧୀଜୀଙ୍କ ଆତ୍ମରୂପାନ୍ତରର ଆଦର୍ଶ କେବଳ ଘରୁ ବାହାରକୁ ଯିବା ନୁହେଁ, ବରଂ ନିଜ ଭିତରେ ମଗ୍ନ ହେବା। ଗାନ୍ଧୀବାଦୀମାନେ ଆତ୍ମନିର୍ଭରଶୀଳତାରେ ବିଶ୍ୱାସ କରୁଥିଲେ ଏବଂ ନିଜ ଚୟନର ଶକ୍ତି ଉପରେ ଗୁରୁତ୍ୱ ଦେଉଥିଲେ – ଭଲକୁ ବାଛିବା ଏବଂ ମନ୍ଦଠାରୁ ଦୂରେଇ ରହିବା ଥିଲା ସେମାନଙ୍କର କାମ୍ୟ। ଗାନ୍ଧୀଜୀଙ୍କ ପ୍ରଭାବରେ ଏହି ସମସ୍ତ ନାରୀମାନେ ସତ୍ୟାଗ୍ରାହୀ ହେଲେ, ସେମାନେ କେବଳ ସ୍ୱାଧୀନତା ସଂଗ୍ରାମୀ ବା ସମାଜ ସେବୀ ନୁହେଁ ବରଂ ସତ୍ୟର ସନ୍ଧାନକାରୀ ଥିଲେ।

ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ରମାଦେବୀ ଚୌଧୁରୀ ଏବଂ ସରଳା ଦେବୀ ଉଚ୍ଚ ଶ୍ରେଣୀର ଶିକ୍ଷିତ ପରିବାରରୁ ଆସିଥିଲେ ଏବଂ ସେମାନଙ୍କୁ ପାରିବାରିକ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିନଥିଲା। ଅନ୍ୟପକ୍ଷରେ ଗରିବ ପରିବାରର ପଲ୍ଲୀବାଳିକା ଗୋଦାବରୀ ଦେବୀଙ୍କ ପାଇଁ ଘରୁ ବାହାରିବା ଅତ୍ୟନ୍ତ ଯନ୍ତ୍ରଣାଦାୟକ ଥିଲା:

> ମୁଁ ତ ପୂରା ଚୁପ୍ ଚାପ୍ ଗୋଟିଏ ଘରେ ବସି ରହିଲି। ସମସ୍ତଙ୍କର ଘୃଣା ଓ ସମାଲୋଚନାର ପାତ୍ର ହୋଇ ସୁଦ୍ଧା ମୋର ଅନ୍ତିମ ଲକ୍ଷ୍ୟ ମୁଁ ଛାଡ଼ିନଥାଏ। ଏଣେ କିପରି ପୁରୀ ଯିବି ତାହା ସ୍ଥିର କରିପାରୁନଥାଏ।

ମୋଟ ଉପରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲି। କିନ୍ତୁ ମୋତେ ଯିବାକୁ ହିଁ ହେବ। ଏଣେ ପରିବାର ତଥା ଗାଁର ପ୍ରାୟ ସମସ୍ତେ ମୋ ବିରୁଦ୍ଧରେ।[୪୬]

ଅପରପକ୍ଷେ ଜଣେ ଆଭିଜାତ୍ୟସମ୍ପନ୍ନ, ଶିକ୍ଷିତ ପରିବାରରେ ଜନ୍ମିତ ରମାଦେବୀ ଚୌଧୁରୀଙ୍କ ପ୍ରାରମ୍ଭିକ ଜୀବନ ତାଙ୍କୁ ସ୍ୱାଧୀନତା ଆନ୍ଦୋଳନ ମଧ୍ୟକୁ ଟାଣି ନେଇଥିଲା। ଜଣେ ଓକିଲଙ୍କ ଘରେ ଗୃହିଣୀ ହେଲେ ବି ସେ ବ୍ରିଟିଶ ଭାରତର ସାମାଜିକ ତଥା ରାଜନୈତିକ ଦୃଶ୍ୟର ତୀକ୍ଷ୍ଣ ପର୍ଯ୍ୟବେକ୍ଷକ ଥିଲେ। ତାଙ୍କ ଆତ୍ମଜୀବନୀ ସେହି ସମୟର ଏକ ଅନନ୍ୟ ଅଭିଲେଖ; ସେ ପ୍ରଥମ ବିଶ୍ୱଯୁଦ୍ଧର ସମୟକୁ ସ୍ମରଣ କରି ଲେଖିଛନ୍ତି:

ସେଠାରେ ଲୋକେ କିପରି ଖାଇବାକୁ, ପିନ୍ଧିବାକୁ ନ ପାଇ ଆକୁଳ ହେଉଛନ୍ତି ତାହା ଦେଖିଲି। ଗାଧୋଇସାରି ଲୁଗା ଶୁଖାଇଦେଇ ତାହା ଆଉ ତୋଳା ହେଉ ନାହିଁ – ମାଗିକରି ବା ଲୁଚେଇକରି ଲୋକେ ନେଉଯାଉଛନ୍ତି। ଦଳ ଦଳ ଲୋକ ପିଲାଛୁଆଙ୍କୁ ଖାଇବାକୁ ବସେଇ ଦେଉଛନ୍ତି। ମାମୁ ଏସବୁ ଦେଖି ତାଙ୍କ ଗୁମାସ୍ତାଙ୍କୁ ଆଦେଶ ଦେଲେ ଅମାରରେ ଯେତେ ଧାନ ଅଛି ତାକୁ କୁଟାଇଦେଇ ଚାଉଳ କରାଇ ଆଣ – ଯେତେଦିନ ପର୍ଯ୍ୟନ୍ତ ସେ ଚାଉଳ ଥିବ ସେତେ ଦିନ ପର୍ଯ୍ୟନ୍ତ ଏ ଗାଁର ଯେ ଖାଇବାକୁ ଆସିବ ଖାଇବ। ଚାଉଳ ନ ସରୁଣୁ କଦଳୀପତ୍ର ଓ ପଦ୍ମପତ୍ର ସେ ଅଞ୍ଚଳରୁ ସରିଗଲା। ପତ୍ର ବ୍ୟବସ୍ଥା ମାମୁ କଲେ ନାହିଁ, ଯେ ଯାହାର କଲେ। କିଏ ଡାଲାରେ ନିଏ, କିଏ କୁଲାରେ ନିଏ, କିଏ ଅବା ବାଉଁଶିଆରେ ଲୁଗାପାରି ଖାଇଲେ। ପକ୍କା ଅଗଣାରୁ ଟିକିଏ ଜାଗା ଧୋଇ ସଫାକରି ସେ ପକ୍କା ଉପରେ ଲୋକେ ଖାଇଲେ। ଆମେ ଯେତେ ଯାଇଥିଲୁ ଆମ ପିନ୍ଧିବା ଲୁଗା କେହି ଫେରାଇଆଣିଲୁ ନାହିଁ। ଏହା ପ୍ରଥମ ବିଶ୍ୱମହାଯୁଦ୍ଧ ଶେଷ ହେବା ପରର ଅବସ୍ଥା।[୪୭]

ରମାଦେବୀ ଚୌଧୁରୀ ଏବଂ ଅନ୍ନପୂର୍ଣ୍ଣା ମହାରଣାଙ୍କ ଆତ୍ମଜୀବନୀ ଭାରତ ତଥା ଓଡ଼ିଶାରେ ଜୀବନ ଏବଂ ସମାଜର ବାସ୍ତବ ପରିସ୍ଥିତିକୁ ନେଇ ସେମାନଙ୍କର ସଚେତନତା ଦର୍ଶାଏ। ଏହି ପରିପ୍ରେକ୍ଷୀରେ ଅନ୍ନପୂର୍ଣ୍ଣା ଦାସଙ୍କ ବ୍ୟକ୍ତିଗତ କାହାଣୀର ବିଶ୍ଳେଷଣ ପାଠକଙ୍କୁ ଦର୍ଶାଇଥାଏ ଯେ ତାଙ୍କର ମୂଳ ଚିନ୍ତାଧାରା ରାଜନୀତିଠାରୁ ଦୂରକୁ ବିସ୍ତାର କରିଥିଲା। ମନେହୁଏ ସେ ଯେମିତି ନିଜର ଅନ୍ତରତମ ପ୍ରଦେଶରେ ଐକ୍ୟ ଓ ସମନ୍ୱୟ ଖୋଜୁଥିଲେ:

ସୂର୍ଯ୍ୟାସ୍ତ ସମୟର ରଙ୍ଗୀନ ଆକାଶକୁ ଚାହିଁ ମୁଁ ଅନ୍ୟମନସ୍କ ହୋଇଯାଏ।

ସୂର୍ଯ୍ୟାସ୍ତକୁ ଉପଭୋଗ କରିବାର ଆନନ୍ଦ ଓ ବିଷାଦ ମୁଁ ଏକା ଅନୁଭବ କରେ। ସେଥିରେ କେହି ଭାଗୀଦାର ନ ଥିଲେ। କୁଆଁସରେ ସେ ସୁବିଧା କେଉଁଠୁ ମିଳିବ ଖୋଜିଲି। ସାଳନ୍ଦୀ ନଦୀକୁ ଗାଧୋଇ ଯାଉଥିଲୁ। ଦେଖିଲି ନଈ କୂଳେ କୂଳେ କାଶତଣ୍ଡୀ ବଣ, ଥାନା ପାଖରେ ମାଟିର ଉଚ୍ଚ ଉଚ୍ଚ ରାସ୍ତା ଲମ୍ବିଥାଏ। ଧୋବ ଧାଉଳିଆ ବାବୁମାନେ ଅଳ୍ପ କେତେଜଣ ସେଠି ବୁଲିବାକୁ ଆସନ୍ତି। ସେତେବେଳେ ନୂଆ ବଜାରରେ ଅଳ୍ପ କେତୋଟି ଦୋକାନ। ପୋଷ୍ଟ ଅଫିସ୍ ଡାକ୍ତରଖାନା ସେଇ ପଟେ। ମୁଁ ପ୍ରତିଦିନ ନଈକୂଳକୁ ଯାଇ ଏକା ଠିଆ ହୋଇ ସୂର୍ଯ୍ୟାସ୍ତ ଦେଖି ଅନ୍ଧାର ନଇଁ ଆସିଲେ ଫେରିଆସେ।[୪୮]

ତାଙ୍କ କ୍ଷେତ୍ରରେ ଗାନ୍ଧୀଜୀଙ୍କ ସତ୍ୟର ସନ୍ଧାନ କେବଳ ରାଜନୈତିକ ବା ସାମାଜିକ ନ ହୋଇ ଏକ ନୂତନ ଦିଗନ୍ତକୁ ଅତିକ୍ରମଣ କରିବା ଭଳି ମନେହୁଏ।

## (୨) ସମାଜ ସେବୀ

ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ଅନେକ ବ୍ୟକ୍ତି ସମାଜବାଦୀ ତଥା ବାମପନ୍ଥୀ ଦୃଷ୍ଟିକୋଣ ଏବଂ ସାମାଜିକ ପରିବର୍ତ୍ତନର ବାଟ ଆପଣେଇ ଥିଲେ। ସମାଜର ଦୁର୍ବଳ ବର୍ଗର ସମସ୍ୟା ଯେପରିକି ନାରୀ, କୃଷକ, ଶ୍ରମିକ, ଆଦିବାସୀମାନଙ୍କ ପାଇଁ ଏହି ସମାଜ ସେବୀମାନେ ନୂତନ ନୀତି ପ୍ରଣୟନ କରିବା ପାଇଁ ବିଭିନ୍ନ ସ୍ଥାନରେ ବିତର୍କ କରୁଥିଲେ। ନିରୁପମା ରଥ (୧୯୨୬-୨୦୧୧) ଜଣେ ସ୍ତ୍ରୀରୋଗ ବିଶେଷଜ୍ଞ ଥିଲେ, ସେ ପଢ଼ିବା ବେଳୁ ବିଭିନ୍ନ ଆନ୍ଦୋଳନରେ ଭାଗ ନେଉଥିଲେ। "ଅଲିଭା ସ୍ମୃତି ଅଭୁଲା ଅନୁଭୂତି" ଶୀର୍ଷକ ତାଙ୍କର ସ୍ମୃତିଲିପି ସାମାଜିକ ଆନ୍ଦୋଳନ ତଥା ବିକାଶମୂଳକ ଯୋଜନାରେ ତାଙ୍କର ଯୋଗଦାନ ଏବଂ ପ୍ରତ୍ୟୟକୁ ସୂଚିତ କରେ। ସେ କୁହନ୍ତି:

ପିଲାଦିନରୁ ମୋର ପାରିପାର୍ଶ୍ୱିକ ଅବସ୍ଥା - ଗରିବ ନିରନ୍ନ ମଣିଷର ଆର୍ତ୍ତନାଦ, କ୍ଷୁଧାର ଅନଳ, ମୋର ଉଷ୍ମ ରକ୍ତକୁ କରିଛି ଆଗ୍ନେୟଗିରିରୁ ପ୍ରବାହିତ ଲାର୍ଭା ପରି ଉତ୍ତପ୍ତ। ସେହି ଉତ୍ତାପରେ ମୋର ଦେହ ଓ ମନର ମେସିନାରୀ, ଆସ୍ତେ ମୋର ଅଜାଣତରେ ଚାଳିତ ହୋଇ ସୃଷ୍ଟି କରିଛି ମୋ ଭିତରେ ସାମାଜିକ ଅନ୍ୟାୟ, କଷଣ, ଶୋଷଣ ବିରୁଦ୍ଧରେ ଅଗ୍ନି - ଆନ୍ଦୋଳନାତ୍ମକ ମନୋଭାବ। ପରିଣତିରେ ବିଭିନ୍ନ ପ୍ରକାରର ଜନଆନ୍ଦୋଳନ, ଛାତ୍ରୀ ମହିଳା ଆନ୍ଦୋଳନ, ନିପୀଡ଼ିତ ନିଷ୍ପେଷିତ ଅତ୍ୟାଚରିତ ନିରକ୍ଷର ଜନଗଣଙ୍କର ଆନ୍ଦୋଳନ ମଧ୍ୟକୁ ଟାଣି ହୋଇଗଲି।[୪୯]

ସୁମନୀ ଝୋଡ଼ିଆଙ୍କ ମୌଖିକ କାହାଣୀ ଆଦିବାସୀମାନଙ୍କ କଠିନ ସଂଘର୍ଷକୁ ସାମନାକୁ ଆଣିଥାଏ, ଯେଉଁମାନେ ଓଡ଼ିଶାର ଜନସଂଖ୍ୟାର ପ୍ରାୟ ତିରିଶ ପ୍ରତିଶତ ଅଟନ୍ତି। ସ୍ୱାଧୀନତାର ପଞ୍ଚସ୍ତରୀ ବର୍ଷ ବିତିଯିବା ପରେ ମଧ୍ୟ ଆଦିବାସୀମାନଙ୍କ ମଧ୍ୟରେ ଦାରିଦ୍ର୍ୟ ଓ ନିରକ୍ଷରତାର ହାର ଅଧିକ। ତାଙ୍କ ସମ୍ପ୍ରଦାୟର ଅଧିକାର ପାଇଁ ସୁମନୀ ଝୋଡ଼ିଆଙ୍କ କଠିନ ସଂଘର୍ଷ "ମୁଇଁ ସୁମନୀ କହୁଚେ"ରେ ଅଭିବ୍ୟକ୍ତି ପାଇଛି। ନିମ୍ନରେ ଜଣେ ସମାଜ ସେବୀ ଭାବେ ତାଙ୍କ ଜୀବନର ଏକ ଝଲକ୍ ଦିଆଯାଇଛି:

> ସେତେବେଳକୁ ଆମେ ଚାରି ହଜାର ଖଣ୍ଡେ ମହିଳା ସରଗିଗୁଡ଼ା ଗାଁରେ ଏକଜୁଟ୍ ହେଲୁ। ନିଜ ପାଇଁ ମାଣ୍ଡିଆ ଚୁନା ଧରିକରି ଟିକିରି ଥାନାରେ ପହଞ୍ଚିଲୁ। ଟିକରି ଥାନା ଥର୍ ହରି ଗଲା। ଗାଁରୁ ଟିକ୍ ରି ଥାନା ପର୍ ଜନ୍ ତ ଆମେ ଯାଇ ରାଲି ଭଳି କଲୁ। "କାହାର ଭୁଲ୍, କାହାର ଠିକ୍ କାହିଁକି ଜଣାପଡୁନି, ଝିଅପିଲା କାହିଁକି ଗଣ୍ଡଗୋଳ କର୍ ବ ?" ଆମେ କହିଲୁ, ଦେଖ, ସେ ଲୋକକୁ ଯଦି କେସ୍ ନ କରୁଚ, ଜେଲ୍ ନ କରୁଚ, ତେବେ ଟିକ୍ ରି ଥାନା ରହିବ ନାଇଁ, ଭାଙ୍ଗି ଓପାଡ଼ି ପକାଇବୁ ବୋଲି ଆମେ ସବୁ ମା ମାନେ କହିଲୁ।[୫୦]

ସୁମନୀଙ୍କ ସଂଗ୍ରାମ ଏକ ଯନ୍ତ୍ରଣାପୂର୍ଣ୍ଣ ସ୍ମାରକ ଅଟେ ଯେ ନ୍ୟାୟ ପାଇଁ ସଂଗ୍ରାମର ଯେଉଁ ନାଟିକାରେ ସ୍ୱାଧୀନତା ପୂର୍ବରୁ ଗାନ୍ଧୀବାଦୀ ନାରୀମାନେ ନିୟୋଜିତ ହୋଇଥିଲେ ତାହା ବର୍ତ୍ତମାନ ଆଦିବାସୀ ଜଗତକୁ ସ୍ଥାନାନ୍ତରିତ ହୋଇଛି।

## (୩) ଲେଖିକା

ଫକୀରମୋହନ ସେନାପତିଙ୍କ ପରି ସୀତାଦେବୀ ଖାଡ଼ଙ୍ଗା ମଧ୍ୟ ଲେଖିକାମାନଙ୍କ ମଧ୍ୟରେ ଜଣେ ଆଦି ପ୍ରବର୍ତ୍ତକ ଥିଲେ। ସେ କେବଳ ନାଟକ ଲେଖୁନଥିଲେ, ସେସବୁକୁ ନିଜସ୍ୱ ନାଟକ ଦଳ ଦ୍ୱାରା ଅଭିନୀତ ମଧ୍ୟ କରାଉଥିଲେ। ସୀତାଦେବୀ "ମୋର ଜୀବନ ସ୍ମୃତି"ର ଆରମ୍ଭରେ ନିଜ ଅନୁଭୂତି ମନେ ପକାଇ ଲେଖିଛନ୍ତି:

> ମୋର ଶୈଶବଟା କିମିତି ସୁନ୍ଦର ହୋଇଥିବ କହିପାରୁନାହିଁ, କିନ୍ତୁ ବାଲ୍ୟକାଳର ଅନେକ କିଛି କଥା ସ୍ମରଣ ପଥରେ ରହିଛି। ସେ କାଳରେ ମୁଁ ଯାହା ଅନୁଭବ କରିଥିଲି, ସେ ଅନୁଭୂତି ନେଇ ଜୀବନୀ ଲେଖିବା ନିମନ୍ତେ ମୋର କୌଣସି ସମ୍ବଳ ନାହିଁ। ସେଇପରି ନାମହୀନ, ଜୀବନହୀନ ଭାବରେ ଜୀବନର ଦିନ ଶେଷ ହୋଇ ଯାଇଥାନ୍ତା; କିନ୍ତୁ କେତେବେଳେ ପବନରେ ଉଡ଼ିଆସି ଅଶ୍ୱତଥ୍ ଗଛର ମଞ୍ଜିଟା ଘରର

ଛାତ ସନ୍ଧିରେ ପଡ଼ି ଗଛ ହୋଇ ଦେଖାଗଲା । ଘର ଛାତ ଝାଞ୍ଜରା ହୋଇ ଶହେ ଠାରେ ଫାଟିଫୁଟି ଗଲାଣି, ସେ ଗଛଟାର କିଛି କ୍ଷତି ହେବାକୁ ନାହିଁ । ସେ ପାଣି ପବନ ପାଇ ଧୀର ମନ୍ଥର ଗତିରେ ବଢ଼ିଚାଲିଛି । ଛାତରୁ କେତେ ରସ କିମିତି କରି ସେ ସଂଗ୍ରହ କରିପାରୁଛି, ତାକୁ ଯେ ସୃଷ୍ଟି କରିଛି, ସେ କଥା ସେ ହିଁ ଜାଣେ ।

ସୃଷ୍ଟିକର୍ତ୍ତା କେଉଁଠୁ କିମିତି ସୁଯୋଗ ପାଇ ମୋ ହୃଦୟ ମରୁଭୂମିରେ ମୁଠାଏ ଜ୍ଞାନବୀଜ ଫିଙ୍ଗିଦେଲେ ସେକଥା କିଏ ଜାଣେ ! ପଥର ଛାତ ଉପରେ ଗଛ ଦେଖି ମୁଁ ପ୍ରଥମେ ଅବାକ୍ ହୋଇ ବାକ୍ୟ ଗଡ଼ି ଗଲି ।[୫୧]

ସୀତାଦେବୀଙ୍କ ପାଇଁ ଲେଖିବା ଏକ ସାଧନାରେ ପରିଣତ ହେଲା ଯାହା ତାଙ୍କ ସୃଜନଶୀଳ ସତ୍ତାକୁ ପରିପୂର୍ଣ୍ଣ କଲା; ସେ ନିଜର ଉତ୍ସାହକୁ ଏହି ଭାବେ ସ୍ପଷ୍ଟ କରିଛନ୍ତି:

କେତେ ଉତ୍ସାହରେ ନାଟକ ଲେଖା ଚାଲିଥିଲା ! ରାତି ପାହାନ୍ତି ପର୍ଯ୍ୟନ୍ତ ନାଟକ ଶେଷ କରିବାରେ ଲାଗିଥାଏ । ଅଭିନେତାମାନେ ସେ ଲେଖାକୁ ପଢ଼ି କେଉଁଠି କଅଣ କର୍ତ୍ତନ ବର୍ଦ୍ଧନ କରିବାକୁ ଥିଲେ ଆଲୋଚନା କରାହୁଏ । ପର ଦିନକୁ ପୁଣି ନୂତନ ଖାତାରେ ନବୀନ ଭାବ ଭାଷା ଦେଇ ଦୁଇ ତିନି ଦିନ ଭିତରେ ଗୋଟାଏ ଗୋଟାଏ ନାଟକ ନବୀନ ଆକାରରେ ଗଢ଼ିଦିଏ । ନିଜର ସୃଷ୍ଟିରେ ନିଜେ ଏତେ ଆନନ୍ଦ ଅନୁଭବ କରେ ଯେ ସେ ଭାବ ଅର୍ନିବଚନୀୟ ହୋଇ ଉଠେ । ପରମ ପିତା ପରମେଶ୍ୱରଙ୍କ ପଦତଳେ ଲୋଟିଯାଏ । ଲେଖିବାକୁ ପ୍ରୟାସ କରୁ କରୁ ମନ ପ୍ରାଣ ପୁଲକି ଉଠେ ।[୫୨]

ଅପର୍ଣ୍ଣା ଦେବୀ (୧୮୯୮-୧୯୬୩) ସୀତାଦେବୀଙ୍କ ସମସାମୟିକ ତଥା ଆଦ୍ୟ ଓଡ଼ିଆ ନାରୀ କବିମାନଙ୍କ ମଧ୍ୟରୁ ଅନ୍ୟତମ । ସେ ନିଜେ କବିତା ଲେଖିବା ଆରମ୍ଭ କରିବା ପୂର୍ବରୁ ପଢ଼ିଥିବା ପ୍ରିୟ କାବ୍ୟକୁ ଅନୁବାଦ କରିବା ଆରମ୍ଭ କରିଥିଲେ, ତଥାପି ତାଙ୍କ ପକ୍ଷରେ ସ୍ୱୀକୃତି ପାଇବା କଷ୍ଟସାଧ୍ୟ ଥିଲା । ସେ ଟିପ୍ପଣୀ କରିଛନ୍ତି:

"ଇନ୍ଦୁମତୀ" ପ୍ରକାଶ ପରେ ବହୁତ ସମାଲୋଚନା ଚାଲିବାରୁ ଲେଖା ଲେଖି ବନ୍ଦ କରିଦେଲି । କିନ୍ତୁ ମନକୁ ମନ ଭାବିଲି ମିଥ୍ୟା ଭୟରେ ସତ୍ୟକୁ ଛାଡ଼ିଲେ ଲୋକରଟନା ଅଧିକ ବଢ଼ିବ; କିନ୍ତୁ ସତ୍ୟକୁ ଧରିଲେ ସେ ନିଶ୍ଚେ ଦିନେ ଜଣାପଡ଼ିବ । ପୁଣି ଲେଖା ଚାଲିଲା ।[୫୩]

ଏହି ଲେଖିକାମାନେ ଲାଳନପାଳନ ହେଉଥିବା ପରିବେଶ ଯେତେ ଭିନ୍ନ ହେଉନା କାହିଁକି, ନିଜକୁ ଲେଖିକା ଭାବରେ ପ୍ରତିଷ୍ଠିତ କରିପାରିଥିବା ଏହି ନାରୀମାନଙ୍କ ମଧ୍ୟରେ ପିଲାଦିନରୁ ଲେଖା ମାଧ୍ୟମରେ ନିଜକୁ ପ୍ରକାଶ କରିବାର ସ୍ୱାଭାବିକ ଇଚ୍ଛା ଥିଲା। ସେମାନେ ଆତ୍ମଜୀବନୀକାର ଭାବେ ନିଜ ଭିତରେ ସୃଜନଶୀଳ ଆତ୍ମାର ଅଭିବୃଦ୍ଧିକୁ ମନେ ପକାଇଥିବାର ପରିଦୃଷ୍ଟ ହୁଏ। ପ୍ରତିଭା ଶତପଥୀ ତାଙ୍କ ସ୍ମୃତିଲିପି "ଶୈଶବରୁ ସଂସାର"ରେ ନିଜ କବିତ୍ୱ ସତ୍ତାର ଅଭିବୃଦ୍ଧିକୁ ସ୍ମରଣ କରିଛନ୍ତି। ପ୍ରତିଯୋଗିତାପୂର୍ଣ୍ଣ ବଜାରରେ ସଫଳତା ହାସଲ କରିବା ପାଇଁ ଗୀତା ହୋତା "ଅମୃତାୟନ" ସାହିତ୍ୟ ପତ୍ରିକାର ସମ୍ପାଦକ ଭାବରେ ନେଇଥିବା ପ୍ରଗତିଶୀଳ ପଦକ୍ଷେପଗୁଡ଼ିକ "ସବୁ ସ୍ମୃତି ମଧୁର"ରେ ଲିପିବଦ୍ଧ କରିଛନ୍ତି:

> ଗୋଟିଏ ବିଜ୍ଞାପନ ଆଣିବା ପାଇଁ ଅତି କମ୍‌ରେ ଚାରି ପାଞ୍ଚଥର ଦୌଡ଼ିବାକୁ ହୁଏ ଏବଂ ଟଙ୍କା ଆଣିବା ପାଇଁ ଆଉ ଦୁଇତିନି ଥର। ଫଳରେ ହଜାରେ ଟଙ୍କା ମୂଲ୍ୟର ବିଜ୍ଞାପନରୁ ଆମେ ପ୍ରକୃତରେ ସାତ ଶହ ଟଙ୍କା ପାଇଥାଉ। ବେଳେ ବେଳେ ବୋଝ ଉପରେ ନଳିତା ବିଡ଼ା ପରି ଏହା ଉପରେ କେବେ କେମିତି କାର୍ଯ୍ୟ ସହିତ ସଂପୃକ୍ତ ଲୋକମାନଙ୍କୁ ମଧ୍ୟ ବିଭିନ୍ନ ପ୍ରକାରେ ସନ୍ତୁଷ୍ଟ କରିବାକୁ ହୁଏ। ସବୁଠାରୁ ବଡ଼ କଥା ହେଲା ଜାତୀୟ ସ୍ତରରେ ବିଜ୍ଞାପନ ବ୍ୟବସାୟ ସମ୍ମାନିତ, କିନ୍ତୁ ଓଡ଼ିଶାରେ ତାହା ଅବଶିଷ୍ଟ ସମ୍ମାନବୋଧକୁ ମଧ୍ୟ ନଷ୍ଟ କରିଦିଏ।[୫୪]

ସେହିପରି ପୀତାମ୍ବରୀ ଦେବୀ ନିଜର ଭିଣୋଇ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ଓଡ଼ିଆ-ବଙ୍ଗଳା-ହିନ୍ଦୀ-ଇଂରାଜୀ ଶବ୍ଦରେ ସମୃଦ୍ଧ ସାତ ଖଣ୍ଡ ବିଶିଷ୍ଟ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"[୫୫] ସଂକଳନ କରିବାରେ ସାହାଯ୍ୟ କରିଥିଲେ। ସେ ଜଣେ ବାଲ୍ୟବିଧବା ଭାବରେ ନିଜ ଜୀବନ ଏବଂ ନିଜର ପ୍ରସିଦ୍ଧ ଭିଣୋଇଙ୍କ ସହିତ ସାରସ୍ୱତ ସହଯୋଗ "ଦୁଃଖ କହିବି ନା ସୁଖ କହିବି"ରେ ବର୍ଣ୍ଣନା କରିଛନ୍ତି।

## (୪) କର୍ମଜୀବି

ସ୍ୱାଧୀନତା ଆନ୍ଦୋଳନ ସମୟରେ ଯେଉଁ ମହିଳାମାନେ ସର୍ବସାଧାରଣ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ, ସେମାନେ ପ୍ରାୟତଃ ତ୍ୟାଗ, ବଳିଦାନ ଏବଂ ନିସ୍ୱାର୍ଥପର ସେବାର ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ। ନାରୀମାନେ ବେତନପ୍ରାପ୍ତ ଚାକିରି, ପରିବାର ପାଇଁ ରୋଜଗାର କରିବାର ଧାରଣାକୁ ସେ ପର୍ଯ୍ୟନ୍ତ ଉତ୍ସାହିତ କରାଯାଉନଥିଲା। ନାରୀମାନଙ୍କର ଆର୍ଥିକ ସ୍ୱାଧୀନତା ପରିବାରରେ ଶକ୍ତି ସମୀକରଣକୁ ବିଭକ୍ତ କରିବାର ସମ୍ଭାବନା ଥିଲା; ଏହା ମଧ୍ୟ ନାରୀମାନଙ୍କୁ ପ୍ରତିଯୋଗୀ ଭାବରେ ପୁରୁଷଙ୍କ ବିରୁଦ୍ଧରେ ଛିଡ଼ାକରାଇବାର

ସ୍ଥିତି ସୃଷ୍ଟି କରୁଥିଲା । ତେଣୁ କର୍ମସ୍ଥାନ ପୁରୁଷପ୍ରଧାନ ରହିଲା । ସାକ୍ଷର ନାରୀମାନେ ନିଜ ପିଲାମାନଙ୍କୁ ପଢ଼ାରେ ସାହାଯ୍ୟ କରି ଘରୋଇ ଶିକ୍ଷକମାନଙ୍କ ଭୂମିକା ପୂରଣ କରୁଥିଲେ ଏବଂ ଏହା ବାହାରେ ପ୍ରାୟ ଅନ୍ୟ କୌଣସି ଉଚ୍ଚାଭିଳାଷ ପୋଷଣ କରୁନଥିଲେ । ପରିବାରର ଆର୍ଥିକ ଦାୟିତ୍ୱ ପୁରୁଷମାନଙ୍କ କାନ୍ଧରେ ରହିଥିଲା । ଓଡ଼ିଶାର କର୍ମକ୍ଷେତ୍ରରେ ଅଧିକାଂଶ ନାରୀ, ଯଦିଓ ସେମାନଙ୍କ ସଂଖ୍ୟା ନଗଣ୍ୟ ଥିଲା, ଖ୍ରୀଷ୍ଟିଆନ ଏବଂ ବଙ୍ଗାଳୀ ଥିଲେ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ପ୍ରଥମ ଓଡ଼ିଆ ହିନ୍ଦୁ ମହିଳା ଡାକ୍ତର ବୀଣା ଦେଈଙ୍କ ଜୀବନରେ ବୃତ୍ତି ଚୟନ ଏକ ପ୍ରମୁଖ ପରିଭାଷିତ ମୁହୂର୍ତ୍ତରେ ପରିଣତ ହୁଏ । ସେ ତାଙ୍କ ଆତ୍ମଜୀବନୀ "ଅକିଞ୍ଚନାର ଜୀବନ ସ୍ମୃତି"ରେ ଏକ ଉଚ୍ଚଶିକ୍ଷିତ ପରିବାରରୁ ଆସି ମଧ୍ୟ ପାଠ ପଢ଼ିବା କେତେ କଷ୍ଟସାଧ୍ୟ ଥିଲା, ତାହାର ଏକ ନିଛକ ବିବରଣୀ ପ୍ରଦାନ କରିଛନ୍ତି:

> ମୁଁ କନ୍ଦାକଟା କରିବାରୁ ବାପାଙ୍କ ପାଖକୁ ମାଆ ଚିଠି ଲେଖିଲା । ତଥାପି ମୋର ପାଠ ପଢ଼ିବାର କୌଣସି ବ୍ୟବସ୍ଥା ନ ହେବାରୁ ମୁଁ ନିରୁତ୍ସାହିତ ହୋଇ ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥିଲି । ଏ ଘଟଣା ମଧ୍ୟ ମାଆ ବାପାଙ୍କ ପାଖକୁ ଲେଖି ଜଣାଇଲା । ପାଠପଢ଼ାର ଝୁଙ୍କ୍ ଯୋଗୁଁ ମୁଁ ଖ୍ରୀଷ୍ଟିଆନ ହୋଇଯିବାକୁ ଚେଷ୍ଟା କଲି ।[୫୬]

ବୀଣା ଦେଈ ଆତ୍ମହତ୍ୟା କରିବେ ବୋଲି ଧମକ ଦେବାରୁ ତାଙ୍କୁ ଆନୁଷ୍ଠାନିକ ଶିକ୍ଷା ଦେବାର ଚେଷ୍ଟା କରାଯାଇଥିଲା । ପରେ ସେ ଡାକ୍ତରୀ ଶିକ୍ଷା ପ୍ରାପ୍ତ କରିଥିଲେ ଏବଂ ତାଙ୍କ ପିତାଙ୍କ ଭଳି ଡାକ୍ତରୀ ବୃତ୍ତି ଗ୍ରହଣ କରି ଦର୍ଶାଇଥିଲେ ଯେ ଝିଅମାନେ ମଧ୍ୟ ପାରିବାରିକ ପରମ୍ପରାକୁ ବଜାୟ ରଖିପାରିବେ, ଯେଉଁ ସମ୍ମାନ ପୂର୍ବରୁ କେବଳ ପରିବାରର ପୁଅମାନଙ୍କ ପାଇଁ ସଂରକ୍ଷିତ ଥିଲା । ନିମ୍ନୋକ୍ତ ଉଦ୍ଧୃତାଂଶଟି ପାଠକମାନଙ୍କୁ ଚେତାଇଥାଏ ଯେ ଚମ୍ପାରଣର ଡଫେରିନ୍ ହସ୍ପିଟାଲରେ ଡାକ୍ତର ଭାବରେ ନିଜ ପ୍ରଥମ ଚାକିରିକୁ ସେ କେତେ ଗମ୍ଭୀରତାର ସହ ନେଉଥିଲେ:

> ରାତିରେ ମୁଁ ଘର ଭିତରେ ନ ଶୋଇ ବାରଣ୍ଡାରେ ଶୁଏ, କାରଣ ମୁଁ ଭାବେ ରାତିରେ ଏମର୍ଜେନ୍ସି କେସ୍ ଆସିଲେ ନର୍ସ ଆସି ମୋତେ ଡାକିଲେ କାଳେ ମୁଁ ଶୁଣିପାରିବି ନାହିଁ, ବିଳମ୍ବ ହୋଇଯିବ, ମୁଁ ଶୀଘ୍ର ଯାଇପାରିବି ନାହିଁ । ଏପରିକି ମୁଁ ରାତିରେ ନାଇଟ୍ ଡ୍ରେସ୍ ପିନ୍ଧି ଶୁଏ ନାହିଁ, କାରଣ ଲୁଗା ବଦଳାଇ ଯାଉ ଯାଉ କାଳେ ଡେରି ହେଇଯିବ ।[୫୭]

ରୋଜଗାର ପାଇଁ ଏବଂ ନିଜ ପ୍ରତିଭା ଓ ପରିଶ୍ରମ ମାଧ୍ୟମରେ କିଛି ହାସଲ କରିବାକୁ

ନାରୀମାନେ ଘରୁ ବାହାରକୁ ଯାଉଥିଲେ ମଧ୍ଯ ସେତେବେଳେ ତାହା ପସନ୍ଦ କରାଯାଉନଥିଲା। ଯଦିଓ ଏହି ପରିସ୍ଥିତି ବଦଳି ଯାଇଛି ଏବଂ ମହିଳାମାନଙ୍କ ପାଇଁ ଚାକିରି କ୍ଷେତ୍ରରେ ସୁଯୋଗ ବ୍ୟାପକ, ଏହା ଦ୍ୱାରା ଅନ୍ୟାନ୍ୟ ଜଟିଳତା ଦେଖାଦେଇଛି। ଜଣେ ପେସାଦାର ନାରୀ ସମ୍ମୁଖୀନ ହେଉଥିବା ଅସୁବିଧା ଏବଂ ଜଟିଳ ବୁଝାମଣାକୁ ଅନେକ ନିଜ ସ୍ମୃତିଚାରଣରେ ସ୍ମରଣୀୟ ଭାବରେ ଉପସ୍ଥାପନ କରିଛନ୍ତି। ଦରମା ପ୍ରାପ୍ତ ଚାକିରି ଚୟନ କରି ପ୍ରତିଭା ଶତପଥୀ ସ୍ୱୀକାର କରିଛନ୍ତି ଯେ ସେ ନିଜର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିପାରିଛନ୍ତି, ଯାହା ତାଙ୍କୁ ସୃଜନଶୀଳ କାର୍ଯ୍ୟରେ ଅଧିକ ସମୟ ଦେବାରେ ସାହାଯ୍ୟ କରିଛି। ତାଙ୍କ କ୍ଷେତ୍ରରେ, "ଜଣଙ୍କର ରୋଜଗାର କରିବା ଶେଷ କଥା ନୁହେଁ, କିନ୍ତୁ ଏକ ସୁରକ୍ଷିତ ଆଭ୍ୟନ୍ତରୀଣ ସ୍ୱାଧୀନତା ହାସଲ କରିବାର ଏହା ହେଉଛି ଏକମାତ୍ର ଉପାୟ।"[୫୮] ପ୍ରତିଭା ରାୟଙ୍କ ଚାକିରି ପ୍ରତି ତାଙ୍କ ସ୍ୱାମୀଙ୍କ ବିଦ୍ୱେଷ ଏବଂ ପାରିବାରିକ ଦାୟିତ୍ୱ ସହିତ ନିଜ କାର୍ଯ୍ୟର ସନ୍ତୁଳନ ରକ୍ଷା କରିବା ବେଳେ ସେ କେମିତି ଧନ୍ଦି ହେଇଯାଉଥିଲେ ତାହା ନିଜ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି।

## (୫) ସ୍ମୃତିର କାରିଗର

ଏଠାରେ ଆଲୋଚିତ ହୋଇଥିବା କେତେକ ଆତ୍ମଜୀବନୀକାର ନିଜ ସମ୍ପର୍କରେ ଆସିଥିବା ବହୁ ବ୍ୟକ୍ତି ଏବଂ ଅନୁଭୂତି ବିଷୟରେ ଲେଖିଛନ୍ତି ଯାହା ସେମାନଙ୍କ ଚେତନାରେ ଗଭୀର ପ୍ରଭାବ ପକାଇଥିବା ପରି ମନେହୁଏ। ନିକଟରୁ ନିରୀକ୍ଷଣ କଲେ ଜଣାଯାଏ ଯେ ସେମାନେ ଅନ୍ୟ ବ୍ୟକ୍ତି ଏବଂ ସମୟର ସ୍ମୃତିକୁ ବର୍ଣ୍ଣନା କଲାବେଳେ ପ୍ରକୃତରେ ନିଜ ବିଷୟରେ ହିଁ ଲେଖିବାରେ ନିୟୋଜିତ ହୋଇଛନ୍ତି। ସେମାନେ ନିଜ ଅନ୍ତରରେ ଅନ୍ୟମାନଙ୍କ ବ୍ୟକ୍ତିତ୍ୱର ଛାପଗୁଡ଼ିକୁ ଆବିଷ୍କାର କରିଛନ୍ତି। ସେମାନଙ୍କ ପ୍ରିୟଜନଙ୍କ ସ୍ମୃତି ସେମାନଙ୍କ ଜୀବନରେ ଏକ ଆଲୋକର ଉତ୍ସ ଭାବରେ କାର୍ଯ୍ୟ କରିଛି, ସେମାନେ ସେମାନଙ୍କର ପୂର୍ବଜଙ୍କ ଉପରେ ପଡ଼ିଥିବା ଧୂଳିର ଆସ୍ତରଣକୁ ସଫା କରି ସେମାନଙ୍କୁ ଜୀବନ୍ତ କରି ଗଢ଼ି ତୋଳିଛନ୍ତି।

ଦୁର୍ଗାବତୀ ତ୍ରିପାଠୀ ତାଙ୍କ ଶାଶୁଙ୍କ ଜୀବନକୁ ବର୍ଣ୍ଣନା କରିବା ପାଇଁ ଆତ୍ମଜୀବନୀ ଲେଖା ଶୈଳୀକୁ ଆପଣାନ୍ତି, ଯାହା ତାଙ୍କ ସ୍ମୃତିକଥା "ସୁନେଲି ସ୍ମୃତିର ସୁରଭି"ରେ ଦେଖିବାକୁ ମିଳେ। ଏହା ଜରଟ୍ରୁଡ଼ ଷ୍ଟେନଙ୍କ ଆତ୍ମଜୀବନୀ "ଦି ଅଟୋବାୟୋଗ୍ରାଫି ଅଫ୍ ଆଲିସ୍ ବି ଟୋକଲାସ୍"[୫୯] ସହିତ ତୁଳନା କରିବାକୁ ଆମନ୍ତ୍ରଣ କରେ। ଷ୍ଟେନ ପ୍ରକୃତରେ ପ୍ୟାରିସରେ ନିଜ ଜୀବନ ତଥା ପାବଲୋ ପିକାସୋ ଏବଂ ଅରନେଷ୍ଟ ହେମିଙ୍ଗୱେଙ୍କ ସହିତ ନିଜର ବନ୍ଧୁତା ବିଷୟରେ ଆଲିସଙ୍କ ଚରିତ୍ର ମାଧ୍ୟମରେ ଲେଖିଛନ୍ତି।

ଦୁର୍ଗାବତୀ ତାଙ୍କ ଶାଶୁଙ୍କ ଚିତ୍ର ଆଙ୍କିଲା ବେଳେ ଯେପରି ସେ ଅନ୍ୟ ପରିବାରର ସଦସ୍ୟଙ୍କ ସହିତ କରିଛନ୍ତି ସେପରି ନକରି, ତାଙ୍କ କାହାଣୀ କହିବା ପାଇଁ ଆତ୍ମଜୀବନୀ ଶୈଳୀ ନିୟୋଜିତ କରନ୍ତି, ଯେଉଁଥିରୁ ଅନୁମାନ କରାଯାଇପାରେ ଯେ ତାଙ୍କର ଶାଶୁଙ୍କ ଜୀବନ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା।

ସେହିଭଳି ପଡ଼ୋଶୀ ମାଉସୀ ଓ ନିଜ ମାଆଙ୍କ ମଧ୍ୟରେ ଥିବା ବନ୍ଧୁତାକୁ ମନେ ପକାଇ ରମା ଦେବୀ ତାଙ୍କ ସ୍ମୃତିଲିପି "ପର ପଦାର୍ଥ"ରେ ଏକ ହଜିଯାଇଥିବା ଦୁନିଆକୁ ପାଠକ ସାମନାରେ ଉନ୍ମୋଚନ କରିଛନ୍ତି:

> ଛଅବର୍ଷରୁ ଛୟାଅଶୀ ବର୍ଷ ପର୍ଯ୍ୟନ୍ତ ବନ୍ଧୁତ୍ୱ। ବିଧାତା ଛଡ଼ା ଆଉ କେହି ବ୍ୟାଘାତ କରିପାରିନଥିଲା। ପୁଣି ଠିକ୍ ଦୁଇବର୍ଷ ପରେ ବୋଉ ଯାଇ ତାର ଅପେକ୍ଷାରତ ଗଙ୍ଗାପାଣି ପାଖେ ପହଞ୍ଚି ଯାଇଥିବ ସେଇ ଆଶ୍ୱିନ ସନ୍ଧ୍ୟାରେ। ପୁଣି ଗଙ୍ଗାଯମୁନାର ଦୁଇଧାର ମିଶିଯାଇଥିବେ। ସ୍ୱର୍ଗରେ କି ମର୍ତ୍ତ୍ୟରେ ପୁଣି କେଉଁଠି କେଜାଣି ସୃଷ୍ଟି ହୋଇଥିବ ସଙ୍ଗମର ପୁଣ୍ୟତୀର୍ଥ ପ୍ରୟାଗ।[୬୦]

ନାରୀମାନଙ୍କ ମଧ୍ୟରେ ବନ୍ଧୁତ୍ୱର ଏପରି ବନ୍ଧନର ଆତ୍ମକାହାଣୀଗୁଡ଼ିକରେ କ୍ୱଚିତ୍ ସନ୍ଧାନ ମିଳେ, କାରଣ ପାରିବାରିକ ସମ୍ପର୍କ ପ୍ରାୟ ବ୍ୟକ୍ତିଙ୍କ ଜୀବନର କେନ୍ଦ୍ରରେ ରହିଥାଏ। ଦୁଇ ଭଉଣୀଙ୍କ ମଧ୍ୟରେ ଥିବା ବନ୍ଧନର ଏକ ସୁନ୍ଦର ବର୍ଣ୍ଣନା ସଂଘମିତ୍ରା ମିଶ୍ରଙ୍କ ସ୍ମୃତିରେ ମିଳିଥାଏ ଯେଉଁଥିରେ ସେ ତାଙ୍କ ବଡ଼ ଭଉଣୀଙ୍କର ଦୁଃଖମୟ ଜୀବନକୁ ପୁନଃର୍ନିର୍ମାଣ କରିଛନ୍ତି, ଯିଏକି ତାଙ୍କ ଚେତନାର ଏକ ବିଶାଳ ଅଂଶ। ସେ ମନ ଖୋଲି କହିଛନ୍ତି:

> ନାନୀ କହିଲେ ମୋ ପାଇଁ ଏକମାତ୍ର ଖୋଲା ଝର୍କା। ସେଠୁ କାହାର ଦୃଶ୍ୟ ଦେଖିହୁଏ ଯେ ଅତି ସନ୍ତର୍ପଣରେ। ନାନୀ ତ ସାଙ୍ଗ ନୁହେଁ ସେ ମାଆ ଭଳି। ମୋଠୁ ମାତ୍ର ପଚିଶ ବର୍ଷ ବଡ଼ ବୋଲି ଆଗରୁ କହିଛି। ନାନୀ ସନ୍ତାନହୀନା। ତେଣୁ ମୋତେ ସେ କେତେ ଭଲପାଏ, ତାହା ମୁଁ ଆଜିଯାଏଁ ବୁଝିପାରିନି ବା କେଉଁଦିନ ବୁଝିପାରିବି ନାହିଁ। ମୋ ପିଲାଦିନେ ସେ ଖଦିବୋର୍ଡ଼ରେ ଚକିରୀ କରିବ ବୋଲି ଗଲା, ମୁଁ ଖୁବ୍ ଦୁଃଖ କରିଥିଲି। ପାଠ ପଢେଇବା ବେଳେ ନନା ନିଶ୍ଚେ ରାଗିବେ। କିନ୍ତୁ ନାନୀ ପ୍ରତିଥର ଘରକୁ ଆସିଲା ବେଳେ ମୋ ଲାଗି ବହୁତ ଜିନିଷ ଆଣେ।[୬୧]

ଏହି ଅମ୍ବଲିପିଗୁଡ଼ିକ ପଢ଼ିଲେ ମନେ ହୁଏ ସ୍ମୃତିଗୁଡ଼ିକ ଯେମିତି ଜୀବନର ଗଠନମୂଳକ, ସ୍ଥାୟୀ ପ୍ରଭାବ ସହିତ ଜଡ଼ିତ। ତାଙ୍କ ସଂକ୍ଷିପ୍ତ ଅଥଚ ଭାବଉଦ୍ରେକକାରୀ ଆତ୍ମଲିପି "ସ୍ମୃତିର ସୁରଭି"ରେ ମନ୍ଦାକିନୀ ଦାସ ନିଜର ଅତି ପ୍ରିୟ ବ୍ୟକ୍ତିମାନଙ୍କର କଲମ-ଚିତ୍ର ଉପସ୍ଥାପିତ କରିଛନ୍ତି। ତାଙ୍କର ସ୍ମୃତି ପ୍ରକୃତରେ ଆତ୍ମଆବିଷ୍କାର ପାଇଁ ଉର୍ଦ୍ଦିଷ୍ଟ ଏକ ଯାତ୍ରା ହୋଇଯାଏ; ଯାହା ତାଙ୍କ ଅନ୍ତର୍ଯାତ୍ରାକୁ ପ୍ରକାଶ କରେ:

> ଗାଁ ଦାଣ୍ଡରେ ଦରି ବିଛଣା ପଡ଼େ। ସାଧୁ ମହାରାଜ ପ୍ରବଚନ ଦିଅନ୍ତି। ଆରମ୍ଭରୁ ଶେଷ ଯାଏ ମୁଁ ବସି ଶୁଣେ। ମହାମନ୍ତ୍ର କୀର୍ତ୍ତନ ଶୁଣେ। ଧୀରେ ଧୀରେ କ୍ରମେ କ୍ରମେ ତାହା ମୋ ମନକୁ ଗଭୀର ଭାବରେ ସ୍ପର୍ଶ କରିଥିଲା ଯାହାର ସତ୍ତା ମୋ ମାନସିକ ଜଗତକୁ ଆଲୋକରେ ଉଦ୍ଭାସିତ କରି ରଖିଛି। ମୁଁ ବି ସେତେବେଳେ ଜାଣିପାରିନଥିଲି। ବହୁତ କମ୍ ବୟସରେ ମୋ ବିବାହ ହୋଇଗଲା। ସେ ମଧ୍ୟ ଦୈବନିର୍ଦ୍ଦେଶ ବୋଲି ଧରି ନେବାକୁ ହେବ। ବିବାହ ବେଳେ ଝିଅକୁ ଦାନ ଯୌତୁକ ଦିଆଯାଏ। କିଏ କଣ ଦେଇଥିଲେ ସେ ସବୁ କଥା ମନେ ନାହିଁ କି ସେସବୁ ଆଉ ମୋ ପାଖରେ ନାହିଁ, କିନ୍ତୁ ଦଦାଙ୍କଠାରୁ ମୁଁ ଯେଉଁ ଦାନ ପାଇଛି ସେ ଦାନର ମୂଲ୍ୟାଙ୍କନ କରିବା ଧୃଷ୍ଟତା ହେବ।[୬୨]

"ମୋ ପିଲାଦିନ"ରେ ସ୍ନେହଲତା ମହାପାତ୍ରଙ୍କ ସ୍ମୃତି ଏପରି ଗମ୍ଭୀର ଜୀବନ ଅନୁଭୂତିଠୁଁ ଏକ ସତେଜ ଭିନ୍ନତା ପ୍ରଦାନ କରେ। ସ୍ମୃତି ଏଠି ଆତ୍ମଯଥାର୍ଥତା ଦେବାର ଉତ୍ପୀଡ଼କ ଆବଶ୍ୟକତାରୁ ମୁକ୍ତ; ଏଠି ଅତୀତକୁ ମନେପକାଇ ଆନନ୍ଦ ଲଭିବା ହିଁ ଯଥେଷ୍ଟ:

> ଯୋଉ ଦିନ ଫୁଲ ଚୋରି ପାଇଁ ମନ ହୁଏ, ମୁଁ ସାଙ୍ଗମାନଙ୍କୁ କହେ - ତମେମାନେ ଆଗରେ ଯାଅ, ମୋ ଦିହ ଭଲ ଲାଗୁନି, ମୁଁ ଆସ୍ତେ ଆସ୍ତେ ଯିବି। ସେମାନେ ଯାଇ ସାରିଲେ ମୁଁ ଅତି ସନ୍ତର୍ପଣରେ ଅନାଦିବାବୁଙ୍କ ବଗିଚରେ ପଶି ଅଣ୍ଟିରେ ଅଣ୍ଟିଏ ହରଗଉରା ଫୁଲ ତୋଳିପକାଏ। କେବେ ଧରାପଡ଼ିନି। ଧରାପଡ଼ିଥିଲେ ମୁହଁ ଦେଖେଇ ପାରିନଥାନ୍ତି। ଲୋକେ କହିଥାନ୍ତେ - ରାମ ମାଷ୍ଟ୍ରଙ୍କ ଝିଅ ଚୋରଣୀ! ପାଠ ଚୋରଣୀଠାରୁ ଏ ଅପବାଦ ବଳି ପଡ଼ିଥାନ୍ତା।[୬୩]

ଏପରି କୌତୁକପୂର୍ଣ୍ଣ ଘଟଣା ବହୁତ କମ୍ ଏବଂ ଅନେକ ନାରୀମାନଙ୍କ ପାଇଁ ବାସ୍ତବତା କଠିନ ଏବଂ ପକ୍ଷପାତପୂର୍ଣ୍ଣ ଥିଲା। ନାରୀମାନଙ୍କୁ ଯେଉଁ ଦୁଃସହ ଜୀବନ ବିତାଇବାକୁ ଠେଲିଦିଆଯାଉଥିଲା, ସେ ବିଷୟରେ ସୀତାଦେବୀ ଖାଡ଼ଙ୍ଗା କହିଛନ୍ତି:

ଏମାନଙ୍କର ପିତାମାତା ଯଦି ଏମାନଙ୍କ ପ୍ରତି ସଦୟ ହୋଇ ଶିକ୍ଷା ଦୀକ୍ଷା ଦେଇ ଉପଯୁକ୍ତ ପାତ୍ରରେ ଅର୍ପଣ କରିଥାନ୍ତେ, ସେମାନଙ୍କର ଜୀବନଯାତ୍ରା କି ସୁନ୍ଦର ହୋଇନଥାନ୍ତା। କେବଳ ନାମ ରଖିଥିଲେ ହୀରା, ମୁକ୍ତା। ବାସ୍ତବରେ ମାଟି ଟେଳାଠାରୁ ଆହୁରି ତୁଚ୍ଛ ପ୍ରାୟ ସେଗୁଡ଼ିକ ବଞ୍ଚି ରହିଥିଲେ।[୬୪]

କମ୍ ବୟସରୁ ଘରର ଦାୟିତ୍ୱ ବହନ କରିବା, ଶାଶୁ ଘରେ ରହିବା ଏବଂ ବଂଶକୁ ପୁତ୍ର ସନ୍ତାନ ଉତ୍ତରାଧିକାରୀ ପ୍ରଦାନ କରିବାର ଭାର ବହନ କରିବା - ଏସବୁ ଭିତରେ ନାରୀମାନଙ୍କ ପାଇଁ ମୁକ୍ତ ଚିନ୍ତାଧାରା କିମ୍ବା ବ୍ୟକ୍ତିଗତ ଇଚ୍ଛାର କୌଣସି ସୁଯୋଗ ନଥିଲା। ଦୈନନ୍ଦିନ ଜୀବନଯାପନ ବାଉଁଶରେ ବନ୍ଧା ଦଉଡ଼ି ଉପରେ ଚାଲିବା ପରି ଥିଲା। ପନ୍ଦର ବର୍ଷ ବୟସରେ ତାଙ୍କ ଶାଶୁ ଘରେ ପହଞ୍ଚିବା ପରେ ରମାଦେବୀ ଚୌଧୁରୀ ତାଙ୍କ ମାନସିକ ଅବସ୍ଥା ବିଷୟରେ ଲେଖିଛନ୍ତି:

ମୁଁ ଖୁବ୍ ସାବଧାନ ହୋଇ ଚଳେ ଯେପରି କୌଣସି କଥାରେ ଅସଣ୍ଟଣା ଦେଖାନଯିବ। ମାଆର କଥାକୁ ମନେରଖି ଭଲ ନ ଲାଗୁଥିବା ଜିନିଷକୁ ମଧ୍ୟ ଖୁସିରେ ଖାଇଲି। କାରଣ ବାହାଘର ଦିନ ସକାଳେ ମାଆ କହିଥିଲା - "ଶାଶୁଘରେ ଯାହା ଖାଇବାକୁ ଦେବେ ଖୁସି ହୋଇ ଖାଇବୁ।" ଏମିତି ପନ୍ଦର ଦିନ କଟିଲା। କଥାବାର୍ତ୍ତା କାହାରି ସାଙ୍ଗରେ ହେବାକୁ ନଥାଏ, ଚୁପ୍ ଚାପ୍ ବସିରହିଥାଏ। ମନେମନେ ଭାବୁଥାଏ ବ୍ୟାପାର ସହଜ ନୁହେଁ, ସେମାନଙ୍କୁ ଖୁସି କରିବାକୁ ହେଲେ ମୋର ବୋଲି କିଛି ରହିବ ନାହିଁ, ଏମାନଙ୍କୁ ସନ୍ତୁଷ୍ଟ କରିବା ହିଁ କାମ ହେବ। ଦିନ ପନ୍ଦରଟା ଭିତରେ ମୋର ବୟସ ଯେପରି ଅନେକ ବଢ଼ିଗଲା। ପିଲାବୁଦ୍ଧି କୁଆଡ଼େ ଛାଡ଼ିଗଲା। କାହାପାଇଁ କଣ କଲେ ସେ ଖୁସି ହେବ, ଏହା ହେଲା ମୋର ପ୍ରଧାନ ଚିନ୍ତା। ଖାଇବା, ପିନ୍ଧିବା ଆଦିରେ ସଉକ କୁଆଡ଼େ ଉଭେଇଗଲା ମୁଁ ଜାଣିପାରିଲି ନାହିଁ।[୬୫]

ଅନ୍ୟ ସ୍ଥାନରେ ଦୁର୍ଗାବତୀ ତ୍ରିପାଠୀଙ୍କ ଶାଶୁ ତାଙ୍କ ବୟସର ତିନି ଗୁଣା ପୁରୁଷ ସହିତ ବିବାହ ହେବା ସମୟରେ ଜଣେ ଝିଅ ଭାବରେ ମନେ ପକାଇଛନ୍ତି:

ବିଭାଘର ଦେଖିବାକୁ ଆସିଥିବା ଜଣେ ବଙ୍ଗାଳୁଣୀ ମାଉସୀ ମନ୍ତବ୍ୟ କଲେ - ଆହା! ଏତେ ସୁନ୍ଦର! ଦେବୀ ପ୍ରତିମା ପରି ଝିଅକୁ ବୁଢ଼ାବରରେ, ପୁଣି ମଫସଲରେ ? କେମିତି ଦେଲେ ଦିଦି, ମୁଁ ହେଲେ

ତଣ୍ଟିଚିପି ମାରି ଦେଇଥାଆନ୍ତି ସିନା, ଏମିତି ଦିଅନ୍ତି ନି।

ଖୁଡ଼ି କହିଥିଲା – ତା ଭାଗ୍ୟ! ପୁରୁଷପୁଅ କଣ ବୁଢ଼ା ହୁଏ? ଝିଅ ତ ଗୋଟାଏ ଛୁଆରେ ବୁଢ଼ୀ!

କଥାଟା ମୁଁ ଶୁଣିଥିଲି। କିଛି ପ୍ରତିକ୍ରିୟା କଣ ହୋଇଥିଲା ମୋ ମନରେ? କେଜାଣି ଜୀବନର ଗୋଟାଏ ଅଧ୍ୟାୟରେ ଏଇଠି ଅନ୍ତ ହୋଇଗଲା। ଝିଅ ଜୀବନର ଯବନିକା ପଡ଼ିଗଲା।[୬୬]

ଯେଉଁ ସମାଜରେ ଜଣେ ନାରୀ ଜୀବନର ନିଷ୍ପତ୍ତି ପରିବାରର ବୟସ୍କ ବ୍ୟକ୍ତିମାନେ ନେଉଥିଲେ, ଜାତି କିମ୍ବା ଲିଙ୍ଗ ଉପରେ ଆଧାରିତ ପ୍ରତିଷ୍ଠିତ ଧାରଣାକୁ ଅମାନ୍ୟ କରୁଥିବା ବ୍ୟକ୍ତି ସମାଜ ଦ୍ୱାରା ଅଗ୍ରହଣୀୟ ହେବାର ଆଶଙ୍କା ଥିଲା। ଅନ୍ନପୂର୍ଣ୍ଣା ଦାସ ତାଙ୍କ ଯୁକ୍ତିଯୁକ୍ତ ଦୃଷ୍ଟିକୋଣ ପ୍ରତି ଅନ୍ୟମାନଙ୍କର ବିରୋଧ ବିଷୟରେ ଲେଖିଛନ୍ତି:

ଉଚ୍ଚଜାତିର ପିଲାମାନେ ତାଙ୍କ ଜାତିରୁ ତଳ ଜାତିର ଗୁରୁଜନମାନଙ୍କୁ ପ୍ରଣାମ କରୁନଥିଲେ। ମୁଁ ଥରେ ଆମ ଗାଆଁର ରାଢ଼ୀଘର ବାଲ୍ୟବିଧବା ବୟସ୍କା ଓ ଆମଘରର ଅତି ଆପଣାର କୋଇଲି ନାନୀଙ୍କୁ ପ୍ରଣାମ କରିଥିଲି ତାଙ୍କ ଦେହରେ ମୋ ଗୋଡ଼ ବାଜିଯିବାରୁ। ପାଖରେ ଥିବା ଅନ୍ୟ ସ୍ତ୍ରୀଲୋକମାନେ ଏହା ଦେଖି କହିଲେ, "ଏଇଟା ଚଣ୍ଡୀଟାଏ। ଯାର ଜ୍ଞାନ ବୁଦ୍ଧି କିଛି ନାହିଁ।" ମୁଁ ତୁରନ୍ତ ଉତ୍ତର ଦେଇଥିଲି, "ତା ଦେହରେ ବି ଭଗବାନ ଅଛନ୍ତି। ସେ ମୋ ମାଆ ବୟସର ଗୁରୁଜନ। ତାକୁ ଜୁହାର ହେଲେ କ୍ଷତି କଅଣ?" ସମସ୍ତେ ହସିଲେ। ମୁଁ ବାପାଙ୍କୁ ଏ କଥା ଜଣାଇବାରୁ ସେ ମୋତେ ବୋଧ ଦେବାକୁ କହିଲେ, "ତୁ ଠିକ୍ କରିଛୁ।"[୬୭]

ପରମ୍ପରାର ଦାବି ଏବଂ ଓଡ଼ିଶାରେ ଘଟୁଥିବା ପରିବର୍ତ୍ତନର ଆହ୍ୱାନ ମଧ୍ୟରେ ଧନ୍ଦି ହୋଇଥିବା ପ୍ରଥମ ପିଢ଼ିର ନାରୀମାନେ ମହାତ୍ମା ଗାନ୍ଧୀଙ୍କ ସମର୍ଥନ ପାଇ ଘରୁ ବାହାରି ସାମାଜିକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ। ଆନୁଷ୍ଠାନିକ ଶିକ୍ଷାର ପ୍ରଚଳନ ଏବଂ ପ୍ରସାର ତଥା ବୃତ୍ତିଗତ କ୍ଷେତ୍ରରେ ସୁଯୋଗର ଉନ୍ମୋଚନ ଜୀବନଠୁଁ ନାରୀମାନଙ୍କର ଆଶାକୁ ବ୍ୟାପକ କରିଥିଲା – ଏହା ବୀଣା ଦେଈ, ରାଧା ଦେବୀ, ନିରୁପମା ରଥ, ପ୍ରତିଭା ରାୟ, ପ୍ରତିଭା ଶତପଥୀ, ସଂଘମିତ୍ରା ମିଶ୍ର ଆଦିଙ୍କ କ୍ଷେତ୍ରରେ ଦେଖିବାକୁ ମିଳିଥାଏ। ସେମାନଙ୍କର ବ୍ୟକ୍ତିଗତ କାହାଣୀଗୁଡ଼ିକ କର୍ମକ୍ଷେତ୍ରରେ ନିଜ ପାଇଁ ସ୍ଥାନ ସୃଷ୍ଟି କରିବାର ସେମାନଙ୍କର ଆନ୍ତରିକ ପ୍ରୟାସକୁ ଦର୍ଶାଏ, ଯାହା ଯୁଗ ଯୁଗ ଧରି ପୁରୁଷପ୍ରାଧାନ୍ୟ

ହୋଇ ରହିଥିଲା। ବୀଣା ଦେଇଙ୍କ କାହାଣୀକୁ ବିରୋଧୀଙ୍କ ଉପରେ ବିଜୟର ଦସ୍ତାବିଜ ଭାବରେ ପଢ଼ାଯାଇପାରେ; ସେହି ସମୟରେ ଜଣେ ଡାକ୍ତର ଭାବରେ ତାଙ୍କର ଗମ୍ଭୀରତା ପରିହାସକୁ ଭୟ କିମ୍ବା ଜଣେ ନାରୀ ଭାବରେ ନିଜର ଯୋଗ୍ୟତାକୁ ସର୍ବଦା ପ୍ରମାଣ କରିବାର ଆବଶ୍ୟକତାରୁ ଉତ୍ପନ୍ନ ଅସୁରକ୍ଷିତ ଭାବର ପରିଣାମ ହୋଇପାରେ।

ନାରୀମାନଙ୍କର ଘରକୋଣରୁ ବାହାରକୁ ପାଦ ଦେବା ଏକ କ୍ଲାନ୍ତିମୟ ପ୍ରକ୍ରିୟା ଥିଲା ଏବଂ ଏବେ ବି ରହିଛି। ତଥାପି ଗଞ୍ଜାମରେ ଏକ ନାଟକ ଦଳ ଗଢ଼ି ନାଟକ ଅଭିନୀତ କରେଇବା ପାଇଁ ସୀତାଦେବୀ ଖାଡ଼ଙ୍ଗାଙ୍କ ପ୍ରୟାସ ଜଣେ ଦୃଢ଼ମନା ନାରୀଙ୍କୁ ମିଳୁଥିବା ସ୍ୱାଧୀନତାକୁ ସୂଚାଇଥାଏ। ନାରୀମାନଙ୍କ ଦ୍ୱାରା କରାଯାଇଥିବା ଏପରି ଉଦ୍ୟମକୁ ବିରୋଧ କରାଯାଉଥିଲା, ଉପହାସ କରାଯାଉଥିଲା, ଘୃଣା କରାଯାଉଥିଲା; କିନ୍ତୁ ସେହି ସମୟରେ ସମାଜର ଏକ ବର୍ଗ ଦ୍ୱାରା ଏହାକୁ ପ୍ରଶଂସା ମଧ୍ୟ କରାଯାଉଥିଲା ଯାହା ନୂତନ, ପ୍ରଗତିଶୀଳ ଚିନ୍ତାଧାରା ଗ୍ରହଣ କରିବା ପାଇଁ ସମସ୍ତ ଚେଷ୍ଟା କରୁଥିଲା। ସୀତାଦେବୀ ପାଇଥିବା କରତାଳି ଏବଂ ପ୍ରଶଂସା ବିଷୟରେ ମନେ ପକାଇ ଲେଖିଛନ୍ତି:

> ନାଟକ ଅଭିନୟର ଶେଷଦିନ ଭଞ୍ଜନଗରର ସାହିତ୍ୟିକ ବୃନ୍ଦ ମୁଁ ଜଣେ କବି ବୋଲି ମୋତେ ବଡ଼ ସୁନ୍ଦର ସମ୍ବର୍ଦ୍ଧନା ସହିତ ଗୋଟିଏ ବନ୍ଧାଇ ଅଭିନନ୍ଦନ ପତ୍ର ଦେଇଥିଲେ। ସେ ସମ୍ବର୍ଦ୍ଧନାର ଉତ୍ତରରେ ମୁଁ ଯାହା କହିଥିଲି ମନେପଡୁନାହିଁ, କିନ୍ତୁ ସେଦିନ ରାତିର ସେ ସମ୍ବର୍ଦ୍ଧନା ସଭା ମନେପଡ଼ିଲେ ସ୍ୱର୍ଗ ରାଜ୍ୟର ସଭାରେ ଦିନକ ନିମନ୍ତେ ହେଉପଛେ ବସିଲା ପରି ମନେ ହେଉଛି। ଭଞ୍ଜନଗର ସାହିତ୍ୟିକମାନଙ୍କ ସମ୍ମୁଖରେ ନମ୍ର ହୃଦୟରେ ଅଶ୍ରୁପୂର୍ଣ୍ଣ ଆଖି ଖୋଲି ଚାହିଁ ରହିଥିଲା ପରି ମନେ ହେଉଛି।[୬୮]

ସ୍ୱାଧୀନତା ଆନ୍ଦୋଳନର ସାକ୍ଷୀ ହୋଇଥିବା କିମ୍ବା ସେଥିରେ ଅଂଶଗ୍ରହଣ କରିଥିବା ନାରୀମାନେ କେବଳ ସାର୍ବଜନୀନ ସ୍ଥାନ ବିଷୟରେ ସଚେତନ ନ ଥିଲେ, ସେମାନେ ବିଂଶ ଶତାବ୍ଦୀର ପ୍ରାରମ୍ଭିକ ଦଶକରେ ଦେଶବିଦେଶରେ ହେଉଥିବା ପରିବର୍ତ୍ତନ, ଘଟଣଅଘଟଣକୁ ନେଇ ଚିନ୍ତିତ ଥିଲେ। ରମାଦେବୀ ଚୌଧୁରୀ ଏବଂ ଅନ୍ନପୂର୍ଣ୍ଣା ମହାରଣାଙ୍କ ଆତ୍ମଜୀବନୀ ପାଠକମାନଙ୍କୁ ସାର୍ବଜନୀନ କ୍ଷେତ୍ରରେ ଘଟୁଥିବା ଘଟଣାଗୁଡ଼ିକର ସମ୍ବନ୍ଧରେ ପ୍ରତିକ୍ରିୟା ଏବଂ ପର୍ଯ୍ୟବେକ୍ଷଣ ପ୍ରଦାନ କରେ। ସୁମନୀ ଝୋଡ଼ିଆ ଏବଂ ନିରୁପମା ରଥଙ୍କ ଭଳି ନାରୀମାନେ ସେମାନଙ୍କ ଜୀବନକୁ ପ୍ରଭାବିତ କରୁଥିବା ପରିବର୍ତ୍ତନର ଅଂଶ ହୋଇଥିଲେ। ତଥାପି ଅନେକ କ୍ଷେତ୍ରରେ ସାମ୍ପ୍ରତିକ

ଆତ୍ମଜୀବନୀକାରମାନଙ୍କ ପାଖରେ ଚାରିପାଖର ବିଶ୍ୱକୁ ପୁନଃର୍ନିର୍ମାଣ କରିବା ପାଇଁ ସେମାନଙ୍କ ପୂର୍ବଜଙ୍କ ଆଗ୍ରହ ଏବଂ ସାମାଜିକ ପ୍ରତିବଦ୍ଧତାର ଅଭାବ ପରିଲକ୍ଷିତ ହୁଏ। ଏହି ଧାରାକୁ ନିୟମ ମାନି ଚଳିବା ଏବଂ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ କାର୍ଯ୍ୟ କରିବା ପରମ୍ପରାର ପ୍ରତ୍ୟାବର୍ତ୍ତନ ଓ ପୁନଃବିସ୍ତାର ଭାବରେ ବ୍ୟାଖ୍ୟା କରାଯାଇପାରେ।

## ଉପସଂହାର

ସାମାଜିକ ଇତିହାସର ବିକଳ୍ପ ରୂପ ଭାବରେ ଆତ୍ମଜୀବନୀର ମହତ୍ତ୍ୱ କମ୍ ନୁହେଁ। ଏହି ପରିପ୍ରେକ୍ଷୀରେ ଓଡ଼ିଆ ନାରୀମାନଙ୍କ ଆତ୍ମଜୀବନୀର ଐତିହାସିକ ମୂଲ୍ୟକୁ କଦାପି ଭୁଲିଯିବା ଉଚିତ୍ ନୁହେଁ। ପର୍ଯ୍ୟବେକ୍ଷଣର ତୀବ୍ର ଶକ୍ତି ସାହାଯ୍ୟରେ ସେମାନଙ୍କ ମଧ୍ୟରୁ କେତେକ ଆତ୍ମଜୀବନୀକାର ଅନେକ ଜଟିଳ ପରିସ୍ଥିତିକୁ ବର୍ଣ୍ଣନା କରିଛନ୍ତି ଯାହା ସାମାଜିକ-ସାଂସ୍କୃତିକ ଇତିହାସ ବିଷୟରେ ଅନେକ ସତ୍ୟ ପ୍ରକାଶ କରିଥାଏ। ସେମାନଙ୍କ ସମୟର ଦ୍ୱନ୍ଦ୍ୱ ଏବଂ ପ୍ରତିବାଦ ଏହି ଜୀବନ କାହାଣୀଗୁଡ଼ିକରେ ସର୍ବୋଚ୍ଚ ଅଭିବ୍ୟକ୍ତି ପାଇଛି; ଏକାଧିକ୍ରମେ ସାମାଜିକ ମୂଲ୍ୟବୋଧ ଏବଂ ସାମାଜିକ ଗଠନଗୁଡ଼ିକର ପରୀକ୍ଷଣ ଏହିସବୁ ବ୍ୟକ୍ତିଗତ କାହାଣୀରେ ଭରି ରହିଛି ଏବଂ ସମାଜର ଲୁକ୍କାୟିତ ବିବାଦ ଓ ବିରୋଧାଭାସମାନ ସାମ୍ନାକୁ ଆସିଛି। ଇତିହାସର ଅନିଶ୍ଚିତ ତଥା ଅବହେଳିତ ଦିଗକୁ ଆବିଷ୍କାର କରି ସେମାନଙ୍କର କାହାଣୀଗୁଡ଼ିକ ଓଡ଼ିଆ ସମାଜ ଏବଂ ସଂସ୍କୃତି ବିଷୟରେ ସମୃଦ୍ଧ ଜ୍ଞାନ ପ୍ରଦାନ କରିବାରେ ସଫଳ ହେଇଛି, ଯେହେତୁ ସେମାନଙ୍କର ବ୍ୟକ୍ତିଗତ ସ୍ମୃତି ସାର୍ବଜନୀନ ସ୍ମୃତିରେ ପରିଣତ ହେଇଛି।

ଏଠାରେ ଆଲୋଚିତ ହୋଇଥିବା ବ୍ୟକ୍ତିଗତ କାହାଣୀଗୁଡ଼ିକ ସେମାନଙ୍କର କାଳଖଣ୍ଡ ଏବଂ ଐତିହାସିକ ପରିସ୍ଥିତିର ସମସ୍ତ ଆକାଂକ୍ଷାକୁ ପ୍ରତିଫଳିତ କରିଥାଏ, ଯାହାକୁ ସେମାନେ ନିଜ ଭିତରେ ତୋଳି ଧରିବାକୁ ଚେଷ୍ଟା କରିଥିଲେ। ଭାରତର ଏକ ପଛୁଆ କ୍ଷେତ୍ରରୁ ବିଶ୍ୱକୁ ଦେଖିବା ଏବଂ ପରିବର୍ତ୍ତନ ଦେଇ ଗତି କରୁଥିବା ଏକ ସାମନ୍ତବାଦୀ ଜଗତରେ ଧ୍ୟାନ ଦେଇ ଏହି ବ୍ୟକ୍ତିଗତ କାହାଣୀଗୁଡ଼ିକ ପାଠକମାନଙ୍କୁ ଓଡ଼ିଶାର ଏକ ସାମାଜିକ ଇତିହାସ ଗଠନ କରିବାରେ ସାହାଯ୍ୟ କରେ ଏବଂ ପରିବର୍ତ୍ତନ ତଥା ବାହ୍ୟ କର୍ତ୍ତୃତ୍ୱଗୁଡ଼ିକ ଓଡ଼ିଆ ନାରୀମାନଙ୍କ ଜୀବନକୁ କିପରି ପ୍ରଭାବିତ କରିଥିଲା ତାହା ବୁଝିବାରେ ସାହାଯ୍ୟ କରେ। ସମାଜର ଆଶା ଦ୍ୱାରା ଅପ୍ରଭାବିତ ସେମାନେ ଭିନ୍ନ ଭିନ୍ନ ଭୂମିକା ପୂରଣ କରୁଥିଲା ବେଳେ ମଧ୍ୟ ସେମାନଙ୍କର ସ୍ୱର ସକରାତ୍ମକ ଏବଂ ବିଶ୍ୱାସଯୋଗ୍ୟ ପ୍ରତିରୋଧରେ ପରିପୂର୍ଣ୍ଣ। ନାରୀମାନଙ୍କ ଅତିବାହିତ ସାମାଜିକ ଜୀବନ ଏବଂ ସେମାନଙ୍କର ମନ୍ତବ୍ୟ ଏବଂ ହସପରିହାସ ଓଡ଼ିଶାର ସାଂସ୍କୃତିକ ତଥା ସାମାଜିକ

ପ୍ରଥା ଓ ଅଭ୍ୟାସଗୁଡ଼ିକ ବିଷୟରେ ସମୃଦ୍ଧ ଜ୍ଞାନ ପ୍ରଦାନ କରେ ଏବଂ ଆମକୁ ଏହାର ପରମ୍ପରାର କେନ୍ଦ୍ରକୁ ନେଇଯାଏ। ସୁମନୀଙ୍କ ବର୍ଣ୍ଣନାରେ ଜଣେ ଜନଜାତିର ଏକ ମୌଖିକ ଇତିହାସ, ଆଦିବାସୀ ଜଗତର ଏକ ଆକର୍ଷଣୀୟ ବିବରଣୀ ଏବଂ ସେମାନଙ୍କ ଜୀବନରେ ବିକାଶମୂଳକ ସଂସ୍ଥାଗୁଡ଼ିକର ହସ୍ତକ୍ଷେପ ଓ ପ୍ରଭାବ ଦେଖିବାକୁ ମିଳିଥାଏ।

ନାରୀମାନଙ୍କର ବ୍ୟକ୍ତିଗତ କାହାଣୀ ବର୍ତ୍ତମାନ "ଜଟିଳ ସ୍ମୃତି"[୬୯], ଚିନ୍ତା ଏବଂ ସମ୍ବେଦନଶୀଳତାର ବିଶେଷ ଜଟିଳ ଅଭିବ୍ୟକ୍ତି ଭାବରେ ଦେଖାଯାଉଛି, କାରଣ ସେମାନଙ୍କର କାହାଣୀ ଅତୀତର ଅନୁଭୂତିର କଞ୍ଚାମାଲରୁ ନୁହେଁ, ବରଂ ସେମାନଙ୍କର ଅନୁଭବ କିମ୍ବା କଳ୍ପିତ ବୁଝାମଣାରୁ ଅଧିକ ସ୍ପଷ୍ଟ ବୋଲି ମନେହୁଏ। ମନ୍ଦାକିନୀ ଦାସଙ୍କ ମନ୍ତବ୍ୟ ପାଠକଙ୍କୁ ଏହି ବିଷୟର ହୃଦୟକୁ ନେଇଥାଏ:

> ଆଜି ସେଦିନ ହୁଏତ ପାହାଚ ତଳକୁ ତଳକୁ ହଜିଗଲା ପରି ମାଟିରେ ପୋତି ହୋଇଯାଉଛି। ଏ ବୟସରେ ସବୁକଥା ମନେ ପଡ଼ିବାର ଗୁରୁତ୍ୱ ବେଶି। ସ୍ମୃତି ମନକୁ ସରସ କରି ଶାରୀରିକ ମାନସିକ ଅବସାଦ ଅସହାୟରେ ଭାଙ୍ଗିପଡ଼ିବା ବେଳେ ବହୁତ ସାହାଯ୍ୟ କରି ପିଠି ଥାପୁଡ଼େଇ ଧୈର୍ଯ୍ୟ ଧରିବା ପାଇଁ କହେ। ଏ ବୟସ ଖାଲି ଅପେକ୍ଷାର ଦିନ। ଶୂନ୍ୟ ସାର ସୁଆଁଳିଆ ଜୀବନଟା ସ୍ମୃତିର ଆଶ୍ୱାସନାରେ କିଛିକ୍ଷଣ ପାଇଁ ସତେଜ ସହଜ ହୋଇଉଠେ।[୭୦]

ପ୍ରକୃତ ଘଟଣାଗୁଡ଼ିକଠାରୁ ଦୂରରେ ଏହି ଆତ୍ମଜୀବନୀକାରମାନେ ଅତୀତକୁ ପୁନଃର୍ନିର୍ମାଣ କରିବାକୁ ଚେଷ୍ଟା କରୁଥିବାବେଳେ ନିର୍ଲିପ୍ତ ହୋଇ ସେମାନଙ୍କର ଅତୀତକୁ ମନେପକାଉଥିବା ପରି ମନେହୁଏ। ଜୀବନରୁ ବହି ପର୍ଯ୍ୟନ୍ତ ଏହି ନାରୀମାନେ ନିଜ ଦୁନିଆର ସାମ୍ନା କରିବା ଏବଂ ଆତ୍ମଚିତ୍ର ନିର୍ମାଣ କରିବା ସମୟରେ ଏକାଧିକ ପ୍ରଣାଳୀ ଆପଣେଇଛନ୍ତି। ବେଳେବେଳେ ପାଠକ ସେମାନଙ୍କ କାହାଣୀରେ ବାହ୍ୟସମ୍ମାନ ପାଇଁ ସାହସର ଅଭାବ ଅନୁଭବ କରିପାରେ। ତଥାପି ପାଠକ ସେମାନଙ୍କର ସ୍ୱତନ୍ତ୍ର ସ୍ୱର ଶୁଣିପାରେ, ଯେହେତୁ ସେମାନେ କିପରି ନିଜ ସମୟର ଆଶା ଏବଂ ଆକାଂକ୍ଷା ଦ୍ୱାରା କ୍ଷତବିକ୍ଷତ ହୋଇ ନିଜକୁ ତିଆରି କରିଥିଲେ, ସେମାନେ ସାବଲୀଳ ଭାବେ ସେହି କାହାଣୀ ବଖାଣନ୍ତି। ଗତ ଦୁଇ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ନାରୀମାନଙ୍କ ଅଭିଜ୍ଞତାର ବ୍ୟାପକ ଢାଞ୍ଚା ଉପରେ ଆଲୋକପାତ କରି ସୀତାଦେବୀ ଖାଡ଼ଙ୍ଗାଠୁଁ ସଂଘମିତ୍ରା ମିଶ୍ର ପର୍ଯ୍ୟନ୍ତ ନିଜ ଆତ୍ମଜୀବନୀ ମାଧ୍ୟମରେ ନାରୀମାନେ ଯେଉଁ ପଥ ଅତିକ୍ରମ କରିଛନ୍ତି ଏବଂ ସେମାନେ କିପରି ସାଂସ୍କୃତିକ, ରାଜନୈତିକ ଏବଂ ଆର୍ଥିକ ପ୍ରତିବନ୍ଧକକୁ ସାମନା

କରିଛନ୍ତି ତାହା ଉପରେ ଆଲୋକପାତ କରିଛନ୍ତି। ଆତ୍ମଜୀବନୀଗୁଡ଼ିକ ଐତିହାସିକ ଅନୁସନ୍ଧାନର ସ୍ଥାନ ହୋଇଆସିଛି, କିନ୍ତୁ ଏହି ପୁସ୍ତକରେ ଚୟନ କରାଯାଇଥିବା ଉଦ୍ଧୃତାଂଶ ଗୁଡ଼ିକୁ ଉଦାହରଣ ରୂପେ ନିଆଯାଇପାରେ; ବ୍ୟକ୍ତିମାନଙ୍କୁ କେବଳ କିଛି ସାମାଜିକ କିମ୍ବା ରାଜନୈତିକ ସମୟଖଣ୍ଡର ଉତ୍ପାଦ ଭାବରେ ଗ୍ରହଣ କରାଯାଇପାରିବ ନାହିଁ କାରଣ ସେମାନେ ସମାନ ପ୍ରଭାବ ମଧ୍ୟରେ ରହି ଭିନ୍ନ ପ୍ରତିକ୍ରିୟା କରନ୍ତି। ଜଟିଳ, ଏକାଧିକ ପ୍ରକ୍ରିୟା ଏବଂ ନୀତି ଦ୍ୱାରା ଗଢ଼ା ଏବଂ ଏକ ପୂର୍ବ-ପରିଭାଷିତ ସଂରଚନାରେ ବି ସେମାନେ ହୁଏତ ସମାନ ଅନୁଭୂତିର ଢାଞ୍ଚା ଦେଇ ଯାଇପାରନ୍ତି, କିନ୍ତୁ ସେମାନେ ସମ୍ପୂର୍ଣ୍ଣ ଭିନ୍ନ ଦୃଷ୍ଟିକୋଣରୁ ଜୀବନକୁ, ଜୀବନର ବିଭିନ୍ନ ଦିଗକୁ ଦେଖନ୍ତି। ତାହାହିଁ ସୂଚିତ କରେ କାହିଁକି ଦିନ ଶେଷରେ ଏହି ବ୍ୟକ୍ତିଗତ ରଚନା ଗୁଡ଼ିକ ଅନୁଶାସନ ଏବଂ ଆଧିପତ୍ୟର ସାମନାରେ ବ୍ୟକ୍ତିତ୍ୱର ଉତ୍ସବ ପାଲଟିଯାଏ।

ତାଙ୍କ ଆତ୍ମଜୀବନୀ ଆରମ୍ଭରେ ସୀତାଦେବୀ ଖାଡ଼ଙ୍ଗା ପାଠକମାନଙ୍କୁ ପଚାରିଥିଲେ, "ଜୀବନୀ ଲେଖିବା କଅଣ ଆପଣାର ଶକ୍ତି ଓ ସାହସକୁ ଭାଷା ଦେଇ ପ୍ରକାଶ କରିବା ?"[୭୧] ନିଜର ଆତ୍ମଜୀବନୀ ଲେଖିବା ଏକ ସାହସର କାର୍ଯ୍ୟ କି ନୁହେଁ ତାହା କହିବା ସହଜ ନୁହେଁ, କିନ୍ତୁ ଏଠାରେ ଚୟନ କରାଯାଇଥିବା ଉଦ୍ଧୃତାଂଶଗୁଡ଼ିକ ନିଶ୍ଚିତ ଭାବରେ ସୂଚିତ କରେ ଯେ ଏହି ଅବିସ୍ମରଣୀୟ ନାରୀମାନଙ୍କ ପାଇଁ ଲେଖିବା କିପରି ଆତ୍ମଅଭିବ୍ୟକ୍ତିର ଏକ ମାଧ୍ୟମ ଅଟେ, ଯେଉଁମାନେ ନିଜ ମଧ୍ୟରେ ଏକ ଆଭ୍ୟନ୍ତରୀଣ ମହତ୍ତ୍ୱ ଆବିଷ୍କାର କରିଥିବା ପରି ମନେହୁଏ। ସେମାନଙ୍କର ଆତ୍ମକାହାଣୀଗୁଡ଼ିକ ଜୀବନକୁ ସମୃଦ୍ଧ କରିବାକୁ ସେମାନଙ୍କର ସ୍ୱପ୍ନ, ସୀମିତକୁ ଅତିକ୍ରମଣ କରିବାକୁ ସେମାନଙ୍କର ଅଭିଳାଷାକୁ ଦର୍ଶାଏ।

---

[୧]ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀ ୧୯୧୭-୧୯୧୮ ମଧ୍ୟରେ "ଉତ୍କଳ ସାହିତ୍ୟ"ରେ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା।

[୨]ଶୈଳବାଳା ଦାସ (୧୮୭୫-୧୯୬୮) ୧୯୫୬ ମସିହାରେ ଇଂରାଜୀରେ ତାଙ୍କର ସ୍ମୃତିକଥା "A Look Before and After" ପ୍ରକାଶ କରିଥିଲେ। ଏହା ଓଡ଼ିଶାର ଜଣେ ନାରୀଙ୍କ ଦ୍ୱାରା ଲିଖିତ ପ୍ରଥମ ଆତ୍ମଜୀବନୀ। ସେ ଓଡ଼ିଶାରେ ନାରୀ ଶିକ୍ଷା କ୍ଷେତ୍ରରେ ଅଭିଜ୍ଞତା ଏବଂ ନାରୀମୁକ୍ତି ପାଇଁ ତାଙ୍କ ସଂଘର୍ଷର କଥା ଲେଖିଛନ୍ତି।

[୩]ଭି.ଏସ୍. ନାଇପାଲ୍, "ଏ ହାଉସ୍ ଫର୍ ମିଷ୍ଟର୍ ବିଶ୍ୱାସ", ଲଣ୍ଡନ: ପିକାଡର, ୨୦୦୨, ପୃ ୧୬୫

[୪]ଜୟଶ୍ରୀ ନନ୍ଦ ଏବଂ ସଙ୍ଗୀତାରାଣୀ ତ୍ରିପାଠୀ, "ଡେଭେଲପମେଣ୍ଟ ଅଫ୍ ଉଇମେନ୍ସ ଏଜୁକେସନ ଇନ୍ ଓଡ଼ିଶା: ରେଟ୍ରୋସ୍ପେକ୍ଟ ଆଣ୍ଡ ପ୍ରସପେକ୍ଟ", ଓଡ଼ିଶା ରିଭିଉ, ସେପ୍ଟେମ୍ବର-ଅକ୍ଟୋବର, ୨୦୧୬, ପୃଷ୍ଠା ୮୫-୯୦

[୫]ପ୍ୟାରୀମୋହନ ଆଚାର୍ଯ୍ୟ "ଓଡ଼ିଶାର ଇତିହାସ" ଲେଖିଥିଲେ ଯାହା ବିଶ୍ୱନାଥ କରଙ୍କ ଦ୍ୱାରା ଉତ୍କଳ ସାହିତ୍ୟ ପ୍ରେସ୍‌ରେ ୧୮୭୯ରେ ଛପାଯାଇଥିଲା। ଏହା ଜଣେ ଓଡ଼ିଆଙ୍କ ଦ୍ୱାରା ଓଡ଼ିଶା ଇତିହାସ ସମ୍ବନ୍ଧରେ ଲିଖିତ ପ୍ରଥମ ପୁସ୍ତକ ଅଟେ।

[୬]ନଟବର ସାମନ୍ତରାୟ, "ଓଡ଼ିଆ ସାହିତ୍ୟର ଇତିହାସ, ୧୮୦୩-୧୯୨୦", ଭୁବନେଶ୍ୱର: ନଟବର ସାମନ୍ତରାୟ, ୧୯୮୩ (ଦ୍ୱିତୀୟ ସଂସ୍କରଣ), ପୃ ୧୧।

[୭]ଓଡ଼ିଶାରେ ପାଇକ ବିଦ୍ରୋହର ବିସ୍ତୃତ ଆଲୋଚନା ସୂର୍ଯ୍ୟ ନାରାୟଣ ଦାସଙ୍କ ଦ୍ୱାରା ଲିଖିତ "ପାଇକ ବିଦ୍ରୋହ" (କଟକ ୟୁନାଇଟେଡ୍ ବୁକ୍ ହାଉସ୍, ୧୯୬୪) ବହିରେ ମିଳିଥାଏ।

[୮]ପ୍ରଫୁଲ୍ଲ କୁମାର ପାତ୍ର, "ଓଡ଼ିଶାରେ ବାପ୍ଟିଷ୍ଟ ମିଶନେରୀ ସୋସାଇଟିର କାର୍ଯ୍ୟ ଓ ଖ୍ରୀଷ୍ଟୀୟ ମଣ୍ଡଳୀ ସ୍ଥାପନର ଇତିହାସ, ୧୮୨୨- ୧୯୪୨", ପୃଷ୍ଠା ୧୯।

[୯]ଜୟଶ୍ରୀ ନନ୍ଦ ଏବଂ ସଙ୍ଗୀତାରାଣୀ ତ୍ରିପାଠୀ, "ଡେଭେଲପମେଣ୍ଟ ଅଫ ଉଇମେନ୍ସ ଏଜୁକେସନ ଇନ୍ ଓଡ଼ିଶା: ରେଟ୍ରୋସ୍ପେକ୍ଟ ଆଣ୍ଡ ପ୍ରସପେକ୍ଟ", ଓଡ଼ିଶା ରିଭିଉ, ସେପ୍ଟେମ୍ବର-ଅକ୍ଟୋବର, ୨୦୧୬, ପୃଷ୍ଠା ୮୫-୯୦।

[୧୦]କଟକ ବାପ୍ଟିଷ୍ଟ ଚର୍ଚ୍ଚ, "ଏ ବ୍ରିଫ୍ ସ୍କେଚ୍ ଅଫ୍ ଦି ରାଇଜ୍ ଆଣ୍ଡ୍ ପ୍ରୋଗ୍ରେସ୍ ଅଫ୍ ଦି ଓଡ଼ିଶା ମିଶନ", କଟକ: ଓଡ଼ିଶା ମିଶନ ପ୍ରେସ୍, ୧୮୫୮, ପୃଷ୍ଠା ୨୮। ସଂପାଦକଙ୍କ ଦ୍ୱାରା ଏହି ପରିଚ୍ଛେଦ ଓଡ଼ିଆରେ ଅନୁବାଦିତ।

[୧୧]ଫକୀରମୋହନ ସେନାପତି, "ଫକୀରମୋହନ ଗ୍ରନ୍ଥାବଳୀ - ଆତ୍ମଜୀବନଚରିତ", କଟକ: କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, ୧୯୬୩ (ଦ୍ୱିତୀୟ ସଂସ୍କରଣ)।

[୧୨]କେଶବ ଚନ୍ଦ୍ର ସେନଙ୍କ ଅନୁଗାମୀ ହରନାଥ ଭଟ୍ଟାଚାର୍ଯ୍ୟ ୧୮୬୯ ମସିହାରେ ଉତ୍କଳ ବ୍ରାହ୍ମ ସମାଜ ପ୍ରତିଷ୍ଠା କରିଥିଲେ।

[୧୩]ସମ୍ଭବତଃ ଏହା ମଧୁସୂଦନ ଦାସଙ୍କ ପକ୍ଷରେ ଆଧାତ୍ମିକ ପଦକ୍ଷେପ ଅପେକ୍ଷା ଏକ ବିଦ୍ରୋହାତ୍ମକ କାର୍ଯ୍ୟ ଥିଲା। ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିବା ପରେ ସେ ଜଣେ ଖ୍ରୀଷ୍ଟିଆନ ଝିଅଙ୍କୁ ବିବାହ କରିଥିବାରୁ, ୧୮୬୬ ମସିହା ଅଗଷ୍ଟ ୧୧ ତାରିଖରେ "ଉତ୍କଳ ଦୀପିକା" ତାଙ୍କର ଧର୍ମାନ୍ତରୀକରଣ ଖବର ପ୍ରକାଶ କରି ଲେଖିଥିଲା ଯେ ଜଣେ ଖ୍ରୀଷ୍ଟିଆନ ଝିଅଙ୍କୁ ବିବାହ କରିବା ପାଇଁ ସେ ହୁଏତ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଥାଇପାରନ୍ତି।

[୧୪]ବଂଶୀଧର ମହାନ୍ତି, "୧୮୬୬ ଉତ୍କଳ ଦୀପିକା", କଟକ: ଫ୍ରେଣ୍ଡସ୍ ପ୍ରକାଶକ, ୧୯୭୮।

[୧୫]ଓଡ଼ିଆ ପୁରାଣ ସାହିତ୍ୟ ଏହି ପ୍ରଥାର ବର୍ଣ୍ଣନାରେ ପରିପୂର୍ଣ୍ଣ।

[୧୬]ଜେ.ଏ. ହପକିନ୍ସ ଓଡ଼ିଶାର ବିଦ୍ୟାଳୟ ପରିଦର୍ଶକ ଥିଲେ।

[୧୭]'ମୟୂରଭଞ୍ଜ' (୧୮୮୦) ୧୨୮୮ ସାଲ, ୧ ପୌଷ, ସୋମବାର।

[୧୮]"ବାଳିକା ପାଠ" ୧୮୯୭ ମସିହାରେ ଖଲ୍ଲିକୋଟର ରାଣୀ କନକ ମଞ୍ଜରୀ ଦେବୀଙ୍କ ଦ୍ୱାରା ଲିଖିତ ଏବଂ ପ୍ରକାଶିତ।

[୧୯]ରେବା ରାୟ (୧୮୭୬-୧୯୩୬) ଜଣେ ସଂପାଦକ, ଲେଖକ ଏବଂ ସମାଜ ସଂସ୍କାରକ ଥିଲେ।

[୨୦]ଜୟଶ୍ରୀ ନନ୍ଦ ଏବଂ ସଙ୍ଗୀତାରାଣୀ ତ୍ରିପାଠୀ, "ଡେଭେଲପମେଣ୍ଟ ଅଫ ଉଇମେନ୍ସ ଏଜୁକେସନ ଇନ୍ ଓଡ଼ିଶା: ରେଟ୍ରୋସ୍ପେକ୍ଟ ଆଣ୍ଡ ପ୍ରସପେକ୍ଟ", ଓଡ଼ିଶା ରିଭିଉ, ସେପ୍ଟେମ୍ବର-ଅକ୍ଟୋବର, ୨୦୧୬, ପୃଷ୍ଠା ୮୭।

[୨୧]ବ୍ରହ୍ମପୁରର ଜଣେ ତେଲୁଗୁ ବୁଣାକାର ଏରୁନ୍ ଡିସେମ୍ବର ୧୮୨୭ରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ। ସେତେବେଳେ ତାଙ୍କର ବୟସ ସତୁରି ବର୍ଷ ଥିଲା। ସେ ଓଡ଼ିଶାରେ ବାପ୍ଟିଷ୍ଟ ମିଶନ ଦ୍ୱାରା ପ୍ରଥମ ଧର୍ମାନ୍ତରିତ ବ୍ୟକ୍ତି ଥିଲେ।

[୨୨]"ରିପୋର୍ଟ ଅନ୍ ଦି ପ୍ରୋଗ୍ରେସ୍ ଅଫ୍ ଏଜୁକେସନ୍ ଇନ୍ ବିହାର ଆଣ୍ଡ୍ ଓଡ଼ିଶା", ୧୯୨୪-୧୯୨୫, ପାଟନା: ସରକାରୀ ପ୍ରେସ୍, ପୃଷ୍ଠା ୩୨।

[୨୩]"ରେଭେନ୍ସା କଲେଜ ସେଣ୍ଟେନାରୀ ସୋଭେନିର, ୧୮୬୮-୧୯୬୮", କଟକ: ରେଭେନ୍ସା କଲେଜ, ୧୯୭୦, ପୃଷ୍ଠା ୨୪୨।

[୨୪]ଫକୀରମୋହନ ସେନାପତିଙ୍କ "ପେଟେଣ୍ଟ ମେଡ଼ିସିନ" ୧୯୧୩ ମସିହାରେ ଲିଖିତ। ଫକୀର ମୋହନ ସେନାପତି, "ଗଳ୍ପସ୍ୱଳ୍ପ", କଟକ: କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୬୧ (ଷଷ୍ଠ ସଂସ୍କରଣ), ପୃଷ୍ଠା ୧୭।

[୨୫]ରେବା ରାୟଙ୍କ "ସନ୍ନ୍ୟାସୀ" ୧୮୯୯ ମସିହାରେ "ଉତ୍କଳ ଦୀପିକା"ରେ ପ୍ରକାଶିତ ହୋଇଥିଲା; ଏହା ଜଣେ ଲେଖିକାଙ୍କ ଦ୍ୱାରା ଓଡ଼ିଆରେ ପ୍ରଥମ କ୍ଷୁଦ୍ରଗଳ୍ପ।

[୨୬]ଉପେନ୍ଦ୍ର କିଶୋର ଦାସ, "ମଲାଜହ୍ନ", କଟକ: କଳିଙ୍ଗ ଗ୍ରନ୍ଥ ମନ୍ଦିର (ନୂତନ ସଂସ୍କରଣ), ୧୯୭୭, ପୃଷ୍ଠା ୩୪।

[୨୭]କୁନ୍ତଳା କୁମାରୀ ସାବତ, "କାଳୀ ବୋହୂ", କଟକ: କେପି ବ୍ରହ୍ମଚାରୀ, ୧୯୪୦ ( ତୃତୀୟ ସଂସ୍କରଣ), ପୃଷ୍ଠା ୪।

[୨୮]କୁନ୍ତଳା କୁମାରୀ ସାବତ, "ଅନ୍ତୁଡ଼ିଶାଳରେ ଅନାଚାର" - "କୁନ୍ତଳା କୁମାରୀ ଗ୍ରନ୍ଥାବଳୀ (ଗଦ୍ୟ ସାହିତ୍ୟ)", ସାବିତ୍ରୀ ଦାଶ ଓ ଗୌରାଙ୍ଗ ଚରଣ ଦାଶ (ସଂପାଦନା), କଟକ: ନବଦିଗନ୍ତ, ୨୦୦୮, ପୃଷ୍ଠା ୫୮୩- ୫୯୬।

[୨୯]"ବିସ୍ମୃତ ପରମ୍ପରା: ଓଡ଼ିଆ ସାହିତ୍ୟରେ ନାରୀ ପ୍ରତିଭା, ୧୮୯୮-୧୯୫୦" ପୁସ୍ତକରେ ସଚ୍ଚିଦାନନ୍ଦ ମହାନ୍ତି ଓଡ଼ିଆ ଆଦ୍ୟ ଲେଖିକାମାନଙ୍କର କବିତା, ନାଟକ, ପ୍ରବନ୍ଧ, ଗଳ୍ପ ଆଦିର ସଂକଳନ ଓ ସମ୍ପାଦନା କରିଛନ୍ତି। ଏହା ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ ଦ୍ୱାରା ୨୦୦୨ ମସିହାରେ ପ୍ରକାଶିତ।

[୩୦]ବସନ୍ତ କୁମାରୀ ଦେବୀଙ୍କ ଦ୍ୱାରା ସମ୍ପାଦିତ "ପରିଚାରିକା" ୧୯୧୭ ମସିହାରୁ ୧୯୨୦ ମସିହା ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା। ସେ ରମାଦେବୀ ଚୌଧୁରୀଙ୍କ ମାତା ଥିଲେ।

[୩୧]ମାଧବୀ ଦାସୀଙ୍କ ଜନ୍ମ ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟ ଚତୁର୍ଥାଂଶରେ ହୋଇଥିଲା ବୋଲି ବିଶ୍ୱାସ କରାଯାଏ।

[୩୨]ବୃନ୍ଦାବତୀ ଦାସୀ ଷୋଡ଼ଶ ଶତାବ୍ଦୀରେ "ପୂର୍ଣ୍ଣତମ ଚନ୍ଦ୍ରୋଦୟ" ଲେଖିଥିଲେ। ଏହା ପୂର୍ବରୁ କୈଳାସ ଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ ହୋଇ ଶ୍ରୀ ରାଧାନାଥ ସମବାୟ ପ୍ରେସ୍, କଟକ, ଦ୍ୱାରା ୧୯୨୭ ମସିହାରେ ପ୍ରକାଶିତ ହୋଇଥିଲା।

[୩୩]ନିଶଙ୍କ ରାୟଙ୍କ ରାଣୀ ଅଷ୍ଟଦଶ ଶତାବ୍ଦୀରେ "ପଦ୍ମାବତୀ ଅଭିଳାଷ" ଲେଖିଥିଲେ। ସାଧାରଣତଃ କୁହାଯାଏ ଯେ ସେ ୧୭୭୯ ମସିହାରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୭୮୮ ମସିହାରେ ବୁଡ଼ାରସିଙ୍ଗିର ରାଜା ଗୌର ଚନ୍ଦ୍ର ନିଶଙ୍କ ରାୟଙ୍କୁ ବିବାହ କରିଥିଲେ।

[୩୪]ନରେନ୍ଦ୍ର ନାରୀ "ଶଶିଶେଣା" ଶୀର୍ଷକ ଏକ କାବ୍ୟ ଲେଖିଛନ୍ତି। ତାଙ୍କର ଜୀବନୀ ବିବରଣୀ ଉପଲବ୍ଧ ନାହିଁ।

[୩୫]ରାଣୀ ମୋହନ କୁମାରୀ ୧୮୨୭-୧୮୩୩ ପର୍ଯ୍ୟନ୍ତ ସମ୍ବଲପୁରର ରାଣୀ ଥିଲେ। ସେ "ଉପକାର୍ତ୍ତିକ ମାହାତ୍ମ୍ୟ" ଶୀର୍ଷକ ଏକ କବିତା ଲେଖିଥିଲେ; ଏହି କବିତା ବହନ କରୁଥିବା ପୋଥି ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ଉପଲବ୍ଧ।

[୩୬]ଯଦିଓ ତାଙ୍କ ଜୀବନୀ ବିବରଣୀ ଉପଲବ୍ଧ ନାହିଁ, ସେ ଶ୍ରୀଜଗନ୍ନାଥଙ୍କୁ ନେଇ ଭକ୍ତିପୂର୍ଣ୍ଣ କବିତା ଲେଖିଥିଲେ।

[୩୭]ସପ୍ତଦଶ ଶତାବ୍ଦୀର ଓଡ଼ିଆ ନାରୀ କବିମାନଙ୍କ ଉପରେ ଏକ ଆଲୋଚନା ପ୍ରମିଳା ମିଶ୍ରଙ୍କ ଦ୍ୱାରା ଲିଖିତ "ଅନଲୋଚିତ ନାରୀ କବି କତିପୟ: ସପ୍ତଦଶ ଶତାବ୍ଦୀ" ପ୍ରବନ୍ଧରେ ଦେଖିବାକୁ ମିଳେ, ଯାହା "ଓଡ଼ିଆ ଲେଖିକା: ଆଦ୍ୟପର୍ବ"ରେ ଅନ୍ତର୍ଭୁକ୍ତ। ଏହା ଓଡ଼ିଶା ଲେଖିକା ସଂସଦ ଦ୍ୱାରା ସମ୍ପାଦିତ ଏବଂ ପଶ୍ଚିମା ପ୍ରକାଶନ ଦ୍ୱାରା ୨୦୦୦ ମସିହାରେ ପ୍ରକାଶିତ।

[୩୮]ସେ ଗଞ୍ଜାମ ଜିଲ୍ଲାର ପ୍ରମୁଖ କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକଙ୍କ ମାତା ଥିଲେ।

[୩୯]ରମାଦେବୀ ଚୌଧୁରୀଙ୍କ ଆତ୍ମଜୀବନୀ "ଜୀବନ ପଥେ"ରେ ଓଡ଼ିଶାରେ ଲବଣ ସତ୍ୟାଗ୍ରହର ବିସ୍ତୃତ ବର୍ଣ୍ଣନା ମିଳେ।

[୪୦]ଜେରାଲଡାଇନ୍ ଫୋର୍ବସ୍, "ଉଇମେନ୍ ଇନ୍ ମର୍ଡ଼ନ ଇଣ୍ଡିଆ", ୟୁନାଇଟେଡ୍ କିଙ୍ଗଡମ୍: କେମ୍ବ୍ରିଜ୍ ୟୁନିଭରସିଟି ପ୍ରେସ୍, ୧୯୯୬

[୪୧]୧୯୩୬ ମସିହାରେ ଭାଷା ଭିତ୍ତିରେ ଓଡ଼ିଶା ଏକ ପୃଥକ୍ ପ୍ରଦେଶ ହୋଇଥିଲା।

[୪୨]ରମାଦେବୀ ଚୌଧୁରୀ, "ଜୀବନ ପଥେ", କଟକ: ଗ୍ରନ୍ଥ ମନ୍ଦିର, ୧୯୮୪, ପୃ ୧

[୪୩]ରମାଦେବୀ ଚୌଧୁରୀ, "ଜୀବନ ପଥେ", କଟକ: ଗ୍ରନ୍ଥ ମନ୍ଦିର, ୧୯୮୪, ପୃ ୫୧

[୪୪]ଅନ୍ନପୂର୍ଣ୍ଣା ମହାରଣା, “ଅମୃତ ଅନୁଭବ”, ଭୁବନେଶ୍ୱରଃ ଶିକ୍ଷାସନ୍ଧନ, ୨୦୦୩, ପୃଷ୍ଠା ୨୧୨

[୪୫]ମହାତ୍ମା ଗାନ୍ଧୀ, “କଲେକ୍ଟେଡ୍ ୱାର୍କ୍ସ” (ଇପୁସ୍ତକ), ନୂଆଦିଲ୍ଲୀଃ ପ୍ରକାଶନ ବିଭାଗ, ଭାରତ ସରକାର, ୧୯୯୯

[୪୬]ଗୋଦାବରୀ ଦେବୀ, “ପୁଣ୍ୟ ସ୍ମୃତିରୁ ଖିଏ”- “ପୁଣ୍ୟବତୀ ଗୋଦାବରୀ”, ବିରାଜ ମୋହନ ଦାସ (ସମ୍ପାଦନା), ଭୁବନେଶ୍ୱରଃ ସୁଦୀପ୍ତା ପ୍ରକାଶନୀ, ୧୯୯୭, ପୃ ୪୩

[୪୭]ରମାଦେବୀ ଚୌଧୁରୀ, “ଜୀବନ ପଥେ”, କଟକଃ ଗ୍ରନ୍ଥ ମନ୍ଦିର, ୧୯୮୪, ପୃ ୪୦

[୪୮]ଅନ୍ନପୂର୍ଣ୍ଣା ଦାସ, “ମୋ ପିଲାଦିନ ଆଖିରେ ଭଦ୍ରକ”- “ଶିଖା” (ଜୁନ୍) ଭୁବନେଶ୍ୱରଃ ଶିକ୍ଷା ସନ୍ଧାନ, ୨୦୦୪, ପୃ ୬୧

[୪୯]ନିରୁପମା ରଥ, “ଅଲିଭା ସ୍ମୃତି, ଅଭୁଲା ଅନୁଭୂତି”, କଟକଃ ସ୍ପୁଟନିକ୍, ୨୦୦୪

[୫୦]ସୁମନୀ ଝୋଡ଼ିଆ, “ମୁଇଁ ସୁମନୀ କହୁଚେ”, ମହାରାଷ୍ଟ୍ରଃ ନୀଳକଣ୍ଠ ରଥ, ୨୦୦୫, ପୃ ୫୭

[୫୧]ସୀତାଦେବୀ ଖାଡ଼ଙ୍ଗା, “ମୋର ଜୀବନ ସ୍ମୃତି”, କଟକଃ ଲାର୍କ ବୁକ୍ସ, ୧୯୭୮, ପୃ ୭

[୫୨]ସୀତାଦେବୀ ଖାଡ଼ଙ୍ଗା, “ମୋର ଜୀବନ ସ୍ମୃତି”, କଟକଃ ଲାର୍କ ବୁକ୍ସ, ୧୯୭୮, ପୃ ୮୬

[୫୩]ଅପର୍ଣ୍ଣା ଦେବୀ, “ନାରୀକବି ଅପର୍ଣ୍ଣା ଦେବୀ”, ଝଙ୍କାର, ସଂଖ୍ୟା ୧୧, ୧୯୬୧, ପୃ ୧୦୧୯

[୫୪]ଗୀତା ହୋତା, “ସବୁ ସ୍ମୃତି ମଧୁର”, ଭୁବନେଶ୍ୱରଃ ଓଡ଼ିଶା ରାଇଟର୍ସ କୋ-ଅପରେଟିଭ୍ ସୋସାଇଟି, ୨୦୦୦, ପୃ୧୪୪

[୫୫]“ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ” ହେଉଛି ଏକ ସାତ ଖଣ୍ଡ ବିଶିଷ୍ଟ ଓଡ଼ିଆ-ଇଂରାଜୀ- ହିନ୍ଦୀ-ବଙ୍ଗଳା ଅଭିଧାନ ଯାହାକି ଗୋପାଳ ଚନ୍ଦ୍ର ପ୍ରହରାଜ ଓ ତାଙ୍କ ସହକାରୀ ଦଳଙ୍କ ଦ୍ୱାରା ସଂକଳିତ।

[୫୬]ବୀଣା ଦେଇ, “ଅକିଞ୍ଚନାର ଜୀବନ ସ୍ମୃତି”, କଟକଃ କାହାଣୀ, ୨୦୦୧, ପୃ ୪୮

[୫୭]ବୀଣା ଦେଇ, “ଅକିଞ୍ଚନାର ଜୀବନ ସ୍ମୃତି”, କଟକଃ କାହାଣୀ, ୨୦୦୧, ପୃ ୮୦-୮୧

[୫୮]ସାଇମୋନ ଦି ବିଭୁଆର, “ଦି ସେକେଣ୍ଡ ସେକ୍ସ”, ଲଣ୍ଡନଃ ଜୋନାଥନ କେପ୍, ୧୯୫୩, ପୃ ୨୯୨

[୫୯]ଜର୍ଟରୁଡ୍ ଷ୍ଟେନ୍, “ଦି ଅଟୋବାୟୋଗ୍ରାଫି ଅଫ୍ ଆଲିସ୍ ବି ଟୋକଲାସ”, ଲଣ୍ଡନଃ ପେଙ୍ଗୁଇନ୍ କ୍ଲାସିକ୍ସ, ୨୦୦୧

[୬୦]ରମା ଦେବୀ, “ପର ପଦାର୍ଥ”, ପୁରୀଃ ନିଜସ୍ୱ ପ୍ରକାଶନ, ୧୯୯୮, ପୃ ୬୫

[୬୧]ସଂଘମିତ୍ରା ମିଶ୍ର, “ମୋ ନାନୀ”, ସମ୍ବାଦ କଳିକା, ୨୩ ଅକ୍ଟୋବର ୨୦୦୯, ପୃ ୮

[୬୨]ମନ୍ଦାକିନୀ ଦାସ, “ସ୍ମୃତି ସୁରଭି”, ଭୁବନେଶ୍ୱରଃ ବାଞ୍ଛାନିଧି ସ୍ମୃତି ପ୍ରତିଷ୍ଠାନ, ୨୦୦୮, ପୃ ୨୩

[୬୩]ସ୍ନେହଲତା ମହାପାତ୍ର, “ମୋ ପିଲାଦିନ”, ଭୁବନେଶ୍ୱରଃ ଚଉରିକୋଣ, ୨୦୦୮, ପୃ ୧୪୧

[୬୪]ସୀତାଦେବୀ ଖାଡ଼ଙ୍ଗା, "ମୋର ଜୀବନ ସ୍ମୃତି", କଟକ: ଲାର୍କ ବୁକ୍ସ, ୧୯୭୮, ପୃ ୧୩

[୬୫]ରମାଦେବୀ ଚୌଧୁରୀ, "ଜୀବନ ପଥେ", କଟକ: ଗ୍ରନ୍ଥମନ୍ଦିର, ୧୯୮୪, ପୃ ୨୬

[୬୬]ଦୁର୍ଗାବତୀ ତ୍ରିପାଠୀ, "ସୁନେଲି ସ୍ମୃତିର ସୁରଭି", ବାଲେଶ୍ୱର: ସୁବର୍ଣ୍ଣଶ୍ରୀ ପ୍ରକାଶନୀ, ୨୦୦୮, ପୃ ୧୩୩

[୬୭]ଅନ୍ନପୂର୍ଣ୍ଣା ଦାସ, "ମୋ ପିଲାଦିନ ଆଖିରେ ଭଦ୍ରକ"- "ଶିଖା" (ଜୁନ୍), ଭୁବନେଶ୍ୱର: ଶିକ୍ଷା ସନ୍ଧାନ, ୨୦୦୪, ପୃ ୭୪

[୬୮]ସୀତାଦେବୀ ଖାଡ଼ଙ୍ଗା, "ମୋର ଜୀବନ ସ୍ମୃତି", କଟକ: ଲାର୍କ ବୁକ୍ସ, ପୃଷ୍ଠା ୮୩

[୬୯]ସୁଜାନ ବେଲିଙ୍କ ମତରେ ଯେକୌଣସି ପ୍ରକାରର ବ୍ୟକ୍ତିଗତ କାହାଣୀ ଲେଖିବା ହେଉଛି, "ଏକ ଅଭ୍ୟାସ ଯାହାକୁ ଜଟିଳ ସ୍ମୃତି ଭାବରେ ସର୍ବୋତ୍ତମ ଭାବରେ ଉଲ୍ଲେଖ କରାଯାଇପାରେ; ଏହା ଏକ ବିଶ୍ଳେଷଣାତ୍ମକ ପ୍ରତିଫଳନ ଜଡ଼ିତ ପ୍ରକ୍ରିୟା, କେବଳ କିଛି ଜିନିଷ କିମ୍ବା ଘଟଣାକୁ ମନେ ପକାଇବା ଏବଂ ପ୍ରତିକ୍ରିୟା ଦେବା ନୁହେଁ।" ସୁଜାନ ବେଲି, "ଇଣ୍ଟ୍ରୋଡକସନ - ଡଟରସ୍ ଅଫ୍ ଦି ଏମ୍ପାୟାର୍", ଆଇରିସ୍ ମ୍ୟାକଫାରଲେନ୍, ନୂଆଦିଲ୍ଲୀ: ଅକ୍ସଫୋର୍ଡ୍ ୟୁନିଭରସିଟି ପ୍ରେସ୍, ୨୦୦୬, ପୃଷ୍ଠା Xxxvi

[୭୦]ମନ୍ଦାକିନୀ ଦାସ, "ସ୍ମୃତି ସୁରଭି", ଭୁବନେଶ୍ୱର: ବାଞ୍ଛାନିଧି ସ୍ମୃତି ପ୍ରତିଷ୍ଠାନ, ୨୦୦୮, ପୃ ୨୧

[୭୧]ସୀତାଦେବୀ ଖାଡ଼ଙ୍ଗା, "ମୋର ଜୀବନ ସ୍ମୃତି", କଟକ: ଲାର୍କ ବୁକ୍ସ, ୧୯୭୮, ପୃ ୮

* * *

ଗାନ୍ଧୀବାଦୀ

# ରମାଦେବୀ ଚୌଧୁରୀ

## (୧୮୯୯-୧୯୮୫)

ରମାଦେବୀ ଚୌଧୁରୀ ୩ ଡିସେମ୍ବର ୧୮୯୯ ମସିହାରେ କଟକଠାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ଗୋପାଳ ବଲ୍ଲଭ ଦାସ ଜଣେ ଡେପୁଟି କଲେକ୍ଟର ଥିଲେ। ସେ ଆଦିବାସୀମାନଙ୍କ ଜୀବନ ଉପରେ ଆଧାରିତ ସର୍ବପ୍ରଥମ ଓଡ଼ିଆ ଉପନ୍ୟାସ "ଭୀମା ଭୂୟାଁ"ର (୧୯୦୮) ଲେଖକ ଥିଲେ। ତାଙ୍କ ମାଆ ବସନ୍ତ କୁମାରୀ ଦେବୀ ଓଡ଼ିଆର ପ୍ରଥମ ମହିଳା ପତ୍ରିକା "ପରିଚାରିକା" ସମ୍ପାଦନା କରୁଥିଲେ। ରମାଦେବୀ ଓଡ଼ିଆ ଜାତୀୟତାବାଦୀ ନେତା ତଥା ଚିନ୍ତକ ମଧୁସୂଦନ ଦାସଙ୍କ ଝିଆରୀ ଥିଲେ। ରମାଦେବୀଙ୍କ ଅଜା ନନ୍ଦ କିଶୋର ଦାସ ବ୍ରିଟିଶ ସରକାରଙ୍କ ଅଧୀନରେ ଗଡ଼ଜାତ ମହଲର ଅଧୀକ୍ଷକ ଭାବରେ କାର୍ଯ୍ୟ କରିଥିଲେ; ସେ ମଧ୍ୟ ଜଣେ ଧନୀ ଜମିଦାର ଥିଲେ।

ଆଧୁନିକ ଓଡ଼ିଶାର ଖ୍ୟାତନାମା ନାରୀ ସ୍ୱାଧୀନତା ସଂଗ୍ରାମୀ ତଥା ସାମାଜିକ ସଂସ୍କାରକମାନଙ୍କ ମଧ୍ୟରୁ ରମାଦେବୀ ସହଜରେ ଅନ୍ୟତମ। ସେ କୌଣସି ଆନୁଷ୍ଠାନିକ ଶିକ୍ଷା ଗ୍ରହଣ କରିନଥିଲେ, କିନ୍ତୁ ଘରୋଇ ଭାବେ ଶିକ୍ଷାପ୍ରାପ୍ତ ହୋଇଥିଲେ। ସ୍ୱାମୀ ବିବେକାନନ୍ଦ, ଆନି ବେସାନ୍ତ ଏବଂ ମଧୁସୂଦନ ଦାସଙ୍କ ଜୀବନାଦର୍ଶ ପିଲାଦିନେ ତାଙ୍କ ମନରେ ବହୁତ ପ୍ରଭାବ ପକାଇଥିଲା। ସେ ପନ୍ଦର ବର୍ଷ ବୟସରେ ଗୋପବନ୍ଧୁ ଚୌଧୁରୀଙ୍କୁ ବିବାହ କରିଥିଲେ, ଯିଏ କଟକର ଖ୍ୟାତନାମା ଓକିଲ ଗୋକୁଳାନନ୍ଦ ଚୌଧୁରୀଙ୍କ ଜ୍ୟେଷ୍ଠପୁତ୍ର ଥିଲେ। ଗୋପବନ୍ଧୁ ଚୌଧୁରୀ କଲିକତା ବିଶ୍ୱବିଦ୍ୟାଳୟରେ ପ୍ରାଥମିକ ଆଇନ୍ ପରୀକ୍ଷାରେ ଶୀର୍ଷ ସ୍ଥାନ ହାସଲ କରିଥିଲେ, କିନ୍ତୁ ସେ ଅଧ୍ୟୟନ ଅଧାରୁ ବନ୍ଦ କରି

୧ ୯ ୧ ୭ ମସିହାରେ କଟକରେ ଡେପୁଟି କଲେକ୍ଟର ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ। ରମାଦେବୀ ୧ ୯ ୧ ୫ ମସିହାରେ ପୁତ୍ର ମନମୋହନ ଚୌଧୁରୀ ଏବଂ ୧ ୯ ୧ ୯ରେ କନ୍ୟା ଅନ୍ନପୂର୍ଣ୍ଣା (ପରେ ସେ ଶରତ ଚନ୍ଦ୍ର ମହାରଣାଙ୍କୁ ବିବାହ କରିଥିଲେ)ଙ୍କୁ ଜନ୍ମ ଦେଇଥିଲେ।

ଗୋପବନ୍ଧୁ ଚୌଧୁରୀ ଫେବୃଆରୀ ୧ ୯ ୨ ୧ ମସିହାରେ ସରକାରୀ ଚାକିରିରୁ ଇସ୍ତଫା ଦେଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ। ରମାଦେବୀ କେବଳ ତାଙ୍କ ସ୍ୱାମୀଙ୍କ ନିଷ୍ପତ୍ତିକୁ ସମର୍ଥନ କରିନଥିଲେ, ସେ ମଧ୍ୟ କଂଗ୍ରେସ ସଦସ୍ୟ ଭାବରେ ସ୍ୱାଧୀନତା ଆନ୍ଦୋଳନରେ ପ୍ରବେଶ କରିଥିଲେ। ପିଲାଦିନୁଁ ଆରାମ ଓ ବିଳାସପୂର୍ଣ୍ଣ ଜୀବନରେ ଅଭ୍ୟସ୍ତ ରମାଦେବୀ ମାତ୍ର ଏକୋଇଶ ବର୍ଷ ବୟସରେ ତାଙ୍କ ସ୍ୱାମୀଙ୍କ ସହ ସାଧାରଣ ଲୋକଙ୍କ ଜୀବନକୁ ଆଦରେଇ ନେଇଥିଲେ ଏବଂ ୧ ୯ ୨ ୮ ମସିହାଠୁଁ ଜଗତସିଂହପୁରର ଅଳକା ଆଶ୍ରମରେ ରହିବାକୁ ଆରମ୍ଭ କରିଥିଲେ। ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ସେ ବିଭିନ୍ନ ସଂସ୍କାରଧର୍ମୀ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ। ସେ କାର୍ଯ୍ୟମାନଙ୍କ ମଧ୍ୟରେ ମୁଖ୍ୟ ଥିଲା କଂଗ୍ରେସରେ ଯୋଗ ଦେଉଥିବା ଝିଅ ଏବଂ ମହିଳା ସ୍ୱେଚ୍ଛାସେବୀମାନଙ୍କୁ ତାଲିମ ଦେବା। ସ୍ୱାଧୀନତା ପରେ ବିନୋବା ଭାବେଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ରମାଦେବୀ ସର୍ବୋଦୟ ତଥା ଭୂଦାନ ଆନ୍ଦୋଳନରେ ମଧ୍ୟ ଭାଗ ନେଇଥିଲେ। ସେ ଜୀବନର ଶେଷ ପର୍ଯ୍ୟନ୍ତ ସମାଜ ସେବାରେ ବ୍ରତୀ ଥିଲେ। ଓଡ଼ିଶାରେ ନାରୀ ଏବଂ ଶିଶୁମାନଙ୍କ ଉନ୍ନତି ପାଇଁ ଉଲ୍ଲେଖନୀୟ ଅବଦାନ ପାଇଁ ୧ ୯ ୮ ୧ ମସିହାରେ ତାଙ୍କୁ ଯମନାଲାଲ ବଜାଜ ପୁରସ୍କାରରେ ସମ୍ମାନିତ କରାଯାଇଥିଲା। ସେ ୨ ୨ ଜୁଲାଇ ୧ ୯ ୮ ୫ରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ।

ରମାଦେବୀ ଚୌଧୁରୀଙ୍କ ଆତ୍ମଜୀବନୀ "ଜୀବନ ପଥେ" ୧ ୯ ୮ ୪ ମସିହାରେ ପ୍ରକାଶିତ ହୋଇଥିଲା; ଅବଶ୍ୟ ଏଥିରେ ଅନ୍ତର୍ଭୁକ୍ତ ଅନେକ ଅଧ୍ୟାୟ ୧ ୯ ୭ ୫-୧ ୯ ୮ ୪ ମଧ୍ୟରେ "ସୁଚରିତା" ମାସିକ ପତ୍ରିକାରେ ଅନିୟମିତ ଭାବରେ ପ୍ରକାଶ ପାଇଥିଲା। "ଜୀବନ ପଥେ" ରମାଦେବୀଙ୍କ ଜୀବନ ଏବଂ ସମୟର ଆକର୍ଷଣୀୟ କାହାଣୀ, ଯାହା ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ବିଭିନ୍ନ ଦିଗକୁ ଆଲୋକିତ କରିଥାଏ। ସେ ନିଜର ଆତ୍ମଜୀବନୀ ଏହି ଆଭିମୁଖ୍ୟ ନେଇ ଲେଖିଥିଲେ ଯେ ତାଙ୍କ ଜୀବନ କାହାଣୀ ଓଡ଼ିଆ ନାରୀମାନଙ୍କ ମନରୁ ଭୟ ଏବଂ ଆତ୍ମସଂଶୟକୁ ଦୂର କରିବାରେ ସାହାଯ୍ୟ କରିବ। ତାଙ୍କ ଆତ୍ମଜୀବନୀ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ପ୍ରମୁଖ ଘଟଣାବଳୀ, ନାରୀମାନଙ୍କର ଘରକୋଣରୁ ବାହାରକୁ ଯିବାର ଇତିହାସ ଏବଂ ସବର୍ଣ୍ଣମାନଙ୍କର ହରିଜନମାନଙ୍କ ମଧ୍ୟରେ କାର୍ଯ୍ୟ ପ୍ରସଙ୍ଗରେ ବିଶେଷ ବିବରଣୀ ପ୍ରଦାନ କରିଥାଏ। କେବଳ ଅତୀତକୁ

ମନେପକାଇବା ପାଇଁ ଜଣେ ଏହାକୁ ସ୍ମୃତିଜର୍ଜରିତ ହୋଇ ପଢ଼ିପାରେ ଓ ସେକାଳରେ ବିଦ୍ୟମାନ ଅବସ୍ଥା ବିଷୟରେ କୌତୂହଳୀ ହୋଇପାରେ: ରମାଦେବୀଙ୍କ ପାରିବାରିକ ଜୀବନ, ସେ କିପରି ଶାଶୁଘରେ ଚଳୁଥିଲେ, ସେ କିପରି ନାରୀ ସାକ୍ଷରତାକୁ ପ୍ରୋତ୍ସାହିତ କରିବାକୁ ଚେଷ୍ଟା କରିଥିଲେ ଏବଂ ଜୀବନର ବିଭିନ୍ନ ବିଷମ ପରିସ୍ଥିତିରେ କିପରି କୌଶଳପୂର୍ଣ୍ଣ ଏବଂ ସଂଯତ ରହି ନାନା ବିରୋଧ ସତ୍ତ୍ୱେ କାର୍ଯ୍ୟ ସଂପନ୍ନ କରୁଥିଲେ। ଅନେକ ଐତିହାସିକ ଘଟଣା ଗୁଡ଼ିକର ଅଗ୍ରଭାଗରେ ଅତିବାହିତ କରିଥିବା ଏକ ଜୀବନ ଏହି ଆତ୍ମଜୀବନୀରେ ରୂପ ନେଇଛି।

ନିମ୍ନୋଦ୍ଧୃତାଂଶରେ ରମାଦେବୀ ତାଙ୍କ ଜୀବନର କିଛି ବିଶେଷ ପରିବର୍ତ୍ତନର ସମୟକୁ ବର୍ଣ୍ଣନା କରିଛନ୍ତି। ପ୍ରାଚୁର୍ଯ୍ୟ ଏବଂ ଦାରିଦ୍ର୍ୟ ମଧ୍ୟରେ ଥିବା ବୈଷମ୍ୟକୁ ସେ ଖୁବ୍ କମ୍ ବୟସରୁ ଲକ୍ଷ୍ୟ କରି ବ୍ୟଥିତ ହୋଇଛନ୍ତି ଏବଂ ସେମିତି ଘଟଣାଗୁଡ଼ିକ ତାଙ୍କ ସ୍ମୃତିରେ ନିଜକୁ ଜଡ଼ିତ କରିଛି। ଜଣେ ନବବିବାହିତା କିଶୋରୀ ହେଇ ବି ଦାରିଦ୍ର୍ୟ ମଣିଷକୁ କିପରି କରୁଣ ସ୍ଥିତିକୁ ପେଲିଦିଏ ତାହା ଦେଖି ସେ ଗଭୀର ଭାବରେ ବିଚଳିତ ହୋଇଛନ୍ତି। ଏହା ତାଙ୍କର ବ୍ୟାପକ ଏବଂ ସହାନୁଭୂତିଶୀଳ ଦୃଷ୍ଟିକୋଣକୁ ସାମନାକୁ ଆଣିଥାଏ, ଯାହାକି ଧାଈ କାରବାର ପ୍ରସଙ୍ଗରେ ମଧ୍ୟ ପ୍ରତିଫଳିତ ହୋଇଥାଏ। ଜଣେ ପୁରୁଷ ଉପପତ୍ନୀ ରଖିବା ସାଧାରଣ କଥା ନୁହେଁ, କିନ୍ତୁ ଜାତିଗତ କାରଣରୁ କେବଳ ଉଚ୍ଚ ସାମାଜିକ ଶ୍ରେଣୀର ପରିବାରରେ ଏହି ବ୍ୟବସ୍ଥା ଦେଖାଯାଉଥିଲା। କୁତୂହଳର ବିଷୟ ହେଉଛି ଏହି ବ୍ୟବସ୍ଥାକୁ କିପରି ପାରିବାରିକ ଗଠନ ମଧ୍ୟରେ ସ୍ଥାନ ଦିଆଯାଇଥିଲା। ରମାଦେବୀ ଗାନ୍ଧୀଜୀଙ୍କ ସହ ତାଙ୍କର ଅବିସ୍ମରଣୀୟ ପ୍ରଥମ ସାକ୍ଷାତକୁ ମଧ୍ୟ ଏଠାରେ ମନେପକାଇଛନ୍ତି।

## ବିବାହ

୧୯୧୪ ନଭେମ୍ବର ଏଗାର ତାରିଖରେ ମୋର ବାହାଘର ହେଲା। ବାପା ଓ ଶ୍ୱଶୁର ପଢ଼ାସାଙ୍ଗ। ଶ୍ୱଶୁର ବଡ଼ବାପାଙ୍କ ପାଖରେ ଜୁନିଅର ଓକିଲ ଥିଲେ। ପିଲାଦିନରୁ ଆମର ବରାବର ଯିବାଆସିବା। ବାପାଙ୍କର ପ୍ରଥମ ପତ୍ନୀ ଶାଶୁଙ୍କ ସାଙ୍ଗରେ ଚାନ୍ଦ ବସିଥିଲେ। ସେଥିପାଇଁ ମୋ ଆଈ ଶାଶୁଙ୍କୁ ଝିଅ ସମ୍ପର୍କ କରି ରଜ, କୁମାରପୂର୍ଣ୍ଣିମାରେ ଭାରବେଭାର ଦିଆନିଆ ମଧ୍ଧ ଚାଲୁଥିଲା। ମୋ ମାଆ ଓ ମାଉସୀ ସ୍କୁଲରୁ ଫେରିବା ବେଳେ ଶାଶୁ ତାଙ୍କୁ ବାଟରୁ ଡାକିନେଇ ମୁଣ୍ଡ ବାନ୍ଧିଦେଇ ଜଳଖିଆ ଖୁଆଇ ଛାଡ଼ନ୍ତି। ମାଆ ଓ ଅପା ଦୁହେଁ କହିବାର ଶୁଣିଛି – ଚୌଧୁରାଣୀଙ୍କ ପାଖରେ ସୋମବାର ଦିନ ତାଙ୍କର ଯେଉଁ ସୋମବାର ଅରୁଆଭାତ ସ୍କୁଲରୁ ଫେରି ଖାଉ, ସେପରି ସୁଆଦ ଆଉ କେଉଁଥିରୁ ପାଉନାହିଁ।

ସେତେବେଳେ କଟକରେ ଅଳ୍ପ କେତୋଟି ଆଭିଜାତ୍ୟ ପରିବାର ରହୁଥିଲେ । ତା ମଧ୍ୟରେ ଗୋଟିଏ ସୁଦାମ ନାୟକଙ୍କ ଘର । ସୁଦାମବାବୁ ଗଡ଼ଜାତରେ କାମ କରୁଥିଲେ । ଗଡ଼ଜାତ ରାଜାଙ୍କ ଜିନିଷପତ୍ର, ଖୁବ୍ ଦାମୀ ଦାମୀ ଗହଣା ଓ ପାଟ ତାଙ୍କ ଘରେ ବହୁତ ଦେଖିବାକୁ ମିଳୁଥିଲା । ସୁଦାମବାବୁଙ୍କ ପରି ସ୍ନେହୀ ଲୋକ ସାଧାରଣତଃ ଦେଖାଯାନ୍ତି ନାହିଁ । ମୋ ଶାଶୁଙ୍କୁ ସୁଦାମବାବୁ ଝିଅ କରିଥିଲେ । ତାଙ୍କଠାରୁ ଓ ଆମଘରୁ ମଧ୍ୟ ଶୁଣିଛି ସୁଦାମବାବୁଙ୍କ ସ୍ତ୍ରୀ ସମସ୍ତଙ୍କୁ ସ୍ନେହ କରୁଥିଲେ । ତାଙ୍କ କଥା କୁଆଡ଼େ ଯେ ଶୁଣିଥିବ ସେ ତାଙ୍କୁ ଭୁଲିପାରିବ ନାହିଁ । ରକ୍ତସମ୍ପର୍କ ନଥିଲେ ମଧ୍ୟ କଟକ ସହରରେ ସେତେବେଳେ ଏହିପରି ଅଳ୍ପ କେତୋଟି ପରିବାର ପାରିବାରିକ ସ୍ନେହବନ୍ଧନରେ ଚଳୁଥିଲେ ।

ବାପାଙ୍କର ଜନ୍ମଦିନ ଦିନ ମୁଁ, ଅପା ଓ ଦୁର୍ଗାଅପା ବାପାଙ୍କୁ ନୂଆଲୁଗା ପିନ୍ଧାଉ । ପିଠାକରି ନାଗିଦେଉ । ଟିମଅପା ବାହାହୋଇ ଶାଶୁଘରେ ଥାଏ । ଦୁର୍ଗାଅପା (ମୋ ପିଉସୀ) ମରିଯାଇଥାନ୍ତି, ତେଣୁ ବାପାଙ୍କ ଜନ୍ମଦିନ କାମର ଦାୟିତ୍ୱ ଏକା ମୋ ଉପରେ । ପିଠା କରିବାରେ ସମସ୍ତେ ସାହାଯ୍ୟ କରୁଥାନ୍ତି । ମୁଁ ଭାବୁଥାଏ କାମଟା ମୋର । ନୂଆ ଲୁଗା ଓ ଚାଦର କୁଞ୍ଚେଇକରି ବାପାଙ୍କୁ ପିନ୍ଧିବାକୁ ଦେଲି । ଭୋଗ ଦେବାପାଇଁ ସବୁ ସଜାଡ଼ିଲି । ବାପାଙ୍କ କପାଳରେ ଚନ୍ଦନ ଲଗାଇଦେଲି । ପିଠା ପାଣି ଛଡ଼େଇଦେଇ ବାପ ଝିଅ ଖାଇବସିଲୁ । ଆମ ଖିଆ ଅଧା ହେଲାବେଳକୁ ଦାଣ୍ଡରେ 'ଗୋପାଳ', 'ଗୋପାଳ' ଡାକ ଶୁଭିଲା । ବାପା ବଡ଼ପାଟି କରି କହିଲେ, "ତୁ ବସ୍, ମୁଁ ଖାଇବସିଛି । ଖାଇସାରି ଯାଉଛି ।" ବାପା ମାଆକୁ କହିଲେ, "ଗୋକୁଳାନନ୍ଦ ଆସିଛି ।" ଖାଇସାରି ବାପା ବୈଠକଖାନାକୁ ଯିବା ମାତ୍ରେ ଶ୍ୱଶୁରଙ୍କ ପାଟି ଶୁଭିଲା । ସେ ବଡ଼ପାଟି କରି କହିଲେ, "ତୁ ମତେ ନ ପଚାରି ଝିଅ ବାହାଘର କଥା ଅନ୍ୟ ଜାଗାରେ ପକାଇଛୁ ?" ତାପରେ କ'ଣ କଥାବାର୍ତ୍ତା ହେଲା ମୁଁ ଜାଣେନାହିଁ । ତାର କେତେଦିନ ପରେ ଜାଣିଲି ଯେ, ସେଠି ମୋ ବାହାଘର କଥା ଠିକ୍ ହେଲା । ମୋ ବାହାଘର ପ୍ରସ୍ତାବରେ ସମସ୍ତେ ଖୁସି । ସର୍ବୋପରି ବଡ଼ବାପା ଖୁବ୍ ଖୁସି ବୋଲି କୁହାକୁହି ହେଲେ । ତା ମଧ୍ୟରେ ଗୋଟିଏ ପ୍ରଶ୍ନ ଉଠେ – ବେଲୁ ଚଳିବ କେମିତି ? ମାଆର ସାଙ୍ଗ ଚନ୍ଦ୍ରଭାଗା, ଶ୍ରୀମୁଖ ଏମାନେ କହନ୍ତି ବାହାଘର ଭାଙ୍ଗିଦିଅ । ମାଆ କିନ୍ତୁ ଶାନ୍ତ ଭାବରେ କୁହେ – "ଝିଅ ଯଦି ଗୁଣର ହେବ ସବୁ ଚଳେଇନେବ ।"

ହଠାତ୍ ଦିନେ ଧାଇ ଆସି ପହଞ୍ଚିଲେ । ଧାଇଙ୍କୁ କି ଆଦର ଯତ୍ନ । ସେ ମୋ ଶ୍ୱଶୁରଙ୍କ ବାପାଙ୍କ ରକ୍ଷିତା ସ୍ତ୍ରୀ । ତାଙ୍କ ବ୍ୟବହାର ଭାରି ମର୍ଯ୍ୟାଦାପୂର୍ଣ୍ଣ । ମୁଁ ପିଲାଦିନେ ମାଆ ଓ ଆଇ ସାଙ୍ଗରେ ଶାଶୁଘରକୁ ଯାଇଛି – ତେଣୁ ଦେଖିବା ପ୍ରଶ୍ନ ତ ନାହିଁ । କ୍ରମେ ବାହାଘର ଦିନ ନିକଟ ହେଲା । ବାହାଘରର କିଛିଦିନ ପୂର୍ବରୁ ଆମେ ଗାଁକୁ ଗଲୁ । ବାହାଘରକୁ ମଝିଆଁମାମୁ ଓ ମାଇଁ ଆସିଲେ ନାହିଁ । ମଝିଆଁମାମୁ ସେତେବେଳକୁ ଶକ୍ତ

ବେମାର, ମଝିଆମାଈଁ ମଧ୍ୟ ସେଥିପାଇଁ ଆସିନଥିଲେ। ବାହାଘର ହେଲା ମାର୍ଗଶିର ମାସ ପ୍ରଥମାଷ୍ଟମୀ ଦିନ। ସେଦିନ ସକାଳେ ମାଆ ମୋ ପାଖରେ ଆସି ବସିଲା। କେତେଦିନ ଆଗରୁ ସେ ଓ ବାପା ମୋ ମୁହଁକୁ ଚାହିଁପାରୁ ନଥାନ୍ତି କି ମୁଁ ମଧ୍ୟ ତାଙ୍କ ମୁହଁକୁ ଚାହିଁପାରୁନଥାଏ। ମାଆ ସେତେବେଳେ ନିଜକୁ ଖୁବ୍ ସମ୍ଭରଣ କରି ମୋ ପିଠି ଆଉଁଷି ଦେଉ ଦେଉ କହିଲା- "ଆଜିଠାରୁ ତୋର ପିଲାଦିନିଆ କଥା ସରିଗଲା। ଆଜି ଯେ ତୋର ପର ହୋଇଛନ୍ତି, କାଲି ସେ ତୋର ଆପଣାର ହେବେ। ତୁ ତାଙ୍କୁ କେତେ ଆପଣାର କରିବୁ ସେକଥା ତୋ ଉପରେ ନିର୍ଭର କରେ। କେତୋଟି କଥା ମନେରଖି ଚଳିଲେ ମନରେ ଦୁଃଖ ପାଇବୁନାହିଁ। କିଏ ତୋତେ କେତେ ଭଲପାଉଛି, ସ୍ନେହାଦର କରୁଛି କି ଭଲ ବ୍ୟବହାର କରୁଛି ସେକଥା ପ୍ରତି ଆଦୌ ଦୃଷ୍ଟି ନ ଦେଇ ତୁ ସମସ୍ତଙ୍କୁ ଭଲପାଇବୁ। ତୋର ଦିଅର, ନଣନ୍ଦ, ଭଣଜା ଅଛନ୍ତି - ତାଙ୍କୁ ଆଦର ଯତ୍ନ ଯେତେଦୂର କରାଯାଇପାରେ କରିବୁ। ସମସ୍ତଙ୍କର ସେବାଯତ୍ନ କରିବୁ। ତୋତେ ଅନେକ କଡ଼ା କଥା ଶୁଣିବାକୁ ହେବ। ତୋ ମନକୁ ତୁ ଠିକ୍ ରଖିବୁ, ଯେପରି ତୋ ପାଟିରୁ କେବେ ହେଲେ କଡ଼ାକଥା ବାହାରିବନାହିଁ। କିଏ କିପରି କଥା କହିଲା, କିଏ କିପରି ବ୍ୟବହାର କଲା, ସେଗୁଡ଼ାକ ଆଦୌ ମନରେ ଧରିବୁ ନାହିଁ। ତୋ ଶାଶୁ ଭାରି କଡ଼ା ଲୋକ। ତାଙ୍କ ମୁହଁରୁ ତୋ ପ୍ରଶଂସା ଶୁଣିଲେ ଆମେ ଧନ୍ୟ ହେବୁ।" ସେ କଥାଗୁଡ଼ିକ ଦିନଯାକ ଭାବୁଥାଏ। ମାଆ ଓ ବଡ଼ମାଈଁ ମଝିଆଁମାମୁଙ୍କ ଦେହ ବେମାର ଯୋଗୁଁ ଭାରି ବ୍ୟସ୍ତ ହେଉଥାନ୍ତି। ମଝିଆଁ ମାମୁ ଆଗରୁ କହୁଥିଲେ, "ଗୋକୁଳାନନ୍ଦଟା ବଡ଼ ଭାଗ୍ୟବାନ୍, ଏପରି ବୋହୂ ପାଇଲା।" ବଡ଼ମାମୁ କହିଥିଲେ, "ମୁଁ କଟକରେ ତ ରହିବି, ରାତି ପାହିଲେ ତୋ ଖବର ଆଗେ ନେଲେ ପଛେ ଯୋଉ କଥା। କିନ୍ତୁ ତୋ ନିନ୍ଦା ଯେପରି ମୋତେ ଶୁଣିବାକୁ ନପଡ଼ିବ। ତୋ ଶାଶୁ ଭାରି ରାଗୀଲୋକ। ତାଙ୍କ ପାଖରେ ତୁ ଯଦି ଭଲରେ ଚଳିବୁ ତୋର ଜୀବନଟା ଭଲ ହୋଇଯିବ। ତା ହେଲେ ସମସ୍ତଙ୍କୁ ନେଇ ଚଳିପାରିବୁ।" ସମସ୍ତେ ମନେ ମନେ ଭୀତତ୍ରସ୍ତ - ଶାଶୁ ତ ରାଗୀ, ଇଏ କେମିତି ଚଳିବ। ମାଆକୁ ତାର ସାଙ୍ଗମାନେ କହନ୍ତି - ଝିଅ କେମିତି ସେଠି ଚଳିବ ? ଚୌଧୁରାଣୀ ତ ଭାରି ରାଗୀଲୋକ। ଏସବୁ ଶୁଣି ମୁଁ ଚୁପ୍ ରହିଥାଏ। ସେ ବିଷୟରେ କିଛି ଭାବୁନଥାଏ। ବାହାଘର ଯଥାରୀତିରେ ସରିଲା। ବାହାଘର କୁଆଡ଼େ ଖୁବ୍ ଧୁମ୍‌ଧାମ୍‌ରେ ହେଲା ବୋଲି କହନ୍ତି। ବରପକ୍ଷର ବରଯାତ୍ରୀଙ୍କ ସହ ଯେଉଁ ଲୋକ ବାହାଘର କାମରେ ଆସିଥିଲେ, ସେମାନଙ୍କଠାରୁ ମୁଁ ପରେ ଶୁଣିଛି ଯେ ଏତେ ଭଲ ଖାଇବାକୁ ସେମାନେ ଆଉ କେଉଁଠି ପାଇନାହାନ୍ତି। ମୋ ମାଆର ସେ ଗୋଟାଏ ସଉକ ଥିଲା - ଗଉଡ଼, ଭଣ୍ଡାରୀ, ବାଜାଦାର, ପୁରୋହିତ ଆଦି ନାଜିମାତ୍‌ମାନେ ଯେପରି ମନଇଚ୍ଛା ମାଛ, ଖିରୀ ଓ ଆରିସା ପିଠା ଖାଇବାକୁ ପାଇବେ।

ମୋର ତ ଏକମାତ୍ର ଚିନ୍ତା ମୁଁ ମାଆକୁ ଛାଡ଼ି କେମିତି ରହିବି ? ମଙ୍ଗଳପାକ ଦିନ ମୁଁ ଓ ମୋ ଆଈ ଗୋଟିଏ ସବାରିରେ ଚାଟେଶ୍ୱରଙ୍କ ମନ୍ଦିରକୁ ଯାଇ ମହାଦେବ ଓ ପାର୍ବତୀଙ୍କୁ ଦର୍ଶନ କରି ଆସିଲୁ । ତା ପୂର୍ବରୁ ଦଶ ବାରଦିନ କନିଆ ଡାକରାରେ ଗଲା । ଟିମଅପା ବାହାଘରକୁ ଦୁର୍ଗାଅପା ଥିଲା, ସେ ମରିଯାଇଥିବାରୁ ତା ଅଭାବ ବିଶେଷଭାବରେ ଲାଗୁଥାଏ । ଖେରସରେ ରାତିରେ ପହଞ୍ଚିଲି । ସକାଳେ ସବାରିରେ ବସିଲି, ରାତିରେ ଓହ୍ଲାଇଲି । ଗୋଟିଏ ଦୁଇଟି ଘଟଣା ମୋ ମନକୁ ବ୍ୟଥିତ, ଚିନ୍ତାଗ୍ରସ୍ତ କରିଦେଇଥାଏ । ଶାଶୁଘରୁ ଧାଈମାନେ ବର ସାଙ୍ଗରେ ଯାନ୍ତି । ସେହି ପ୍ରଥା ଅନୁସାରେ ଆମ ଧାଈ ଯାଇଥିଲେ ବରଯାତ୍ରୀ ଗହଣରେ । ଧାଈ ଆମ ଘରେ କହିଲେ ଯେ, ବାହାଘର ସରିଲା, ଏଣିକି ବୋହୂ ଆମ ପ୍ରଥା ଅନୁସାରେ ଚଳିବ । ସେ ଜୁଡ଼ା ପାରିକରି ଓ କଛା ମାରି ଲୁଗା ପିନ୍ଧିକରି ଯିବ । ଏକଥା ଶୁଣି ଆମଘରେ କାନ୍ଦବୋବାଳି ପଡ଼ିଗଲା । ମାଆ, ମାଈଁ, ମାଉସୀ ଓ ଆଈ ଚିନ୍ତାଗ୍ରସ୍ତ ହେଲେ, ମାତ୍ର ସ୍ଥିରହେଲା ଯେ ତାଙ୍କ ଘର ବୋହୂ, ତେଣୁ ସେ ଯାହା କହୁଛନ୍ତି ସେୟା ହେବ । ଧାଈଙ୍କ କଥା ରହିଲା । ମାଆ ମୋତେ କହିଲା, "ଏହିପରି ଅନେକ କଥା ତୋତେ ତୋ ଇଚ୍ଛା ବିରୁଦ୍ଧରେ କରିବାକୁ ପଡ଼ିବ – ସେଗୁଡ଼ାକ କରିଯିବୁ – ମାତ୍ର ମନରେ ରାଗ ରଖିବୁନାହିଁ । ଯେକୌଣସି କାମ କରିବାକୁ ପଡ଼ିଲେ ଆସିବନାହିଁ ବା ପାରିବିନାହିଁ କହି ମନାକରିବୁ ନାହିଁ । ଖାଇବାରେ ସୁଆଦ ଅସୁଆଦ କେବେ କହିବୁ ନାହିଁ – ଯାହା ଦେବେ ତା ଖୁସିରେ ଖାଇବୁ । ଯାହା ନାଇବାକୁ ପିନ୍ଧିବାକୁ ଦେବେ ବା କହିବେ ତା ନାଇବୁ, ପିନ୍ଧିବୁ । ବାଧରେ ପିନ୍ଧୁଛୁ ବା ବିରକ୍ତିରେ ପିନ୍ଧୁଛୁ, ନାଇଛୁ ବୋଲି ଯେପରି ସେମାନେ ନ ଭାବିବେ । ଯାହା କାମ ଦେବେ ପାରୁ କି ନପାରୁ ତାକୁ କରିବୁ ।" ଏକଥାକୁ ତ ମୁଁ ବେଦବାକ୍ୟ ବୋଲି ମନେକଲି । କିନ୍ତୁ ଯେତେବେଳେ ବିଦାୟ ହେବା ପୂର୍ବରୁ ମୋ ମୁଣ୍ଡରେ ଜୁଡ଼ା ପାରିଦେଲେ, ସେତେବେଳେ ମୁଁ ସମ୍ଭାଳି ପାରିଲିନାହିଁ । ଆମ ଘରେ ତ କେହି ଜୁଡ଼ାପାରି ଜାଣନ୍ତିନାହିଁ – କିଏ ଆସି ପାରିଦେଲା । ରାଧାମଣି ମାଉସୀଙ୍କ କଥା ମନେପଡ଼ିଲା । ସେ ମୋ ମାଆକୁ 'ଚନ୍ଦ୍ରଭାଗା' ଡାକନ୍ତି । ସେ କହନ୍ତି – "ଚନ୍ଦ୍ରଭାଗା, ବେଲୁକୁ ତ ଏପରି ବଢ଼ାଇଛ, ସେ ଚୌଧୁରାଣୀଙ୍କ କଥା ସମ୍ଭାଳି ପାରିବ ତ ? ମୁଁ ତ କଟକ ଆସି ପ୍ରଥମ ପ୍ରଥମ ତାଙ୍କରି ପାଖରେ ଚଳିଲି । ସେ ମୋର ମୁରବି ଥିଲେ । ତାଙ୍କ ପାଖରେ ଚଳିବା କଷ୍ଟ ।" ମାଆ ତାଙ୍କୁ କ'ଣ ଜବାବ ଦେଲା ମନେନାହିଁ । ବାହାଘର ପରଦିନ ପୀତବାସ ମଉସା ଓ ଜଗବନ୍ଧୁ ମଉସା ମୋ ପାଖକୁ ଆସି ମୋତେ କହିଲେ, ମାଉସୀମାନେ ତାଙ୍କୁ କହିଥିଲେ ମୋ ପାଖରେ ବସି ମୋତେ ଦେଖିଯିବା ପାଇଁ । ମୋ ପାଖରୁ ଉଠିଯାଇ ଆଈକୁ କହିଲେ – "ଏ ଝିଅ ତାଙ୍କ ଘରେ କେମିତି ଚଳିବ ?"

ଏଣେ ଆମ ଘରେ ଭାଳେଣି ପଡ଼ିଛି – ମୁଁ ଶାଶୁଘରେ କେମିତି ଚଳିବି? ତେଣେ ଶାଶୁଘରେ ଭାଳେଣି ପଡ଼ିଥାଏ ଯେ କିରସ୍ତାନ ଘରର ଝିଅ ଆସି କେମିତି ଚଳିବ? ଶ୍ୱଶୁର ଯେତେବେଳେ ଶାଶୁଙ୍କୁ ମୋତେ ବୋହୂ କରିବାର କଥା କହିଲେ, ଶାଶୁ ଦୁଇଟି କଥାରେ ଆପତ୍ତି କଲେ। ଗୋଟିଏ ହେଉଛି ଯେ ମାଆର ପୁଅ ନାହିଁ – କାଳେ ମାଆ ଓଳି ଆଣି ମୋର ପୁଅ ନ ହେବ। ଅନ୍ୟଟି ମୁଁ କିରସ୍ତାନ ଘରେ ଚଳିଛି – ଜୋତା ମୋଜା ମାଡ଼େ। ମଧୁ ବାରିଷ୍ଟର ଘରେ ରହେ। ମୁଁ ଶାଶୁଙ୍କ ରୁଚି ଅନୁସାରେ ଚଳିପାରିବି କି ନାହିଁ ତାହା ଉପରନ୍ତୁ ଭାଇ-ବିରାଦର ଓ ବନ୍ଧୁବାନ୍ଧବ କହିବେ ଯେ, ପ୍ରଥମ ବୋହୂଟି ଖ୍ରୀଷ୍ଟିଆନ ଘରୁ କଲ। ଶ୍ୱଶୁର ବୁଝେଇ ବାଝେଇ ସେ ଆଶଙ୍କା ମନରୁ ଦୂର କଲେ। ପ୍ରକୃତରେ ତାହାହିଁ ହେଲା। ପ୍ରାୟ ସମସ୍ତେ ଚାହିଁ ରହିଥାନ୍ତି ଯେ, କିରସ୍ତାନ ଘର ଝିଅ କିମିତି ଚଳପ୍ରଚଳ ହେବ, ଶାଶୁଙ୍କୁ ମାନିବ କି ନାହିଁ, ଇତ୍ୟାଦି। ବାହାଘର ପରଦିନ ଗୁରୁବାର ବୋଲି ବାପଘରେ ରହିଲି। ଶୁକ୍ରବାର ସକାଳେ ବିଦାହେଲି। ଗଉଡ଼ମାନେ ଖୁବ୍ ଜୋରରେ ଚାଲିଥାନ୍ତି। ବାପା ସବାରି ବାଡ଼ିଧରି ଅଳ୍ପ ଟିକିଏ ବାଟ ଆସି ମୋ ମୁଣ୍ଡକୁ, ଦେହକୁ ଆଉଁଷିଦେଇ ଛାଡ଼ିକରି ଗଲେ। ବହୁକୁଦ ପର୍ଯ୍ୟନ୍ତ ଲୋକ ଠାଆକୁ ଠାଆ ଠିଆ ହୋଇଥାନ୍ତି ଦେଖିବାପାଇଁ। ସାରାଦିନ ସବାରିରେ ବସିରହିଥାଏ – ପାଣି ସୁଦ୍ଧା ପିଇନାହିଁ। ଦେହ ବହୁତ କ୍ଳାନ୍ତ। ଖରାବେଳେ ଆୟତପୁରରେ ସମସ୍ତେ ଖାଇଲେ। ଆମଘର ଲୋକ ଭାବରେ ଆମଘରେ କାମ କରୁଥିବା ବୁଧୀ ମୋ ସବାରି ଧରି ଆମ ଗାଁରୁ ଖେରସଯାଏ ଗଉଡ଼ଙ୍କ ସାଙ୍ଗରେ ସମାନ ଚାଲିଥାଏ। ମୋତେ ଜଳଖିଆ ଖାଇବାକୁ, ପାଣି ପିଇବାକୁ ଆୟତପୁରରେ ବୁଧୀ ବହୁତ ଲଗାଇଲା। ମୁଁ ଖାଇଲି ନାହିଁ କିମ୍ବା ପିଇଲିନାହିଁ। ସବାରି ଖେରସ ଦାଣ୍ଡରେ ଥୁଆହେଲା। କେତେ ରାତି ହେବ କେଜାଣି, ବହୁତ ରାତି ପରି ମନେ ହେଉଥାଏ, ଅନେକ ଲୋକଙ୍କ ପାଟି ଶୁଭୁଥାଏ। ମୁଁ ପହଞ୍ଚିଲା ମାତ୍ରେ ମହିଳା ଗୁରୁଜନମାନଙ୍କର ଯେ ମୋ ଉପରେ ସତର୍କ ଦୃଷ୍ଟି ରହିଛି, ତାହା ଜାଣିପାରିଲି। ସବାରି ପହଞ୍ଚିବା ମାତ୍ରେ ଜେଠେଇ ବଡ଼ପାଟିରେ କହିଲେ– "ସବାରି ଭିତରେ ମୁଁ ଆଗ ବୋହୂ ମୁହଁ ଦେଖିସାରିଲା ପରେ ଆଉ ଯାହା ହେବ।" ମୋ ମୁହଁ ଦେଖିସାରି କହିଲେ – "ମାଗୁଣାବୋଉ ତ ଦେଖିଚାହିଁକରି ବୋହୂ କରିଛନ୍ତି, ଏକା ମାନିଲେ ହେଲା।"

ପରଦିନ ଜାଣିଲି ବହୁତ ଲୋକ, ବଡ଼ ନଣନ୍ଦମାନେ, ପିଉସୀ ଶାଶୁ, ତାଙ୍କ ଝିଅମାନେ ଆସିଛନ୍ତି। ସମସ୍ତଙ୍କ ମନ ସନ୍ଦିଗ୍ଧ ଯେ କିରସ୍ତାନ ଘରର ଝିଅ କିପରି ଚଳିବ, ଆମ ଢଙ୍ଗରେ ଚଳିବ କିମ୍ବା ତାହାର ବାପଘର ଢଙ୍ଗରେ ଚଳିବାକୁ ଚାହିଁବ। ଏହି କଥା ପରସ୍ପର ଭିତରେ କଥାବାର୍ତ୍ତା ହେବା ବି ମୋ କାନରେ ପଡୁଥାଏ। କାହାରି ସାଙ୍ଗରେ

କଥାବାର୍ତ୍ତା କରିବା ପ୍ରଶ୍ନ ତ ନଥାଏ । ମୁଁ ଚୁପ୍‌ହୋଇ ବସି ଭାବୁଥାଏ ଏମାନଙ୍କୁ କେମିତି ସନ୍ତୁଷ୍ଟ କରିବି ? ଏହା ହେଲା ମୋର ଧ୍ୟେୟ । ଆମଘରୁ ଗୋଟିଏ ବାକ୍ସରେ ମନୋହାରୀ ଜିନିଷମାନ ଯାଇଥିଲା । ମାଆ (ଶାଶୁ) ବାକ୍ସ ଫିଟାଇ ଦେଖିବା ପାଇଁ ସମସ୍ତଙ୍କୁ ଡାକିଲେ ଏବଂ ଯେ ଯେଉଁ ଜିନିଷ ପସନ୍ଦ କଲେ ସେ ତାକୁ ଦେଲେ ।

ଗୁରୁଜନମାନଙ୍କୁ ଚନ୍ଦନ କାମ କରି ସେଥିରେ ଚନ୍ଦନ ଦେବାକୁ ହେବ । ସେମାନେ ଗାଧୋଇସାରି ଆସିବାବେଳକୁ ଝିଅମାନେ ନେଇ ଚନ୍ଦନ ପେଡ଼ି ବା ଥାଳିଆରେ ଚନ୍ଦନ କାମ ଭିତରେ ଚନ୍ଦନ ଥିବା ଥାଳିଆ ବା ପେଡ଼ି ଦେବେ । ମାଗଅପା ବଡ଼ ଝିଅମାନଙ୍କୁ ଚୁପ୍‌କରି କହିଲେ, "ସେ ତ ସହରରେ ବଢ଼ିଛି, ସେ ଚନ୍ଦନ କାମ ଜମା ଜାଣିନଥିବ । ତମେମାନେ ଗୋଟିଏ ଗୋଟିଏ କରିଦିଅ ରମା, ଚଞ୍ଚଳା ହେରିକା ବଡ଼ ବଡ଼ ଝିଅମାନେ ଚନ୍ଦନ କାମ କରି ଗୁରୁଜନମାନଙ୍କୁ ଦେବାପାଇଁ ନେଲେ । ନେଲାବେଳେ ବଡ଼ଖୁଡ଼ୀ ଶାଶୁ ଡାକି କହିଲେ, "ଦେଖେଇଲ ବୋହୂ କେମିତି ଚନ୍ଦନ କାମ କରିଛି ?" ଚନ୍ଦନକାମ ଦେଖି ସାଙ୍ଗେ ସାଙ୍ଗେ ଗୋଟିଏ କାଠି ଓ ଟିକିଏ ଚନ୍ଦନ ଆଣି ମୋତେ ଦେଇ କହିଲେ - ଏ ପେଡ଼ିରେ ତମେ ଗୋଟିଏ ଗାର ପକେଇଦିଅ ମୁଁ ଗୋଟିଏ ଗାର ପକେଇ ଦେବାମାତ୍ରେ କହିଲେ - "ଚନ୍ଦନ କାମ କିଏ କରିଛି ଜଣାଗଲା ।" ମାଗଅପା କହିଲେ - "ଖୁଡ଼ୀ, ସେଗୁଡ଼ାକ ସେ କେଉଁଠୁ ଜାଣିବ ? ସମସ୍ତେ ତାକୁ ଚଳେଇନେବା ନା ତମେ ଏମିତି କହିବ ?"

ଚନ୍ଦନ କାମରେ ସିନା ହାରିଲି, ଯେଝା ରୁଚି ଅନୁସାରେ ପାନ ଭାଙ୍ଗିଦେବା, ମୁଣ୍ଡ ବାନ୍ଧିଦେବା କାମରେ ପୂରାକୁ ପୂରା ପାସ୍ ହେଲା । ବିଶିଷ୍ଟ ପାନ ଖାଇବା ଲୋକେ ପ୍ରଶଂସା ବି କଲେ । ନିଶାମଣି ଅପାଙ୍କ ମନକୁ କାହାରି ପାନଭଙ୍ଗା ଆସୁନଥାଏ । ସେ ମୋତେ କହିଲେ, "ତୁ ମୋ ପାନ ଏମିତି ଭାଙ୍ଗିଦେ ।" ମୁଁ ତାଙ୍କ ପାନ ଭାଙ୍ଗିଲି ।

ବସିବା, ଉଠିବା, ଚାଲିବା, ଖାଇବା ସବୁ କଥାକୁ ତୀକ୍ଷ୍ଣ ଦୃଷ୍ଟିର ସହିତ ଲକ୍ଷ୍ୟ କରାଯାଉଥାଏ । ମୁଁ ଖୁବ୍ ସାବଧାନ ହୋଇ ଚଳେ ଯେପରି କୌଣସି କଥାରେ ଅସଣ୍ଢଣା ଦେଖାନଯିବ । ମାଆର କଥାକୁ ମନେରଖି ଭଲ ନ ଲାଗୁଥିବା ଜିନିଷକୁ ମଧ୍ୟ ଖୁସିରେ ଖାଇଲି । କାରଣ ବାହାଘର ଦିନ ସକାଳେ ମାଆ କହିଥିଲା - "ଶାଶୁଘରେ ଯାହା ଖାଇବାକୁ ଦେବେ ଖୁସି ହୋଇ ଖାଇବୁ ।" ଏମିତି ପନ୍ଦର ଦିନ କଟିଲା । କଥାବାର୍ତ୍ତା କାହାରି ସାଙ୍ଗରେ ହେବାକୁ ନଥାଏ, ଚୁପ୍‌ଚାପ୍ ବସିରହିଥାଏ । ମନେ ମନେ ଭାବୁଥାଏ ବ୍ୟାପାର ସହଜ ନୁହେଁ, ସେମାନଙ୍କୁ ଖୁସି କରିବାକୁ ହେଲେ ମୋର ବୋଲି କିଛି ରହିବ ନାହିଁ, ଏମାନଙ୍କୁ ସନ୍ତୁଷ୍ଟ କରିବା ହିଁ କାମ ହେବ । ଦିନ ପନ୍ଦରଟା ଭିତରେ ମୋର ବୟସ ଯେପରି ଅନେକ ବଢ଼ିଗଲା । ପିଲାବୁଦ୍ଧି କୁଆଡ଼େ ଛାଡ଼ିଗଲା । କାହାପାଇଁ କ'ଣ

କଲେ ସେ ଖୁସି ହେବ, ଏହା ହେଲା ମୋର ପ୍ରଧାନ ଚିନ୍ତା । ଖାଇବା, ପିନ୍ଧିବା ଆଦିରେ ସଉକ କୁଆଡ଼େ ଉଭେଇଗଲା ମୁଁ ଜାଣିପାରିଲି ନାହିଁ ।

ପାଇଖାନା ଯାଇ ଦେଖିଲି ତାଟି ଘେରାହୋଇ ତାହା ଭିତରେ ଇଟା ରଖା ହୋଇଛି । ବୁଧୀ କହିଲା – "ଦେଈ, ସକାଳୁ ଯାହା ଝାଡ଼ା ପରିସ୍ରା କରିବାକୁ ଯିବୁ – ଆଉ ଦିନଯାକ ଆସିବାକୁ ବାଟ ପାଇବୁ ନାହିଁ । ବହୁତ ଲୋକ ଅଛନ୍ତି ।" ସେତେବେଳେ ଜାଣିନଥିଲି, ପରେ ଧାଈଙ୍କଠାରୁ ଜାଣିଲି ବୋହୂମାନେ ଘରୁ ବାହାରି ପାରନ୍ତି ନାହିଁ । ଧାଈ ତ ଅନେକ ଝିଅଙ୍କ ସଙ୍ଗେ ଶାଶୁଘରକୁ ଯାଆନ୍ତି – ସେ ଲୁଚେଇକରି ହଳଦୀକାଠୁଆରେ ଝିଅଙ୍କୁ ପରିସ୍ରା କରାଇ ଲୁଚେଇକରି ଫୋପାଡ଼ି ଦିଅନ୍ତି । ପରିସ୍ରା କରାଇବା ପାଇଁ ତାଙ୍କ ପାଖରେ ହଳଦୀକାଠୁଆ ଛଡ଼ା ଅନ୍ୟ ପାତ୍ର ମଧ୍ୟ ନଥାଏ । ଷୋଳମଙ୍ଗଳା ଦିନ କଟକ ଆସିଲୁ । ସମସ୍ତେ ସବାରିରେ ଆସିଲୁ । ଆମଘର ସବାରିଟା ବେଶ୍ ବଡ଼ । ସେଥିରେ ମୁଁ ଓ ଭାଣିଜୀ ବୁଲୁ ଆସିଲୁ । ବୁଲୁ ସାତଆଠ ବର୍ଷର ଝିଅ ସବାରି କବାଟ ଟିକିଏ ଟିକିଏ ମେଲା କରି ବାହାରକୁ ଦେଖୁଥାନ୍ତି ଓ ଅଜସ୍ର ପ୍ରଶ୍ନ କରୁଥାନ୍ତି । ଗପସପ ହେବାର ପ୍ରବୃତ୍ତି ମୋଠାରୁ ଚାଲିଯାଇଥାଏ । ମୁଁ ତ ଚିନ୍ତାମଗ୍ନ । କଟକ ଯାଉଛି – କେମିତି ନିନ୍ଦା ନ ଶୁଣିବି ।

## ଶାଶୁଘର

କଟକ ଆସିଲାରୁ ଶ୍ୱଶୁର ଶାଶୁଙ୍କୁ କହିଲେ, "ବେଲୁ ରାନ୍ଧିବ – ତମେ ତାକୁ କିଛି ବତେଇବ ନାହିଁ । ତା ମନକୁ ଯାହା ଆସିବ ସେ କରିବ ।" ଶାଶୁ ପ୍ରତିବାଦ କରି କହିଲେ, "ସେ ପିଲାଟାଏ, ତାକୁ ବତେଇ ନ ଦେଲେ ସେ କ'ଣ ରାନ୍ଧିବ ?" ଶ୍ୱଶୁରଙ୍କର ନିର୍ଦ୍ଦେଶ ହେଲା ଯେ, ଅନ୍ୟମାନେ ଭଜା ତରକାରୀ କରିବାପାଇଁ ପରିବା ମସଲା ପ୍ରଭୃତି ସବୁ ମୋ ପାଖରେ ଦେଇ ଦେବେ । ଶାଶୁ ଆଦୌ ମୋ ରନ୍ଧା ପାଖରେ ରହିବେ ନାହିଁ । ଶ୍ୱଶୁର ଜାଣିଥିଲେ ଯେ କଲିକତାର ବଡ଼ ହୋଟେଲର ଜଣେ ଲୋକ ଆମକୁ ମାଛମାଂସ ରନ୍ଧା ଶିଖାଇଥିଲା । ତାଙ୍କର ଇଚ୍ଛା, ମୁଁ ସେହି ସବୁ ରନ୍ଧା ରାନ୍ଧିବି ।

ରନ୍ଧା ତ ଆମଘରୁ ମୁଁ ଶିଖିଥାଏ – ପ୍ରତିଦିନ କିଛି କିଛି ରାନ୍ଧିବା ଥିଲା ମୋର କାମ । ନାରଣ ଓ ରାମ ପୂଜାରୀ କଲିକତାରେ ହୋଟେଲରେ ରନ୍ଧା ଶିଖିଥାନ୍ତି – ତେଣୁ ରନ୍ଧା କାମରେ ଦକ୍ଷ । ରାମ କାଞ୍ଜି ଦହିକଡ଼ିଠାରୁ କୁର୍ମା କାଲିଆ ପର୍ଯ୍ୟନ୍ତ ସବୁ ରୋଷେଇରେ ଦକ୍ଷ । ତାହାଛଡ଼ା ଉଆଜୁ ନାମକ ଜଣେ ମୁସଲମାନ ଲୋକ ଆମକୁ ମାଂସ, ଅଣ୍ଡା ପ୍ରଭୃତି ରନ୍ଧା ଶିଖାଇଥିଲେ । ସେ କାକୁଡ଼ି ପ୍ରଭୃତି କଞ୍ଚାଫଳରେ ବଡ଼ ସୁନ୍ଦର ସାଲାଡ୍ କରୁଥିଲେ । ତାଙ୍କ କାଟିବାର ଢଙ୍ଗ ଅତି ସୁନ୍ଦର । କିନ୍ତୁ ଶ୍ୱଶୁରଙ୍କ ପାଇଁ କ'ଣ ରାନ୍ଧିବି, ମୋତେ ବୁଦ୍ଧି ଦିଶିଲାନାହିଁ । ଶାଶୁ ଶ୍ୱଶୁରଙ୍କ ମଧ୍ୟରେ ଖୁବ୍ ସଦ୍‌ଭାବ ଥାଏ, ପୁଣି ଟିକିଏ

କଥାରେ କଳି ବି ହୁଏ। ଶାଶୁ କହନ୍ତି, ଯେତେହେଲେ ପିଲାଟାଏ ତ – ତାହା ଉପରେ ଏତେ ଭାର ଦେଲେ ସେ କ'ଣ କରିବ ? ଶାଶୁ ଲୁଚେଇକରି ଆସି ମୋତେ ପରାମର୍ଶ ଦିଅନ୍ତି। ଶାଶୁ ଶ୍ୱଶୁରଙ୍କର କଳିର କାରଣ ଅତି ସାମାନ୍ୟ। ଭଣଜା ରାଜୁ ସାତ ଆଠବର୍ଷର ହୋଇଥାନ୍ତି। ସେ ଅଝଟ ହେଲେ – ଚିନି ଦେଲେ ରସଗୋଲାରେ ଲଗେଇ ଖାଇବେ – ରସଗୋଲା ମିଠା ଲାଗୁନାହିଁ। ଶ୍ୱଶୁର କହନ୍ତି – "ଚିନି ମାଗୁଛି ତ ଦିଅ" ଶାଶୁ କହନ୍ତି, "ଦିଆଯିବ ନାହିଁ।" ଶାଶୁଙ୍କ ଜିଦ୍ ଦେଖି ଶ୍ୱଶୁର ବୈଠକଖାନାକୁ ଯିବେ। କୋର୍ଟକୁ ଯିବା ବେଳ ହେଲେ ପ୍ରସ୍ତୁତ ହେବା ଦେଖି ତାଙ୍କ ଚାକର ସନିଆ ଆସି ଖବର ଦେବ। ଧାଈ ଆସି ମୋତେ ଧରିବେ। ମୁଁ ଯାଇ ଖାଇବାକୁ ଆସିବା ପାଇଁ ଶ୍ୱଶୁରଙ୍କୁ ଅନୁରୋଧ କରିବି। ମୋ କଥା ରକ୍ଷାକରି ସେ ଆସି ଖାଇବେ। ମୁଁ ମାଛମୁଣ୍ଡ ଭଲପାଏ ବୋଲି ଶ୍ୱଶୁର ଆମ ଘରୁ ବୁଝି ଯାଇଥିଲେ। ଶ୍ୱଶୁରଙ୍କ ବରାଦରେ ମୋତେ ପ୍ରତିଦିନ ମାଛମୁଣ୍ଡ ଦିଆଯାଏ। ଗୁରୁବାର ପଡ଼ିଲା। ଶାଶୁ କହିଲେ, "ଘରେ ବୋହୂ ଗୁରୁବାର ଦିନ ମାଛ ଖାଇବ ନାହିଁ।" ଶ୍ୱଶୁରଙ୍କର ଯୁକ୍ତି ଯେ, ଶାଶୁ ଥାଉ ଥାଉ ବୋହୂ କାହିଁକି ଏଗୁଡ଼ାକ କରିବ ? ଦୁହିଁଙ୍କର ଯୁକ୍ତିତର୍କ ଆରମ୍ଭ ହେଲା। ଶ୍ୱଶୁର କହିଲେ, "ତମେ ଆଉ ବାର, ତିଥି କଥା ତାକୁ ଶିଖାଅ ନାହିଁ। ସେ ଗୁଣ ତମ ପାଖରେ ଥାଉ – ପାଳିବ।" ଏଣେ ସମସ୍ତେ ପ୍ରମାଦ ଗଣିଲେ ଯେ, ନିଶ୍ଚୟ ଖିଆ ବନ୍ଦହେବ, ଶ୍ୱଶୁର ଉପାସରେ କୋର୍ଟକୁ ଯିବେ ଇତ୍ୟାଦି।

ଧାଈ ସାହସ କରି ପାଖକୁ ଚାଲିଯାଇ ଶାଶୁଙ୍କୁ କହିଲେ, "ବୋଉ ତମେ କାହିଁକି ବ୍ୟସ୍ତ ହେଉଛ ? ବୋହୂ ପରା ସୁଦଶାବ୍ରତ କରିନାହିଁ – ମାଛ ଖାଇଲେ ଦୋଷନାହିଁ – ମାଛ ଖାଉ।" ଏତିକିରେ ତୁମୂଳ କାଣ୍ଡ ହେବାକୁ ଯାଉଥିବା ବ୍ୟାପାରର ନିଷ୍ପତ୍ତି ହେଲା। ଶ୍ୱଶୁର ବଞ୍ଚିଥିବା ବେଳେ ସୁଦଶାବ୍ରତ ପଡ଼ିନଥିଲା, ତେଣୁ ଗୁରୁବାର ଦିନ ତାଙ୍କ ସାଙ୍ଗରେ ମୁଁ ମାଛ ଖାଉଥିଲି। ପୁଷମାସରେ ବି ସକାଳେ ଗାଧୋଇ ଶ୍ୱଶୁର ଜଳଖିଆ ଖାଆନ୍ତି। ମୁଁ ଓ ବେଙ୍ଗ (କନିଷ୍ଠା ନଣନ୍ଦ ବସନ୍ତ କୁମାରୀ) ଖାଇବାକୁ ଦେଉ। ଶ୍ୱଶୁର ଗୋଟିଏ କପ୍ ଚା ମୋ ଆଡ଼କୁ ବଢ଼େଇଦେଇ କହିଲେ, "ଥଣ୍ଡା ହେଉଛି, ଟିକିଏ ଚା ଖା।" ଆମ ଘରେ ଚାର ଚଳଣ ନ ଥିବାରୁ ମୁଁ ଚା ଖାଇବାରେ ଅଭ୍ୟସ୍ତ ନଥିଲି, ତେଣୁ ମନାକଲି। ଶ୍ୱଶୁର ଭାବିଲେ ମୁଁ ଚା ଖାଇବାକୁ ଭଲପାଏ – ଶାଶୁଙ୍କ ଡରରେ ବା ମନାରେ ନାହିଁ କରୁଛି। ଶାଶୁଙ୍କ କଥା କିଏ ଶୁଣୁଛି ? ମନାକରିବା ବା ଡରାଇବା ଯେ ଦୋଷ, ତାହାରି ଉପରେ କଥା ଚାଲିଲା। ଧାଈ ଦେଖିଲେ ଯେ ଆଉ ବିଳମ୍ବ କଲେ ପରିସ୍ଥିତି ଖରାପ ହେବ। ସେ ଆସି କହିଲେ, "ମୁଁ ପରା ପାଲ ଦେଈଙ୍କୁ ପଚାରି ବୁଝିଆସିଛି – ବୋହୂ ଚା ଖାଆନ୍ତି ନାହିଁ।" ଏହିପରି ଧାଈ ବହୁତ ସମସ୍ୟାର ସମାଧାନ ବୁଦ୍ଧିପୂର୍ବକ କରୁଥିଲେ।

ଶାଶୁଶ୍ୱଶୁର ଦୁହେଁ ବିନା ସର୍ତ୍ତରେ ଗୋଟାଏ ବୁଝାମଣା କାମ ଆପେ କରନ୍ତି । ଶ୍ୱଶୁର ରାଗିଗଲେ ଶାଶୁ ତୁନି ହୋଇଯିବେ, ଶାଶୁ ରାଗିଗଲେ ଶ୍ୱଶୁର ବି ତୁନି ହୋଇଯିବେ ।

ଶ୍ୱଶୁରଙ୍କ ମୃତ୍ୟୁ ପରେ ଦେଖାଗଲା ଘରର ଆର୍ଥିକ ସ୍ଥିତି ଭଲ ନୁହେଁ । ବାପା ମରି ଯାଇଥିବାରୁ ମାମୁ ମୋର ମୁରବି । ସେ ଆସି ଶ୍ୱଶୁରଙ୍କ ଶୁଦ୍ଧକ୍ରିୟା ବୁଝାବୁଝି କରି ଜାଣିଲେ ଯେ ଟଙ୍କା ଦରକାର । ଶ୍ୱଶୁର ମାମୁଙ୍କର ଜଣେ ବଡ଼ ବନ୍ଧୁ, ମାଆ ସଙ୍ଗେ ସଙ୍ଗେ ଟଙ୍କା ପଠାଇଦେଲା । ଏ ଦଶଦିନ ସବୁକାମ ଯେ ଯେମିତି କରିଗଲେ – ମୋ ଉପରେ କିଛି ପଡ଼ିଲାନାହିଁ । ଏଗାର ଦିନ ମୋତେ ରାନ୍ଧିବାକୁ ହେବ । ମୁଁ ଭାତ ରାନ୍ଧିଦେଇ ପିଣ୍ଡିରେ ଚରାଣଦେବି । ରୋଷେଇ ଘରକୁ ଆସି ଦେଖିଲି ମାଟିହାଣ୍ଡି, ପଲମ, ମାଠିଆ ରଖାହେଇଛି । କୁଟାରେ ଘିଅ ଗୁଡ଼ ପକେଇ ଚୁଲି ଲାଗିବ – ଚୁଲି ଆଦୌ ଫୁଙ୍କା ହେବ ନାହିଁ । ମୁଁ ମାଠିଆରେ କୂଅରୁ ପାଣି ଆଣି ରାନ୍ଧିବି । ତାହା ଦେଖିବା ପାଇଁ ଦୁର୍ଗାଚରଣ ବାବୁ, ରାଘବ ବାବୁ ପ୍ରଭୃତି କେତେଜଣ ନଣନ୍ଦେଇ ଆସି ପିଣ୍ଡାରେ ବସିଲେ । ମୋ ହାତ ଗୋଡ଼ ଆଉ ଚଳିଲା ନାହିଁ । ମାଗଅପା ପୁରୁଣା ଠକର ଗଙ୍ଗାକୁ ଡାକି କହିଲେ – ତୁ ଯା ସେଠି ରହି ପାଣିଦେବୁ । ସେ କଣ କେଉଁଦିନ କୂଅରୁ ପାଣି କାଢ଼ିଥିବ ଯେ ଆଜି କାଢ଼ିବ ? ଗଙ୍ଗା ଓ ଧୋବ ଅପାକୁ ଦେଖି ନଣନ୍ଦେଇମାନେ ଉଠିଚାଲିଗଲେ ।

ଶୁଦ୍ଧିକ୍ରିୟା ପରେ ଭଣଜା ଭାଣିଜୀ ବୁଲୁ ଓ ରାଜୁ ତାଙ୍କ ଘରକୁ ଗଲେ । ଆଉ ସମସ୍ତେ ଯେ ଯୁଆଡ଼େ ଗଲେ । ଏବେ ନିତ୍ୟନୈମିତ୍ତିକ ଭାବରେ ଘର ଚଳାଇବାକୁ ହେବ । ଦେବେନ୍ଦ୍ରବାବୁ ହିସାବ ଲେଖିବା ପାଇଁ ଖାତା କିଣିଦେଇଗଲେ ଏବଂ କହିଗଲେ ପ୍ରତିଦିନ ଯାହା ଖରଚ ହେବ ସେସବୁ ଲେଖା ହେବ । ମାଗଅପା ପ୍ରତିଦିନ ଉପରଓଳି ଆସି ସବୁକଥା ବୁଝିକରି ତାଙ୍କ ଘରକୁ ଯାଆନ୍ତି । ଘର ଘୋଡ଼ାଗାଡ଼ି ଯାଏ ତାଙ୍କୁ ଆଣେ ଓ ଛାଡ଼ି ଦେଇ ଆସେ । ଦେବେନ୍ଦ୍ରବାବୁ ପ୍ରତିଦିନ ସକାଳଓଳି ଆସି ବାହାର କଥା ସବୁ ବୁଝନ୍ତି । ମଝିରେ ମଝିରେ ଦିନେ ଦିନେ ଟୁକୁକୁ (ନବକୃଷ୍ଣ ଚୌଧୁରୀ) ପଠାଇ ମୋଠାରୁ ହିସାବଖାତା ମଗାଇନେଇ ଦେଖନ୍ତି । ଦିନେ ଖଜଣା ନେବାକୁ ସରକାରୀ ଲୋକ ଆସିଲେ । ଟଙ୍କା ତ ଦିଆଯିବ, କେତେଟା ପଇସା ଓ ଦୁଇଟା ପାହୁଲା ମଧ୍ୟ ଦିଆଯିବ । ମୋ ପାଖରେ ପାହୁଲା ନଥାଏ । ଦେବେନ୍ଦ୍ରବାବୁ କହିପଠାଇଲେ – ଭାଉଜବୋହୂକୁ କହିବୁ ପଇସା ଓ ପାହୁଲା ବରାବର ହାତରେ ରଖିବେ, ନହେଲେ ଏମିତି ବେଳ ପଡ଼ିଲେ ହଇରାଣ ହେବେ । ସେହିଦିନଠାରୁ ଯେତେଦିନ ପାହୁଲାର ପ୍ରଚଳନ ଥିଲା, ମୋ ପାଖରେ ବରାବର ପାହୁଲା ରହୁଥିଲା । ଦେବେନ୍ଦ୍ରବାବୁ ସାବଧାନ କରିଦେବା ପାଇଁ କହିଲେ, ଘରେ ବର୍ତ୍ତମାନ ରୋଜଗାର ନାହିଁ; କିନ୍ତୁ ଖରଚ ତ ସବୁ ରହିଛି । ବୁଦ୍ଧି ଖରଚ କରି ବ୍ୟୟସଙ୍କୋଚ କରି ଚଳିବାକୁ ପଡ଼ିବ । ଅବଶ୍ୟ ସବୁ କଥାରେ ସେ ସ୍ୱାମୀ–ସ୍ତ୍ରୀ ଦୁଇଜଣ

ବୁଦ୍ଧି ପରାମର୍ଶ ଦେବାବାଲା। ସେ ତ ମୋର ପ୍ରଧାନ ବଳ। ଦିନେ ମାଗ ଅପା ତାଙ୍କ ଅତୀତ କଥା କହିଲେ। ତାଙ୍କ ବାହାଘର ପରେ ଦେବେନ୍ଦ୍ରବାବୁଙ୍କ ଗାଁ ବାଗଲପୁରରେ ସାତଦିନ ରହିବା ପରେ ସେ କଟକ ଆସିଲେ। କଟକ ଆସିବା ସଙ୍ଗେ ସଙ୍ଗେ ତାଙ୍କ ଶ୍ୱଶୁର ବଳରାମବାବୁ କହିଲେ – ଘରକଥା ସବୁ ବୋହୂ ବୁଝିବ। ଟଙ୍କାପଇସା ତାଙ୍କୁ ଦିଆଗଲା – ସେ ଖରଚ କରିବେ ଓ ହିସାବ ରଖିବେ। ଦୁଇବର୍ଷର ଦିଅର ରବିକି ତାଙ୍କ କୋଳରେ ଦେଇ କହିଲେ – ଏ ତୋର ପୁଅ, ତୁ ତାକୁ ପାଳିବୁ। ରବି ରାତିରେ ମାଗଅପାଙ୍କ ପାଖରେ ଶୋଇଲା। ସ୍ତ୍ରୀଲୋକ କେବଳ ଉଦିଆ ବୋଉ, ସେ ତ କିଛି ଜାଣନ୍ତି ନାହିଁ, ମାଗଅପାଙ୍କୁ ସବୁ କରିବାକୁ ପଡ଼ିଲା। ବଡ଼ ବଡ଼ ଦିଅର ଦୁଇଟିଙ୍କ ତତ୍ତ୍ୱ ବି ନେଲେ। ତେବେ ଏ ଅବସ୍ଥାରେ ଦେବେନ୍ଦ୍ର ବାବୁ ତାଙ୍କୁ ସବୁ ମନ୍ତେ  ସାହାଯ୍ୟ କଲେ। ମାଗଅପାଙ୍କ ବୟସ ସେତେବେଳେ ଚଉଦ ବର୍ଷ। ମାଗଅପା ଓ ଦେବେନ୍ଦ୍ରବାବୁଙ୍କ ସ୍ନେହ, ସହାନୁଭୂତି ଓ ସାହାଯ୍ୟର ତୁଳନା ନାହିଁ। ତାଙ୍କ ଦୃଷ୍ଟି ଏପରି ଯେ, ଆମର କେତେବେଳେ କଣ ଦରକାର ହେବ, ତାହା ସେ ଜାଣିପାରି ଆମକୁ ଦିଅନ୍ତି। ସେ ଦୁହେଁ ଓ ମୋ ମାଆ ଯୋଗେ ଆମେ ଚଳିଯାଉଥାଉ। ଶାଶୁ ଏ ଅନଟନ ଅବସ୍ଥାକୁ ଖୁବ୍ ସମ୍ଭାଳିଲେ। ସେ କେବେ ପଇସା କଥା ଭାବିନଥିଲେ। ଘରଖରଚ ପାଇଁ ସେ ଯେତେ ଟଙ୍କା ଦରକାର କରୁଥିଲେ ତାହା ପାଉଥିଲେ। ଟଙ୍କା ପଇସା ଦ୍ୱାରବନ୍ଧ ତଳେ, ଟିଣ ବା ଘଡ଼ିରେ ଯେଉଁଠି ସେଠି ରଖିଦେଉଥିଲେ – ସେଥିରୁ କିଏ କେତେ ନେଇଗଲା ତାହା ଜାଣୁନଥିଲେ କି ଜାଣିବାର ଉପାୟ ନଥିଲା। ଟଙ୍କାର ଅଭାବ କଣ ସେ ଜାଣିନଥିଲେ। ସେ ଘରର ତଥା ଟଙ୍କାପଇସା ଦାୟିତ୍ୱ ଛାଡ଼ିଦେଇ ବସିଲେ। ପୁଣି ସେ କଣ ଚାହାଁନ୍ତି, ତାଙ୍କର ଓଷାପର୍ବରେ କଣ ଦରକାର ତାହା କହିବେ ନାହିଁ – ଅଥଚ ତାଙ୍କ ମନମୁତାବକ ନହେଲେ ଭୀଷଣ ରାଗିବେ। ତାଙ୍କ କଥାରେ କିଏ କଣ ଆଘାତ ପାଇଲା, ତାହା ସେ ବୋଧହୁଏ ଜୀବନରେ କେବେ ଭାବି ଦେଖିନାହାନ୍ତି – ଅଥଚ ସେ ଭାରି ସ୍ନେହଶୀଳ ଓ ବିଚାରଶୀଳ। ଦେଖାଗଲା ଯେ ଶାଶୁ ଯାହା ଚାହୁଁଛନ୍ତି ତାହା ସେ ପ୍ରକାଶ କରିବେ ନାହିଁ, ଅଥଚ ସେ ଯାହା ଚାହୁଁଛନ୍ତି କାର୍ଯ୍ୟରେ ତାହା ହିଁ ହେବ। ମୁଁ ବିଷମ ସଂକଟରେ ପଡ଼ିଲି। ମାଗଅପା ମୋତେ ଏଥିରୁ ଉଦ୍ଧାର କରିପାରିଲେନାହିଁ। ସେ ପରାମର୍ଶ ଦେଲେ, ଏ ବଉଁଶ ତ ସେମିତି ରାଗିବେ, ରୁଷିବେ, ଖାଇବେ ନାହିଁ, ତୁ ସେଗୁଡ଼ାକ ଗ୍ରାହ୍ୟ କରିବୁନାହିଁ। ସବୁ କରି ନ ପାରିଲେ ମଧ୍ୟ ବେଳେ ବେଳେ ତାଙ୍କର କେତେକ କଥା ଅଗ୍ରାହ୍ୟ କରିବାକୁ ପଡ଼ିଲା। ଏମିତି ଦିନ ଗତାନୁଗତିକ ଭାବରେ ଚାଲିଥାଏ। ଦିନେ ଦିନେ ସଞ୍ଜବେଳେ ମାଈଁ  ବା ଅପା (ମାଉସୀ) ଆସି ଦେଖିଯାଆନ୍ତି।

ବୁଲୁର ସ୍ୱାସ୍ଥ୍ୟ ବରାବର ଖରାପ ହେଲା। ମାଆଙ୍କର ଡାକ୍ତରୀ ଚିକିତ୍ସା ଉପରେ

ଘୋର ଅଶ୍ରଦ୍ଧା, ଗୋପବାବୁଙ୍କର ମଧ୍ୟ ଆସ୍ଥା ନ ଥାଏ। ସେ କଲିକତାରେ ପଢୁଥିବା ବେଳେ ଡାକ୍ତର କ'ଣ ଭୁଲ ରୋଗ ନିର୍ଣ୍ଣୟ କରି ଚିକିତ୍ସା କରିବା ଫଳରେ ତାଙ୍କର ଅବସ୍ଥା ସାଂଘାତିକ ହୋଇଥିଲା, ସେହି ସମୟରୁ ସେ ଡାକ୍ତରୀ ଚିକିତ୍ସା ଉପରେ ବୀତସ୍ପୃହ। ସେ ସ୍କୁଲରେ ପଢ଼ିବା ସମୟରେ ନାରାୟଣ ଦାସ ପଣ୍ଡିତେ ତାଙ୍କୁ ଘରେ ସଂସ୍କୃତ ପଢ଼ାଇ କାବ୍ୟତୀର୍ଥ ପରୀକ୍ଷାରେ ପାସ୍ କରାଇଥିଲେ। ସେ ଗୋଟିଏ ପ୍ରକାର ଚିକିତ୍ସା କରନ୍ତି, ତାର ନାଁ ନାହିଁ। ଜଣେ ସାଧୁଙ୍କଠାରୁ ସେହି ଚିକିତ୍ସା ସେ ଶିଖିଥିଲେ। ଜଡ଼ିବୁଟି ଦିଅନ୍ତି। ସବୁ ରୋଗ ପେଟରୁ ଉଦ୍ଭବ - ଏ ହେଲା ମୂଳକଥା। ସେ ପେଟକୁ ପ୍ରତିଦିନ ଦୁଇ ତିନିଥର ଚିପିବେ। ଭିନ୍ନ ଭିନ୍ନ ରୋଗ ପାଇଁ ସେ ପେଟ ଚିପାର ପ୍ରକାର ଭିନ୍ନ। ସେ ପ୍ରତିଦିନ ରାତି ପାହାନ୍ତି ଗାଧୋଇ ପୂଜା ଓ ହୋମ କରନ୍ତି। ଏ ହୋମଟା ଖାସ୍ ଚିକିତ୍ସାର ଅଙ୍ଗ। ସେ ହେଲେ ଆମମାନଙ୍କର ଚିକିତ୍ସକ। ଆମ ଘରେ ସେ ରହିଲେ। ସନ୍ଧ୍ୟାବେଳେ ହୋମ ସରଞ୍ଜାମ ଓ ଭୋଗ ପାଇଁ କଦଳୀ ପ୍ରଭୃତି ତାଙ୍କ ଘରେ ରଖି ଦିଆଯିବ। ସେ ରାତି ତିନିଟାରେ ଉଠି ନିତ୍ୟକର୍ମ ସାରି ହୋମ କରିବେ। ସେ ନିଦରୁ ଉଠିଲାବେଳୁ ପୂଜାସାରି ବାହାରିଯିବା ପର୍ଯ୍ୟନ୍ତ କାହାରି ମୁହଁ ଦେଖିବେ ନାହିଁ। ସେଥିପାଇଁ ଆମକୁ ସତର୍କ ରହିବାକୁ ପଡ଼େ। ଆମ ବନ୍ଧୁବାନ୍ଧବ, ଚିହ୍ନାପରିଚୟ ଅନେକ ଲୋକ ତାଙ୍କ ଚିକିତ୍ସାରେ ରହିଲେ। ସେ ଟଙ୍କା ପଇସା ନିଅନ୍ତି ନାହିଁ। ଆମେ ତାଙ୍କର ଏପରି ଆଶ୍ରିତ ହେଲୁ ଯେ, ସେ କୁଆଡ଼େ ବାହାରକୁ ଗଲେ ଆମେ ଅସହାୟ ବୋଧକଲୁ। ଏ ଚିକିତ୍ସା ପାଇଁ ମୋତେ ବହୁତ ଥଟ୍ଟା ପରିହାସ ସହିବାକୁ ପଡ଼େ। କଂଗ୍ରେସବାଲା, ଖଦଡ଼ ଲୁଗା, ତା ସାଙ୍ଗକୁ ଏ ମୂର୍ଖ ଚିକିତ୍ସା କହି ବହୁତ ଲୋକ ବହୁତ କଥା ଶୁଣାନ୍ତି।

ଗୋପବାବୁ କଲିକତା ଯାଇ ଲ ପଢ଼ିଲେ। ମାଆ ତାଙ୍କୁ ଲ ପଢ଼ିବାକୁ ପଠାଇଲା। ଲ ପରୀକ୍ଷାର ପ୍ରଥମ ଭାଗ ପରୀକ୍ଷାରେ ସେ ପ୍ରଥମ ସ୍ଥାନ ପାଇଲେ। ମାଆର ଏ ଉଦ୍ୟମ ଓ ପଇସା ଖର୍ଚ୍ଚ ସାର୍ଥକ ହେଲା ବୋଲି ଅନ୍ୟମାନେ ମାଆକୁ ପ୍ରଶଂସା କଲେ। ଦେବେନ୍ଦ୍ର ବାବୁ ପରାମର୍ଶ ଦେଲେ ଯେ ଲ ପାସ୍‌କରି ପ୍ରାକ୍ଟିସ୍ ଜମାଇବାକୁ ସମୟ ଲାଗିବ। ଚାକିରି ପାଇଁ ମଧ୍ୟ ଚେଷ୍ଟା କରାଯାଉ। ଚାକିରି ପାଇଁ ମଧ୍ୟ ଚେଷ୍ଟା ଚାଲିଥାଏ। ଇତିମଧ୍ୟରେ ଶ୍ୱଶୁରଙ୍କର ବୈଠକଖାନା ଘରଗୁଡ଼ିକ ଭଡ଼ା ଦିଆଗଲା। ସେଥିରେ ଯେଉଁ ବ୍ୟକ୍ତି ଭଡ଼ାରେ ରହିଲେ ସେମାନେ ଅତି ଉତ୍ତମ ଲୋକ। ଆମେ ଦୁଇ ପରିବାର ଗୋଟିଏ ପରିବାର ପରି ଚଳିଲୁ। ତାଙ୍କ ଘରର ମୁରବି ଉମାକାନ୍ତ ମହାପାତ୍ର ଆମ ଘରର ମୁରବି ପରି ବ୍ୟବହାର କରନ୍ତି। ମାଆ ବି ତାଙ୍କ ପିଲାଙ୍କ ଉପରେ ମୁରବିଗିରି କରନ୍ତି। ଉମାକାନ୍ତବାବୁ ପ୍ରତିଦିନ ସନ୍ଧ୍ୟାବେଳେ ବୁଲୁକୁ ନେଇ ବସି ଇଂରାଜୀ ଶବ୍ଦ ଶିଖାନ୍ତି। ବର୍ଣ୍ଣବୋଧର ଗୀତ ଶିଖାନ୍ତି। ବୁଲୁ ଏସବୁ ଖେଳଖେଳକେ ଶିଖିଗଲା।

ବୁଲୁକୁ ଦୁଇବର୍ଷ ହେବାବେଳେ ଚୁନି ଜନ୍ମହେଲା। ସେତେବେଳକୁ ମାଆ ଡାକ୍ତରୀ ଚିକିତ୍ସାର ବିରୋଧ କଲେ ନାହିଁ। ବୁଲୁ ଜନ୍ମ ପରେ ଦେଶୀ ଚିକିତ୍ସାରେ ମୁଁ ଯେଉଁ କଷ୍ଟ ପାଇଲି, ସେଥିରେ ମାମୁ ବିଶେଷ ଭାବରେ ବିଚଳିତ ହୋଇଥିଲେ। ସେ କୁଆଡ଼େ ବ୍ୟସ୍ତ ହୋଇ କହନ୍ତି, "ମୁଁ ଜାଣିଛି, ବେଲୁ କେତେ ସହିପାରେ। ସେ ତ ଯେତେ କଷ୍ଟ ପାଇଲେ ବି କିଛି କହିବନାହିଁ ସବୁ ସହିଯିବ।" ପିଲାଦିନେ ମାମୁଙ୍କ ଉପସ୍ଥିତିରେ ଫଳ କିଣା ହେଉଥିଲା। ସେତେବେଳେ କଟକରେ ଫଳ ପ୍ରଚୁର ପରିମାଣରେ ମିଳୁନଥିଲା; ତେଣୁ ଭଲ ଫଳ ଦେଖି ଖୁସିରେ କିଣାହେଲା। ମୁଁ ସେଠି ଥିଲି। କବାଟ ସନ୍ଧିରେ ଆଙ୍ଗୁଠି ରହିଥିଲା। ବିରାଟ କବାଟଟି ଆଉଜି ହୋଇ ପଡ଼ିଲା। ମୋ ଆଙ୍ଗୁଠି କବାଟ ସନ୍ଧିରେ ଥାଏ। ସମସ୍ତେ ପସନ୍ଦ କରି ଫଳ କିଣିବାରେ ଲାଗିଛନ୍ତି। ଭାଇ ମୋତେ ଡାକିଲେ। ମୁଁ ତ ନିର୍ବାକ୍ ହୋଇ ଠିଆ ହୋଇଛି। ମୁହଁ କଳା ପଡ଼ିଆସିଲାଣି। ମାମୁ ଜାଣିବେ ଏହି ଲାଜରେ ମୁଁ କାହାରିକୁ କହୁନାହିଁ ଯେ କବାଟଟା ଫିଟାଇଦିଅ। ମାମୁ ମୋର ଏହି ସହିବାପଣିଆ ଦେଖି ଅଭିଭୂତ ହୋଇପଡ଼ିଲେ। ଚୁନି ଯେଉଁଦିନ ଜନ୍ମହେଲା ସେଦିନ ସକାଳେ ମାଛର ତରକାରୀ ରାନ୍ଧି ସମସ୍ତଙ୍କୁ ଖୁଆଇଲି। ନିଜେ ଖିଆପିଆ କାମ ସାରି ଶୋଇଲି। କଷ୍ଟ ଆରମ୍ଭ ହେଲାଣି ଆଗରୁ। କାମ କରିବାର ଶକ୍ତି ଆଉ ନଥାଏ। ମାଆ ଅନ୍ନପୂର୍ଣ୍ଣାଦିଦି ଏମାନଙ୍କୁ ନେଇ ସଞ୍ଜଯାଏ ତାସ୍ ଖେଳନ୍ତି। ମୁଁ ଜଳଖିଆ ତିଆରି ଆଦି ସବୁ କରେ। ସେଦିନ ଜଳଖିଆ ତିଆରି ପାଇଁ ଧାଈ ବାରମ୍ବାର ଡାକିଲେ ବି ଉଠିଲି ନାହିଁ, ଶୋଇରହିଲି। ଧାଈ ମାଆଙ୍କୁ ଏକଥା କହିଲାରୁ ସମସ୍ତେ ସମସ୍ୱରରେ କହିଲେ – "ସେ ତ ଅସମୟରେ ଶୋଇବା ଲୋକ ନୁହେଁ। ଆଜି ଶୋଇଛି ଅର୍ଥ ତାର ବେଦନା ଆରମ୍ଭ ହେଲାଣି।" ସମସ୍ତେ ତାସ୍ ଫୋପାଡ଼ିଦେଇ ମୋ ପାଖରେ ହାଜର ହେଲେ। ମାଆ ମୋ ମାଆ ପାଖକୁ ଖବର ଦେଲେ। ଡାକ୍ତର ଭୟ ମାଆଙ୍କ ମନରୁ ସେତେବେଳକୁ ଚାଲିଗଲାଣି। ଡାକ୍ତର ପ୍ରଭାବତୀ ସିଂହ ଆସିବାବେଳକୁ ଚୁନି ଜନ୍ମ ହେଲାଣି। ସେ ବାକି ସବୁ କଲେ। ଏଥର ମୋ ଦେହ ଭଲ।

## ଧାଈ ଓ ଚୋରାକାରବାର

ପିଲାଦିନେ ଧାଈ କଥା ମୁଁ ଜାଣିନଥିଲି, କାରଣ ଆମ ଘରେ ଧାଈ ନଥିଲେ। ମାମୁଘରେ, ମାଉସୀ ଘରେ ବି ଧାଈ ଦେଖିନଥିଲି। ଶାଶୁଘରକୁ ଆସି ଜାଣିଲି ଆମର ଯେ ଧାଈ ଅଛନ୍ତି ତାଙ୍କୁ ଆମ ଶ୍ୱଶୁରଙ୍କ ବାପା ରକ୍ଷିତା ସ୍ତ୍ରୀ ଭାବରେ ରଖିଥିଲେ। ସେ ସାତବର୍ଷ ବୟସର ହୋଇଥିବାବେଳେ ତାଙ୍କୁ କିଏ ଆଣି ଛାଡ଼ିଦେଇ ଗଲେ। ଆଈଶାଶୁ କୋକିଳ ଦେଇ ତାଙ୍କୁ ପାଳିଲେ। ବଡ଼ହେବାରୁ ବାହାଦେବା ସମସ୍ୟା ହେଲା। ଅଜଣା ଜାତିଗୋତ୍ରର

ଝିଅଙ୍କୁ ବାହାହେବାକୁ କେହି ମଙ୍ଗିଲେ ନାହିଁ। ମୋ ଅଜାଶ୍ୱଶୁର ବ୍ରଜସୁନ୍ଦର ମଙ୍ଗରାଜ ତାଙ୍କୁ ରକ୍ଷିତା ସ୍ତ୍ରୀ ଭାବରେ ରଖିଲେ। ସେ ଯୁଗରେ ସ୍ୱାମୀ ରକ୍ଷିତା ସ୍ତ୍ରୀ ରଖିଲେ ବିବାହିତା ସ୍ତ୍ରୀ ତାକୁ ଗୋଟିଏ ସୁବିଧା ଭାବୁଥିଲେ। ଇଏ ସାଆନ୍ତାଣୀ ହେବେ। ଚାକରାଣୀର କାମସବୁ ରକ୍ଷିତା ସ୍ତ୍ରୀ ଶ୍ରଦ୍ଧାରେ ନିଜଘର ପରି ମନେକରି କରିବ। ଯାଙ୍କ ପିଲାଙ୍କର ସେବା ଯତ୍ନ କରିବ। ଇଏ ହାକିମୀ କରିବେ। ଧାଇ କହନ୍ତି, ମୋ ଆଇଶାଶୁ ଅସନ୍ତୁଷ୍ଟ ହେବା ଡରରେ ଅଜାଶ୍ୱଶୁର ଗୁହାଳରେ ବା ଏଠି ସେଠି ଧାଇଙ୍କ ସଙ୍ଗେ ଆଳାପ କରନ୍ତି। ତାଙ୍କ ନାଆଁ ସାଧବୀ। ତାଙ୍କର ଗୋଟିଏ ପୁଅ ହେଲା। ଆମ ଶ୍ୱଶୁର ପାଞ୍ଚଭାଇ ଥିବାରୁ ସେ ପୁଅଙ୍କ ନାମ ଦେଲେ ବିଦୁର। ସେ ବାଇଶବର୍ଷ ବୟସରେ ମରିଗଲେ। ଅଜାଶ୍ୱଶୁର ମରିଯିବା ପରେ ଧାଇଙ୍କର କାମ ହେଲା ସେ ଘରର ଯେ ଝିଅ ବାହାହେବେ, ତାଙ୍କ ସାଙ୍ଗରେ ଯାଇ ତାକୁ ଶାଶୁଘରେ ଚଳାଇବେ। ଧାଇ ଯେମିତି ବୁଦ୍ଧିମତୀ ସେମିତି ସ୍ନେହଶୀଳା ଓ ସେବାଯତ୍ନ କରିବାବାଲି। ଧାଇ ମୋ ଶାଶୁଙ୍କ ସାଙ୍ଗରେ କଟକରେ ଆସି ରହିଲେ।

ଏପରି ଧାଇ ଆହୁରି ଦେଖିଲି। ମୋ ଶାଶୁଙ୍କର ସାଆନ୍ତବାପା ବୁଧୀ ଧାଇ ନାମରେ ଜଣକୁ ରଖିଥିଲେ। ଶାଶୁଙ୍କ ପାଳକବାପା ମୁକୁତୀ ଧାଇଙ୍କୁ ଓ ଦାଦା ମାଳୀ ଧାଇଙ୍କୁ ରଖିଥିଲେ। ସେମାନେ ଦେଖିବାକୁ ଯେପରି ସୁନ୍ଦର, ସେମାନଙ୍କ ଆଚାର ବ୍ୟବହାର, କଥାବାର୍ତ୍ତା ସେହିପରି ମାର୍ଜିତ। ସେମାନେ ଆସିଲେ ସେମାନଙ୍କ ବରାଦ ମୁତାବକ ରାନ୍ଧିବାଢ଼ି ଖୁଆଇବା, ପାନ ଭାଙ୍ଗି ଦେବା ମୋର କାମ। ଗୁଳଅପାଙ୍କ ଘରୁ ଜଣେ ଅପି ଧାଇ ଆସନ୍ତି। ତାଙ୍କ ବ୍ୟବହାର ଅମାର୍ଜିତ। ଯାହା ମୁଁ ଆମଘରେ ଆଦୌ ଦେଖିନଥିଲି ଏଠାରେ ତାହା ଖୁବ୍ ଦେଖିଲି।

ଆମ ସାଧବୀ ଧାଇଙ୍କ ପାଟିରେ ଗୋଟାଏ ଘା ଥିଲା। କେତେ ଚିକିତ୍ସାରେ ତାହା ଗଲାନାହିଁ। ଅବଶ୍ୟ ସେତେବେଳେ ଏତେ ଉନ୍ନତ ଧରଣର ଚିକିତ୍ସା ନଥିଲା। ତରକାରୀରେ ଟିକିଏ ଲୁଣ ବେଶିହେଲେ ତାଙ୍କ ପାଟି ପୋଡ଼ିବ। ପାଟି ଆଁ କରିପାରନ୍ତି ନାହିଁ। ପାଣିଆ ଗୋଳାଭାତ ଟିକିଏ ଟିକିଏ କରି ପାଟିରେ ଗୁଞ୍ଜି ଗୁଞ୍ଜି ଖାଆନ୍ତି। ନରମ ଜିନିଷ ଖାଇପାରନ୍ତି। ଧାଇଙ୍କ ପାଇଁ ମୋତେ ଅନେକ ଚୋରା କାରବାର କରିବାକୁ ପଡ଼େ। ଧାଇ ଲଡ଼ୁ ଭଲପାଆନ୍ତି। ଆମ ଘରେ ପ୍ରାୟ ଲଡ଼ୁ ଥାଏ। ମୁଁ ଶାଶୁଙ୍କୁ ଲୁଚାଇ ଧାଇଙ୍କ ଘରେ ଲଡ଼ୁ ରଖିଦେଇ ଆସେ, ନ ହେଲେ ଲୁଚେଇକରି ମୋହନଭୋଗ ରଖିଦିଏ। ତାଙ୍କ ରୁଚି ଅନୁସାରେ ତରକାରି ରାନ୍ଧି ଲୁଚେଇକରି ରଖିଦିଏ। ଧାଇଙ୍କର ଗୋଟିଏ ଘର ଥାଏ। ଏ ଲୁଚାଚୋରା ଜିନିଷ ସବୁ ସେହି ଘର ଶିକା ଉପରେ ରହେ। ଶାଶୁ ଧାଇଙ୍କୁ ଖୁବ୍ ଭଲପାନ୍ତି, କିନ୍ତୁ ସ୍ୱତନ୍ତ୍ର ଭାବରେ ଖାଇବା ପିଇବାକୁ ଦେବା ସେ ପସନ୍ଦ କରନ୍ତି ନାହିଁ। ବିରକ୍ତ ହୋଇ ସିଧା ନକହି ବୁଲେଇ କରି କହନ୍ତି। ଧାଇଙ୍କ ମନରେ ଦୁଃଖ ହୁଏ।

ସେ ମତେ କହନ୍ତି – "ତମେ କିଛି ଖାଇବା ଜିନିଷ ମତେ ଦେବନାହିଁ କି ଅଲଗା ତରକାରୀପତ୍ର ରାନ୍ଧିବ ନାହିଁ।" ମୁଁ କାହିଁକି ଶୁଣିବି ? ଏ ବାବଦରେ ତ ମାଆଙ୍କ ଠାରୁ କଥା ଶୁଣିବାରେ ମୁଁ ଅଭ୍ୟସ୍ତ ହେଲିଣି। ନାଥିଆମା ଅତି ଦୁଃଖୀ। ତାକୁ ଲୁଚେଇକରି ମୁଁ ଅଧିକ ଚାଉଳ ଦିଏ। ମୋତିକୁ ମାଆ ସ୍ନେହ କରନ୍ତି, କିନ୍ତୁ ତା ଦୁଃଖ ବୁଝନ୍ତି ନାହିଁ। ତାକୁ ଲୁଚେଇକରି ସାହାଯ୍ୟ ନ କଲେ ସେ କିପରି ଚଳିବ ? ସେ ଲୋକମାନେ କୃତଜ୍ଞତା ଦେଖାଇବେ ବୋଲି ମୁଁ ସତର୍କ ଥାଏ। ଶାଶୁଙ୍କର ଟଙ୍କାପଇସାର ଲୋଭ ନାହିଁ। ସେ ଚାହିଁଥିଲେ ବହୁତ ଟଙ୍କା ପାଣ୍ଠିକରି ରଖିଥାନ୍ତେ; କିନ୍ତୁ ସେ ତାହା କରିନାହାନ୍ତି। ନିଜ ପାଇଁ ଗହଣାପତ୍ର ମଧ୍ୟ କିଛି କରିନଥିଲେ। ଦାମିକା ଲୁଗାପଟା ମଧ୍ୟ ନ ଥିଲା। ଘରେ ଚଳଣ ନାହିଁ, ତେଣୁ ସୁନା ପିନ୍ଧିଲେ କାଳେ ପିଲାଙ୍କର ଅମଙ୍ଗଳ ହେବ ବୋଲି ମୋ ବାହାଘର ପୂର୍ବ ପର୍ଯ୍ୟନ୍ତ ସେ ହାତରେ ରୂପା ଗହଣା ପିନ୍ଧୁଥିଲେ।

ଏଥର ଆସିଲା ବେଙ୍ଗ ବାହାଘର ପ୍ରଶ୍ନ। ବର ଖୋଜା ଚାଲିଲା। ମୋ ମାଆର ବଡ଼ବାପା ପୁଅ ଭାଇଙ୍କର ଶଳା ବି.ଏ. ପରୀକ୍ଷା ଶେଷବର୍ଷରେ ପଢୁଥାନ୍ତି। ମୋ ମାଆ ଓ ଆଇ ତାଙ୍କ ସଙ୍ଗେ ବେଙ୍ଗ ବାହାଘର ପ୍ରସ୍ତାବ ପକାଇଲେ। ସେହିଠାରେ ବାହାଘର ହେବା ସ୍ଥିର ହେଲା। ଶାଶୁଙ୍କର ଇଚ୍ଛା – ସବୁ ମୁଁ କରିବି କିନ୍ତୁ ତାଙ୍କ ଇଚ୍ଛାନୁସାରେ କରିବି – ମାତ୍ର ସେ ଇଚ୍ଛା ପ୍ରକାଶ କରିବେନାହିଁ – ମୁଁ ତାଙ୍କ ମନ ଜାଣି କାମ କରିବି। ମହକିଲମାନଙ୍କଠାରୁ ଶ୍ୱଶୁରଙ୍କର ବାକିଥିବା ସବୁ ଟଙ୍କା ମିଳିଲା। ଦେବେନ୍ଦ୍ରବାବୁ ଓ ମାଗଅପା ବାହାଘରର ସବୁ କାମ କରାଇଲେ। ସେମାନଙ୍କଠାରୁ ମୁଁ ଅନେକ କଥା ଓ କାମ ଶିଖିଲି – ଯାହା ମୋ ଜୀବନପାଇଁ ଲାଭଦାୟୀ ହେଲା। ସେମାନଙ୍କ କାମ ଅତି ବ୍ୟବସ୍ଥିତ। ସମୁଦାୟ କାମ ମୋ ଦ୍ୱାରା କରାଇଲେ ଓ ସବୁ ଜିନିଷପତ୍ର ମୋ ଜିମ୍ମାରେ ରଖାଇଲେ। ଅଳ୍ପ ଟଙ୍କାରେ ବାହାଘର ସାରିବାକୁ ହେବ। ମୋର କେତେକ ଗହଣା, ପାଟଶାଢ଼ୀ, ସବାରି, ଖଟ ଆଦି ବେଙ୍ଗକୁ ଦେବା ପ୍ରସ୍ତାବ ହେଲା। ମୁଁ ସେ ବିଷୟରେ କିଛି ଭାବିଲି ବି ନାହିଁ – କାରଣ ମୁଁ ଧରି ନେଇଥିଲି ସେ ସମସ୍ତ ସାମଗ୍ରୀ ଏମାନଙ୍କର। ଯାହାହେଉ ବେଙ୍ଗ ବାହାଘର ସରିଲା, ମାଆଙ୍କର କଥା ସରିଲାନାହିଁ – ବାପ ନଥିବା ଝିଅ, ଶାଶୁ ଶ୍ୱଶୁର ନ ଥିବା ଘରେ ଦିଆଗଲା। ପଟ୍ଟାମୁଣ୍ଡେଇ ଆଡ଼େ ଆମ ତିନି ପୁରୁଷରେ କେହି ବନ୍ଧୁ କରିନଥିଲେ। ତାଙ୍କ ପରିବାରରେ ସମସ୍ତେ ଦୁଇ ତିନିଥର ଲେଖା ବାହାହୋଇଛନ୍ତି, ତେଣୁ ମୋ ଝିଅ ଭାଗ୍ୟରେ ସେପରି ଘଟିବା ସ୍ୱାଭାବିକ। ଜଗନ୍ନାଥ ବାବୁ ଜିଲ୍ଲା ଜଜ୍ ହେବା ପର୍ଯ୍ୟନ୍ତ ଏହିକଥା ଶାଶୁ କହୁଥିଲେ।

୧୯୨୦ ଅପ୍ରେଲ୍ ମାସରେ ମାମୁଙ୍କ ଝିଅ ବାହାଘର ହେଲା। ଜୁଆଇଁ କଣ୍ଟାପାଡ଼ିର ଜମିଦାରଙ୍କ ପୁଅ ଜଗନ୍ନାଥ ଦାସ। ବଡ଼ ଜମିଦାର। ଜୁଆଇଁ ଏମ୍.ଏ.ପାସ୍ କରିଛନ୍ତି।

ମାମୁ କଥାପ୍ରସଙ୍ଗରେ ଦିନେ କହିପକାଇଲେ – "ଏମ୍.ଏ.ପାସ୍ କରିଥିବା ଜ୍ୱାଇଁ ଆମେ ପାଇଲୁ – ମାତ୍ର ପୁଅ କେହି ଏମ୍.ଏ. ପାସ୍ କଲେନାହିଁ।" ଏ କଥାଟା ପୁଅମାନଙ୍କୁ ବାଧିଲା, ମାତ୍ର ଉପାୟ ନାହିଁ ଜିଦ୍ ରକ୍ଷା କରିବାପାଇଁ। ମାମୁ ପୁଅ ଭାଇଙ୍କ ବାହାଘର ତାଙ୍କ ଗାଁ କୁମୁଡ଼ାଜୟପୁରରେ ହେଲା। ନିକଟ ବନ୍ଧୁ କୁଟୁମ୍ବ ତ ଆସିଲେ, ଦୂରସମ୍ପର୍କୀୟ ବନ୍ଧୁଙ୍କୁ ମଧ୍ୟ ମାମୁ ଡାକିଲେ ଓ ସେମାନେ ଆସିଲେ। କେତେବର୍ଷ ପରେ ପୁରୁଣା ସାଙ୍ଗମାନଙ୍କୁ ଦେଖିଲି। ତାଙ୍କ ସଙ୍ଗେ ରହିଲି।

ସେଠାରେ ଲୋକେ କିପରି ଖାଇବାକୁ, ପିନ୍ଧିବାକୁ ନପାଇ ଆକୁଳ ହେଉଛନ୍ତି ତାହା ଦେଖିଲି। ଗାଧୋଇସାରି ଲୁଗା ଶୁଖାଇ ଦେଇ ତାହା ଆଉ ତୋଳା ହେଉନାହିଁ – ମାଗିକରି ବା ଲୁଚେଇକରି ଲୋକେ ନେଇଯାଉଛନ୍ତି। ଦଳ ଦଳ ଲୋକ ପିଲାଛୁଆଙ୍କୁ ଖାଇବାକୁ ବସେଇ ଦେଉଛନ୍ତି। ମାମୁଁ ଏସବୁ ଦେଖି ତାଙ୍କ ଗୁମାସ୍ତାଙ୍କୁ ଆଦେଶ ଦେଲେ ଅମାରରେ ଯେତେ ଧାନ ଅଛି ତାକୁ କୁଟାଇ ଦେଇ ଚାଉଳ କରାଇଆଣ – ଯେତେଦିନ ପର୍ଯ୍ୟନ୍ତ ସେ ଚାଉଳ ଥିବ ସେତେଦିନ ପର୍ଯ୍ୟନ୍ତ ଏ ଗାଁର ଯେ ଖାଇବାକୁ ଆସିବ ସେ ଖାଇବ। ଚାଉଳ ନସରୁଣୁ କଦଳୀପତ୍ର ଓ ପଦ୍ମପତ୍ର ସେ ଅଞ୍ଚଳରୁ ସରିଗଲା। ପତ୍ର ବ୍ୟବସ୍ଥା ମାମୁ କଲେ ନାହିଁ, ଯେ ଯାହାର କଲେ । କିଏ ଡାଲାରେ ନିଏ, କିଏ କୁଲାରେ ନିଏ, କିଏ ଅବା ବାଉଁଶିଆରେ ଲୁଗାପାରି ଖାଇଲେ। ପକ୍କା ଅଗଣାରୁ ଟିକିଏ ଜାଗା ଧୋଇ ସଫାକରି ସେ ପକ୍କା ଉପରେ ଲୋକେ ଖାଇଲେ। ଆମେ ଯେତେ ଯାଇଥିଲୁ ଆମ ପିନ୍ଧିବା ଲୁଗା କେହି ଫେରାଇ ଆଣିଲୁ ନାହିଁ। ଏହା ପ୍ରଥମ ବିଶ୍ୱମହାଯୁଦ୍ଧ ଶେଷହେବା ପରର ଅବସ୍ଥା। ଗରିବ ବନ୍ଧୁକୁଟୁମ୍ବ ଯେ ନିମନ୍ତ୍ରିତ ହୋଇ ଆସିଥିଲେ ସେମାନେ ଫେରିଯିବାକୁ ଚାହିଁଲେ ନାହିଁ – ଚାଉଳ ସରିଲାରୁ ସମସ୍ତେ ଗାଁ ଛାଡ଼ି କଟକ ଆସିଲେ।

## ଗାନ୍ଧୀ ଦର୍ଶନ

ଗୋପବାବୁ ଚାକିରିରୁ ଇସ୍ତଫା ଦେବାର ଦୁଇ ଚାରିଦିନ ପରେ ସ୍ୱରାଜ୍ୟ ଆଶ୍ରମକୁ ଯିବା ଆରମ୍ଭ କଲେ। ସେତେବେଳକୁ ଗାନ୍ଧୀଜୀଙ୍କର କଟକ ଆସିବା ଖବର ଆସିଗଲାଣି। କର୍ମୀ ଓ ସ୍ୱେଚ୍ଛାସେବକମାନଙ୍କ ମନରେ ନୂଆ ଉନ୍ମାଦନା ଖେଳିଯାଇଥାଏ। ସ୍ୱରାଜ୍ୟ ଆଶ୍ରମକୁ ନୂଆ ନୂଆ ଲୋକ ଆସୁଥାନ୍ତି। ସେମାନଙ୍କ କଥା ଅଟଳଦା (ସ୍ୱର୍ଗତ ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ) ବୁଝନ୍ତି। ଅଟଳଦା ଧୀରେ ଧୀରେ କଥା କହନ୍ତି ସିନା, ସେ ଜଣେ ବିପ୍ଳବୀ। ସେ କଲିକତା ମେଡ଼ିକାଲ କଲେଜରେ ପଢୁଥିବା ବେଳେ ସନ୍ତ୍ରାସବାଦୀଙ୍କ ସହିତ ସମ୍ପର୍କ ରଖିଥିଲେ। ସେ ମେଡ଼ିକାଲ କଲେଜ ହଷ୍ଟେଲରେ ଯେଉଁ ଘରେ ରହୁଥିଲେ ତାଙ୍କ ଶୋଇବା ଖଟ ପାଖରେ କାଳୀଙ୍କ ଚିତ୍ରଖଣ୍ଡେ ଟଙ୍ଗାହୋଇଥାଏ। ସମସ୍ତେ ଭାବନ୍ତି

ଅଟଳଦା ଜଣେ କାଳୀଭକ୍ତ। ଅଟଳଦାଙ୍କୁ ସନ୍ଦେହ କରି ପୁଲିସ ତାଙ୍କ ଘର ସର୍ଚ୍ଚ କଲେ। କାଳୀଙ୍କ ଫଟୋଟି ଭକ୍ତିରେ ପରୀକ୍ଷା ନକରି ଛାଡ଼ିଦେଇ ଆସିଲେ। ଅଟଳଦା କୁଆଡ଼େ ସେହି କାଳୀଙ୍କ ଚିତ୍ର ପଛପଟେ ପିସ୍ତଲ ଲୁଚେଇ ରଖିଥିଲେ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲାରୁ ଅଟଳଦା ସେ ବାଟ ଛାଡ଼ି ଆନ୍ଦୋଳନରେ ଯୋଗ ଦେଇ କାମ କରିଲେ। ଏପରି ଦିନ ଯାଇଛି, ଭୟରେ ଯେତେବେଳେ କେହି କଂଗ୍ରେସ ସଭାରେ ଯୋଗଦେଉନଥିଲେ ବା ଶୋଭାଯାତ୍ରାରେ ଯୋଗଦେଉନଥିଲେ, ବିଶେଷ ଦିନମାନଙ୍କରେ ଅଟଳଦା ଏକା କଂଗ୍ରେସ ପତାକା ଧରି ରାସ୍ତାରେ ବୁଲିଯିବେ ଓ ନଈବାଲିରେ ପତାକା ପୋତିଦେଇ ତାଙ୍କ ବକ୍ତବ୍ୟ ସେ କହି ଚାଲିଆସିବେ। ସେହି ଅଟଳଦା ସ୍ୱରାଜ୍ୟ ଆଶ୍ରମରେ ସ୍ୱେଚ୍ଛାସେବକ ଓ କର୍ମୀମାନଙ୍କୁ କାମ ବରାଦ କରୁଥିଲେ, ମଫସଲକୁ ବି କର୍ମୀ ପଠାଉଥିଲେ।

ଦୋଳ ପୂର୍ଣ୍ଣିମା ଦିନ ଗାନ୍ଧିଜୀ କଟକ ଆସିଲେ। ଆନନ୍ଦଉତ୍ସାହରେ ସେଦିନ ସମସ୍ତଙ୍କ ମନ ଭରପୂର। କାମ ଏତେ ଲାଗିଥାଏ ଯେ କଥା କହିବାକୁ ବି କାହାରିକୁ ବେଳନାହିଁ। କାର୍ଯ୍ୟ ନିର୍ଘଣ୍ଟରେ ସ୍ଥିର ହେଲା ବିନୋଦବିହାରୀରେ ମହିଳା ସଭା ହେବ। ଦିନ ଦୁଇଟା ବେଳେ ମହିଳା ସଭା ହେବ ବୋଲି ପ୍ରଚାର ହୋଇଥାଏ। ମହିଳା ସଭାକୁ ମୁଁ ଯିବି ବୋଲି ଧରିନେଇ ମାଆ (ଶାଶୁ) କହିଲେ - ଚଞ୍ଚଳ କାମ ସାରିଦେ, ପିଲାଙ୍କୁ ମୁଁ ରଖିବି। ତୁ ସଭାକୁ ଯିବୁ। ସନ୍ଧ୍ୟାବେଳେ ନଈବାଲିରେ ସଭା ହେବ। ସେ ସଭାକୁ ନ ଗଲେ ମଧ ବନ୍ଧ ଉପରେ ବସି ବକ୍ତୃତା ଶୁଣିବା ପାଇଁ ଯେ ମୁଁ ଚାହିଁବି, ସେକଥା ସେ ଅନୁମାନ କରି ସଂଧ୍ୟାବେଳର ରୋଷେଇ କାମର ଝଂଝଟ ଯେପରି ନ ରହିବ, ସେ କଥାକୁ ଲକ୍ଷ୍ୟ କରି କାମ ସାରିଦେବାକୁ କହିଲେ। ମୁଁ ବାରଟାବେଳକୁ ବିନୋଦବିହାରୀକୁ ଗଲି। ଦେବୀମଣ୍ଡପ ସଫାହୋଇ ସେଥିରେ ଶତରଞ୍ଜି ପରାହୋଇଥାଏ। ସଭାରେ ଗୋଟିଏ ଗୀତ ବୋଲା ହେଲେ ଭଲହୁଅନ୍ତା ବୋଲି ମୋର ମନେ ହେଲା। ଏମିତି ଭାବୁ ଭାବୁ ଅଧ୍ୟାପକ ମୋହିନୀ ମୋହନ ସେନାପତିଙ୍କ ସ୍ତ୍ରୀ ଆସି ପହଞ୍ଚିଲେ। ସେ ତ ମୋର ଭାରି ସାଙ୍ଗ, ତାଙ୍କୁ ଗୀତ ବୋଲାହେବା କଥା କହିବାରୁ ସେ ରାଜି ହେଲେ, ମାତ୍ର ତାଙ୍କର ଗୋଟିଏ ହାରମୋନିୟମ ଦରକାର। ବେଳ ତ ଅଳ୍ପ ଅଛି। ବିନୋଦ ବିହାରୀ ହତା ଭିତରେ ହୈମବତୀ ଦେବୀ ରହୁଥାନ୍ତି। ସେ ଏକଥା ଶୁଣି ସାଙ୍ଗେ ସାଙ୍ଗେ ହାରମୋନିୟମଟିଏ ଅଣାଇଦେଲେ। ଗାନ୍ଧୀଜୀ ସଭାକୁ ଆସିବା ବେଳ ଯହୁଁ ଯହୁଁ ପାଖ ହେଉଥାଏ, ତହୁଁ ତହୁଁ ବାୟୁମଣ୍ଡଳ ଶାନ୍ତ ଓ ଗମ୍ଭୀର ହେଉଥାଏ। ଆମେ ସ୍ତ୍ରୀଲୋକ ପ୍ରାୟ ଚାଳିଶ ଜଣ ହେବ ସଜାଡ଼ି ହୋଇ ବସିଗଲୁ। ବାହାରେ ନାନା ଧ୍ୱନି ଶୁଣାଗଲା। ଗାନ୍ଧୀଜୀ, କସ୍ତୁରବା ଓ ଦେବଦାସ ଗାନ୍ଧୀ ଆସିଲେ। ଆଉ କିଏ କିଏ ମଧ ଆସିଲେ। ଗାନ୍ଧୀଜୀ ଅଳ୍ପ

ଦୁଇଝରିପଦ କଥା କହିଲେ। ତା ଭିତରେ ଗହଣା ଛାଡ଼ିବା ଓ ତାଙ୍କୁ ତାହା ଦାନ ଦେବା କଥା ମଧ୍ୟ ଥିଲା। ମୁଦି, କାନଫୁଲ ପ୍ରଭୃତି ଛୋଟ ଛୋଟ ଗହଣା କେତେଜଣ ଦେଲେ। କିଛି ଟଙ୍କା ମଧ୍ୟ ଦେଲେ। ମୁଁ ସତ୍ୟଭାମାପୁରର ଦନ୍ଥଡ଼ା ପଥରକୁଣ୍ଡି ଲଗା ଅରଟରେ କାଟିଥିବା ସୂତାରୁ ମୋଡ଼ାଟିଏ ନେଇଯାଇଥିଲି। ମୁଁ କାଳେ ଗହଣା ଦେଇଦେବି, ଏହି ଆଶଙ୍କାରେ ମାଆ ମୋତେ କହିଥିଲେ - ସେ ଗହଣା ମାଗିଲେ କଅଣ ହେଲା, ତୁ ଦେହରୁ କାଢ଼ି ଗହଣା କିଛି ଦେବୁନାହିଁ। ମୁଁ ତାଙ୍କର ସବୁ କଥାକୁ ଯେପରି ମାନେ ଏ କଥାଟି ମଧ୍ୟ ମାନି ଗହଣା ଦେଲିନାହିଁ। ଅନ୍ୟମାନେ ଟଙ୍କା ଓ ଗହଣା ଦେଲେ। ମୁଁ ସୂତା ମୋଡ଼ାଟିଏ ତାଙ୍କ ହାତକୁ ଦେଲାରୁ ସେ ମୋ ଆଡ଼କୁ ଟିକିଏ ଚହିଁଲେ। ସେ ଚହାଣିରେ କଅଣ ଥିଲା କେଜାଣି ଆଜି ମଧ୍ୟ ତାକୁ ମନେପକାଉଛି।

ମୁଁ ତ ଗାନ୍ଧୀଙ୍କୁ ଦେଖିଲି। ମାଆଙ୍କର ମଧ୍ୟ ଦେଖିବାର ଇଚ୍ଛା - ମାତ୍ର ସେ ପ୍ରକାଶ କରୁନଥାନ୍ତି। ସଭାବେଳେ ନଈକୂଳରେ ବସି ଶୁଣିବା ପାଇଁ ମୋ ସାଙ୍ଗରେ ବାମୀଦିଦିଙ୍କୁ ନ ପଠାଇ ମାଆ ନିଜେ ମୋ ସାଙ୍ଗରେ କାଠଯୋଡ଼ି କୂଳ ବନ୍ଧ ପାଖକୁ ଆସିଲେ। ସେତେବେଳେ ମାଇକ୍ ନଥାଏ। ତେଣୁ ଗାନ୍ଧୀଜୀ ଓ କସ୍ତୁରବାଙ୍କୁ ଦେଖିବା ବାସନା ଚରିତାର୍ଥ କରି ଘରକୁ ଫେରିଲି।

ଅପ୍ରେଲ ଛଅ ତାରିଖରୁ ତେର ତାରିଖ ପର୍ଯ୍ୟନ୍ତ ଜାତୀୟ ସପ୍ତାହ ପାଳନ କରାଯିବା କଥା। ଦିନଯାକ ଉପାସ ରହି ସନ୍ଧ୍ୟାବେଳକୁ ଖିଆହେବ। ଦୋକାନ ବଜାର ବନ୍ଦ ରହିବ। ଏସବୁ ତ ଆଗରୁ ଶୁଣାନଥିଲା - ସମସ୍ତଙ୍କୁ ନୂଆ ଲାଗୁଥାଏ। କର୍ମୀମାନେ ବୁଝେଇ ସୁଝେଇ ଦୋକାନ ବଜାର ବନ୍ଦ କରାଇଲେ। ହରତାଳ ଭଲ ହେଲା। ମୁଁ ଓ ଗୋପବାବୁ ଉପବାସ କଲୁ। ମାଆଙ୍କୁ ଅଡୁଆ ଲାଗୁଥାଏ ଯେ ଉପବାସ କରୁଛନ୍ତି - ମାତ୍ର ଅରୁଆ ଉଷୁନା ବାରଣ ନାହିଁ, ଉପାସ ପରେ ନିତିଦିନିଆ ଖାଦ୍ୟ ଖାଇବ। ପୂଜାପାଠ କିଛି ନାହିଁ ଇତ୍ୟାଦି ମାଆଙ୍କୁ ଯେତିକି ଅଡୁଆ ଲାଗୁଥାଏ ମୋତେ ସେତିକି ଭଲଲାଗୁଥାଏ ଯେ ଉପାସ କରି ଖାଇଲୁ - ଭୋଗ ତିଆରି ଆଦିର ଝମେଲା କିଛି ନାହିଁ। ଆମ ଉପାସ ଯୋଗୁଁ ଅନ୍ୟମାନଙ୍କର ସଶଂୟ ଭାବ ନାହିଁ ଯେ କଅଣ କୋଉଠି ଅରୁଆ ଉଷୁନା ବାରଣରେ ଊଣା ଥିଲେ ତାଙ୍କୁ ଗାଳି ଖାଇବାକୁ ହେବ। ଆମର ଉପାସ ଯୋଗୁଁ କାହାରି ମନରେ କୌଣସି ଉଦ୍‌ବେଗ ନାହିଁ, ଏହା ହିଁ ମୋତେ ଶାନ୍ତି ଲାଗିଲା। ସେଦିନ ମୁଁ ଅନେକ ସମୟ ଧରି ସୂତା କାଟିଲି। ବଳଣା ଓ ଅରଟ ଖରାପ। ମୋତେ ବି ଭଲ କାଟି ଆସେନାହିଁ ବୋଲି ସୂତାର ପରିମାଣ ଅଳ୍ପ ହେଲା।

*(ଜୀବନ ପଥେ, ପୃଷ୍ଠା ୨୧- ୨୬, ପୃଷ୍ଠା ୩୭-୪୦, ପୃଷ୍ଠା ୮୪-୯୨, ପୃଷ୍ଠା ୫୦-୫୨ )*

* * *

# ସରଳା ଦେବୀ

## (୧୯୦୪-୧୯୮୬)

ସ୍ୱାଧୀନତା ଆନ୍ଦୋଳନରେ ଅଂଶଗ୍ରହଣ କରି କାରାଗାରକୁ ଯାଇଥିବା ପ୍ରଥମ ଓଡ଼ିଆ ନାରୀ ସରଳା ଦେବୀ ୧୯୦୪ ମସିହାରେ କଟକ ନରିଲୋ ଗ୍ରାମରେ ଏକ ପ୍ରଭାବଶାଳୀ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ। ୧୯୧୮ ମସିହାରେ ମାତ୍ର ଚଉଦ ବର୍ଷ ବୟସରେ ସେ କଟକର ଜଣେ ଧନୀ ଓକିଲ ଭାଗୀରଥି ମହାପାତ୍ରଙ୍କୁ ବିବାହ କରିଥିଲେ। ଜଣେ ସ୍ୱାଧୀନଚେତା ନାରୀ ଭାବରେ ସେ ପାରମ୍ପରିକ ପରଦା ପ୍ରଥା ମାନୁନଥିଲେ, ଯାହା ସେହି ସମୟରେ ପ୍ରଚଳିତ ଥିଲା। ଜାଲିଆନୱାଲା ବାଗ ହତ୍ୟାକାଣ୍ଡ ଯୁବ ସରଳା ଦେବୀଙ୍କୁ ଗଭୀର ଭାବରେ ଉଦ୍‌ବେଳିତ କରିଥିଲା ଏବଂ ସେ ଥିଲେ ଏକମାତ୍ର ମହିଳା ଯିଏ ୧୯୧୯ ମସିହାରେ କଟକଠାରେ ଏହା ବିରୋଧରେ ହୋଇଥିବା ଏକ ଶୋଭାଯାତ୍ରାରେ ଅଂଶଗ୍ରହଣ କରିଥିଲେ। ୧୯୨୧ ମସିହାରେ ସେ ବ୍ରିଟିଶମାନଙ୍କ ବିରୁଦ୍ଧରେ ଲଢ଼ିବାକୁ ନିଷ୍ପତ୍ତି ନେଇଥିଲେ ଏବଂ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ। ୧୯୨୧ ମସିହାରେ ଗାନ୍ଧୀଜୀଙ୍କ କଟକ ଗସ୍ତ ସମୟରେ ସରଳା ଦେବୀ ଦ୍ୱାରଦ୍ୱାର ବୁଲି ମହିଳାମାନଙ୍କୁ ତାଙ୍କ ସଭାରେ ଯୋଗ ଦେବାକୁ ପ୍ରବର୍ତ୍ତାଇଥିଲେ। ସେ ଗାନ୍ଧୀଜୀ ଦେଇଥିବା ହିନ୍ଦୀ ବକ୍ତବ୍ୟକୁ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ ଏବଂ ସେହି ଅବସରରେ ମହିଳାମାନଙ୍କୁ ଗାନ୍ଧୀଙ୍କ ବାର୍ତ୍ତାର ତାତ୍ପର୍ଯ୍ୟ ବୁଝାଇଥିଲେ। ସେ ଓଡ଼ିଶାର ନାରୀମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା ପାଇଁ "ଉତ୍କଳ ନାରୀ ସମ୍ମିଳନୀ" ଏବଂ "ଉଦ୍‌ଯୋଗ ମନ୍ଦିର" ପ୍ରତିଷ୍ଠା କରିଥିଲେ। ୧୯୩୧ ମସିହାରେ ସେ କଂଗ୍ରେସର କରାଚି ଅଧିବେଶନରେ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ଏବଂ ସେଠାରେ ତାଙ୍କୁ ଜଣେ ଜାତୀୟ ନେତା ଭାବରେ ସମ୍ମାନିତ କରାଯାଇଥିଲା।

ଓଡ଼ିଶାକୁ ଏକ ପୃଥକ୍ ପ୍ରଦେଶ ଘୋଷିତ କରାଯିବା ପରେ ସରଳା ଦେବୀ

୧୯୩୬ ମସିହାରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ସେ ବିଧାନସଭାରେ ତାଙ୍କର କାର୍ଯ୍ୟକାଳ ସମୟରେ ତାଙ୍କ ଭାଷଣ ମାଧ୍ୟମରେ କୃଷକମାନଙ୍କ ସମସ୍ୟା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ସରଳା ଦେବୀ ଓଡ଼ିଶା ବିଧାନସଭାରେ ପ୍ରଥମ ମହିଳା ଅସ୍ଥାୟୀ ବାଚସ୍ପତି ଭାବରେ କାର୍ଯ୍ୟ କରିଥିଲେ। ସେ ଓଡ଼ିଶାର ସର୍ବପୁରାତନ ସାହିତ୍ୟ ଅନୁଷ୍ଠାନ "ଉତ୍କଳ ସାହିତ୍ୟ ସମାଜ"ର ସଚିବ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ। ସେ ୨ ଅକ୍ଟୋବର ୧୯୮୬ ମସିହାରେ ମୃତ୍ୟୁ ପର୍ଯ୍ୟନ୍ତ ସାଧାରଣ ଜୀବନରେ ସକ୍ରିୟ ଥିଲେ।

ସରଳା ଦେବୀ ତାଙ୍କର ପ୍ରବନ୍ଧ ଏବଂ ସମାଲୋଚନାମୂଳକ ଲେଖା ପାଇଁ ସ୍ମରଣୀୟ, ଯେଉଁଥିରେ ସେ ନାରୀମାନଙ୍କ ଦୁଃଖଯନ୍ତ୍ରଣା ଏବଂ ଏକ ଅତ୍ୟାଚାରୀ ସମାଜ ବ୍ୟବସ୍ଥାରୁ ବାହାରିବାର ଆବଶ୍ୟକତା ଉପରେ ଆଲୋକପାତ କରିଥିଲେ। ନାରୀମାନଙ୍କ ପ୍ରତି ହେଉଥିବା ନିଷ୍ଠୁରତା ଏବଂ ଭେଦଭାବ ବିରୋଧରେ ସେ ନିରନ୍ତର ଲେଖିଥିଲେ। ତାଙ୍କ ପୁସ୍ତକଗୁଡ଼ିକ ମଧ୍ୟରେ ଉଲ୍ଲେଖନୀୟ ହେଉଛି "ବିଶ୍ୱ ବିପ୍ଳବିଣୀ" (୧୯୩୦), "ଉତ୍କଳର ନାରୀ ସମସ୍ୟା" (୧୯୩୪), "ନାରୀର ଦାବି" (୧୯୩୪), "ଭାରତୀୟ ମହିଳା ପ୍ରସଙ୍ଗ" (୧୯୩୫), ଏବଂ "ନାରୀ ଜଗତ" (୧୯୩୫)।

ସରଳା ଦେବୀ ଜଣେ ରାଜନୈତିକ ନେତା ତଥା ଲେଖକ ଭାବରେ ସର୍ବସାଧାରଣ କ୍ଷେତ୍ର ସହିତ ତାଙ୍କର ଆଜୀବନ ସଂଶ୍ଳିଷ୍ଟତାକୁ ଆଧାର କରି ଏକ ସମ୍ପୂର୍ଣ୍ଣ ଆତ୍ମଜୀବନୀ ଲେଖିଥାନ୍ତେ କି ! ଦୁର୍ଭାଗ୍ୟକୁ ସେ ଯାହା ଲେଖିଛନ୍ତି ତାହା ହେଉଛି କିଛି ଆତ୍ମଜୀବନୀମୂଳକ ରଚନା। ତାଙ୍କର ଆତ୍ମଜୀବନୀମୂଳକ ଲେଖା "ମୋ ଜୀବନର ଏକ ସ୍ମରଣୀୟ ଘଟଣା" ୨୦୧୦ ମସିହାରେ ତାଙ୍କର ଅପ୍ରକାଶିତ କାଗଜପତ୍ରରୁ ନିଆଯାଇଛି।

## ମୋ ଜୀବନର ଏକ ସ୍ମରଣୀୟ ଘଟଣା

ମୋ ଜୀବନରେ କେବଳ ନୁହେଁ ଏ ସଂସାରରେ ସମସ୍ତଙ୍କ ଜୀବନ ପ୍ରତିଦିନ ଘଟଣାବଳୀରେ ପୂର୍ଣ୍ଣ। ମୋର ମନେହୁଏ ଆମ୍ଭମାନଙ୍କ ଜୀବନରେ ସ୍ମରଣୀୟ ଘଟଣା ବୋଲି ଯାହାକୁ ଭାବୁ ସେହି ଘଟଣାବଳୀ ଜନ୍ମମୃତ୍ୟୁ ଲଫାପାରେ ବନ୍ଦହୋଇ ମଣିଷର ଶବ ସହିତ ଜଳିଯାଏ। ପଦ ପ୍ରତିଷ୍ଠା, ଚାକିରି, ବିବାହ, ରୋଗମୁକ୍ତି, ଶିଶୁଜନମ ଓ ମୃତ୍ୟୁ, ବନ୍ଧୁ ବିଚ୍ଛେଦ, ସନନ୍ଦ ପ୍ରାପ୍ତି, ଅଭିନନ୍ଦନ ପତ୍ରର ଅଭିବାଦନ, ଜୀବନାଶଙ୍କ ବିପଦ ଆପଦ, ଧନପ୍ରାପ୍ତି, ବନ୍ଧୁର ବିଶ୍ୱାସଘାତକତା ବା କୃତଘ୍ନତା, ଉପକୃତ ଲୋକର ଶତୃତା ଓ ମିତ୍ରତା ବା ଔଦାସିନ୍ୟ, କୃତିତ୍ୱର ସମ୍ମାନ ପ୍ରାପ୍ତି, ସତ୍‌କାର୍ଯ୍ୟ ବା ଶୁଭକାର୍ଯ୍ୟ

ଏହିସବୁ କେତେପ୍ରକାର ଘଟଣା ମଣିଷ ଜୀବନରେ ରଖିଯାଏ ଗୋଟିଏ ଗୋଟିଏ ଧଳା ବା କଳା ଚିହ୍ନ। ନରନାରୀ ସମସ୍ତଙ୍କ ଜୀବନରେ ଏହିପରି ଘଟେ। ମୋର ମନେହୁଏ ମନୁଷ୍ୟ ପ୍ରବୀଣ ବୟସରେ ବା ବୃଦ୍ଧାବସ୍ଥାରେ ଉପନୀତ ହେଲେ ଯୋଉ ଘଟଣାଗୁଡ଼ିକର ସ୍ମରଣରେ ଯୌବନକାଳରେ ତାର ହର୍ଷ ବା ଶୋକ ଉପସ୍ଥିତ ହୁଏ, ସେହି ଘଟଣାବଳୀର ବୈଚିତ୍ର୍ୟ ତାକୁ ଆଉ ଅଭିଭୂତ କରେ ନାହିଁ। ଜୀବନର ବହୁ ବିଚିତ୍ର ସ୍ମରଣୀୟ ଘଟଣାବଳୀର ବର୍ଣ୍ଣବିଭବ ସବୁତକ ଏକାଠି ମିଶି ଏକ ଶ୍ୱେତପତ୍ର ପରି ଦୃଶ୍ୟମାନ ହୁଏ। ଦିନେ ଯେଉଁ ଘଟଣାରେ ମନ ପ୍ରାଣ ଦେହ ଅଭିଭୂତ ହୋଇ ପଡୁଥିଲା, ହର୍ଷ ବା ଶୋକରେ ଅଭିଭୂତ ହେଉଥିଲା, ସେହି ଘଟଣାର ଐତିହାସିକ ମୂଲ୍ୟ ଜୀବନରେ ରହିଯାଏ ସିନା କିନ୍ତୁ ତହିଁରେ ବର୍ତ୍ତମାନର ଜୀବନଦାହ ନଥାଏ। ସେ ଘଟଣା ମିଉଜିୟମ ସାଇତା ପଥରମୂର୍ତ୍ତି ପରି ବା ଜଡ଼ ପଥର ଭଳି ବୋଧହୁଏ। ତେଣୁ କହିବାକୁ ଗଲେ ସକାଳୁ ସଞ୍ଜ ଓ ସଞ୍ଜବେଳୁ ସକାଳର ଜୀବନ କ୍ରମିକ ବା ଧାରାକୁ ଜୀବନର ଚିରନ୍ତନୀ ଆଖ୍ୟାଦେଇ ହୁଏ ନାହିଁ। ଘଟଣାଗୁଡ଼ିକ ମଣିଷର ଚଳମାନ ଅନୁଭୂତି ବହନ କରି ପ୍ରତି ମୁହୂର୍ତ୍ତରେ ଜୀବନ ମୁକୁରରେ ପ୍ରତିଭାତ ହୋଇ ମରିଯାଉଛି। ଯେପରି ସମୁଦ୍ର ତରଙ୍ଗ ଫେଣ ସେଇ ସମୁଦ୍ର ପାଣିରେ ମରିଯାଏ ବା ମିଳେଇ ଯାଏ ଅସ୍ତିତ୍ୱ ପାଶୋରେ। ସକାଳ ଘଟଣା ସଞ୍ଜବେଳକୁ ମରିଯାଏ, ରାତିଘଟଣା ସକାଳକୁ ମରିଯାଏ, ରଖିଯାଏ କେବଳ ସୀମିତ କାଳ ପାଇଁ ସୀମିତ ସ୍ମୃତିର ରେଖାପାତ। କହିବାକୁ ଗଲେ ଆମେ ପ୍ରତି ମୁହୂର୍ତ୍ତରେ ମରିଯାଉଛୁ। ଦିନରେ ଜାଗ୍ରତ ଜୀବନର ସ୍ୱାଦ ପାଉଛୁ ମାତ୍ର ରାତ୍ରିର ନିଦ୍ରା ଆମ ଚେତନାକୁ ମାରି ଦେଉଛି ଓ ରାତିରେ ସକାଳର ଅନୁଭୂତି ସମ୍ପନ୍ନ ଜିଅନ୍ତା ମଣିଷ ରାତ୍ରିର ସୁଷୁପ୍ତି ଭିତରେ ଚେତନାହୀନ ପ୍ରାଣ ଓ ଦେହର ବିସ୍ମୃତି ନେଇ ମରିଯାଏ। କେଉଁଠିଥାଏ ଆଉ ସ୍ମରଣୀୟ ଘଟଣାର ରୋମାଞ୍ଚକର ସ୍ମରଣିକାର ସ୍ୱପ୍ନବିଳାସ ? ଏହି କଟକଣା ମୃତ୍ୟୁର କଳା ଯବନିକା ପ୍ରତିଦିନ ପ୍ରତି ମୁହୂର୍ତ୍ତର ଯୋଗସୂତ୍ରରେ ପ୍ରତିନିୟତି ନିୟୂତ ଘଟଣାବଳୀକୁ ଆତ୍ମସାତ କରି ଚାଲିଛି। ମଣିଷ ସ୍ମରଣିକା ପେଡ଼ି ଭିତରେ କେତେ ସ୍ମରଣୀୟ ଘଟଣା ତଟକା ହୋଇ ରହେ ଯେ ମୋ ଜୀବନର ଗୋଟିଏ ସ୍ମରଣୀୟ ଘଟଣା କହିବି ?

ମୋ ଜୀବନର ବହୁ ବିଚିତ୍ର ଓ ବିଶିଷ୍ଟ ଘଟଣାର ସମାହାର ଭିତରୁ କାହାକୁ ବାଛିବି ? ସବୁ ନାରୀଙ୍କର ବିବାହ ଓ ମାତୃତ୍ୱ ଗୋଟିଏ ସ୍ମରଣୀୟ ଘଟଣା ହୋଇଥାଏ। ଏହାତ ସାଧାରଣ କଥା। ମୋର ଜୀବନରେ ଓଡ଼ିଶାର ପ୍ରଥମ ବ୍ୟବସ୍ଥାପିକା ହେବାପାଇଁ ରାଜନୀତିକ ଜୀବନ ଆରମ୍ଭରୁ ଯୁଦ୍ଧ ଭୂମିରେ ଠିଆହେବା ପ୍ରତିଦ୍ୱନ୍ଦିତା କରି ଜୟୀ ହେବା, ପୁଣି ଏସେମ୍ବ୍ଲିରେ ଅସ୍ଥାୟୀ ସଭାପତି ହେବା, ହୁଇପ ହେବା, ଭାରତରେ ପ୍ରଥମ ହୋଇ କୋ-ଅପରେଟିଭ ବ୍ୟାଙ୍କ ଡିରେକ୍ଟର, ପ୍ରଥମ ବେସରକାରୀ ଓଡ଼ିଆ ନାରୀ ଭାବରେ

ବିଶିଷ୍ଟ ସାହିତ୍ୟିକମାନଙ୍କ ସହିତ ସେହି ଭୋଟ ଯୁଦ୍ଧଭୂମିରେ ପ୍ରତିପକ୍ଷମାନଙ୍କ ସହିତ ଲଢ଼ି ଜୟକରି ପ୍ରଥମ ବିଶ୍ୱବିଦ୍ୟାଳୟର ସିନେଟ ସଭ୍ୟ ହେବା, ପୁଣି ଭୋଟ ରଙ୍ଗଭୂମିରେ ଉତୁରି କଟକ ଲୋକାଲ ବୋର୍ଡ଼ର ମେମ୍ବର ହେବା, ପୁଣି ଭୋଟ ରଙ୍ଗଭୂମିରେ ଉତୁରି ଉତ୍କଳ ସାହିତ୍ୟ ସମାଜର ଭାଇସ୍ ପ୍ରେସିଡ଼େଣ୍ଟ ହେବା – ପୁଣି ଭୋଟ ଯୁଦ୍ଧଭୂମିରେ ପ୍ରତିଦ୍ୱନ୍ଦିତା କରି ୫ବର୍ଷ କାଳ ଉତ୍କଳ ସାହିତ୍ୟ ସମାଜର ସଭ୍ୟା ହେବା, ପୁଣି ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟା ଓ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟା ହେବା ମୋ ଜୀବନରେ ଘଟିଛି। ତତ୍‌ପରେ ସେଇ ଭୋଟଦ୍ୱାରା କଟକ ଜିଲ୍ଲା କଂଗ୍ରେସ କମିଟିର ସେକ୍ରେଟାରୀ, ନିଖିଳ ଭାରତ ମହିଳା ସମ୍ମିଳନୀର ଷ୍ଟାଣ୍ଡିଂ କମିଟିର ଦୁଇ ଦୁଇଥର ନିର୍ବାଚିତ ସଭ୍ୟା। ତାମିଲନାଡୁ ପ୍ରାଦେଶିକ ମହିଳା ସମ୍ମିଳନୀର ସଭାପତି ରୂପେ ନିର୍ବାଚିତ ହୋଇ ତିରୁପୁର ପାଇଁ ସଭାପତିତ୍ୱ କରିବା, ଓଡ଼ିଶା ସରକାରଙ୍କ ଦ୍ୱାରା କଟକ ଜେଲ ଓ ଜେନେରାଲ ହସ୍ପିଟାଲର ପରିଦର୍ଶିକା ହେବା, ପୁଣି କୋ ଅପରେଟିଭ୍ ତାରକସି ସମବାୟ ସମିତିର ପ୍ରେସିଡ଼େଣ୍ଟ ହେବା। ନାରୀ କଲ୍ୟାଣ ସମବାୟ ସମିତିର ସଭାପତି ହେବା, ରେଭେନ୍ସା ବାଳିକା ସ୍କୁଲ ମ୍ୟାନେଜିଂ କମିଟିର ସଭ୍ୟଭାବରେ ନିର୍ବାଚିତ ହେବା ଓ ପୁଣି ଜଗତସିଂହପୁର ବାଳିକା ମାଇନର ସ୍କୁଲର ସେକ୍ରେଟାରୀ ରୂପେ ନିର୍ବାଚିତ ହେବା ଏପରି ବହୁ ବହୁ ଘଟଣାବଳୀ ମୋ ମନରେ ରହିଛି ଅବିସ୍ମରଣୀୟ ପେଡ଼ିରେ ଲୁଚି। ଏହିସବୁ ଘଟଣା ଅତିଶୟ ତୁଚ୍ଛତମ ବୋଲି ମୋର ମନକୁ ଲାଗେ ନାହିଁ।

ଏପରିକି ମହାତ୍ମାଗାନ୍ଧୀଙ୍କ ଯୋଗୁଁ ଉତ୍କଳରେ ୧୯୩୦ ସାଲରେ ମୁଁ ଉତ୍କଳର ପ୍ରଥମ ନାରୀ ସତ୍ୟାଗ୍ରହୀ ଭାବରେ ଜେଲ ଯିବା କଥା ବା ୧୯୪୦ସାଲରେ ଯୁଦ୍ଧ ବିରୋଧୀ ଧ୍ୱନି କରି ପ୍ରଥମ ଉତ୍କଳ କଂଗେସ ତରଫରୁ ଜେଲ ଯିବା କଥା ମଧ୍ୟ ମୋ ପକ୍ଷେ ସ୍ମରଣୀୟ ଘଟଣା ନୁହେଁ। ସୀମା ଆନ୍ଦୋଳନ ଆଇନ ଅମାନ୍ୟ କରି ବୁଢ଼ୀ ଦିନେ ୮ ଦିନ ଜେଲରେ ରହିବା କଥା ମୋ ପକ୍ଷରେ ସ୍ମରଣୀୟ ନୁହେଁ। କେତେ ସଭା ସମ୍ମିଳନୀରେ ସଭାପତିତ୍ୱ କିବା ବହି ଲେଖି ଛାପିବା ମଧ୍ୟ ମୋ ପକ୍ଷରେ ତୁଚ୍ଛ। ଅଳ୍ପ ବୟସର ଘଟଣାକୁ ଗୁରୁତ୍ୱ ଦେବାକୁ ମୁଁ ଚାହେଁ ନାହିଁ। ରାଜନୀତିକ ଜୀବନର ଗୋଟିଏ ସ୍ମରଣୀୟ ଘଟଣା ମୋର ମନେ ଅଛି।

ମୁଁ ବରାବର ଗଞ୍ଜାମ ଜିଲାର ସତ୍ୟାଗ୍ରହ ସମରର ଡିରେକ୍ଟର ଥିଲାବେଳେ ନିତି ଗୋଟିଏ ଗୋଟିଏ ଗାଁକୁ ଯାଇ ଇଂରେଜ ସରକାରର ପିଣ୍ଡ ବାଡ଼ି ଭାଷଣ ଦେଉଥିଲି। ଦେଢ଼ଶ ଲୋକଙ୍କୁ ପ୍ରେରଣା ଦେଇ ଜେଲ ପଠାଇଥିଲି। ମୁଁ ରାତିଦିନ ଦି ବର୍ଷଧରି କାମ କରୁଥାଏ। ଚାନ୍ଦା ଉଠାଇ ସତ୍ୟାଗ୍ରହୀଙ୍କୁ ଚଳାଇବା ଓ ଜେଲଖାନାକୁ ଲୋକ ପଠାଇବା କାମଥାଏ। ଶ୍ରୀ ନିରଞ୍ଜନ ପଟ୍ଟନାୟକ, ଶ୍ରୀ ହରିହର ପଟ୍ଟନାୟକ ପ୍ରଭୃତି ମୋ ସହ କାମ

କରୁଥାନ୍ତି। କାମ ମୋତେ ନିଶା ଧରାଇଥାଏ। ତେବେ ସୁଦ୍ଧା ମୁଁ ମୋର ସାନପୁଅଟିକୁ ପାଖରେ ରଖି ଗାଁକୁ ଗାଁ ତାକୁ ନେଇ ବୁଲି ଟିକେ ଶାନ୍ତି ପାଉଥାଏ। ପିଲା ଦୁଷ୍ଟ କି ଅଝଟ ନ ଥିଲା ଓ ବଡ଼ ଶାନ୍ତ ସ୍ୱଭାବର ପିଲା ବୋଲି ମୁଁ ତାକୁ ଚଳାଏ ଓ ନିଜେ ଚଳିଯାଉଥିଲି। ଦେଢ଼ଶ ଲୋକଙ୍କୁ ଜେଲ ପଠାଇଲା ପରେ ମୋ ଚେଲା ସୀତାରାମାୟ (ବ୍ରହ୍ମପୁର ଓକିଲ) ଓ ମୁଁ ତେଲୁଗୁ କଂଗ୍ରେସ ଓ ଓଡ଼ିଆ କଂଗ୍ରେସ କମିଟିର କେତେକ କର୍ମୀଙ୍କୁ ନେଇ ନୂଆପଡ଼ାରେ ଲବଣ ସତ୍ୟାଗ୍ରହ କରିବା ପାଇଁ ଖରାବେଳେ ରେଳରେ ବସିଗଲୁ। ସେତେବେଳେ କିଲଟର ଥାନ୍ତି। ମୋର ଗଞ୍ଜାମ ଜିଲ୍ଲାରେ ଅତ୍ୟନ୍ତ ପ୍ରଭାବ ଦେଖି ସେ କହୁଥାନ୍ତି ସରଳା ଦେବୀ ଗୋଟିଏ ଡାକିନୀ କି ତାର କି ଗୁଣ ଅଛି ଯେ, ଲୋକେ ତା ଭାଷଣ ଶୁଣି ଆଇନ ଭାଙ୍ଗି ଜେଲ ପଳାଉଛନ୍ତି। 'ଆଶା' ସମ୍ପାଦକ ଶଶୀରଥ ଓ ଶ୍ରୀ ବିଶ୍ୱନାଥ ଦାସଙ୍କ ପର୍ଯ୍ୟନ୍ତ ସେ ଶିଖାଇ ମଣାଇ କଂଗ୍ରେସରେ ପୂରାଇ ଜେଲ ପଠାଇ ଦେଲା। ମୁଁ ସବୁ ଶୁଣୁଥାଏ ସିନା ମୋ ମନରେ କେବେ ବିଶ୍ୱାସ ନଥିଲା କିଲଟର ଷଡ଼ଯନ୍ତ୍ର କରି ମୋତେ ଏକମୁହାଁ କରି ଭେଲୋର ଜେଲକୁ ପଠାଇ ଦେବ। ନୂଆପଡ଼ା ଖୁସିରେ ଗଲି। ପୁଅକୁ ସେଥର ଜଗତସିଂପୁର ଚଟରାରେ ଛାଡ଼ି ଆସିଥାଏ। ତେଣୁ ନିଜକୁ ଟିକେ ହାଲୁକା ଲାଗୁଥାଏ ଦାୟିତ୍ୱ ନଥିବାରୁ, ବ୍ରହ୍ମପୁର ଷ୍ଟେସନରୁ ଖଣ୍ଡେ ଦୂରଯାଇ ଗାଡ଼ି ରହିଲା। ଆମେ ଭାବିଲୁ ଇଞ୍ଜିନ କଳ ଅଟକି ଗଲା। ଦେଖୁ ଦେଖୁ ପଞ୍ଚାଏ ସିପେହୀ ପୋଲିସ୍ ଇନ୍ସପେକ୍ଟର ଯାଇ ଥାର୍ଡ଼ କ୍ଲାସରେ ଆମେ ଯେତେ କଂଗ୍ରେସ ବାଲା ଯାଉଥିଲୁ ନୂଆପଡ଼ା, ସମସ୍ତଙ୍କୁ ପରଓ୍ୱାନା ଦେଖାଇ ଗିରଫ କରି ନେଇଗଲେ। ରେଳରୁ "ମହାତ୍ମାଗାନ୍ଧୀ କି ଜୟ, ସରଳା ଦେବୀକି ଜୟ" ବୋଲି ଯାତ୍ରୀମାନେ ଭୀଷଣ ଧ୍ୱନି କରୁଥାନ୍ତି। ପୋଲିସ୍ ଭ୍ୟାନ୍‌ରେ ଆମେ ଛତ୍ରପୁର କୋର୍ଟକୁ ଗଲୁ। ମୋତେ 'ବି' କ୍ଲାସ୍ ବନ୍ଦୀ କରାଗଲା। ମୁଁ ଗଲାବେଳେ ପୁଅକୁ ଆଉ ୬ମାସ ଦେଖିବି ନାହିଁ ବୋଲି ମନରେ ବଡ଼ଦୁଃଖ ହେଉଥାଏ କିନ୍ତୁ ମନକୁ ବୁଝାଇ ଖୁସି ହେଉଥାଏ ଦେଶରେ କୋଟି କୋଟି ପୁଅଙ୍କ ଜଞ୍ଜିର ଛିଡ଼େଇବାକୁ ତ ମୁଁ ଗୋଟିଏ ସାମାନ୍ୟ ନାରୀ ହୋଇ ନିଆଁକୁ ପାଦ ବଢ଼େଇ ଗୋଟିଏ ଅଶୁଣା ଅଜଣା ଜାଗାକୁ ଯାଉଛି ବିଚିତ୍ର ଜୀବନ ପରିବେଶ ଭିତରକୁ। ଜେଲରେ ଯେତେ ଦାରୁଣ କଷ୍ଟ ତା ମୁଁ ନିଶ୍ଚୟ ସହିବି। ଆମ ଗାଁକୁ ସରକାରୀ ତାର ଗଲା। ଭାଇ ଓ ଭାଗୀରଥି ବାବୁ ପୁଅକୁ ନେଇ ଆସିଲା ଯାଏ ମୁଁ ନଥିଲି। ବାଟରେ ସବୁ ଷ୍ଟେସନରେ ମୋତେ ଫୁଲମାଳ ଓ ଫଳ ଭର୍ତ୍ତିକରି ଲୋକେ ଦେଇ ଯାଉଥିଲେ। ମୋର ଜୟକାର ଓ ଗାନ୍ଧୀଜୀଙ୍କ ଜୟକାର କରୁଥିଲେ। ମୋ ବେଗ୍‌ରୁ କଲମ କାଗଜ କାଢ଼ି ୧୫/୨୦ ପୃଷ୍ଠା ମୋର ଅନୁଭୂତି ପୁଅକୁ ଛାଡ଼ିଯିବାରୁ କ'ଣ ହେଲା ଲେଖିଥିଲି ରେଳରେ। ଇନ୍ସପେକ୍ଟର ବୁଢ଼ା ହାତ ଗୋଡ଼ ଧରି କହିଲାରୁ ସେ ମାଡ୍ରାସ୍‌ରୁ ସେସବୁ ଲେଖାକୁ

ଦୈନିକ "ଆଶା"କୁ ପଠାଇଥିଲା । ମୁଁ ଜେଲରୁ ଆସି ଦେଖିଲି ତାହା ସବୁ ଛପା ଯାଇଛି । ମୋତେ ଓଡ଼ିଶାର ବହୁ ଅଞ୍ଚଳର ମାଇପେ କହିଲେ "ତମର ପୁଅକୁ ଛାଡ଼ି ଯିବାପାଇଁ ଯେଉଁ ଲେଖା ଲେଖିଥିଲ, ତାହା ପଢ଼ି ଆମେ ସମସ୍ତେ କାନ୍ଦିଥିଲୁ ।" ଜେଲରେ ଦୁର୍ଗାବାଈ ଦେଶମୁଖ, ରୁକ୍ମିଣୀ ଓ ଲକ୍ଷ୍ମଣ ପତିଙ୍କ ସହିତ ମୋର ଭଲରେ ଦିନ କଟିଲା । ଦୁର୍ଗାବାଈ ମୋତେ ମାତାଠାରୁ ଅଧିକ ଯତ୍ନ ଓ ସାହାଯ୍ୟ ଦେଇ ବନ୍ଦୀ ଜୀବନକୁ ସହଣୀୟ କରିଦେଲେ । ମାତ୍ର ମୋର ପୁଅ ଟିକୁନ ଗାଁରେ କିପରି ଅଯତ୍ନରେ ଚଳୁଥିବ, ରୋଗରେ ପଡ଼ି ମୋତେ ଖୋଜୁଥିବ ଏଇ କଥା ମୋର ମଝିରେ ମଝିରେ ମନେ ପଡୁଥିଲା । ତାର ପିହୁଳା ରୋଗ ଅପସ୍ମାର ଭଳି ମଝିରେ ମଝିରେ ହେଉଥିଲା । ଜେଲରେ ଟିକୁନର କଥା ଯେପରି ମୁଁ ଚିନ୍ତା ନକରିବି ସେହି ଚିନ୍ତା ମୋର ଛମାସର ଜୀବନକାଳର ଗୋଟିଏ ସ୍ମରଣୀୟ କଥା ହୋଇଥିଲା । ଜେଲରେ ହାତରୁ କାଚ କାଢ଼ିବା, ଲୁଣ-ଭାତ-ଅଟା ଘେନି ଖାଇବା, ଲୁଗାପଟାର ଅଭାବ, ବିଛଣାର ଅଭାବ ଓ ତାମିଲ ତେଲଗୁର ଅପରିଚିତ ଗୁଡ଼ିଏ ନାରୀଙ୍କ କଥା ନ ବୁଝି ଦିନ କାଟିବାର ନିରାନନ୍ଦମୟ ଘଟଣା ମନରେ ସ୍ମରଣୀୟ ଘଟଣା ହୋଇ ରହିଥିଲା ।

ଏବେ ସେ ଘଟଣାର ଦୃଶ୍ୟପଟ ଅପସରି ଯାଇ ଯେଉଁ ବାସ୍ତବ ଦୃଶ୍ୟ ନିଜ ପରିବାର, ସଂସାର, ସମାଜ ଓ ରାଷ୍ଟ୍ରର ଦେଖିଲି ତା ଅପରିକଳ୍ପିତ ଥିଲା ।

*(ସରଳା ଦେବୀଙ୍କ ଅପ୍ରକାଶିତ କାଗଜପତ୍ରରୁ ୨୦୧୦ ମସିହାରେ ସଂଗୃହୀତ)*

* * *

# ଗୋଦାବରୀ ଦେବୀ

**(୧୯୧୬-୧୯୯୩)**

ଗୋଦାବରୀ ଦେବୀ ୨ ଅକ୍ଟୋବର ୧୯୧୬ ମସିହାରେ ଯାଜପୁର ଜିଲ୍ଲାରେ ଏକ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ବାଞ୍ଛାନିଧି ଦାସ ମାଡ୍ରାସର ଏକ କମ୍ପାନୀରେ ମ୍ୟାନେଜର ଭାବରେ କାର୍ଯ୍ୟ କରିଥିଲେ। ଗୋଦାବରୀ ଦଶ ବର୍ଷ ବୟସରେ ତାଙ୍କ ମାତାଙ୍କୁ ହରାଇଥିଲେ, ଯାହା ତାଙ୍କ ଜୀବନରେ ଗଭୀର ଶୂନ୍ୟସ୍ଥାନ ସୃଷ୍ଟି କରିଥିଲା। ମାଆଙ୍କ ଅଭାବକୁ ଭୁଲିବାକୁ ଯାଇ ସେ ପ୍ରାର୍ଥନା ଓ ଧ୍ୟାନରେ ଦିନ ବିତାଉଥିଲେ। ସେ ଗାଁର ଝିଅମାନଙ୍କ ଗୋଷ୍ଠୀରେ ମଧ୍ୟ ସମୟ ଅତିବାହିତ କରୁଥିଲେ, ଯେଉଁମାନେ ପର୍ବପର୍ବାଣୀରେ ଗୀତ ଗାଇବା, ଟୋକେଇ ବୁଣିବା, ପୋଷାକ ସିଲେଇ କରିବା ଏବଂ ଚାଉଳବିରି ବାଟିବା, ଝୋଟି ପକାଇବା ଆଦି କାମରେ କୁଶଳି ଥିଲେ। କିଶୋରୀ ଗୋଦାବରୀ ମଧ୍ୟ ଏସବୁରେ ନିପୁଣା ଥିଲେ। ସେ ତାଙ୍କ ଗ୍ରାମ ବିଦ୍ୟାଳୟରେ ପ୍ରାଥମିକ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ। ସେ ନିୟମିତ ଖବରକାଗଜ ଏବଂ ପତ୍ରିକା ପଢ଼ି ଦେଶରେ ଘଟୁଥିବା ଘଟଣାଗୁଡ଼ିକ ବିଷୟରେ ନିଜକୁ ଅବଗତ କରୁଥିଲେ।

ଗୋଦାବରୀ ଦେବୀ ମାତ୍ର ତେର ବର୍ଷ ବୟସରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ। ସେ ୧୯୩୪ ମସିହାରେ ଓଡ଼ିଶାରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରା ସମୟରେ ମହାତ୍ମା ଗାନ୍ଧୀଙ୍କୁ ଓଡ଼ିଆ ବର୍ଣ୍ଣମାଳା ଶିଖାଇଥିଲେ। ୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ସମୟରେ ସେ ବ୍ରିଟିଶମାନଙ୍କ ବିରୁଦ୍ଧରେ ପ୍ରଚାର କରିବା ଯୋଗୁଁ ତାଙ୍କୁ ବର୍ଷେ କାରାବାସ ଦଣ୍ଡ ହୋଇଥିଲା। ସେ ନାରୀମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି ଏବଂ ଶିକ୍ଷାକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ୧୯୪୬ ମସିହାରେ ବାଲେଶ୍ୱରରେ ଏକ ନାରୀ ସଂଗଠନ ପ୍ରତିଷ୍ଠା କରିଥିଲେ। ସେ ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ ଦାସଙ୍କୁ ବିବାହ କରିଥିଲେ। ରବୀନ୍ଦ୍ର ମୋହନ ୧୯୩୪

ମସିହାରୁ ୧୯୪୦ ମଧ୍ୟରେ କଲିକତାର ବିଦ୍ୟୁତ୍ ଯୋଗାଣ ଶ୍ରମିକ ସଂଘର ସଚିବ ଭାବରେ କାର୍ଯ୍ୟ କରିଥିଲେ ଏବଂ କଲିକତା, ଢାକା, ସିରାଜଗଞ୍ଜ ଓ ଜେସୋରରେ ଟ୍ରେଡ୍ ୟୁନିୟନ ସଂଗଠନ ଗଢ଼ିଥିଲେ। ସେ ଜଣେ ଟ୍ରେଡ୍ ୟୁନିଅନ ନେତା ଭାବରେ ବିଖ୍ୟାତ ହୋଇଥିଲେ।

ଗୋଦାବରୀ ଦେବୀଙ୍କ ଆତ୍ମଜୀବନୀଖଣ୍ଡ "ପୁଣ୍ୟ ସ୍ମୃତିରୁ ଖିଏ" ଦୈନିକ ଖବରକାଗଜ ପ୍ରଜାତନ୍ତ୍ରରେ ୧୩ ଡିସେମ୍ବର ୧୯୬୮ ମସିହାରୁ ୪ ଏପ୍ରିଲ ୧୯୬୯ ପର୍ଯ୍ୟନ୍ତ କ୍ରମିକ ହୋଇଥିଲା। ପରେ ଏହା ତାଙ୍କ ସ୍ମରଣିକା "ପୁଣ୍ୟବତୀ ଗୋଦାବରୀ"ରେ ଅନ୍ତର୍ଭୁକ୍ତ ହୋଇଥିଲା, ଯାହାକି ବିରଜ ମୋହନ ଦାସଙ୍କ ଦ୍ୱାରା ୧୯୯୭ ମସିହାରେ ସଂକଳିତ ହୋଇଥିଲା। ଯଦିଓ ଗୋଦାବରୀ ଦେବୀ ନିଜ ଅନୁଭୂତି ଲେଖିବା ବିଷୟରେ ଅନିଶ୍ଚିତ ଥିଲେ, ତଥାପି ଭାରତର ସ୍ୱାଧୀନତାର ଇତିହାସ ରଚନାରେ ଗ୍ରାମାଞ୍ଚଳଗୁଡ଼ିକ କିପରି ଗଭୀର ଭାବରେ ଜଡ଼ିତ ଥିଲେ, ସେ ତାହା ଲିପିବଦ୍ଧ କରିବାକୁ ଚାହୁଁଥିଲେ। ସେ ୧୯୩୧ ମସିହାରେ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ କଂଗ୍ରେସ ପ୍ରଶିକ୍ଷଣ ଶିବିରରେ ଭାଗ ନେବାକୁ ପୁରୀ ଯିବାକୁ ଜିଦ୍ ଧରିଥିବା ବେଳେ ତାଙ୍କ ଗ୍ରାମରେ ଯେଉଁ ଅପମାନଜନକ ଅନୁଭୂତିର ଶିକାର ହେଇଥିଲେ, ଏହି ଉଦ୍ଧୃତାଂଶ ତାହାର ଏକ ଲିଖିତ ଅଭିବ୍ୟକ୍ତି।

ମହାତ୍ମା ଗାନ୍ଧୀଙ୍କ ପ୍ରଭାବ କେତେ ବ୍ୟାପ୍ତ ଏବଂ ଏହା କିପରି ଓଡ଼ିଶାର ଦୂରଦୂରାନ୍ତରେ ଥିବା ଗ୍ରାମାଞ୍ଚଳରେ ପ୍ରବେଶ କରିଥିଲା ଏହି ଉଦ୍ଧୃତାଂଶ ତାହା ମଧ୍ୟ ଦର୍ଶାଇଥାଏ। ଏହି ଖଣ୍ଡରେ ଗୋଦାବରୀ ବର୍ଣ୍ଣନା କରିଥିବା ଘଟଣା ଦର୍ଶାଏ ଯେ ଗାନ୍ଧୀଜୀଙ୍କ ପ୍ରଭାବଶାଳୀ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମ ଆଣିଥିବା ସୂକ୍ଷ୍ମ ପରିବର୍ତ୍ତନ ଉପରେ ନାରୀମାନେ କିପରି ପ୍ରତିକ୍ରିୟା ପ୍ରକାଶ କରିଥିଲେ।

## ପୁଣ୍ୟ ସ୍ମୃତିରୁ ଖିଏ

(୧)

ପୁରୀର ତାଲିମ ଶିବିରକୁ ଆମ ଗାଁର କେତେଜଣ ମହିଳା ସ୍ୱେଚ୍ଛାସେବିକା ଯିବାକୁ ବାହାରିଲେ। ସେଥିରେ ମୋ ନାଁ ତ ପ୍ରଥମେ ଆସିବାକଥା। ମୁଁ ଓ ମୋର ଜଣେ ଦୂରସମ୍ପର୍କୀୟା ପିଉସୀ, ଚିତ୍ରକଳା ଦେଈ ଯିବାକୁ ମନେ ମନେ ପ୍ରସ୍ତୁତ ହେଲୁ। ସେହି ପିଉସୀଙ୍କ ବାପା ଜଣେ ନିର୍ଭୀକ ସ୍ୱାଧୀନ ଚେତା ଶିକ୍ଷିତ ବ୍ୟକ୍ତି ଥିଲେ। ସେ କନିକା ପ୍ରଜା ଆନ୍ଦୋଳନ ବେଳେ ଆନ୍ଦୋଳନରେ ଭାଗ ନେଇଥିବାରୁ ଚାକିରିରୁ ତଡ଼ାଖାଇ ଆସିଥିଲେ ଏବଂ ଗାଁରେ ହୋମିଓପ୍ୟାଥିକ୍ ଚିକିତ୍ସା କରୁଥିଲେ। ଗରିବଲୋକମାନଙ୍କୁ

ସେ ମାଗଣାରେ ଔଷଧ ବାଣ୍ଟୁଥିଲେ। ତାଙ୍କ ଘରକୁ ଇଂରାଜୀ ଖବରକାଗଜ 'ଅମୃତ ବଜାର ପତ୍ରିକା' ଓ ଆଉ ଗୋଟାଏ କ'ଣ ଆସୁଥାଏ। ତାଙ୍କର ଝିଅମାନେ 'ମଧୁସୂଦନ ଗ୍ରନ୍ଥାବଳୀ' ଓ 'ରାଧାନାଥ ଗ୍ରନ୍ଥାବଳୀ' ପଢୁଥିବାର ଦେଖି ପିଲାଦିନେ ତାଙ୍କ ପାଖରେ ବସି ମୁଁ ପଢୁଥାଏ। ତାଙ୍କ ନାଁ ଯୁଗଳ କିଶୋର ଦାସ। ଆମେ ତାଙ୍କୁ ଯୁଗଳ ସା'ନ୍ତେ ବୋଲି ଡାକୁ। ଆଗରୁ ଗାଁରେ ସାପ କାମୁଡ଼ିଲେ ଗୁଣିଆ ଆସି ମନ୍ତ୍ର ପଢ଼ି, ଝାଡ଼ି ଫୁଙ୍କି ଦେଉଥିଲା। କେତେଜଣ ଭଲ ହେଉଥିଲେ କହି ପାରିବି ନାହିଁ କିନ୍ତୁ ପ୍ରଥମେ ଆସି ସିଏ ଡାକ୍ତରୀ ଔଷଧ ଲକ୍ସିନ୍ ପ୍ରୟୋଗ କଲେ ସାପକାମୁଡ଼ା ପାଇଁ। ଆମ ପିଲାବେଳେ ମୋ ତଳଭାଇକୁ ଗୋଖର ସାପ କାମୁଡ଼ି ଦେଇଥିଲା। ସେ ଆମ୍ବତୋଟା ଭିତରେ ଦୌଡୁଥିବାବେଳେ ସାପ ଉପରେ ଚଢ଼ି ଯାଇଥିଲା। ଯୁଗଳ ସାନ୍ତେ ଗୁଣିଆମାନଙ୍କୁ ବାରଣ କରି ତାଙ୍କୁ ଛୁଆଁଇ ନ ଦେଇ ଲକ୍ସିନ୍‌ରେ ତାକୁ ଭଲକରି ଦେଇଥିଲେ।

ସେହିଦିନ ଠାରୁ ମୋ ବୋଉ ତାଙ୍କୁ ଭାରି ଭକ୍ତି କରୁଥିଲା ତା ଜୀବଦଶାରେ। ସାପ କାମୁଡ଼ାକୁ ଡାକ୍ତରୀ ଔଷଧଦ୍ୱାରା ଯେ ଭଲ କରାଯାଇପାରେ ଏ ଧାରଣା ଲୋକମାନଙ୍କ ମନରେ ସୃଷ୍ଟି ହୋଇଥିଲା। ଗାଁକୁ ପ୍ରଥମେ ପମ୍ପଦିଆ ଷ୍ଟୋଭ ମଧ୍ୟ ସେ ଆଣିଥିଲେ। କଳଚୁଲି ଦେଖିବାକୁ କେଡ଼େ ଆଗ୍ରହରେ ଆମେ ସବୁ ତାଙ୍କ ଘରକୁ ଯାଉଥିଲୁ। ଚାକିରି ଯିବା ପରେ ଅର୍ଥାଭାବରୁ ତାଙ୍କ ପରିବାର ବହୁତ ହଇରାଣ ହେଉଥିଲେ। ବନ୍ୟାରେ ତାଙ୍କ ଘର ମଧ୍ୟ ନିଶ୍ଚିହ୍ନ ହୋଇଯାଇଥିଲା। ବାଡ଼ିରେ କୁଡ଼ିଆ ପରି ଚାଳିଆ ଖଣ୍ଡେ କରି ପିଲାଛୁଆଙ୍କୁ ଧରି ରହୁଥାନ୍ତି। ଥରେ ଥରେ ଦୁଇ ତିନିଦିନ ଉପାସରେ ନିଜେ ଓ ତାଙ୍କ ପରିବାର ରହୁଥାନ୍ତି। ତଥାପି କାହାରି ପାଖରେ କ୍ଷମାଭିକ୍ଷା କରି କେଉଁଠି ଚାକିରି କରିବାକୁ ସେ ହାତ ପତାଇ ନଥିଲେ। ଅଭାବର ତାଡ଼ନାରେ ପରିବାରଟିକୁ ଅତ୍ୟନ୍ତ ନିଃସହାୟ ଭାବରେ ଛାଡ଼ି ଚିକିତ୍ସା ଓ ପଥ୍ୟ ଅଭାବରେ ମୋ ବୋଉ ମରିଥିବା ବର୍ଷ ସେ ମଧ୍ୟ ମରିଯାଇଥିଲେ। ତାଙ୍କର ତିନିଝିଅ ଓ ତିନିପୁଅ କମ୍ ହିନସ୍ତା ହେଉ ନଥିଲେ। ମୋର ସେ ପିଉସୀ ଜଣକ ତାଙ୍କର ଝିଅ। ସେ ଆମ କୁମାରୀ ସଂସଦର ସଭ୍ୟା ଥିଲେ ଓ ମୋତେ ଭାରି ସ୍ନେହ କରୁଥିଲେ। ଗାଁ ଲୋକମାନେ ତାଙ୍କୁ କୌଣସି ସାହାଯ୍ୟ କରିବା ତ ଦୂରର କଥା ଓଲଟି ଘୃଣା କରୁଥିଲେ। କିନ୍ତୁ ମୁଁ ତାଙ୍କ ଘରକୁ ଯାଇ ସେମାନଙ୍କ ସାଙ୍ଗରେ ମିଳାମିଶା କରୁଥାଏ। ପରେ ଝିଅମାନେ ବାହାହେବାରୁ ଜ୍ୱାଇଁଙ୍କ ସାହାଯ୍ୟରେ ସେମାନେ ଟିକିଏ ଭଲରେ ଚଳିଲେ। ସେଇ ପିଉସୀ ତାଲିମ ଶିବିରରେ ଯୋଗ ଦେବାକୁ ବାହାରିବାରୁ ତାଙ୍କ ମାଆ ଓ ମୁରବିମାନଙ୍କ ବଡ଼ ତାଗଦାରେ ସେ ଦବିଗଲେ। ମୁଁ ବାହାରିଲି।

ମୋ ବାପା ମୋର ଢଙ୍ଗଢ଼ାଙ୍ଗ ଦେଖି ବଡ଼ ଚିନ୍ତିତ ଥିଲେ। ମୋତେ ବହୁତ ବୁଝାଇଲେ। ତାଙ୍କ ବୁଝାଇବା କିନ୍ତୁ ମୋତେ ବିଶେଷ ଭାବରେ ପ୍ରଭାବିତ କରୁନଥିଲା।

ଅନେକ ମୋର ଏ ଲେଖାପଢ଼ି ମୋତେ କହୁଛନ୍ତି ଓ ଅନ୍ୟମାନେ ମଧ୍ୟ ଭାବୁଥିବେ ଯେ ମୁଁ ନିଜ ଆତ୍ମଜୀବନୀ ଲେଖିଛି ବୋଲି। କିନ୍ତୁ ମୁଁ ମୋ ଜୀବନର ସ୍ମୃତି ଓ ତହିଁରେ ଗାନ୍ଧିଜୀଙ୍କ ସଂସ୍ପର୍ଶର ପ୍ରଭାବ ଲେଖିବାକୁ ବସିଛି। ସେଥିପାଇଁ ସେତେବେଳର ଗାଁ ଗହଳିର ପାରିପାର୍ଶ୍ୱିକ ଅବସ୍ଥାର ଚିତ୍ର ଛାଏଁ ଛାଏଁ ଆସି ଯାଉଛି। ମୁଁ ତ ଆଗରୁ କହିଛି ଯେ ଜାତିର ପିତା ବା ଜଗତର ମହାମାନବଙ୍କର ବାଣୀର ତାତ୍ତ୍ୱିକ ଆଲୋଚନା କରିବା ମୋ ଦ୍ୱାରା ହେବନାହିଁ। ତାହା କରିବାକୁ ବହୁ ପ୍ରବୀଣ ଜ୍ଞାନୀ ବ୍ୟକ୍ତିବିଶେଷ ଅଛନ୍ତି। ତେଣୁ ତାଙ୍କ ଭଳି ପୁଣ୍ୟାତ୍ମାଙ୍କ ସଂସ୍ପର୍ଶରେ ଆସି, ପ୍ରଭାବ ଦ୍ୱାରା ଆକୃଷ୍ଟ ହୋଇ ମୋ ଭଳି ଜଣେ ଗାଁର ଝିଅ କିପରି ଉପକୃତ ହୋଇଛି ସେଇ ଅଙ୍ଗେ ଲିଭାଇବାର କଥା କହିବା ବେଳେ ନିଜ ଗାଁର ଛବି ଆସିବା ସ୍ୱାଭାବିକ। ଆକାଶରେ ପ୍ରଭାକର ସୂର୍ଯ୍ୟଙ୍କର ଉଦୟ ହେଲେ ପୃଥିବୀରୁ ଅନ୍ଧକାର ଦୂର ହୋଇଯାଏ। ସୂର୍ଯ୍ୟଙ୍କର ଉଜ୍ଜ୍ୱଳ ଦୀପ୍ତି ବାଲିକଣାରେ ମିଶିଥିବା ଅଭ୍ରକଣା ଓ କାଚଗୁଣ୍ଡ ଉପରେ ମଧ୍ୟ ପ୍ରତିଫଳିତ ହୁଏ। ସେହିପରି ବିଦେଶର ଜନସମାଜ ଓ ଅନେକ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ଉପରେ ଗାନ୍ଧିଜୀଙ୍କ ଜୀବନାଦର୍ଶର ପ୍ରଭାବ ତ ଅତିସ୍ୱଚ୍ଛ ଓ ଉଜ୍ଜ୍ୱଳ ଭାବରେ ପ୍ରତିଫଳିତ ହୋଇଛି। ବହୁ ବିଳାସୀ ତଥା ପ୍ରତିଭାବାନ୍ ବ୍ୟକ୍ତି ତ୍ୟାଗୀରେ ପରିଣତ ହୋଇ ଜୀବନର ଧାରା ବଦଳାଇ ଦେଇଛନ୍ତି। ମାତ୍ର ମୋ ପରି ଜଣେ ନଗଣ୍ୟ ପଲ୍ଲୀ ବାଳିକା ଜୀବନରେ ତାହାର ପ୍ରଭାବ କିପରି କାର୍ଯ୍ୟ କରିଛି ତାହାର ଆଭାସ ମୋର ଏ ଲେଖାର ବିଷୟବସ୍ତୁ।

ମୁଁ ନିଜେ ତ ପୁରୀ ଯିବା ପାଇଁ ମନେ ମନେ ପ୍ରସ୍ତୁତ ହେଲି କିନ୍ତୁ ବାପା ମୋତେ ନିବର୍ତ୍ତାଇବା ପାଇଁ ନାନା ଉପାୟ ପାଞ୍ଚିଲେ। ଗାଁର ଶ୍ରମ ସଂସ୍ଥାନ ଅନୁଷ୍ଠାନର ପ୍ରତିଷ୍ଠାତା ଲାଲ ବିହାରୀ ପଟ୍ଟନାୟକଙ୍କ ସତ୍ ପରାମର୍ଶ ଉପରେ ମୁଁ ସମ୍ପୂର୍ଣ୍ଣ ନିର୍ଭର କରୁଥାଏ। ରଘୁନାଥ ଦାସଙ୍କ ପ୍ରଦତ୍ତ ଶିକ୍ଷା ମୋର ବାଲ୍ୟଜୀବନ ଉପରେ ପ୍ରଭାବ ପକାଇଥିଲା। ବାପା ସେଇମାନଙ୍କୁ ଡାକି ମୋତେ ବୁଝାଇ ସୁଝାଇ ସେଥିରୁ ନିବର୍ତ୍ତାଇବାକୁ କହିଲେ। ଏପରିକି ମୋ ପାଇଁ ବିଭାଘର ଯୋଗାଡ଼ କରିବାକୁ ସେମାନଙ୍କୁ କହିଲେ। ଏହାଦ୍ୱାରା ମୁଁ ମୋ ମନଇଚ୍ଛା ଦେଶକାମ କରିପାରିବି ନାହିଁ ବୋଲି ସେ ଧାରଣା କଲେ। ବୋଉ ମଲାପରଠାରୁ ତ ମୁଁ ସଂସାର ବନ୍ଧନ ଅତି ଅସହ୍ୟ ମନେ କରୁଥିଲି। ମୁଁ ଆଦୌ ସଂସାରୀ ହେବି ନାହିଁ ବୋଲି ସ୍ଥିର କରିଥିଲି। ଆମ ଦେଶ ଓ ସମାଜରେ ଅବିବାହିତା ଝିଅ ପକ୍ଷରେ ଘରୁ ବାହାରି ବାହାରେ କାମ କରିବା କିପରି କଷ୍ଟକର ସେତେବେଳେ ମୁଁ ଜାଣି ନଥିଲି। ଦେଶକାମ କରିବାକୁ ନିଷ୍ପତ୍ତି ନେଇ ସାରିଥିବାବେଳେ ସେଥିରେ ବା ମୁଁ କେମିତି ରାଜି ହୋଇଥାନ୍ତି ? ସେହି ପ୍ରସ୍ତାବରେ ହିଁ ମୋତେ ବେଶି ବିଦ୍ରୋହୀ ହେବାକୁ ହେଲା।

ପୁରୀ ଯିବା ତାରିଖ ପାଖେଇ ଆସିଲା। ମୁଁ ଯିବି, ମନରେ ବିରାଟ କଳ୍ପନା।

ଏପଟେ ପରିବାରର ଆକଟ ବିରାଟ ପ୍ରତିବନ୍ଧକ। ଗୋଟିଏ କଥାରେ ମନରେ ମୋର ଗ୍ଲାନି ରହିଲା। ସେଇଥିପାଇଁ ମୁଁ ନିଜକୁ ଅପରାଧୀ ବୋଲି ଦାୟୀକରେ। ମୋ ବୁଢ଼ୀମା ସେତେବେଳକୁ ଅଥର୍ବ। ତାଙ୍କ ବୟସବେଳେ ସେ କରିଥିବା ଅୟସ କଥା ଅନ୍ୟ ଯାଆମାନେ ତାଙ୍କର କହନ୍ତି। ବୋଉ ମଲାପରେ ଆମ ଘରର ଅବସ୍ଥା, ବନ୍ୟା ଦାଉ ଯୋଗୁଁ ଆର୍ଥିକ ଦୁର୍ଦ୍ଦଶା ଓ ବାର୍ଦ୍ଧକ୍ୟରେ, ସେବା ଅଭାବରେ ସେ ବିଚାରୀ ବଡ଼ ବ୍ୟସ୍ତରେ ଆମକୁ ବଢ଼ାଇଥିଲେ। ତାର ଜୀବନାବସାନ କାଳ। ସେ ମୃତ୍ୟୁଶଯ୍ୟାରେ। ମୋ ବାପାଙ୍କ ନିଜ ଭାଇ (ବାପା ଆଉଜଣଙ୍କ ଘରକୁ ପୋଷ୍ୟପୁତ୍ର ହୋଇ ଆସିଥିଲେ) ଅଭାବ ଅସୁବିଧାରେ ଥିବାବେଳେ ଷଢ଼େଇକଳାରେ ପ୍ରାଥମିକ ସ୍କୁଲରେ ଶିକ୍ଷକତା କରୁଥିଲେ। ଖୁଡ଼ୀଙ୍କୁ ମଧ୍ୟ ନେଇ ଦୀର୍ଘ ଦିନଧରି ସେଆଡ଼େ ରହୁଥିଲେ। ସେ ଗାଁକୁ ଆସିଥିଲେ। ଆମ ଘରେ ରହି ବୁଢ଼ୀମା ଓ ପିଲାଙ୍କ ଯତ୍ନ ନେବାକୁ କହି ବାପା ସେମାନଙ୍କୁ ଅଟକାଇଲେ। ମାଆର ସେବା ମୃତ୍ୟୁଶଯ୍ୟାରେ ସେଇ ଖୁଡ଼ୀ କରୁଥିଲେ। ମୁଁ ବୁଢ଼ୀମାର କୌଣସି ସେବା ବିଶେଷଭାବରେ କରିପାରି ନାହିଁ। ମନରେ ଗ୍ଲାନି ରହି ଯାଇଛି ସେଇଥିପାଇଁ। ମାଆ ଚାଲିଗଲା ସବୁ କଷ୍ଟରୁ ପାରିହୋଇ। ତାଲିମ ପାଇଁ ପ୍ରାର୍ଥିନୀମାନେ ଯେଉଁ ତାରିଖରେ ଗାଁରୁ ପୁରୀ ଅଭିମୁଖେ ଯାତ୍ରା କରିବା କଥା ସେଦିନ ଥିଲା ମୋ ବୁଢ଼ୀମାର ଦଶଦିନ। କିନ୍ତୁ ମୋତେ ଯିବାକୁ ହିଁ ହେବ।

## (୨)

ମୁଁ ସେଦିନ ସକାଳେ ଗାଧୋଇ ଓଦାଲୁଗା ପିନ୍ଧି ତୁଳସୀ ଚଉରାକୁ ଜୁହାର ହେଲି। ତାପରେ ବାପାଙ୍କୁ ଜୁହାର ହୋଇ ଯେତେବେଳେ 'ପୁରୀ ଯାଉଛି' ବୋଲି କହିଲି ବାପା ହଠାତ୍ କିଛି ନ କହି, ମୋତେ ପାଖରେ ଥିବା ଛୋଟ ଘର ଭିତରକୁ ପେଲି ଦେଇ ବାହାରପଟୁ କବାଟ ଲଗାଇ ଦେଲେ। ସେତେବେଳକୁ ମୋ ବୁଢ଼ୀମାର ଦଶଦିନର ଅଣସୁଦିଆ ହାଣ୍ଡି କାଢ଼ି ଦେଇ ଖୁଡ଼ି କାନ୍ଦି କାନ୍ଦି ଯାଉଥିଲା। ମୁଁ ଓଦାଲୁଗା ପିନ୍ଧି ସେଇ ଘର ଭିତରେ ରହିଲି। ମାଆର ଏଗାରଦିନର ବ୍ରାହ୍ମଣଖିଆ ଗୋଳମାଳ ମୁଁ ସେହି ଘର ଭିତରୁ ଶୁଣିବାକୁ ପାଉଥାଏ। କିଏ ଜଣେ ମୁରବି ଶ୍ରେଣୀର ଲୋକ ବାପାଙ୍କୁ କହିବାର ଶୁଣିଛି, 'ଗୋଦାବରୀକୁ କାହିଁକି ବନ୍ଦ କରି ରଖିଛ, ଖୋଲିଦିଅ।' ବାପା ଜବାବ ଦେଲେ, 'ତାକୁ ଖୋଲିଦେଲେ ସେ ପୁଣି ପୁରୀ ଯିବାକୁ କହିବ, ମୁଁ ତାକୁ ଜମା ଛାଡ଼ିବି ନାହିଁ।'

ରାତି ପ୍ରାୟ ବାରଟାବେଳେ ସବୁକାମ ସାରି ଖୁଡ଼ୀ ଓ ଜାନୀଖୁଡ଼ୀ ମୋ ପାଖକୁ ଆସିଲେ। ଓଦାଲୁଗା ତ ସେତେବେଳକୁ ଶୁଖିଯାଇଥିଲା। ମନେ ଅଛି, ଜାନୀଖୁଡ଼ୀ ମୋ ବେକଧରି ପାଟିରେ ଗୋଟିଏ ରସଗୋଲା ଜୋର୍‌କରି ମାଡ଼ିଦେଲା। ଢୁକେ ଦି ଢୋକ

ପାଣି ବି ପିଆଇଦେଲା । ତାପରେ କବାଟ ବନ୍ଦ । ପୁଣି ରାତି ହେବା ମାତ୍ରକେ ଖୋଲି ଦିଅନ୍ତି କାରଣ ରାତିରେ ତ କୁଆଡ଼େ ଯାଇ ପାରିବି ନାହିଁ । ଦିନେ ସନ୍ଧ୍ୟାବେଳେ ମଧୁବୋଉ ବୋଲି ମୋତେ ସମର୍ଥନ କରୁଥିବା ଜଣେ ମହିଳା ମୋତେ କହିଲେ, 'ଏମିତି ନଖାଇ ନ ପିଇ ଘରେ ବନ୍ଦହୋଇ କେତେ ଦିନ ଥିବୁ ? ମୋ ସାଙ୍ଗରେ ଚାଲ ଲୁଚିକି ଯିବା, ତୋତେ ପୁରୀରେ ଛାଡ଼ି ଆସିବି ।' ସେତେବେଳେ ଆମ ଗାଁର ଲାଲ ବିହାରୀ ପଟ୍ଟନାୟକ (ନାଲାଦା)ଙ୍କ ସ୍ତ୍ରୀ ବିଷ୍ଣୁପ୍ରିୟା ଦେବୀ ସେବାଦଳ ତାଲିମ ଶିବିରରେ ଯୋଗଦେବାକୁ ପୁରୀ ଚାଲିଗଲେଣି । ମଧୁବୋଉର କଥା ଶୁଣି ମୁଁ କହିଲି, 'ନ ଯିବି ପଛକେ ନାହିଁ ଲୁଚିକି କେବେହେଲେ ଯିବି ନାହିଁ ।'

ଦୁଇଦିନ ଘରେ ମୋତେ ବନ୍ଦ କରିବା ପରେ ଘର ଭିତରେ ବନ୍ଦ କରି ରଖିଲେ ନାହିଁ । ମୁଁ ସ୍ୱାଭାବିକ ଭାବରେ ଖିଆ ପିଆ କରି ଚଳାଇଲି ଓ ବାପାଙ୍କ ପୂଜାପୂଜିରେ ଯୋଗାଡ଼ କରିଦେଲି । ପାନ ଭାଙ୍ଗିଦେଲି । ଖୁଡ଼ୀ ତ ଭାଇବୋହୂ ତେଣୁ ବାପାଙ୍କ ଆଗକୁ ଯାଏ ନାହିଁ । ବଡ଼ ଭଉଣୀର ବାହାଘର ଦୁଇବର୍ଷ ଆଗରୁ ସରିଯାଇଥାଏ । ଭାଇ ଦୁଇଟି ସାନ ପିଲା । ପୁଣି ଦିନେ ଦିନ ଦଶଟାବେଳ ସରିକି ହେବ ବାପା ବସିଥିଲେ ଦାଣ୍ଡରେ । ମୁଁ ତାଙ୍କୁ ନେଇ ପାନ ଦେଲି । ଦଣ୍ଡବତ ହୋଇ 'ଯାଉଛି' ବୋଲି କହି ଦାଣ୍ଡବାଟେ ବନ୍ଧ ଉପରକୁ ବାହାରିଗଲି । ନାଲାଦା ଓ ତାଙ୍କ ଶ୍ରମ ସଂସ୍ଥାନର କର୍ମୀ କେତେଜଣ ବନ୍ଧ ଉପରେ ଥିଲେ । ମୁଁ ଯାଇ ସେଠାରେ ପହଞ୍ଚିଗଲି । ପଛରୁ ବାପା ପାଟିକରି ଆସି ସେଠାରେ ପହଞ୍ଚିଲେ । ତାଙ୍କ ପଛରେ ଠେଙ୍ଗାଧରି ଦଶ ପନ୍ଦରଜଣ ଲୋକ । ମୋତେ ମାରିବାକୁ ଆସିଛନ୍ତି ଭାବି ନାଲାଦା ମୋ ହାତ ଧରି ନେଲେ । ବାପା ମୋତେ ଗୋଟିଏ ଚାପୁଡ଼ା ମାରି ନାଲାଦାଙ୍କ ଉପରେ ମାଡ଼ ବସାଇବାକୁ ଲାଗିଲେ । ଏଣେ ପୁଣି ମୋର ଗୋଟାଏ ହାତଧରି ଟାଣୁଥାନ୍ତି । ନାଲଦା ବାପାଙ୍କୁ ବୁଝାଉଥାନ୍ତି ତେବେ ମାଡ଼କୁ ପିଠି ପତାଇ ଦେଇଥାନ୍ତି । ଅନ୍ୟ କର୍ମୀମାନଙ୍କୁ ବି ବାପା ମାରି ଚାଲିଥାନ୍ତି । ବନ୍ଧ ଉପରେ ଗୋଟିଏ ଖଣ୍ଡଯୁଦ୍ଧ ଚାଲିଥାଏ । ଯୁଦ୍ଧଟା କିନ୍ତୁ ଏକତରଫା ଚାଲିଥାଏ । ଅନ୍ୟପକ୍ଷ ସମ୍ପୂର୍ଣ୍ଣ ଅହିଂସା ଆଚରଣରେ ବ୍ରତୀ । ମଝିରେ ଥାଏ ମୁଁ । ବାପା ସିନା କେଇଜଣ ପ୍ରଜାଙ୍କୁ ଧରି ଆକ୍ରମଣ କରିବାକୁ ବାହାରି ପଡ଼ିଥିଲେ କିନ୍ତୁ ସାମ୍ନାରେ ତାଙ୍କର ପଟ୍ଟନାୟକ ଘର ବିରାଟ ପରିବାରର ଭାଇମାନେ ଓ ତାଙ୍କର ଲୋକମାନେ । ଗାଁର ସବୁଲୋକ ଜମା ହୋଇଗଲେ । ନାଲାଦା ମାଡ଼ ଖାଉଥାନ୍ତି କିନ୍ତୁ ତାଙ୍କର ଅନ୍ୟ ଭାଇମାନଙ୍କୁ ଓ କର୍ମୀମାନଙ୍କୁ ଅନୁରୋଧ କରୁଥାନ୍ତି ମୋ ବାପା (ବାଞ୍ଛାନିଧି ବାବୁ)ଙ୍କ ଦେହରେ ହାତ ନ ଦେବାକୁ ।

ସେତେବେଳକୁ ଗାଁର ପିଲା ମାଇପେ ପର୍ଯ୍ୟନ୍ତ ବନ୍ଧ ତଳେ ଜମିଗଲେଣି । ମୋ ମନର ପରିସ୍ଥିତି କ'ଣ ମୁଁ ନିଜେ ବି ବୁଝି ପାରୁନଥାଏ । ସବୁ ସ୍ତ୍ରୀ ଲୋକମାନେ ମୋତେ

ଗାଳି ଦେଉଥାନ୍ତି । ହଠାତ୍ ସୁନ୍ଦରୀ ବୋଉ ମାଆ ଗଣ୍ଡଗୋଳ ଭିତରକୁ ପଶି ଆସିଲେ । ସେ ଆମ ଗାଁର ଜଣେ ଆଗୁଆ ମହିଳା । ତାଙ୍କୁ ସମସ୍ତେ ଖୁବ୍ ଖାତିର୍ କରୁଥିଲେ । ସେ ତୁଟୁକା ଔଷଧ ଦେଇ ପିଲାଙ୍କ ରୋଗର ଚିକିତ୍ସା କରିଦିଅନ୍ତି । ଆଖି ରୋଗୀମାନେ ମଧ୍ୟ ତାଙ୍କଠାରୁ ଔଷଧ ନିଅନ୍ତି । ସେ ରିଟାୟାର୍ଡ଼ ଇଞ୍ଜିନିୟର ଇନ୍‌ଚିଫ୍ ବୀରେନ୍ଦ୍ର ପଟ୍ଟନାୟକଙ୍କର ସାଆନ୍ତ ମାଆ । ସୁନ୍ଦରୀ ବୋଉ ମାଆ ଭିତରକୁ ପଶି ଆସି ବାପାଙ୍କ ହାତରୁ ଓ ନାଲାଦାଙ୍କ ହାତରୁ ମୋ ହାତ ଛଡ଼ାଇ ନେଲେ । ମୋତେ ଟାଣି ଟାଣି ଘରକୁ ନେଇଗଲେ । ବାପା କହିଲେ, 'ଖୁଡ଼ୀ, ଗୋଦୀ (ମୋ ଡାକ ନାମ) ତୋ ଜିମା ରହିଲା । ଛାଡ଼ିଲେ, ତୋଠୁଁ ନେବି' । ସେଦିନ ରାତି ପର୍ଯ୍ୟନ୍ତ ସୁନ୍ଦରୀ ବୋଉ ମାଆଙ୍କ ଘରେ ଥିଲି । ଏତେ ଲୋକଙ୍କ ମାଡ଼ର କାରଣ ମୁଁ ଇ ହେଲି ଏକଥା ଭାବି ନିଜକୁ ଧିକ୍କାର କଲି । ନାଲାଦା ନିଜେ ମାଡ଼ଖାଇ ମଧ୍ୟ ବାପାଙ୍କ ହାତ ଦରଜ ହୋଇଥିବ ବୋଲି ହାତରେ ଲଗାଇବା ପାଇଁ ଔଷଧ ପଠାଇ ଦେଇଥିଲେ । ମୋ ପାଇଁ ମଧ୍ୟ ଔଷଧ ପଠାଇ ଦେଇଥିଲେ । ରାତିରେ ଖୁଡ଼ୀ ଆସି ମୋତେ ପୁଣି ଘରକୁ ନେଇଗଲା ।

ଗାଁ ଯାକର ଘୃଣା ଓ ଭର୍ତ୍ସନା ମୋ ଉପରେ କୁହୁଡ଼ି ପରି ମାଡ଼ିଗଲା । ଗାଁର ଏହା ସବୁଠାରୁ ବଡ଼ ଅଶୋଭନୀୟ ଘଟଣା । ସମସ୍ତଙ୍କର ଭର୍ତ୍ସନା, ଛିଛାକର କଥା ଏବଂ ଘୃଣା ମୋ ଉପରେ ଲଦି ଦିଆଗଲା । ହେବାର ବି କଥା । ଯେଉଁ ସମୟରେ ଝିଅମାନେ ଦାଣ୍ଡକୁ ବାହାରୁ ନଥିଲେ ସେତେବେଳେ ଗୋଟାଏ ଅତି ଅବାଗିଆ ଜିଦ୍‌ଖୋର ଝିଅ ଯୋଗୁଁ ଗାଁର ପ୍ରଧାନ ରାସ୍ତା ଉପରେ ତୁମୂଳ କାଣ୍ଡ ଘଟିଗଲା । ବାପା ତାଙ୍କର ଛୋଟ ଜମିଦାରୀପଣିଆର ଶେଷ ଦର୍ପ ଟିକକ ପ୍ରୟୋଗ କରି ଗାଁ ଦାଣ୍ଡ ମଝିରେ ଗୋଟିଏ ଯୁଦ୍ଧ କ୍ଷେତ୍ର ସୃଷ୍ଟି କରିଥିଲେ । ଆମ ଗାଁର କରଣ ଓ ଖଣ୍ଡାୟତମାନେ ପ୍ରତ୍ୟେକ ନିଜକୁ ଅଳ୍ପ ବହୁତ ଜମିଦାର ବୋଲି ଜାଣନ୍ତି । ଯଦିଓ ସେତେବେଳକୁ କାହାରି କାହାରି ଜମିଦାରୀର ଅଂଶ କଡ଼ାକ୍ରାନ୍ତିରେ ପହଞ୍ଚି ସାରିଥିଲା । ତିନିଓଳିରେ ଥରେ ପେଟ ପୂରୁନଥିଲେ ସୁଦ୍ଧା ଢମ ଛାଡୁନଥିଲା । ଯାହାହେଉ ପରେ ବାପାଙ୍କ ମନରେ ବଡ଼ ଯାତନା ଓ ଅବସୋସ ଆସିଲା । ମୁଁ ତ ପୂରା ଚୁପ୍‌ଚାପ୍ ଗୋଟିଏ ଘରେ ବସି ରହିଲି । ସମସ୍ତଙ୍କର ଘୃଣା ଓ ସମାଲୋଚନାର ପାତ୍ର ହୋଇ ସୁଦ୍ଧା ମୋର ଅନ୍ତିମ ଲକ୍ଷ୍ୟ ମୁଁ ଛାଡ଼ିନଥାଏ । ଏଣେ କିପରି ପୁରୀ ଯିବି ତାହା ସ୍ଥିର କରିପାରୁ ନଥାଏ । ମୋଟ୍ ଉପରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲି । କିନ୍ତୁ ମୋତେ ଯିବାକୁ ହିଁ ହେବ । ଏଣେ ପରିବାର ତଥା ଗାଁର ପ୍ରାୟ ସମସ୍ତେ ମୋ ବିରୁଦ୍ଧରେ ।

ଅନେକ ଲୋକ ଆସି ବାପାଙ୍କୁ ବୁଝାଉଥାନ୍ତି । କେହି କେହି କହୁଥାନ୍ତି, 'ଏପରି ଅବାଧ୍ୟ ଝିଅକୁ କାହିଁକି ଅଟକାଇ ରଖିବାକୁ ଚେଷ୍ଟା କରୁଛ ? ଛାଡ଼ିଦିଅ ଛତରୀ ଯୁଆଡ଼େ

ଯାଉଛି ଯାଉ।' ବାପା କହୁଥାନ୍ତି, 'ତାର ମାଆ ନାହିଁ, ମୁଁ ବଢ଼ିଲା ଝିଅକୁ କୌଣସି ମତେ ପଦାକୁ ଛାଡ଼ିଦେବି ନାହିଁ। ମୁଁ ସମସ୍ତଙ୍କର ସବୁକଥା ଶୁଣି ସ୍ଥାଣୁ ପରି ଅବିଚଳିତ ଥାଏ। ବାପା କହିଲେ, 'ମୁଁ ଗାଁରେ ଥିବା ପର୍ଯ୍ୟନ୍ତ ସେ ଏମିତି ଲୀଳା ଲଗାଇବ।' ତାପରେ ସେ କଟକ ଚାଲିଗଲେ। ସେ ଭଲ ଭାବରେ ଜାଣିଥିଲେ ଯେ ତାଙ୍କର ଅନୁପସ୍ଥିତି ଓ ଅଜାଣତରେ ମୁଁ କୁଆଡ଼େ ଯିବିନାହିଁ।

## (୩)

ବାପା ତ କଟକ ପଳାଇଲେ ରାଗରେ। ତା ଭିତରେ ପୁରୀର ନାରୀ ସ୍ୱେଚ୍ଛାସେବିକାମାନଙ୍କର ପ୍ରଥମ ଶିବିର ଆରମ୍ଭ ହୋଇ ଶେଷ ହେବାକୁ ବସିଲାଣି। ମୁଁ ସେ ପର୍ଯ୍ୟନ୍ତ ପୁରୀ ଯାଇପାରିଲି ନାହିଁ। ପୁଣି ପୂର୍ବୋକ୍ତ ଘଟଣା ପରେ ଗାଁର ଶ୍ରମ ସଂସ୍ଥାନ ଅନୁଷ୍ଠାନ ମଧ୍ୟ ଯିବା ମୋର ବନ୍ଦ ହୋଇଯାଇଥାଏ। ସମସ୍ତଙ୍କର ତୀବ୍ର ଘୃଣା ଦୃଷ୍ଟି ମୋ ଉପରେ। ମୋତେ ବି ଅନ୍ୟଲୋକଙ୍କ ଆଗକୁ ବାହାରିବାକୁ ଭଲ ଲାଗୁନଥାଏ। ଖୁଡ଼ୀ ଅନବରତ ଭର୍ତ୍ସନା କରୁଥାଏ। ଏପରି ସମୟରେ ମୋତେ ଜଣେ ବୁଦ୍ଧି ଦେଇ କହିଲେ, 'ତୁ ତ ବଡ଼ଝିଅ ହୋଇଗଲୁଣି, ତୋତେ ପନ୍ଦର ବର୍ଷ ପୂରି ଷୋହଳ ବର୍ଷ ଚାଲିଲାଣି। ତୁ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ପୋଲିସ୍ ଥାନାକୁ ଗୋଟିଏ ଗୋଟିଏ ନୋଟିସ୍ ଲେଖି ଦେ ଯେ, "ମୁଁ ବଡ଼ଝିଅ ମୋର ସ୍ୱାଧୀନ ମତ ଉପରେ ବାଧା ଦେବାରେ ବାପାଙ୍କର ହକ୍‌ନାହିଁ ଓ ବାପା ମୋତେ ଘରେ ଅଟକାଇ ରଖିଛନ୍ତି। ପୋଲିସ୍ ସାହାଯ୍ୟ ମୋତେ ଘରୁ ଯିବାକୁ ଦିଆଯାଉ।" କଥାଟା ମୋର ମୋଟେ ପସନ୍ଦ ହେଲାନାହିଁ। ସେପରି ଭାବରେ ଯିବାକୁ ମୁଁ ଆଦୌ ଉଚିତ ମନେକଲି ନାହିଁ। ପୁରୀର ପ୍ରଥମ ଶିବିର ବୋଧହୁଏ ସରିଯାଇ ଦ୍ୱିତୀୟ ଶିବିର ଆରମ୍ଭ ହେବାର ସମୟ ନିକଟେଇ ଆସିଥାଏ। ମୁଁ ପୁଣି ବାପାଙ୍କ ପାଖକୁ ଗୋଟାଏ ଚିଠି ଲେଖିଲି। ତାର ସାରମର୍ମ ଥିଲା ଯେ ମୋତେ ପୁରୀକୁ ଯିବା ପାଇଁ ଅନୁମତି ନ ଦେବା ପର୍ଯ୍ୟନ୍ତ ମୁଁ ଉପାସ ରହିବି। ବାପା ବା କାହିଁକି ସେ ଧମକକୁ ଖାତିର କରନ୍ତେ। ନିରୁତ୍ତର ରହିଲେ। ମୁଁ ଏଥର ଉପାସ ରହିଲି। ଖୁଡ଼ୀ ମଧ୍ୟ ବାପାଙ୍କ ପାଖକୁ ଚିଠି ଲେଖାଇଲା। ଦୁଇ ତିନିଦିନ ଉପାସ ରହିବା ପରେ ଖବରକାଗଜରେ କୁଆଡ଼େ ମୋ ବିଷୟରେ ବାହାରିଲା। ସେଥିରେ ବାହାରିଥିଲା ଯେ, ମୁଁ ସେବାଦଳ ତାଲିମ ଶିବିରକୁ ବାହାରିଛି। ମୋ ବାପା ମୋତେ ଘରେ ବନ୍ଦକରି ଚାବି ଦେଇ ରଖିଛନ୍ତି। ମୁଁ ଅନଶନ ସତ୍ୟାଗ୍ରହ କରି ଘର ଭିତରେ ବନ୍ଦୀ ଅବସ୍ଥାରେ ଅଛି ବୋଲି।

ବିଂଝାରପୁରର ଜଣେ ସଂସ୍କାର ପନ୍ଥୀ ହରିଜନ (ଚମାର ଜାତି, ଯାହାଙ୍କର କୌଳିକ ବୃତ୍ତି ହେଉଛି ଖଜୁରୀ ତାଡ଼ି ବା ମଦ ବିକ୍ରି କରିବା), ସେ 'ଆର୍ଯ୍ୟସମାଜ'ର

କର୍ମୀଥାନ୍ତି। ଦୟାନନ୍ଦ ସରସ୍ୱତୀଙ୍କର 'ସତ୍ୟାର୍ଥ ପ୍ରକାଶ' ଓଡ଼ିଆ ମୋଟା ବହିଖଣ୍ଡିଏ ସେ ମୋ ପାଖକୁ ପଠାଇ ଦେଇଥାନ୍ତି। ସେ ଥିଲେ ଗଞ୍ଜାମର ଶ୍ରୀବସ୍ତ ପଣ୍ଡାଙ୍କର ସମାଜ ସଂସ୍କାର ପନ୍ଥାର କର୍ମୀ। ଓଡ଼ିଆରେ 'ଆର୍ଯ୍ୟ' ପତ୍ରିକାର ସମ୍ପାଦନା ସେ କରୁଥାନ୍ତି। ତାଙ୍କ ନାମ ବୀରକିଶୋର ବେହେରା। 'ସାବାସ୍ ଗୋଦାବରୀ' ବୋଲି ତାଙ୍କ ପତ୍ରିକାରେ ଗୋଟିଏ ପ୍ରବନ୍ଧ ଲେଖି ପ୍ରକାଶ କରି ଦେଲେ। ଏକଥା ମୁଁ ପରେ ଜାଣିଲି। ଯେତେବେଳେ ଘରୁ ଯିବାପରେ ପରମ ପୂଜ୍ୟ 'ବାପା' ଗୋପବନ୍ଧୁ ଚୌଧୁରୀ ମୋତେ 'ଆର୍ଯ୍ୟ' ପତ୍ରିକା ଦେଖାଇ ଥଟ୍ଟାକରି ଚିଡ଼ାନ୍ତି, ସେତେବେଳେ ମୋତେ ବଡ଼ ଲାଜ ତାହାକୁ ପଡ଼ି।

ମୁଁ ଉପାସ ରହିବାର ତିନି ଚାରିଦିନ ହୋଇଗଲା। କୌଣସି ନୀତି ନିୟମ ଉଦ୍ଦେଶ୍ୟରେ ଯେ ମୁଁ ଉପାସ କରିଥାଏ ତାହା ନୁହେଁ। କେବଳ ବାପାଙ୍କ ମନ ବଦଳାଇବାକୁ ହେବ ମୋତେ କୌଣସି ପ୍ରକାର, ସେଇଥିପାଇଁ ଥିଲା ମୋର ଏ ଉଦ୍ୟମ। ମୋ ପିଉସୀ, ଯିଏ ବୋଉ  ମଲାପରେ ମୋର ଓ ଆମ ଭାଇ ଭଉଣୀମାନଙ୍କର ବେଶି ତତ୍ତ୍ୱ ନେଉଥିଲେ ସେଇ ନୟନୀଦେଈ ଆସି ମୋତେ ଜବରଦସ୍ତ ଉପାସ ଭାଙ୍ଗିବାପାଇଁ ବହୁ ଚେଷ୍ଟା କରୁଥିଲେ। ଢୋକେ, ଦି ଢୋକ ମୋ ତଣ୍ଟି ଭିତରକୁ ବି ଚାଲିଯାଇଛି ଥରେ ଖଣ୍ଡେ। ସେଇଥିପାଇଁ ଉପାସଟାକୁ ସମ୍ପୂର୍ଣ୍ଣ ଅନଶନ ବୋଲି ନିଷ୍ଠାର ସହିତ ମୁଁ ବିଚାରି ପାରୁନାହିଁ। ମୋ ଉପାସର ପାଞ୍ଚଦିନ କଟକରୁ ବାପା, ମୋ ଦାଦା ଗୌରାଙ୍ଗ ଚରଣ ଦାସଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ। ଦାଦା ସେତେବେଳେ ସେଇ ଗାଁ ପାଇଁ ତାଙ୍କ ଜୀବନର ଗୋଟାଏ ବଡ଼ ତ୍ୟାଗ କରିଛନ୍ତି ବୋଲି କହିବାକୁ ହେବ। ସେ ପିଲାଦିନେ ଖୁବ୍ ଭଲ ପଢୁଥିଲେ ଓ ଭାରି ବୁଦ୍ଧିମାନ୍ ଛାତ୍ର ଥିଲେ ବୋଲି ଶୁଣୁ। ଚିତ୍ର କରିବାରେ ମଧ୍ୟ ସେ ଖୁବ୍ ଦକ୍ଷ ଥିଲେ। ସେଥିଲାଗି ସେ ଲାଭ କରିଥିବା ରୂପା ପଦକକୁ ସେ ନଥିବାବେଳେ ତାଙ୍କ ବାକ୍ସରୁ କାଢ଼ି ଦେଖୁ। ତାଙ୍କ ବାପା କଟକରେ ରହୁଥିଲେ। ପୁଅ କୃତିତ୍ୱର ସହିତ ପାଶ୍ କରିଥିଲା ବୋଲି ସେ ତାଙ୍କୁ ନେଇ କଟକରେ ଏଣ୍ଟ୍ରାନ୍ସ ପଢ଼ାଇବା କଥା। କିନ୍ତୁ ଗାଁର ଉନ୍ନତି ପାଇଁ ଗୋଟିଏ ନିମ୍ନ ପ୍ରାଇମେରୀ ସ୍କୁଲଟିଏ ଆରମ୍ଭ କରିବା ଲାଗି ତାଙ୍କୁ ଓ ନାରାୟଣ ଚନ୍ଦ୍ର ଦାସଙ୍କୁ ଗାଁର ଯୁବକଦଳ ଭାର ଦେଇଥିବାରୁ ସେ ସେହି କାମରେ ଲାଗିଲେ। କିଛିଦିନ ସ୍ୱେଚ୍ଛାସେବକ ଭାବରେ କାମ କରିବା ପରେ କଟକ ପଢ଼ିବାକୁ ଯାଇଥାନ୍ତେ ମାତ୍ର ତାଙ୍କର ପିତୃ ବିୟୋଗ ଘଟିବାରୁ ତାଙ୍କ ଉଚ୍ଚଶିକ୍ଷାରେ ଡୋରି ବନ୍ଧାଗଲା। ଶିକ୍ଷକ ଭାବରେ ତାଙ୍କର ଜୀବନ କଟିଥିଲା। କବୀରପୁର ଗୁରୁ ତାଲିମ ବିଦ୍ୟାଳୟରୁ ଶିକ୍ଷାଗ୍ରହଣରେ ତାଙ୍କ ପାଠପଢ଼ା ସୀମିତ ହେଲା। ପରେ ଚାକିରିରୁ ଅବସର ଗ୍ରହଣ କଲାପରେ ସେ ଅଭାବ ଅସୁବିଧାରେ କାଳ କାଟୁଥିଲେ। ମୁଁ ପଢ଼ିବାବେଳେ ସେ ଆମ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ। ମୋର ବାଲ୍ୟଗୁରୁ ଅଗଣି ଚରଣ ଦାସ ମଧ୍ୟ

ସ୍କୁଲରେ ଥିଲେ। ବୋଉ ଥିବାବେଳେ ମୋ ଭାଇ ଓ ଆମ ସାହିର ଦାମ ବଡ଼ବାପାଙ୍କ ପୁଅମାନଙ୍କର ସେ ଗୃହ ଶିକ୍ଷକ ମଧ୍ୟ ଥିଲେ। ପୁରାଣରୁ ଭଲ ଭଲ ଗପ ସବୁ କହି ସେ ଆମକୁ ସାହିତ୍ୟ ପଢ଼ାଉଥିଲେ। ମୁଁ ଟିକିଏ ଲେଖିପଢ଼ି ଶିଖିଥିଲି।

ବାପାଙ୍କ ଚିଠିଆସି ସେଇ ଗୌରାଙ୍ଗ ଦାଦାଙ୍କ ପାଖରେ ପହଞ୍ଚିଲା। ଲେଖାଥିଲା, "କଲ୍ୟାଣୀୟ ଗୌରାଙ୍ଗ, ଗୋଦାବରୀକୁ ବିଦା କରିଦିଅ। ଆଜିଠୁଁ ମୁଁ ଆଉ ତା ମୁହଁ ଚାହିଁବି ନାହିଁ। ଖବରକାଗଜରେ ତା ନାଁରେ ଯାହା ଲେଖା ବାହାରିଲା ! ବାଖରାବାଦ ଛକରେ ଶ୍ରୀମତୀ ସରଳାଦେବୀ ଛିଡ଼ା ହୋଇ ମୋତେ ଡାକିଲେ। ମୁଁ ତାଙ୍କ ପାଖକୁ ଗଲାରୁ ମୋତେ ଅପମାନ କରି ବହୁତ କଥା କହିଲେ। ମୁଁ କହିଲି, 'ଆପଣ ଯାହା କହନ୍ତୁ ପଛେ, ବଡ଼ ଝିଅ, ତାର ମାଆ ନାହିଁ। କାହା ଦାୟିତ୍ୱରେ ଛାଡ଼ିବି ?' ସେ ତାଙ୍କ ଦାୟିତ୍ୱରେ ଛାଡ଼ିବାକୁ କହିଲେ। ମୁଁ ରାଜି ନହେବାରୁ ସେ ପଚାରିଲେ, 'ରମାଦେବୀଙ୍କ ଦାୟିତ୍ୱରେ ଛାଡ଼ିବ ?' ମୁଁ କହିଲି, 'ସେ ଯଦି ଜବାବ ଦେବେ ଓ ଲେଖିଦେବେ ତାହେଲେ ତାଙ୍କରି ଦାୟିତ୍ୱରେ ଛାଡ଼ିପାରେ।' ସେ ମୋତେ ରମାଦେବୀଙ୍କ ପାଖକୁ ବାଧ୍ୟକରି ନେଲେ। ରମାଦେବୀ ତାର ସବୁ ଦାୟିତ୍ୱ ନେବେ ବୋଲି ମୋତେ ପ୍ରତିଶ୍ରୁତି ଦେବାରୁ ମୁଁ ତାଙ୍କୁ 'ସେ ଚାଲିଯାଉ ବୋଲି' କହି ଦେଲି। ରମାଦେବୀ ଯଦି କୌଣସି ସ୍ତ୍ରୀଲୋକଙ୍କୁ ପଠାନ୍ତି ତାଙ୍କ ହାତରେ ତାକୁ ବିଦା କରିଦବ। ସେ ଯେପରି ପୁନର୍ବାର ଆମ ଘରକୁ ନ ଫେରେ। ତାକୁ କହିବ, 'ମୁକୁନ୍ଦ ଦାସ ବଂଶର ସେ କଳଙ୍କ ଆଉ ଯେପରି ନ ଫେରେ। ମୁଁ ତା ମୁହଁ ଚାହିଁବି ନାହିଁ।' ତାଙ୍କ ଚିଠିରୁ ଅତ୍ୟନ୍ତ ମର୍ମବେଦନା ସୂଚିତ ହେଉଥିଲା। କିନ୍ତୁ ମୋରି ପାଇଁ ମାଆ ରମାଦେବୀ ଜଣେ ନାରୀକର୍ମୀ ପଠାଇବେ, ମୁଁ ଯିବି – ଏକଥା ମୁଁ କଳ୍ପନା କରିପାରୁ ନଥାଏ।

(୪)

ତା ପରଦିନ ସକାଳୁ ମୋର ଉପାସର ଛ ଦିନ। ସେଦିନ ମୋତେ କିଏ ଜଣେ ଆସି କହିଲା– 'ତୋତେ ନାଲୁଭାଇ ଓ ପାଣୁଆ ଭାଇ ଡାକୁଛନ୍ତି। ତୋତେ ନବାକୁ କିଏ ଜଣେ ସ୍ତ୍ରୀଲୋକ ଆସିଛନ୍ତି।' ମୁଁ ବିଶ୍ୱାସ କରିପାରିଲି ନାହିଁ। ତାଙ୍କ ଘରକୁ ଯାଇ ଦେଖିଲି ପ୍ରକୃତରେ ଜଣେ ଅପରିଚିତା ସମ୍ଭ୍ରାନ୍ତ ମହିଳା ଆସିଛନ୍ତି। ସେ ବଙ୍ଗଳାରେ କଥା କହୁଥାଆନ୍ତି। ତାଙ୍କୁ ପ୍ରଣାମ କରିବାକୁ ନାଲାଦା କହିଲେ। ତାଙ୍କରି ସାଙ୍ଗରେ ମୋର ପୁରୀ ଯିବାକଥା ଶୁଣି ମୋ ମନ ଖୁସି ହୋଇଗଲା। ସେ ଭଦ୍ରମହିଳା ହେଉଛନ୍ତି ବୀଣାପାଣି ଦେବୀ। ବନବିହାରୀ ପାଲିତ, ଓକିଲଙ୍କ ବିଧବା କନ୍ୟା। ବନବିହାରୀ ବାବୁ ଜମିଦାର ତଥା କଟକର ଜଣେ ବିଶିଷ୍ଟ ନାଗରିକ ଥିଲେ। ମୁଁ ତ ପୁରୀ ଯିବାକୁ ବାହାରିଲି ସାଙ୍ଗରେ

ପୁଣି ନିଜର ଚଳିବା ପାଇଁ ଲୁଗାପଟା ବିଛଣା ପତ୍ର ତ ନବାକୁ ହବ। ଖୁଡ଼ୀ କିଛି ଦେଲା ନାହିଁ। ଦୁଇ ଚାରିଖଣ୍ଡ ଖଦଡ଼ ଲୁଗା ମୁଁ ଆଗରୁ ଶ୍ରୀମତୀ ଘରେ ରଖି ଦେଇଥିଲି। ସେତିକି ଧରି ବାହାରିଲି। ମୋ ଭାଇ ଘରୁ ଖୁଡ଼ୀକୁ ଲୁଚାଇ ମୋର ଆଉ ଦୁଇଖଣ୍ଡ ଲୁଗା ଗୋଟିଏ ବଡ଼ ତଉଲିଆରେ ବାନ୍ଧି ଆଣି ଦେଲା। ସେତକ ଧରି ମୋର ଯାତ୍ରା ଆରମ୍ଭ ହେଲା। ଆମ ଗାଁରୁ ଯାଜପୁରକୁ ବଳଦଗାଡ଼ି ଛଡ଼ା ଆଉ କୌଣସି ଯାନର ବନ୍ଦୋବସ୍ତ ସେତେବେଳେ ନଥିଲା। ବର୍ଷାଦିନେ ମାଟି ସଡ଼କରେ କାଦୁଅ ଏପରି ହୁଏ ଯେ ଗାଡ଼ିଚକ ଫୁଟେ ଗଭୀରରେ ମାଟି ଭିତରେ ଦବିଯାଏ। ବଳଦ ବିଚରାଙ୍କୁ ବହୁ କଷ୍ଟରେ ନାକେଦମ ହୋଇ ଗାଡ଼ି ଆରୋହୀ ଓ ସେମାନଙ୍କ ଜିନିଷପତ୍ରକୁ ବୋହିବାକୁ ପଡ଼େ। ଅଳ୍ପଲୋକ ବି ବଳଦଗାଡ଼ି ବ୍ୟବହାର କରନ୍ତି। ବହୁଲୋକ ପାଦରେ ଚାଲି ଚାଲି ଯାଜପୁର ଯାଆନ୍ତି। ବିଞ୍ଝାରପୁର ଅଞ୍ଚଳରୁ ବାହାରକୁ ଯିବାକୁ ହେଲେ ବିନା ନଈ ପାରିରେ କେବଳ ଯାଜପୁର ବାଟ ଛଡ଼ା ଅନ୍ୟ ବାଟ ନାହିଁ। ମୁଁ ତ ସମସ୍ତଙ୍କଠୁଁ ବିଦାୟ ନେଇ ବାହାରି ପଡ଼ିଲି। ମୋର ପିଉସୀମାନେ ଆଖି ଛଳଛଳ କରି ଠିଆ ହେଲେ। ଗାଁର କେତେକେ ଭାବିଥିବେ ଗାଁର କଳଙ୍କ ଗଲା। ଭାଇ ଦୁଇଜଣ ନିରିମାଖୀ ପରି ଖାଲି ଠିଆ ହୋଇଥାନ୍ତି। ପ୍ରକୃତରେ ସେମାନଙ୍କର ମୋ ବ୍ୟତୀତ ଆଉ କାହା ଉପରେ ବା ଜୋର୍ ଥିଲା। ଯେଉଁ ମମତା ମୋତେ ମୋଟେ ସ୍ପର୍ଶ କରୁନଥିଲା ହଠାତ୍ ତାହା ପୁଣି ପଛକୁ ଟାଣିବାକୁ ବସିଲା। ଗାଡ଼ିରେ ବସିବା ପରେ ସେହି ଦୁହିଁଙ୍କ ଶୁଖିଲା ମୁହଁ ଖାଲି ମତେ ଦିଶିଲା। ଅବଶ୍ୟ ତାହା ମୋତେ ଫେରାଇ ପାରିଲା ନାହିଁ। ତଥାପି ଚିରଦିନ ମନଭିତରେ ଗୋଟିଏ ଦୁର୍ବଳତା ମୁଁ ତାଙ୍କ ପାଇଁ ଅନୁଭବ କରି ଆସିଛି। ବଞ୍ଚିବା ପର୍ଯ୍ୟନ୍ତ ତାହା ରହିଥିବ ବୋଲି ହୃଦ୍‌ବୋଧ ହେଉଛି।

*("ପୁଣ୍ୟସ୍ମୃତିରୁ ଖିଏ", ପୁଣ୍ୟବତୀ ଗୋଦାବରୀ, ପୃଷ୍ଠା ୩୮-୪୮)*

* * *

# ଅନ୍ନପୂର୍ଣ୍ଣା ମହାରଣା

**(୧୯୧୭-୨୦୧୨)**

ଅନ୍ନପୂର୍ଣ୍ଣା ମହାରଣା ୩ ନଭେମ୍ବର ୧ ୯ ୧ ୭ ମସିହାରେ ଓଡ଼ିଶାର କଟକଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଗୋପବନ୍ଧୁ ଚୌଧୁରୀ ଏବଂ ମାତା ରମାଦେବୀ ଚୌଧୁରୀ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାବେ ପରିଚିତ । ଅନ୍ନପୂର୍ଣ୍ଣା ୧ ୯ ୪ ୨ ମସିହାରେ ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ଶରତ ଚନ୍ଦ୍ର ମହାରଣାଙ୍କୁ ବିବାହ କରିଥିଲେ ଏବଂ ଦୁଇଟି ପୁତ୍ର ସନ୍ତାନଙ୍କୁ ଜନ୍ମ ଦେଇଥିଲେ । ମତ୍ସ୍ୟ ଜଳରେ ଖେଳିଲା ଭଳି ଅନ୍ନପୂର୍ଣ୍ଣା ପିଲାଦିନୁଁ ସାଧାରଣ ଜୀବନକୁ ସ୍ୱତଃପ୍ରବୃତ୍ତ ଆପଣେଇ ନେଇଥିଲେ ଏବଂ ଅଳ୍ପ ବୟସରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମର କିଶୋର ଦଳ ବାନର ସେନାର ସଦସ୍ୟ ହୋଇଥିଲେ । ଆଇନ୍ ଅମାନ୍ୟ ଆନ୍ଦୋଳନରେ ଭାଗ ନେଇଥିବାରୁ ସେ ଅନେକ ଥର କାରାଗାରକୁ ଯାଇଥିଲେ । ସେ ଜୀବନସାରା ଗରିବ ଏବଂ ବଞ୍ଚିତ ଲୋକମାନଙ୍କ ଉନ୍ନତି ପାଇଁ କାର୍ଯ୍ୟ ଜାରି ରଖିଥିଲେ ।

ଅନ୍ନପୂର୍ଣ୍ଣା ମହାରଣା ଅନେକ ପୁସ୍ତକ ଲେଖିଥିଲେ ଯେଉଁଥିରେ "ସଂଗ୍ରାମୀ ସରଳା ଦେବୀ" (୧ ୯ ୯ ୮), ଏବଂ "ସବୁ ଲୁଣ ଲୋକଙ୍କର" (୧ ୯ ୯ ୫) ଅନ୍ତର୍ଭୁକ୍ତ । ସେ ମହାତ୍ମା ଗାନ୍ଧୀ, ବିନୋବା ଭାବେ ଏବଂ ଜୟପ୍ରକାଶ ନାରାୟଣଙ୍କ ବହୁ ଲେଖାକୁ ଓଡ଼ିଆରେ ଅନୁବାଦ କରିଥିଲେ । ଏଥିସହ ସେ ଲୋକପ୍ରିୟ ବିଜ୍ଞାନ ଏବଂ ପିଲାମାନଙ୍କ ପାଇଁ ସାମାଜିକ କାହାଣୀମାନ ବିସ୍ତୃତ ଭାବରେ ଲେଖିଛନ୍ତି । ତାଙ୍କର ଆତ୍ମଜୀବନୀ ଖଣ୍ଡଗୁଡ଼ିକ ସାହିତ୍ୟ ପତ୍ରିକା "ସୁଚରିତା"ରେ ୧୯୭୭ ମସିହାରୁ ୨୦୦୧ ମସିହା ମଧ୍ୟରେ ପ୍ରକାଶିତ ହୋଇଥିଲା । ଏଗୁଡ଼ିକୁ ସଂଗ୍ରହ କରାଯାଇ ୨୦୦୫ ମସିହାରେ "ଅମୃତ ଅନୁଭବ" ଶୀର୍ଷକ ବହି ଆତ୍ମଚରିତ ଆକାରରେ ଶିକ୍ଷା ସନ୍ଧାନ, ଭୁବନେଶ୍ୱର ଦ୍ୱାରା ପ୍ରକାଶିତ ହୋଇଥିଲା ।

ସ୍ୱାଧୀନତା ପୂର୍ବରୁ ଏବଂ ପରେ ଭାରତରେ ଘଟୁଥିବା ଘଟଣାଗୁଡ଼ିକର ଅନ୍ନପୂର୍ଣ୍ଣା ମହାରଣା ଜଣେ ତୀକ୍ଷ୍ଣ ପର୍ଯ୍ୟବେକ୍ଷକ। ତାଙ୍କ ବ୍ୟକ୍ତିଗତ ଜୀବନର କେବଳ ଏକ ରୂପରେଖ ଉପସ୍ଥାପନ କରି ବିଶାଳ ଐତିହାସିକ ଘଟଣା ଏବଂ ତା ସହିତ ତାଙ୍କ ସମ୍ପର୍କ ଉପରେ ବିଶେଷ ଧ୍ୟାନ ଦେଇଛନ୍ତି। ସେ ନିଜ ଆତ୍ମଚରିତରେ ନିଜ ଅପେକ୍ଷା ନିଜ ସମୟ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି। ଏଠାରେ ଦିଆଯାଇଥିବା ଉଦ୍ଧୃତାଂଶ ଦର୍ଶାଏ ଯେ ଜଣେ ଚପଳମତି ଓ ଉତ୍ସାହୀ କିଶୋରୀ ଭାବେ ସେ କିପରି ମହାତ୍ମା ଗାନ୍ଧୀଙ୍କ ସହ ତତ୍‌କ୍ଷଣାତ୍ ଏକ ସାବଲୀଳ ସମ୍ପର୍କ ସ୍ଥାପନ କରିପାରିଥିଲେ। ଗାନ୍ଧୀଜୀ ତାଙ୍କ ସ୍ମୃତି ଅପେକ୍ଷା ଅନ୍ୟ କୌଣସି ସ୍ଥାନରେ ଅଧିକ ସ୍ନେହପୂର୍ଣ୍ଣ ଏବଂ ମାନବୀୟ ମନେ ହୁଅନ୍ତିନି, ଯେଉଁଠି ଅନ୍ନପୂର୍ଣ୍ଣା ପ୍ରଥମ ଦେଖାରେ ଜାତିର ପିତାଙ୍କ ସ୍ନେହ ବନ୍ଧନରେ ପଡ଼ିଯାଇଥିବା କଥା ଉଲ୍ଲେଖ କରିଛନ୍ତି। ତାଙ୍କ ମତରେ ଗାନ୍ଧୀଜୀଙ୍କ ବ୍ରହ୍ମଚର୍ଯ୍ୟ ଧାରଣା ଭାରତରେ ନାରୀମାନଙ୍କ ମଧ୍ୟରେ ସଚେତନତା ତଥା ଜାଗରଣ ଆଣିବାରେ ସଫଳ ହୋଇଥିଲା।

# ଅମୃତ ଅନୁଭବ

ଗାନ୍ଧିଜୀ ପୁଣି ଗିରଫ ହୋଇ ଜେଲ୍ ଗଲେ। ତାଙ୍କୁ ଏକବର୍ଷ କାରାଦଣ୍ଡ ମିଳିଲା। ଜେଲରେ ଥିବାବେଳେ ହରିଜନ ସେବାକାର୍ଯ୍ୟ ସଂକ୍ରାନ୍ତରେ ପତ୍ର ବ୍ୟବହାର କରିବାକୁ ସେ ସରକାରଙ୍କୁ ଅନୁମତି ମାଗିଲେ। ସରକାର ତାହା ନ ଦେବାରୁ ଗାନ୍ଧିଜୀ ପୁଣି ଅନଶନ କଲେ। ଏଥର ତାଙ୍କର ଜୀବନ ସଂକଟାପନ୍ନ ହେବାରୁ ସରକାର ତାଙ୍କୁ ଖଲାସ କରିଦେଲେ। ତାଙ୍କୁ ବର୍ଷେ କାରାଦଣ୍ଡ ହୋଇଥିବାରୁ ସେ ଜେଲ୍‌ରୁ ବାହାରିବା ପରେ ବର୍ଷଟିଏ କେବଳ ହରିଜନ ସେବା କାମ କରବାକୁ ସ୍ଥିର କରି ସମଗ୍ର ଭାରତ ଗସ୍ତ କଲେ।

ସେହି ହରିଜନ ଗସ୍ତ ବେଳେ ୧୯୩୪ ମସିହାରେ ଗାନ୍ଧିଜୀ ସାତଦିନ ଓଡ଼ିଶାରେ ଗସ୍ତ କରିବା ସ୍ଥିର ହେଲା। କଟକରେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସଭାପତିତ୍ୱରେ ଗୋଟିଏ ଅଭ୍ୟର୍ଥନା ସମିତି ଗଢ଼ା ହେଲା। ସଦସ୍ୟ ଚାନ୍ଦା ଥିଲା ତିନି ଟଙ୍କା। ଏହି ସଦସ୍ୟ ସଂଗ୍ରହ କାମକୁ ତ୍ୱରାନ୍ୱିତ କରିବା ପାଇଁ ଆମେ ସାଇକେଲରେ ଚଢ଼ି ବୁଲି ବୁଲି ସଦସ୍ୟ ସଂଗ୍ରହ କଲୁ। ଆମେ ବୋଇଲେ ଶୋଭାରାଣୀ ପଣ୍ଡା, ମଙ୍ଗଳାସେନ୍ ଓ ମୁଁ। ଏହି ଚାନ୍ଦା ଦେବାକୁ ଅନେକ ଡରୁଥାନ୍ତି। କାରଣ ଗାନ୍ଧୀ ଏକେ ସରକାରଙ୍କ ଶତ୍ରୁ, ତହିଁକୁ ପୁଣି ଛୁଆଁଛୁଇଁ ଉଠେଇ ଦେବାକୁ ଚାହିଁଲେଣି। ଏ କାମ ସାଙ୍ଗକୁ ନିତ୍ୟ ସେବା କାର୍ଯ୍ୟ ତ ଚାଲିଥାଏ। ପୁଣି ଆତ୍ମୋନ୍ନତି ପାଇଁ ପଣ୍ଡିତ ଅନସୂୟା ପ୍ରସାଦ ପାଠକଙ୍କ ପାଖରେ ରାଷ୍ଟ୍ରଭାଷା ପଢୁଥାଉ। ପଣ୍ଡିତଜୀ ୧୯୩୧ରେ ଓଡ଼ିଶାକୁ ଆସି ଏହିଠାରେ ଆନ୍ଦୋଳନରେ ଯୋଗଦେଇ ଜେଲ୍‌ଯାଇ ଜେଲ୍‌ରୁ ମୁକୁଳି ପୁଣି ଓଡ଼ିଶାରେ ରାଷ୍ଟ୍ରଭାଷା

ପ୍ରଚାର କାମରେ ଲାଗିଥାନ୍ତି। ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସଭାପତିତ୍ୱରେ ରାଷ୍ଟ୍ରଭାଷା ପ୍ରଚାର ସଭା ଗଢ଼ା ହୋଇଥାଏ। ରମାଦେବୀ ଥାନ୍ତି ଏହାର ପ୍ରଧାନ ଉଦ୍ୟୋକ୍ତା ଅର୍ଥାତ୍ ଅର୍ଥ ସଂଗ୍ରହ ଓ ଛାତ୍ରଛାତ୍ରୀ ସଂଗ୍ରହ ଥାଏ ତାଙ୍କର କାମ। ପଣ୍ଡିତଜୀ ଆମକୁ ବରାବର କହି ଲାଗିଥାନ୍ତି ହସ୍ତାକ୍ଷର ସୁନ୍ଦର ହେଲେ ଗାନ୍ଧିଜୀ ସେ ଚିଠି ନିଜେ ପଢ଼ନ୍ତି। ତେଣୁ ତୁମେମାନେ ସୁନ୍ଦର ଅକ୍ଷର ଲେଖ। ତେଣୁ ଆମେ ଲାଗିପଡ଼ି ନାଗରୀ ଅକ୍ଷରକୁ ସୁନ୍ଦର କରିବାକୁ ଚେଷ୍ଟା କରୁଥାଉ। ଭଜନ ଆଦି ବୋଲିବା ପାଇଁ ଶ୍ରୀ ଗୋକୁଳ ଶ୍ରୀଚନ୍ଦନ ଆମକୁ କଣ୍ଠ ସଂଗୀତ ଓ ଗୋପାଳ ଘୋଷ ସୀତାର ଶିଖାଉଥାନ୍ତି। ଅବଶ୍ୟ ସଂଗୀତ ଶିଖିବାରେ ମୋର ଆଦ୍ୟ ଗୁରୁ ହେଉଛନ୍ତି ଓସ୍ତାଦ ଖାନୁମିଆଁ। ସହରର ଅନେକ ଝିଅ ଆମ ସାଙ୍ଗରେ ଗୀତ ବାଦ୍ୟ ଶିଖିବାକୁ ଆସୁଥାନ୍ତି। ବର୍ତ୍ତମାନ ଗ୍ରାମସେବକ ପ୍ରେସ୍ ହୋଇଥିବା କୋଠାର ଗୋଟିଏ କୋଠରିରେ ଏହି ସଙ୍ଗୀତ ଚର୍ଚ୍ଚା ଚାଲିଥାଏ।

ଗାନ୍ଧିଜୀ ଅନୁଗୁଳ ଗସ୍ତ ସାରି ପୁରୀରେ ପହଞ୍ଚିଲା ବେଳକୁ ରେଳ ଷ୍ଟେସନରେ ପୁଲିସ ହାଉଯାଉ ହେଉଥିବାର ଦେଖିଲେ। ସହର ଭିତରକୁ ଯାଇ ଦେଖିଲେ ସେ କାଳେ ଶ୍ରୀମନ୍ଦିରରେ ହରିଜନ ପୂରାଇ ଦେବେ ସେହି ଭୟରେ ସଞ୍ଚାଳକମାନେ ଶ୍ରୀମନ୍ଦିର ଦ୍ୱାର କିଳି ଦେଇଛନ୍ତି। ଉଭୟ ପକ୍ଷର ଭୟର ବାତାବରଣ ଦେଖି ସେ କହିଲେ ଏ ପ୍ରକାର ଭୟପୂର୍ଣ୍ଣ ବାୟୁମଣ୍ଡଳରେ ହୃଦୟ ପରିବର୍ତ୍ତନ କାର୍ଯ୍ୟ ସାଧିତ ହୋଇପାରେ ନାହିଁ। ମୁଁ ଶଙ୍କର, ଚୈତନ୍ୟଙ୍କ ପରି ପାଦରେ ଚାଲି ଚାଲି ଉତ୍କଳ ପରିକ୍ରମା କରିବି। ତାଙ୍କର ତ ଯଦ୍ରୂପ ସଂକଳ୍ପ ତଦ୍ରୂପ କାର୍ଯ୍ୟ। ସେହି ଐତିହାସିକ ପଦଯାତ୍ରା ପାଇଁ ପୁରୀରେ ଆୟୋଜନ ଆରମ୍ଭ ହୋଇଗଲା।

ଏ ଖବର କଟକରେ ପହଞ୍ଚିବା ମାତ୍ରେ ଆମର ପିଳେହି ପାଣି ହୋଇଗଲା। ସେତେବେଳକୁ ଅରିଲୋ, ଖଣ୍ଡାଇତା ଆଡୁ ଲୋକ ସୁଅ ଛୁଟି ସନ୍‌ସାଇନ୍ ଫିଲ୍‌ଡ ଉଛୁଳିଲାଣି। ଆମେ ଯେ ଅଭ୍ୟର୍ଥନା ସମିତି ସଦସ୍ୟ ଚାନ୍ଦା ଏବଂ ଗାନ୍ଧିଜୀଙ୍କୁ ହରିଜନ କାମ ପାଇଁ ଭେଟି ଦେବାକୁ 'ଥଳିଭେଟି' ଚାନ୍ଦା ଯାହାଙ୍କଠାରୁ ସଂଗ୍ରହ କରୁଛୁ, ଗାନ୍ଧିଜୀ କଟକ ନ ଆସିଲେ ସେମାନଙ୍କୁ ମୁହଁ ଦେଖାଇବୁ କେମିତି ? ଶେଷ ମୁହୂର୍ତ୍ତରେ କାର୍ଯ୍ୟକ୍ରମ ବଦଳାଇ ଦେଇଥିବାରୁ ମନେ ମନେ ଗାନ୍ଧିଜୀଙ୍କ ଉପରେ ଓ ସଞ୍ଚାଳକମାନଙ୍କ ଉପରେ ରାଗୁଥାଉ। କିନ୍ତୁ କହିବୁ କାହାକୁ ? କହିଲେ କୁଳ କୁଟୁମ୍ବକୁ ଲାଜ !

ରମାଦେବୀ ପୁରୀରୁ ଚିଠି ଦେଲେ - ତୁମେ ସମସ୍ତେ ଗାନ୍ଧିଜୀଙ୍କର ବାଲକାଟି ରହଣୀକୁ ଚାଲିଆସ, ସେଠାରୁ ଗାନ୍ଧିଜୀଙ୍କ ପଦଯାତ୍ରାରେ ଯୋଗଦେବ। ଆମର ସବୁ ରାଗ ପାଣି ହୋଇଗଲା। ହରିଜନ ବସ୍ତିରେ କାମ କରୁଥିବା ଆମେ ସାତ ଭଉଣୀ,

ସୁଶୀଳା, ମଙ୍ଗଳା, ଶୋଭା, ଗୋଦାବରୀ, ମାଣିକ, ତୁଳସୀ, ଅନ୍ନପୂର୍ଣ୍ଣା ତୁରନ୍ତ ବିଛଣା ବାନ୍ଧି ଭୁବନେଶ୍ୱର ବାଟେ ବାଳକାଟି ବାହାରିଲୁ। ପଚାଶ ବର୍ଷ ପୂର୍ବେ ନଦୀରେ ପୋଲ ନଥିବାରୁ ଏବ ପରି ଭୁବନେଶ୍ୱରକୁ ବସ୍ ଚାଲୁ ନଥିଲା। ରେଳଗାଡ଼ିରେ ଭୁବନେଶ୍ୱର ଯାଇ ପୁରୁଣା ଜଗନ୍ନାଥ ସଡ଼କରେ ବାଳକାଟିରେ ପହଞ୍ଚିବା ବେଳକୁ ସନ୍ଧ୍ୟା ସଭା ସାରି ପଦଯାତ୍ରୀ ରହଣୀ ସ୍ଥାନକୁ ଚାଲି ଗଲେଣି। ରହଣୀସ୍ଥାନ ଅର୍ଥ ଡାକବଙ୍ଗଳା ବା ସ୍କୁଲ ଘର ନୁହେଁ – ଗଛ ମୂଳ। ବ୍ରିଟିଶ ସରକାରର ଶତ୍ରୁ ଗାନ୍ଧୀଙ୍କୁ କିଏ ଡାକବଙ୍ଗଳା ବା ସ୍କୁଲ ଘରେ ରହିବାକୁ ସ୍ଥାନ ଦେବ ? ଲଣ୍ଠନ ଆଲୁଅରେ ପଦଯାତ୍ରୀମାନେ ରାତ୍ରିଯାପନ ବ୍ୟବସ୍ଥା କାମରେ ଲାଗି ପଡ଼ିଥାନ୍ତି। ଯେଉଁ ଦୂରଦୂରାନ୍ତର ଲୋକେ ଗାନ୍ଧୀ ଭାଷଣ ଶ୍ରବଣ, ମନ ପୂରେଇ ଗାନ୍ଧୀ ଦର୍ଶନ ଆଶାରେ ଧାଇଁ ଧାଇଁ ଆସି ସୁଦ୍ଧା ସଭାବେଳକୁ ପହଞ୍ଚିପାରି ନଥାନ୍ତି, ସେମାନେ ଖାଲି ଟିକେ ଦେଖି ଯିବାକୁ ରହଣୀ ଚାରିପଟ ଘେରିଯାଇ ଧସେଇ ପଶିବାକୁ ଚେଷ୍ଟା କରୁଥାନ୍ତି। ସ୍ୱେଚ୍ଛାସେବକମାନେ ସେମାନଙ୍କୁ ବୁଝାଇ ସୁଝାଇ ଅଟକାଇ ରଖିବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାନ୍ତି। ଏହି ପାଳା ଚାଲୁଥିବା ବେଳେ ଆମ ଦଳ ସେଠାରେ ପହଞ୍ଚିଗଲା। ଆମକୁ ଦେଖିବାମାତ୍ରେ ରମାଦେବୀ ଆଦେଶ ଦେଲେ ଭିଡ଼ ସମ୍ଭାଳିବାକୁ ଚାଲିଯାଅ। ଆମେ ହେଉଛୁ ହିନ୍ଦୁସ୍ତାନୀ ସେବାଦଳ ଦ୍ୱାରା ତାଲିମ ପାଇଥିବା ସ୍ୱେଚ୍ଛାସେବିକା ! ବୀର ଦର୍ପରେ ଦୁମୁଦୁମୁ ହୋଇ ଭିଡ଼ ସମ୍ଭାଳିବାକୁ ଧାଇଁଲା ବେଳକୁ ପଛଆଡୁ ଗୋଟିଏ ବୃଦ୍ଧର ସ୍ନେହବୋଳା କଣ୍ଠସ୍ୱର ଶୁଭିଲା– "ଏ ଝିଅ ! କୁଆଡ଼େ ଧାଇଁଛ ?' (ଏ ଲଡକୀ ! କାହାଁ ଭାଗ ରହି ହୋ ?) ଆମକୁ ତ ରାଷ୍ଟ୍ରଭାଷା ଜଣା ! ହିନ୍ଦୀ ଭାଷା ଶୁଣି ପଛକୁ ଚାହିଁଦେଇ ଦେଖିଲି – ଗାନ୍ଧିଜୀ ଗୋଟିଏ ଗଛମୂଳେ ଶୋଇଛନ୍ତି। ଗୋଟିଏ ଲଣ୍ଠନ ଆଲୁଅ ଧିକିଧିକି ହୋଇ ଜଳୁଛି। ଜଣେ ଖଦୀପିନ୍ଧା ଇଂରେଜ ମହିଳା ଓ ଆଉ ଜଣେ ସେଠାରେ କ'ଣ କରୁଛନ୍ତି। ନିଜର ଯୋଗ୍ୟତା ସୂଚେଇବାକୁ ତେଜରେ ଜବାବ ଦେଲି– "ଭିଡ଼ ସମ୍ଭାଳିବାକୁ ଯାଉଛୁ।" ସେ ଭଙ୍ଗାଦାନ୍ତ ଦେଖାଇ ହସି ହସି କହିଲେ, 'ହଉ ଯାଅ।' Love at first sight ବୋଲି ଇଂରାଜୀରେ କ'ଣ ଗୋଟାଏ କଥା ଅଛି ପରା ? ସେଇ କଥାଟା ଘଟିଗଲା। ଦୁଇପଦ କଥା ଟିକିଏ ହସ – ଯେମିତି ଜନ୍ମଜନ୍ମାନ୍ତରର ପରିଚୟ। ଅତି ଆପଣାର, ଅତି ପରିଚିତ, ଠିକ୍ ଆମ ମନୋନୀତ ସାଙ୍ଗ ହୋଇଗଲେ ସେ ଗାନ୍ଧିଜୀ।

ପଦଯାତ୍ରା ଦୁଇଓଳି ଚାଲିଥାଏ। ପାହାନ୍ତା ପହରରେ ନିଜ କଂସା ଗିଲାସ ଭିତରେ ଚାମୁଚ ହଲେଇ ହଲେଇ ଗାନ୍ଧିଜୀ ଉଠିବା ଘଣ୍ଟା ବଜାନ୍ତି। ତାଙ୍କ ମୁଣ୍ଡ ପାଖରେ ରାତିରୁ ନିର୍ଦ୍ଦିଷ୍ଟ ଦୂରତ୍ୱରେ ତାଙ୍କ ଫାଇଲପତ୍ର, ଛେଚା ଦାନ୍ତକାଠି, ସିଝାପାଣି ବୋତଲ, ପାଣି ଗିଲାସ ରଖା ହୋଇଥାଏ। ଯେପରି ସେ ସବୁ ଖୋଜିବାରେ ବୃଥା ସମୟ ନଷ୍ଟ, ଶକ୍ତି

ନଷ୍ଟ ନ ହେବ, ହାତ ବଢ଼ାଇବା ମାତ୍ରେ ଯଥାସ୍ଥାନରେ ଜିନିଷ ମିଳିଯିବ। ତାଙ୍କ ଗିଲାସଟିର ନାମ ସୁଶୀଳା ପାଇ ଦେଇଥିଲେ ମଲ୍‌ଟି ପର୍‌ପସ୍। ଦାନ୍ତ ଘଷିବା, ପାଇଖାନାକୁ ଯିବା, ଗାଧୋଇବା, ଛେଳିଦୁଧ ପିଇବା ଆଦି ସର୍ବପ୍ରକାର କାର୍ଯ୍ୟ ସମ୍ପାଦନ କରିବାର ପାତ୍ର ହେଉଛି ସେହି କଂସା ଗିଲାସଟି। ସେଥିପାଇଁ କୁମାରୀ ସୁଶୀଳା ପାଇ କହିଥିଲେ ଯେ ବାପୁଙ୍କ ଅନ୍ତେ ଏହି ଗିଲାସଟିକୁ ସଂଗ୍ରହାଳୟରେ ରଖି ଏହାର ଉପଯୋଗିତା ଲିପିବଦ୍ଧ କରିବାକୁ ହେବ।

ଘଣ୍ଟା ଶୁଣି ପଦଯାତ୍ରା ଦଳ ଯେତେ ଚଞ୍ଚଳ ସମ୍ଭବ ନିତ୍ୟକର୍ମ ସାରି ପ୍ରାତଃ ପ୍ରାର୍ଥନା ପାଇଁ ପ୍ରସ୍ତୁତ ହୋଇଯାଉ। ପଦଯାତ୍ରାରେ ପ୍ରାର୍ଥନା ପରିଚାଳନା କରୁଥିଲେ ବାଲ୍ କାଲେକର୍। ପ୍ରାର୍ଥନାର କ୍ରମ ଥିଲା – 'ପ୍ରାତଃ ସ୍ମରାମି' ଆଦି ଶ୍ଳୋକ ପରେ ଭଜନ, ଭଜନ ପରେ 'ନାରାୟଣ ନାରାୟଣ ଜୟ ଗୋବିନ୍ଦ ହରେ' ଧୂନ୍। ଏକାଦଶ ବ୍ରତ ଓ ଈଷାବାସ୍ୟ ଉପନିଷଦର ପ୍ରଥମ ଶ୍ଳୋକ ସେତେବେଳେ ପ୍ରାର୍ଥନାର ଅନ୍ତର୍ଭୁକ୍ତ ହୋଇ ନଥିଲା। ସର୍ବଶେଷରେ 'ବିପଦୋ ନୈକ ବିପଦୋ' ବୋଲା ହେବା ପରେ ଗୀତା ପାଠ ହେଉଥିଲା। ପ୍ରାର୍ଥନା ପରେ ପଦଯାତ୍ରୀଦଳ ଗ୍ରାମବାସୀଙ୍କ ଦ୍ୱାରା ପ୍ରଦତ୍ତ ଜଳଖିଆ ଖାଇ ନିଜର ଭାରି ଜିନିଷଗୁଡ଼ିକ ନିର୍ଦ୍ଦିଷ୍ଟ ସ୍ଥାନରେ ଥୋଇ ହାଲୁକା ଜିନିଷଗୁଡ଼ିକ ଧରି ଯାତ୍ରା ପାଇଁ ପ୍ରସ୍ତୁତ ହୋଇ ରହୁ। ଜଳଖିଆରେ ସାଧାରଣତଃ ଚୂଡ଼ା, ଗୁଡ଼, ଦହି ବା ଚୂଡ଼ା, ଗୁଡ଼, ନଡ଼ିଆ କିମ୍ବା ଆମ୍ବ ଚୂଡ଼ା ଦିଆ ଯାଉଥିଲା। ସ୍ଥାନୀୟ ଯାତ୍ରୀଙ୍କର ଗୋଟିଏ ଅଧିକା କାମ ଥିଲା – ଅଇଁଠାପତ୍ର ପକାଇବା ଖାତ ଓ ପାଇଖାନା ପାଇଁ ଖୋଳା ହୋଇଥିବା ଗାତ ପୋତିବା ଏବଂ ରୋଷେଇ ବାସନ ଆଦି ଯଥା ସ୍ଥାନକୁ ଗଲା କି ନାହିଁ ତାହାର ତଦ୍‌ବିର୍ କରିବା। ଯାତ୍ରା ଆରମ୍ଭ ହେବା ପୂର୍ବ ପର୍ଯ୍ୟନ୍ତ ଗାନ୍ଧିଜୀ ନିବିଷ୍ଟ ଚିତ୍ତରେ ଚିଠି ଲେଖାପଢ଼ା ବା ସେହିପରି କିଛି କାମ କରୁଥାନ୍ତି କିମ୍ବା କାହାରି ସାଙ୍ଗରେ କଥାବାର୍ତ୍ତା ହେଉଥାନ୍ତି, ହଠାତ୍ ନିଜ ଅଣ୍ଟାରୁ ଘଣ୍ଟାଟି କାଢ଼ି ଦେଖି ନିଜର ଝୁଲାମୁଣି ଓ ଫାଷ୍ଟଏଡ୍ ଥଳି ଠିକ୍ ଅଛି କି ନାହିଁ ଅଣ୍ଡାଳି ଦେଖି କାହାରିକୁ ଡକାହକା ନ କରି ଯାତ୍ରା ଆରମ୍ଭ କରି ଦିଅନ୍ତି। ସମୟ କଳିବା ବାବଦରେ ତାଙ୍କର ଗୋଟିଏ ଷଷ୍ଠ ଇନ୍ଦ୍ରିୟ ଥିଲା ପରି ମନେହୁଏ। ଯେତେଟାବେଳେ ତାଙ୍କର ଖାଇବା କଥା, ସେ ଅଣ୍ଟାରୁ ଘଣ୍ଟା କାଢ଼ିବା ବେଳକୁ ଠିକ୍ ସେତିକି ବାଜିଥାଏ। ଯେତିକିବେଳେ ଯାହା ସହିତ କଥାବାର୍ତ୍ତା କରିବାକୁ ସେ କହିଥିବେ, ଅଣ୍ଟାଘଣ୍ଟା କାଢ଼ିଲା ବେଳକୁ ଠିକ୍ ସେତିକିଟା ବାଜିଥାଏ। ଯାହାହେଉ ଗାନ୍ଧିଜୀ ଚାଲିବା ଆରମ୍ଭ କରିବା ମାତ୍ରେ ସମସ୍ତେ ତାଙ୍କ ପଛେ ପଛେ ଚାଲିବା ଆରମ୍ଭ କରୁ। ଯଦି କେହି ଅନ୍ୟମନସ୍କ ହୋଇ ବା ଅନ୍ୟ କାମ ହେତୁ ଟିକିଏ ପଛରେ ରହିଯାଆନ୍ତି ସେଦିନ ତାଙ୍କ ଭାଗ୍ୟରେ ଅଣନିଃଶ୍ୱାସିଆ ଦଉଡ଼ା ଲେଖାଥାଏ ବୋଲି ବୁଝିବାକୁ ହେବ। କାରଣ ଗାନ୍ଧିଜୀ

ଖୁବ୍ ଦ୍ରୁତଗତିରେ ଚାଲନ୍ତି, ଆବଶ୍ୟକ ବୋଧ କଲେ ଦଉଡ଼ନ୍ତି ମଧ୍ୟ। ସାଧାରଣତଃ ଦୁଇଜଣଙ୍କ ଦୁଇ କାନ୍ଧରେ ହାତ ପକାଇ ଆଲୋଚନା କରି କରି ବା ଚିହ୍ନାପରିଚୟ ହେବା କାମଟା ସେ ଏହି ବାଟଚଲା ବେଳେ ସାରନ୍ତି। ଗାନ୍ଧିଜୀ ଦଉଡ଼ିବା ଆରମ୍ଭ କରିଦେଲେ ତାଙ୍କର ଜୀବନ୍ତ ଯଷ୍ଟିଙ୍କ ଅବସ୍ଥା ଶୋଚନୀୟ ହୋଇଯାଏ।

ଯାତ୍ରୀଙ୍କ ବିଛଣାପତ୍ର, ହରିଜନ ସେବକ ସଂଘର ଭ୍ରାମ୍ୟମାଣ ଦପ୍ତରର କାଗଜପତ୍ର, ଟାଇପ୍ ରାଇଟର୍ ଆଦି ବଳଦଗାଡ଼ିରେ ବୋଝେଇ ହୋଇ ପରବର୍ତ୍ତୀ ରହଣୀକୁ ନିଆଯାଏ। ଥରେ ବମ୍ବେରୁ ଆସିଥିବା ଜଣେ ପଦଯାତ୍ରୀ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ। ଗାନ୍ଧିଜୀ ତୁରନ୍ତ ନିର୍ଦ୍ଦେଶ ଦେଲେ ଯେ ସେହି ଅସୁସ୍ଥ ଭାଇ ଜଣକ ବଳଦ ଗାଡ଼ିରେ ଯିବେ। ବାକି ସମସ୍ତେ ନିଜ ନିଜ ବିଛଣା ନିଜେ ନିଜେ ବୋହିବେ। ଆମେ ତ ସେବାଦଳ ତାଲିମ ପ୍ରାପ୍ତ ! ରୁଟ୍ ମାର୍ଚ୍ଚରେ ଗଲାଭଳି ବିଛଣା ବାନ୍ଧି କାନ୍ଧରେ ପକାଇ ବାଟ ଚାଲି ଗାନ୍ଧିଜୀଙ୍କ ବାହାବାହା ହାସଲ କରିନେଲୁ।

ମାଧ୍ୟାକର୍ଷଣ ଶକ୍ତି ଭଳି ପ୍ରେମର କି ଅପୂର୍ବ ଅଦୃଶ୍ୟ ଶକ୍ତି। ସେ ପ୍ରେମ ଶକ୍ତି ଦୂରଦୂରାନ୍ତରୁ ଲୋକଙ୍କୁ ଗାନ୍ଧିଜୀଙ୍କ ପାଖକୁ ଟାଣି ଆଣୁଥାଏ। ବାଟଯାକ ଲୋକେ ଠାଆକୁ ଠାଆ ଜମା ହୋଇଥାନ୍ତି। ଗାନ୍ଧିଜୀଙ୍କୁ ଦେଖିବା ମାତ୍ରେ ହରିବୋଲ ହୁଳହୁଳି ଶବ୍ଦରେ କାନରେ ଅତଡ଼ ପଡ଼େ। ବାଟ ଗାଁର ଲୋକେ କୀର୍ତ୍ତନ କରି କରି ଗାନ୍ଧିଜୀଙ୍କ ପଛରେ ଚାଲନ୍ତି। ସେମାନଙ୍କ ପଦଧୂଳିରେ କିପରି ଗାନ୍ଧିଜୀ ଆଚ୍ଛାଦିତ ନ ହେବେ ସେ ଦିଗରେ ସମସ୍ତେ ଦୃଷ୍ଟି ରଖନ୍ତି।

ରହଣୀରେ ପହଞ୍ଚିବା ବେଳକୁ ଦୂରଦୂରାନ୍ତରୁ ଆସିଥିବା ଲୋକେ ରୁଣ୍ଡ ହୋଇ ସାରିଥାନ୍ତି। ତେଣୁ ଗାନ୍ଧିଜୀ ପହଞ୍ଚିବା ମାତ୍ରେ ସଭାରେ ଭାଷଣ ଦିଅନ୍ତି। ଅସ୍ପୃଶ୍ୟତାରୂପୀ ପାପରୁ ମୁକ୍ତ ହେବାକୁ, ଆଳସ୍ୟ ଛାଡ଼ିବାକୁ, ନିଶାଦ୍ରବ୍ୟ ବର୍ଜନ କରିବାକୁ, ପରିଷ୍କାର ପରିଚ୍ଛନ୍ନ ରହିବାକୁ ସେ ଲୋକଙ୍କୁ ବୁଝାନ୍ତି। ସ୍ତ୍ରୀ ଲୋକଙ୍କୁ ଗହଣା ଓ ପର୍ଦ୍ଦା ଛାଡ଼ିବା ପାଇଁ କହନ୍ତି। ଦେହ ମିହନତ ନ କରି ଖାଉଥିବା ମଣିଷ ଚୋର – ଏହି କଥାଟି ସେ ପ୍ରାୟ ପ୍ରତି ସଭାରେ କହୁଥାନ୍ତି। ଗାନ୍ଧିଜୀ ରାଷ୍ଟ୍ରଭାଷାରେ ବକ୍ତୃତା ଦେଉଥିବାରୁ ରାଜକୃଷ୍ଣ ବୋଷ ତାଙ୍କ ବକ୍ତୃତା ଅନୁବାଦ କରନ୍ତି। ସେ ନ ଥିଲେ ଗୋପବନ୍ଧୁ ଚୌଧୁରୀ ତାହା କରନ୍ତି। ବକ୍ତୃତା ସରିବା ମାତ୍ରେ ହରିଜନ କାମ ପାଇଁ ଗାନ୍ଧିଜୀ ନିଜେ ଲୋକଙ୍କ ପାଖରେ ହାତ ପତେଇ ଚାନ୍ଦା ମାଗନ୍ତି। ତାଙ୍କୁ ବାଉଁଶ ତିଆରି ଡାଲା ବାଉଁଶିଆଠାରୁ ଆରମ୍ଭ କରି ସୁନାହାର ସୁନାଚୁଡ଼ି ଯାଏ ବିଭିନ୍ନ ପ୍ରକାର ଭେଟି ମିଳେ। ଏ ଭେଟିଗୁଡ଼ିକୁ ଗାନ୍ଧିଜୀ ନିଜେ ନିଲାମ କରନ୍ତି। ଆମେ ମଧ୍ୟ ଲୋକଙ୍କ ଭିତରେ ବୁଲି ବୁଲି ପଣତ ପତରେ

ଚାନ୍ଦା ମାଗୁ। ଅଧଲାଏ ପାହୁଲାଏ ମଧ୍ୟ ଲୋକେ ଦେଉଥିବାର ଦେଖା ଯାଇଛି। ମୁଖମୁଦ୍ରାରେ ଗଭୀର ଶ୍ରଦ୍ଧାର ରେଖା ଦାତା ମୁହଁରେ ଫୁଟି ଉଠିଥାଏ। ପରିମାଣ ବଡ଼ ନୁହେଁ। ବଡ଼ 'ଶ୍ରଦ୍ଧୟା ଦେୟମ୍।'

ସଭା ସରିଲେ ଆମେ ପରିବା ପତ୍ର କାଟିବା, ରୁଟି ତିଆରି ଆଦି କାମରେ ସାହାଯ୍ୟ କରି ରହଣୀ ନିକଟସ୍ଥ ହରିଜନ ବସ୍ତିକୁ ତଥ୍ୟ ସଂଗ୍ରହ କରିବାକୁ ଯାଉ। ହରିଜନ ବସ୍ତି ସଫାଇ କରିବା, ହରିଜନ ପିଲାଙ୍କୁ ଡାକିଆଣି ସେମାନଙ୍କୁ ଗାଧୋଇ ଦେଇ ଧାଡ଼ିରେ ବସାଇ ଖୁଆଇ ରାମଧୂନ୍ ଶିଖାଇବା ମଧ୍ୟ ଆମର ଗୋଟାଏ କାମ ଥିଲା। ପ୍ରଫେସର ମାଲକାନୀ, ଲାଲ ଅଚିନ୍ତରାଇ, କୃଷ୍ଣ ମେନନ୍, ବାଲ୍ କାଲେଲକର୍ ଆଦି ବହିରାଗତ ଅତିଥି ମଧ୍ୟ ଆମ ସାଙ୍ଗରେ ହରିଜନ ବସ୍ତିକୁ ଯାଉଥିଲେ। ଦାମୋଦର ଦାସ ଦେବରାଜ ଓ ପୃଥ୍ୱୀରାଜ ସଂଘର ଦପ୍ତର ସମ୍ଭାଳିବା, ଟାଇପ୍ କରିବା, ହିସାବପତ୍ର ରଖିବା, ଚିଠିପତ୍ରର ଜବାବ ଦେବା କାମରେ ଠକ୍‌କର ବାପାଙ୍କୁ ସାହାଯ୍ୟ କରୁଥିଲେ। ମୀରାବେନ୍ ଓ ସୁଶୀଳା ପାଇ ଗାନ୍ଧିଜୀଙ୍କୁ ଚିଠି ପତ୍ର ଲେଖା କାମରେ ସାହାଯ୍ୟ କରୁଥାନ୍ତି। ଜୟ ପ୍ରକାଶ ନାରାୟଣଙ୍କ ସ୍ତ୍ରୀ ପ୍ରଭାବତୀ ଦେବୀ ଗାନ୍ଧିଜୀଙ୍କ ପାଇଁ ଅଲଗା ଲାଉ ସିଝା ରାନ୍ଧିବା, ଛେଳିଦୁଧ ଆଉଟିବା, ଜିନିଷପତ୍ରର ଯତ୍ନ ନେବା କାମ, ବାଲ୍‌ଜୀ ଗୋବିନ୍ଦଜୀ ଦେଶାଇ ସାପ୍ତାହିକ ହରିଜନ ପତ୍ରିକା ପାଇଁ ଲେଖାଲେଖି କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ସାଂସ୍କୃତିକ ଇତିହାସ ଅଧ୍ୟୟନ କରିବା ମାନସରେ ଆମଠାରୁ ଓଡ଼ିଆ ଶିଖି 'ନୀଳାଦ୍ରି ମହୋଦୟ' ପଢ଼ି ଲାଗିଥାନ୍ତି। ସେ ଏତେ ଅଧ୍ୟୟନଶୀଳ ଯେ ବାଟରେ ଚାଲିବା ବେଳେ ସୁଦ୍ଧା ବହି ପଢୁଥିଲେ। ଯମୁନାଲାଲ୍ ବାଜାଜ୍‌ଙ୍କ ଝିଅ ଉମା ଥିଲା ସବ୍‌ସେ ଛୋଟି, ସବ୍‌ସେ ଖୋଟି, ସବ୍‌ସେ ମୋଟି। କୋଟିପତି କନ୍ୟା ହୋଇ ସୁଦ୍ଧା ସେ ପଦଯାତ୍ରାର ସମସ୍ତ ଅସୁବିଧା ଅମ୍ଳାନ ବଦନରେ ସହି ଯାଉଥାନ୍ତି - ବରଂ ଉପଭୋଗ କରୁଥାନ୍ତି କହିଲେ ଠିକ୍ ହେବ। ପଣ୍ଡିତ ନୀଳକଣ୍ଠ ଦାସ, ଗୋପବନ୍ଧୁ ଚୌଧୁରୀ ଆଦି ଓଡ଼ିଶାର ବନ୍ୟା ଆଦି ବିଭିନ୍ନ ସମସ୍ୟା ଉପରେ ବହିରାଗତ ପଦଯାତ୍ରୀଙ୍କ ଆଗରେ ଭାଷଣ ଦିଅନ୍ତି। ଉମା ବାଜାଜ୍ ସେ ସବୁର ନୋଟ୍ ପ୍ରସ୍ତୁତ କରି ଗାନ୍ଧିଜୀଙ୍କୁ ଦିଅନ୍ତି। ଏ ସବୁ ନୋଟ୍ ଓ ଆମେ ହରିଜନ ବସ୍ତିରୁ ସଂଗ୍ରହ କରି ଆଣିଥିବା ତଥ୍ୟକୁ ଉଲ୍ଲେଖ କରି ଦିନେ ଦିନେ ଗାନ୍ଧିଜୀ ସଭାରେ ବକ୍ତୃତା ଦିଅନ୍ତି। ତାହା ଶୁଣି ଆମ ମନ କୁଣ୍ଢେ ମୋଟ ହୋଇଯାଏ। 'ଅମାନିନଂ ମାନଦେନ' ହେଲା ଗାନ୍ଧିଜୀଙ୍କର ସହଜାତ ପ୍ରବୃତ୍ତି। ଆଉ ଜଣେ ପଦଯାତ୍ରୀ ଥିଲେ ଜର୍ମାନୀର ବ୍ୟୁଟୋ ସାହେବ। ସେ ଜଣେ ନାଜି। ସେଥିପାଇଁ ରାଜକୃଷ୍ଣ ବାବୁ ତାଙ୍କ ସଙ୍ଗେ ପରିହାସ ଖେଳନ୍ତି 'ନାଜିସ୍ ଆର୍ ପାଜିସ୍'।

ଆମ ପ୍ରଦେଶର କର୍ମୀଙ୍କୁ ମଧ୍ୟ ନାନା ଦାୟିତ୍ୱ ବଣ୍ଟା ହୋଇଥାଏ। ସର୍ବଶ୍ରୀ ଗୁଣନିଧି

ମହାନ୍ତି ଓ ସୁରେନ୍ଦ୍ର ପଟ୍ଟନାୟକ ଥିଲେ ଅଗ୍ରଗାମୀ ଦଳ ବା ଆଡ୍‌ଭାନ୍‌ସ ପାର୍ଟି। ସେମାନେ ଆଗରୁ ରହଣୀ ସ୍ଥାନକୁ ଯାଇ ସର୍ବପ୍ରକାର ବ୍ୟବସ୍ଥା ତଦାରଖ କରୁଥିଲେ। ରମାଦେବୀ ପ୍ରାଦେଶିକ ହରିଜନ ସେବକ ସଂଘର ସମ୍ପାଦକ ଭାବରେ ପଦଯାତ୍ରାର ତତ୍ତ୍ୱାବଧାନ କରୁଥିଲେ। ରାଜକୃଷ୍ଣ ବାବୁ ଥିଲେ His Master's Voice ଅର୍ଥାତ୍ ଅନୁବାଦକ। ଗୋପବନ୍ଧୁ ଚୌଧୁରୀ ବହିରାଗତ ଅତିଥିଙ୍କୁ ସେମାନେ ଓଡ଼ିଶା ବିଷୟରେ ଜାଣିବାକୁ ଚାହୁଁଥିବା ବିଷୟ ଜଣାଇବା ଓ ଯୋଗସୂତ୍ର ରକ୍ଷା କରିବା ଆଦି କାମ କରୁଥିଲେ। ମନମୋହନ ଚୌଧୁରୀ ଓ ବିନୋଦ କାନୁନ୍‌ଗୋ ଥିଲେ ସମ୍ବାଦଦାତା। ଫଟୋଗ୍ରାଫରର ଦାୟିତ୍ୱ ମଧ୍ୟ ମନମୋହନ ଚୌଧୁରୀ ତୁଲାଉଥିଲେ। କୁଜଙ୍ଗର ଜଗନ୍ନାଥ ଶତପଥୀ ରୋଷେଇ ବ୍ୟବସ୍ଥା ଓ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ରୋଷେଇ ସାରିବା ଦାୟିତ୍ୱରେ ଥିଲେ। ଈଶ୍ୱରଲାଲ ବ୍ୟାସ ଥିଲେ ସମୟରକ୍ଷକ। କଂସା ଥାଳି ହୋଇଥାଏ ତାଙ୍କର ଘଣ୍ଟା ଓ କରଚୁଲୀ ହୋଇଥାଏ ପିଟଣା। ମଝିରେ ମଝିରେ ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ମାଳତୀ ଚୌଧୁରୀ, ରାଧାନାଥ ରଥ, ସତ୍ୟନାରାୟଣ ସେନଗୁପ୍ତ ପ୍ରମୁଖ ଗାନ୍ଧିଜୀଙ୍କୁ ଭେଟିବାକୁ ଆସୁଥିଲେ। ବହିରାଗତ ଅତିଥିଙ୍କ ମଧ୍ୟରେ ଥିଲେ ଅଗାଥା ହ୍ୟାରିସନ୍ (ଇଂଲଣ୍ଡ) ପିୟେର୍ ସେରିସୋଲ୍ (ସ୍ୱିଜରଲ୍ୟାଣ୍ଡ), ମିନୁ ମାଶାନି, ବିୟୋଗୀ ହରି, ସତୀଶଚନ୍ଦ୍ର ଦାସଗୁପ୍ତ ପ୍ରଭୃତି।

ମଧ୍ୟାହ୍ନ ଭୋଜନ ପରେ କିଛି ସମୟ ବିଶ୍ରାମ କରି ସାରି ବହିରାଗତ ବିଦ୍ୱାନ୍ ଅତିଥିମାନେ ଆମମାନଙ୍କୁ ଭାଷଣ ଶୁଣାନ୍ତି। ଯଥା – ବିୟୋଗୀ ହରି ହିନ୍ଦୀ ସାହିତ୍ୟର ଇତିହାସ ଉପରେ ଭାଷଣ ଦେବା ସ୍ଥଳେ ସତୀଶ ଚନ୍ଦ୍ର ଦାସଗୁପ୍ତ ହରିଜନ ସମସ୍ୟା ଉପରେ କହନ୍ତି। ତାହାପରେ ପରବର୍ତ୍ତୀ ରହଣୀକୁ ଯିବାପାଇଁ ବନ୍ଧାବନ୍ଧି ସଜଡ଼ା ସଜଡ଼ି ଆରମ୍ଭ ହୁଏ। ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ ପର୍ବ ସାରିଦେଇ ଯାତ୍ରା ଆରମ୍ଭ ହୁଏ। ବାଟରେ ସେହି ଜନସମାବେଶ, ଶଙ୍ଖ ହୁଳହୁଳି ନାଦ, ହରିନାମ ସଂକୀର୍ତ୍ତନ ଚାଲେ। ରହଣୀରେ ପହଞ୍ଚି ସନ୍ଧ୍ୟା ପ୍ରାର୍ଥନା ପରେ ସଭା ହୁଏ । ପ୍ରାର୍ଥନାରେ ପ୍ରଥମେ 'ୟଂ ବ୍ରହ୍ମା ବରୁଣେନ୍ଦ୍ର' ତାହାପରେ ସ୍ଥିତପ୍ରଜ୍ଞ ଲକ୍ଷଣ, ଭଜନ ଓ ଧୂନ୍ ବୋଲାହୁଏ। ପ୍ରାର୍ଥନା ପରେ ସଭା ସରିଲେ ପଣତ ପତେଇ ଚାନ୍ଦା ମାଗିବା ପର୍ବ। ସଭା ମଉଳିଲେ ଯାତ୍ରୀଦଳ ରାତ୍ରି କଟାଇବା ଆୟୋଜନରେ ଲାଗନ୍ତି। ଅଧିକାଂଶ ଦିନ ଗଛମୂଳ, ନଦୀକୂଳ, ଗାଁମୁଣ୍ଡ ଖୋଲା ପଡ଼ିଆରେ ରାତି କଟେ। ଦିନେ ଦିନେ ବ୍ୟକ୍ତିଗତ ଘର ମିଳିଯାଏ, ତାହା କ୍ୱଚିତ୍।

ଏହିପରି ଭାବରେ ବାଟ ସାରି ସାରି ଯାତ୍ରୀଦଳ ଆସି ପହଞ୍ଚିଲେ କଟକର ଉପକଣ୍ଠ କାଜିପାଟଣାରେ। ମେ ମାସ ଖରାରେ ଚରଣଗାଡ଼ିରେ ଆମେ କଟକ ସହରରେ ବୁଲିବୁଲି କାଠଯୋଡ଼ି ବାଲିରେ ସାଧାରଣସଭା ହେବା କଥା ପ୍ରଚାର କଲୁ। ସଭାରେ

ଜନ ସମାଗମ ଦେଖି ଖରାରେ ବୁଲିବା କଷ୍ଟ ପାସୋରା ଗଲା। ଏହି ସଭାରେ ସ୍ୱାମୀ ଲାଲନାଥ, ପଣ୍ଡିତ ପରୀକ୍ଷିତ ଦାଶ ଶର୍ମା ପ୍ରମୁଖ ଗାନ୍ଧିଜୀଙ୍କୁ କଳାପତାକା ଦେଖାଇବାକୁ ଶୋଭଯାତ୍ରା କରି ଆସିଲେ। ଲୋକେ କଳାପତାକାଧାରୀଙ୍କୁ ଦେଖି ଉତ୍ତେଜିତ ହୋଇ ପାଟିତୁଣ୍ଡ ଆରମ୍ଭ କରିଦେଲେ। ଗାନ୍ଧିଜୀ ଅତ୍ୟନ୍ତ ଧୀର ଶାନ୍ତ ସ୍ୱରରେ କଳାପତାକାଧାରୀଙ୍କୁ ସଭା ଭିତରକୁ ଆସିବାପାଇଁ ବାଟ ଛାଡ଼ି ଦେବାକୁ ଲୋକଙ୍କୁ ଅନୁରୋଧ କଲେ। ହଜରତ୍ ମୂସାଙ୍କୁ ବାଟ କରିଦେବା ପାଇଁ ସମୁଦ୍ର ଦୁଇଭାଗ ହୋଇଗଲା ପରି ସେ ଜନସମୁଦ୍ର ନୀରବରେ ସେମାନଙ୍କୁ ବାଟ ଛାଡ଼ିଦେଲା। ଗାନ୍ଧିଜୀ ସ୍ୱାମୀ ଲାଲନାଥଙ୍କୁ ପ୍ରଥମେ ତାଙ୍କ ଭାଷଣ ଶୁଣାଇବାକୁ ଅନୁରୋଧ କଲେ। ଗୈରିକବସନଧାରୀ ମୁଣ୍ଡିତମସ୍ତକ ତପ୍ତକାଞ୍ଚନବତ୍ ତେଜସ୍ୱୀ ସେହି ସନ୍ନ୍ୟାସୀ ଅତ୍ୟନ୍ତ ଓଜସ୍ୱିନୀ ଭାଷାରେ ଶାସ୍ତ୍ରପୁରାଣ ଉଦ୍ଧୃତି କରି ଅସ୍ପୃଶ୍ୟତା ଧର୍ମସମ୍ମତ ବୋଲି ପ୍ରତିପାଦନ କଲେ। ତାଙ୍କ ଭାଷଣ ପରେ ତପଃରତ, କ୍ଷୀଣଦେହା, ଆଜାନୁଲମ୍ବିତ ଭୁଜ, ଦୀର୍ଘନାସା ମହାତ୍ମା ଗାନ୍ଧୀଙ୍କର ଅତ୍ୟନ୍ତ ଧୀର ଶାନ୍ତ ଶୈଳୀ ବକ୍ତୃତା ଫିକା ହୋଇଯିବାଟା ହିଁ ସ୍ୱାଭାବିକ। ମାତ୍ର 'ସତ୍ୟମେବ ଜୟତେ ନାନୃତଂ' ଗାନ୍ଧିଜୀ ଅତ୍ୟନ୍ତ ଧୀର ଅଥଚ ଦୃଢ଼ ସ୍ୱରରେ ସଂକ୍ଷେପରେ କହିଲେ- 'ଅସ୍ପୃଶ୍ୟତା ମାନବର ଧର୍ମ ହୋଇ ନ ପାରେ। ଏହା ହିନ୍ଦୁଶାସ୍ତ୍ରସମ୍ମତ ଆଚରଣ ନୁହେଁ। ଯଦି ହିନ୍ଦୁ ଧର୍ମଶାସ୍ତ୍ର ଏହି ପାପକୁ ଅନୁମୋଦନ କରୁଥାଏ ତେବେ ମାନବିକତା ଦୃଷ୍ଟିରୁ ହିନ୍ଦୁ ଧର୍ମର ସେ ଶାସ୍ତ୍ରବଚନ ମୁଁ ମାନିବି ନାହିଁ, ତାଙ୍କ ଭାଷଣ ପରେ ମହାତ୍ମାଗାନ୍ଧୀଙ୍କ ଜୟଧ୍ୱନିରେ ସେ ସ୍ଥାନ ପ୍ରକମ୍ପିତ ହେଲା।

ସନ୍ଧ୍ୟାବେଳେ ରାମଚନ୍ଦ୍ରଭବନରେ ମହିଳା ସଭାରେ ଭାଷଣ ଦେଇ ସେମାନଙ୍କଠାରୁ କିଛି ଅଳଙ୍କାର ସଂଗ୍ରହ କରି ଗାନ୍ଧିଜୀ ଶ୍ରୀ ଭିକାରୀ ଚରଣ ପଟ୍ଟନାୟକଙ୍କ କୁଟୀରଶିଳ୍ପ ଅନୁଷ୍ଠାନ ଦେଖିବାକୁ ଗଲେ ଏବଂ ଭିଡ଼ରୁ ରକ୍ଷା ପାଇବା ପାଇଁ ତାଙ୍କରି ଘର ପଛପଟ ଦ୍ୱାର ବାଟେ ବାହାରି ମଠସାହି ବାଟେ ଷ୍ଟେସନକୁ ଚାଲିକରି ଗଲେ। ସେଠାରୁ ଟ୍ରେନ୍‌ରେ ପାଟନା ଯାଇ ସେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକରେ ଯୋଗଦେବା ସ୍ଥିର ହୋଇଥାଏ। ଗଲାବେଳେ ଆମ ମୁଣ୍ଡ ଥାପୁଡ଼େଇ ଆଶ୍ୱାସନା ଦେଇଗଲେ - ମୁଁ ଆସିବି।

ସେ ଆସିଲେ। ବୈରୀ ଷ୍ଟେସନରେ ସେଦିନ ଡାକଗାଡ଼ି ଅଟକିଲା। ଗାଡ଼ିରୁ ଓହ୍ଲାଇ ସେ ଚମ୍ପାପୁର ହାଟ ଆଶ୍ରମକୁ ଗଲେ। ସେଠାରୁ ପୁଣି ପଦଯାତ୍ରା ଆରମ୍ଭ ହେଲା। ଚମ୍ପାପୁର ହାଟ ଆଶ୍ରମରେ ଶ୍ରୀ ଗୋବିନ୍ଦ ମିଶ୍ର ଗୋଟିଏ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ କରିଥିଲେ। ତାହାକୁ ଲକ୍ଷ୍ୟ କରି ସେ ସୂଚାଇଲେ ଯେ ଦେଶ ସେବକ ବା ଗ୍ରାମସେବକର ଡାକ୍ତରଖାନା କରାଇ ବା କୋଠାଘର ତୋଳାଇ ହଜାର ହଜାର ରୋଗୀଙ୍କୁ ଔଷଧ ଦେବାଟା

ଲକ୍ଷ୍ୟ ହେବା ଉଚିତ୍ ନୁହେଁ । ନିଜେ କୋଠାଘର ଛାଡ଼ି ଚାଳଘରେ ରହି ଗାଁଲୋକଙ୍କୁ ସଫାସୁତୁରା ରହିବା ଶିକ୍ଷା ଦେବା ଉଚିତ୍ ଏବଂ ରୋଗ କିପରି ଆଦୌ ନ ହେବ ସେହି ଶିକ୍ଷା ଲୋକଙ୍କୁ ଦେବା ଉଚିତ୍ । ସେହିପରି ବହୁଗ୍ରାମ ଯିବା ବାଟରେ ସଡ଼କ କଡ଼ରେ କେହି ମଳତ୍ୟାଗ କରିଥିବାର ଦେଖି ସେ କହିଲେ– 'ଏହା ହେଉଛି ସାକ୍ଷାତ୍ ପାପ । ଏ ପାପକୁ ଏ ଦେଶରୁ ଦୂର କରିବାକୁ ହେବ ।' ଏହିପରି ଭାବରେ ଅସ୍ପୃଶ୍ୟତା, ଆଳସ୍ୟ, କର୍ମବିମୁଖତା, ଅପରିଚ୍ଛନ୍ନତା, ବ୍ୟସନ, ଅଳଂକାର ଓ ପର୍ଦ୍ଦାପ୍ରଥା ଆଦି ସଂସ୍କାରହୀନତା ଉପରେ ସେ ପ୍ରହାର ଦେଇ ଦେଇ ଚମ୍ପାପୁରହାଟ, ଭେଡ଼ା, ଲେଖନପୁର, ସତ୍ୟଭାମାପୁର, ବହୁଗ୍ରାମ, ଶିଶୁଆ, ଜିଗିନିପାଟପୁର, ନିଶ୍ଚିନ୍ତକୋଇଲି, କାକଟିଆ, ସଲାର, ବାଲିଆଭାଗବତପୁର, ତାରପୁର, ବାରିମୂଳ, ଇନ୍ଦୁପୁର, ଅନ୍ନ୍ୟାସୀପୁର, ବରୀ, ସାହସଗୋବିନ୍ଦପୁର, ପୁରୁଷୋତ୍ତମପୁର ଦେଇ ବୁଢ଼ାଘାଟରେ ପହଞ୍ଚିଲେ ।

ପଦଯାତ୍ରାରେ କେଉଁଠି ଆମ୍ବ ଚୋପା ପଡ଼ିଛି, କାହା ଗୋଡ଼ରେ କଣ୍ଟା ପଶିଛି, କାହାକୁ ଜ୍ୱର ହେଲାଣି, ଭାତ, ରୁଟି ଯଦି ବଳିଲା ତାର ଯଥାର୍ଥ ଉପଯୋଗ ହେଲା କି ନାହିଁ, ପାଇଖାନା ପାଇଁ ଖୋଳା ହୋଇଥିବା ଗାତ ରହଣୀ ଛାଡ଼ିବା ପୂର୍ବରୁ ପୋତା ହେଲାକି ନାହିଁ ଆଦି ଛୋଟ ଛୋଟ କଥା ସେ ତଦାରଖ କରନ୍ତି, ପରାମର୍ଶ ଦିଅନ୍ତି । ତାହା ସଙ୍ଗେ ସଙ୍ଗେ ସମଗ୍ର ଭାରତବର୍ଷ ମଧ୍ୟ ତାଙ୍କ ଆଖିରେ ନାଚୁଥାଏ । ବିହାରରେ ପ୍ରବଳ ଭୂମିକମ୍ପ ହୋଇ ତାହା ଧ୍ୱଂସ ସ୍ତୂପରେ ପରିଣତ ହୋଇଥାଏ । ବଞ୍ଚିଥିବା ଲୋକଙ୍କର ପୁନର୍ବସତି ଓ ଗାଁଗୁଡ଼ିକର ପୁନର୍ରଚନା ବିଷୟରେ ସେ ଆଲୋଚନା କରୁଥାନ୍ତି ସ୍ୱିଜରଲ୍ୟାଣ୍ଡର ଇଞ୍ଜିନିୟର ପିୟେର ସେରିସୋଲଙ୍କ ସାଙ୍ଗରେ । ସେରିସୋଲ ନିଜେ ବିହାର ଯାଇ ବାସ୍ତବ ସ୍ଥିତି ଦେଖି ଆସି ପୁଣି ସେଠାକୁ ଯାଇ ପୁନର୍ରଚନା କାମ କରିବା କଥା ଥାଏ । ସେ ଗାନ୍ଧିଜୀଙ୍କ ପରାମର୍ଶ ଲୋଡୁଥାନ୍ତି । ମିନୁ ମାଶାନୀ ଆସିଥାନ୍ତି ନବଗଠିତ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଜଣାଇବାକୁ । ଦେଶର ନାନା ସମସ୍ୟା ଘେନି ଯେଉଁ ଚିଠି ପ୍ରତିଦିନ ଆସି ଗଦା ହେଉଥାଏ 'ହରିଜନ' ପତ୍ରିକାରେ ତାର ସମାଧାନ ଲେଖିବାକୁ ସେ କାଗଜ କଲମ ଧରି ବସନ୍ତି । ଡାହାଣ ହାତରେ ଲେଖି ଲେଖି ହାତ ନ ଚଳିଲେ ବାଆଁ ହାତରେ ଲେଖା ଆରମ୍ଭ ହୁଏ । ଏହିପରି ଭାବରେ ସେହି ବିଚିତ୍ରକର୍ମା ପୁରୁଷ ଲୋକ ଅମଡ଼ା ମାଡ଼ି ଆଗେଇ ଚାଲିଥାନ୍ତି ଚରୈବେତି ଚରୈବେତି ମନ୍ତ୍ରକୁ ସାର୍ଥକ କରି ।

ଯେଉଁଦିନ ବୁଢ଼ାଘାଟରେ ଯାତ୍ରୀଦଳ ପହଞ୍ଚିଲେ ସେଦିନ ସନ୍ଧ୍ୟା ସଭା ପରେ ଉପରଓଳିଆ ବର୍ଷା ଆରମ୍ଭ ହେଲା । ପାଖରେ ତ ଗାଁ ଗଣ୍ଡା କିଛି ନଥାଏ । ଗୋଟିଏ ସ୍ଥାନରେ ଭଉଣୀମାନେ ଖୁନ୍ଦି ହୋଇ ବସିବସି ରାତି କଟାଇଲେ । ପୁରୁଷମାନେ ଆଶ୍ରୟ

ନେଲେ ଘାଟିଆର ତାଟିଘରେ। ରାତିସାରା ବସି ବସି ଗୀତ ବୋଲି କବିତା ଆବୃତ୍ତି କରୁ କରୁ ସେମାନେ ହଠାତ୍ ଉପଲବ୍ଧି କଲେ ଯେ ସମଗ୍ର ଭାରତର ସବୁ ପ୍ରଦେଶର ଅଧିବାସୀ ସେହି ତାଟି ଘରେ ଏକତ୍ର ହୋଇଛନ୍ତି।

ବୁଢ଼ାଘାଟରୁ ପ୍ରତ୍ୟେକ ଦିନ ଉପରଓଳିଆ ବର୍ଷା ଆରମ୍ଭ ହୋଇ ଗଲାରୁ ଗାନ୍ଧିଜୀ ତୋଡ଼ାଙ୍ଗ ରହଣୀରୁ ସିଧା ଭଦ୍ରକ ବାଳାଶ୍ରମକୁ ଯାଇ ସେଠାରୁ ଓ୍ୱାର୍ଦ୍ଧା ଫେରିଗଲେ। ଭଦ୍ରକ ଛାଡ଼ିବା ଆଗରୁ ଗୋଟିଏ କର୍ମୀସମ୍ମିଳନୀରେ ଭାଷଣ ଦେଇ ସେ କହିଲେ ଯେ ବର୍ତ୍ତମାନ ସବୁ କର୍ମୀ ଗାଁ ଗହଳକୁ ଚାଲିଯିବା ଦରକାର। କେହି ଜଣେ ପଚାରିଲେ – ଗାଁକୁ ଯାଇ ଆମେ କଣ କରିବୁ ? ଜବାବରେ ଗାନ୍ଧିଜୀ ଗୋଟିଏ କାହାଣୀ କହିଲେ – ଗୋଟିଏ ଗର୍ଭବତୀ ସିଂହୀ ମେଣ୍ଢା ଶୀକାର କରିବା ପାଇଁ ମେଣ୍ଢାପଲ ଉପରକୁ କୁଦା ମାରିଲାବେଳେ ଗୋଟିଏ ଛୁଆ ପ୍ରସବ କରି ପକାଇଲା। ସେ ସିଂହଛୁଆଟି ପିଲାଦିନୁ ମେଣ୍ଢାପଲରେ ବଢ଼ି ମେଣ୍ଢାଙ୍କ ପରି ବାଘ ସିଂହ ଦେଖିଲେ ଡରିକରି ପଳାଏ। ଦିନେ ଗୋଟିଏ ସିଂହ ସେହି ମେଣ୍ଢାପଲକୁ ଆକ୍ରମଣ କଲାବେଳେ ଦେଖିଲା ଯେ ଗୋଟାଏ ସିଂହଛୁଆ ତାକୁ ଦେଖି ମେଣ୍ଢାଙ୍କ ସାଙ୍ଗରେ ଡରି ପଳାଉଛି। ସିଂହ ଆଶ୍ଚର୍ଯ୍ୟ ହୋଇ ସେହି ସିଂହ ଛୁଆର କାନ ଧରି ତାକୁ ଗୋଟାଏ ଝରଣା ପାଖକୁ ନେଇଯାଇ କହିଲା – ପାଣିରେ ଯେଉଁ ପ୍ରତିବିମ୍ବ ତୋର ଓ ମୋର ପଡ଼ିଛି ତାକୁ ଦେଖ୍ । ତୁ ମଧ୍ୟ ମୋ ପରି ସିଂହ। ତୁ ମୋତେ ଡରୁଛୁ କାହିଁକି ? ସିଂହଛୁଆ ନିଜକୁ ଚିହ୍ନିପାରି ସିଂହ ସାଙ୍ଗରେ ଚାଲିଗଲା। ତୁମେମାନେ ଗାଁକୁ ଯାଇ ଗାଁ ଲୋକଙ୍କ ମଧ୍ୟରେ ଯେଉଁ ସିଂହ ଶୋଇରହିଛି ସେହି ସୁପ୍ତ ସିଂହକୁ ଜାଗ୍ରତ କରିବା କାମ କରିବ। ଫଳରେ ଗ୍ରାମବାସୀ ନିର୍ଭୟ ହେବେ, ଜାଗ୍ରତ ହେବେ।

ଭଦ୍ରକ ଷ୍ଟେସନରେ ରେଳଗାଡ଼ିରେ ବସି ଗାନ୍ଧିଜୀ ଆମଠାରୁ ବିଦାୟ ନେଲେ। ଏଡ଼େ ବଡ଼ ମହାପୁରୁଷ, ବିଶ୍ୱ ଯାହାକୁ ଯୁଗସ୍ରଷ୍ଟା କହୁଛି – ସେହି ଲୋକଟି ସାଙ୍ଗରେ ଆମ ପରି ତୁଚ୍ଛ ଜନ ଯେ ବାଟ ଚାଲିଥିଲୁ, କଥା କହିଥିଲୁ, ହସିଥିଲୁ, ବସିଥିଲୁ, ତା ପାଖରେ ମନ କଥା କହିବାରୁ ସୁଯୋଗ ପାଇଥିଲୁ, ଅବୋଧ ଶିଶୁ ପରି ତାର ସେବାଯତ୍ନ ମଧ୍ୟ ଗ୍ରହଣ କରିଥିଲୁ, ଆଜି ଜୀବନର ସାୟାହ୍ନରେ ସେ କଥା ମନେ ପକେଇଲା ବେଳକୁ ମନରେ ଯେଉଁ ଉଚ୍ଚାଭିଳାଷ ଦେଖା ଦେଉଛି ତାହାକୁ ରବୀନ୍ଦ୍ରନାଥଙ୍କ ଭାଷାରେ ହିଁ ଆବୃତ୍ତି କରିବାକୁ ମନ ଡାକେ।

ଓହେ ସୁନ୍ଦର !
ଏକଦା କି ଜାନି କୋନ୍ ପୁଣ୍ୟେର ଫଲେ

ଆମି ବନଫୁଲ୍ ତୋମାର୍ ମାଲାୟ
ଛିଲେମ୍ ତୋମାର୍ ଗଲେ
ତଖନ ପ୍ରଭାତେ ପ୍ରଥମ୍ ତରୁନ୍ ଆଲୋ
ଘୁମ୍ ଭାଁଗା ଚୋଖେ ଧରାର ଲେଗେଛେ ଭାଲୋ
ବିଭାସେ ଲଲିତେ ନବୀନେର୍ ବୀନା
ବେଜେଛେ ଜଲେସ୍ଥଲେ ।
ଆଜି ଏ କ୍ଲାନ୍ତ ଦିବସେର ଅବସାନେ
ଲୁପ୍ତ ଆଲୋୟ ପାଖୀର ସୁପ୍ତଗାନେ
ଶ୍ରାନ୍ତ ଆବେଶେ ଯଦି ଅବଶେଷେ
ଝରେ ଫୁଲ ଧରା ତଲେ
ସନ୍ଧ୍ୟା ବାତାସେ ଅନ୍ଧକାରେର୍ ପାରେ
ପିଛେ ପିଛେ ତାର୍ ଉପୟେ ଚଲୁକ୍ ତାରେ
ଧୂଲାୟ ଧୂଲାୟ ଦୀର୍ଣ୍ଣ ଜୀର୍ଣ୍ଣ
ନା ହୋକ୍ ସେ ପଲେ ପଲେ ।

ମାତ୍ର ଚିତ୍ତଶୁଦ୍ଧିର ସାଧନା, ସମାଜ ପରିବର୍ତ୍ତନ ପାଇଁ ଆପ୍ରାଣ ଉଦ୍ୟମ ସର୍ବୋପରି ହରି କୃପା ବିନା ଏ ଉଚ୍ଚଭିଳାଷ ପୂରଣ ହେବା ସମ୍ଭବ କି ?

## ଆଲିମାଲିକା

ବିନୋବାଜୀଙ୍କର ଗୋଟିଏ ଜୀବନ ଦର୍ଶନ ମୋତେ ଗଭୀର ଭାବରେ ପ୍ରଭାବିତ କଲା ଏବଂ ଗାନ୍ଧି-ଜୀବନ ଦର୍ଶନକୁ ସହଜ ବୋଧଗମ୍ୟ କରାଇ ଦେଲା । ନାରୀ ନରକର ଦ୍ୱାର, କାମିନୀ କାଞ୍ଚନ ପୁରୁଷକୁ ପତନ ଆଡ଼କୁ ନେଇ ଯାଆନ୍ତି, ମୋକ୍ଷକାମୀ ବା ଆଧ୍ୟାତ୍ମିକ ସାଧନାରେ ବ୍ରତୀ ପୁରୁଷମାନେ ନାରୀଠାରୁ ଦୂରରେ ରହିବା ଉଚିତ୍ ବୋଲି ଆଧ୍ୟାତ୍ମିକ ସାଧନା କ୍ଷେତ୍ରରେ ଯେଉଁ ଆପ୍ତବାକ୍ୟମାନ ରହିଛି ତାହା ନାରୀ ମନରେ ସୁଦ୍ଧା ନିଜ ବାବଦରେ ଘୃଣା ସୃଷ୍ଟି କରୁଥିବାର ମୁଁ ଅନୁଭବ କରିଛି ଏବଂ ନାରୀ ଜାତି ମଧ୍ୟରେ ସୁଦ୍ଧା ଏ ବାବଦରେ ଏକ ଅପରକୁ ଅପରାଧୀ କରିବାର ବୃତ୍ତି ଦେଖିଛି । ଗାନ୍ଧିଜୀ ଦୃଢ଼ ଭାବରେ ଏହି ବିଚାର ଉପରେ କୁଠାରଘାତ କରିଥିଲେ, ଉଦାହରଣ ସ୍ୱରୂପ ଲକ୍ଷ୍ମଣଙ୍କର ବ୍ରହ୍ମଚର୍ଯ୍ୟ ଯେତେବେଳେ 'ନାହଂ ଜାନାମି କେୟୁରେ ନାହଂ ଜାନାମି କୁଣ୍ଡଲେ ନୂପୁରେ ତ୍ୱଭିଜାନାମି ନିତ୍ୟଂ ପାଦାର୍ଭି ବନ୍ଦନାତ୍'ଉଚ୍ଚ ପ୍ରଶଂସିତ ହେଉଥିଲା ସେତେବେଳେ ସେ ସେପ୍ରକାର ବ୍ରହ୍ମଚର୍ଯ୍ୟକୁ ପୂରାପୂରି ନାପସନ୍ଦ କରିଥିଲେ । ହାତ ପୋଡ଼ିଯିବ ବୋଲି ନିଆଁ

ପାଖରୁ ଦୂରେଇ ରହିବା ଅପେକ୍ଷା ନିଆଁକୁ ଯଥାଯଥ ଭାବରେ ବ୍ୟବହାର କରି ଶିଖିବା ହିଁ ଉଚିତ। ଏଇଟା ଥିଲା ତାଙ୍କର ମତ। ସେଇଥିପାଇଁ ତାଙ୍କ ନେତୃତ୍ୱରେ ଏ ଦେଶରେ ଅଭୂତପୂର୍ବ ନାରୀ ଜାଗରଣ ହୋଇପାରିଲା।

ବିନୋବାଜୀ ଆଉ ଗୋଟିଏ ବିଚାର ଦର୍ଶନରେ ବିପ୍ଳବ ଘଟାଇଲେ। ସ୍ତ୍ରୀ, ପୁତ୍ର ପରିବାର ପ୍ରତି ସ୍ନେହ ମମତା ବା ଆସକ୍ତି ଓ ଧନାଗମ ତୃଷ୍ଣାରୁ ମୁକ୍ତ ନ ହେଲେ ଆଧ୍ୟାତ୍ମିକ ସାଧନା କରି ହେବନାହିଁ। ସନ୍ତାନ, ପରିବାର ପ୍ରତି ମଣିଷର ସ୍ନେହ ମମତାରୁ ନିଜକୁ ଓହରେଇ ଆଣି ବୈରାଗୀ ନ ହେଲେ ମୁକ୍ତି ମିଳିବ ନାହିଁ - ଏଇଟା ଗୋଟାଏ ଜୀବନ ଦର୍ଶନ। ଅବଶ୍ୟ ରବୀନ୍ଦ୍ର ନାଥ କହିଛନ୍ତି ଯେ, 'ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର୍ ନହେ, ଅସଂଖ୍ୟ ବନ୍ଧନ୍ ମାଝେ ମହାନନ୍ଦମୟ ଲଭିବ ମୁକ୍ତି ସ୍ୱାଦ୍-" କିନ୍ତୁ ବିନୋବାଜୀ ଏ ବିଚାରକୁ ଆଉ ଗୋଟାଏ ସ୍ତରକୁ ନେଇଯାଇ କହିଲେ ଯେ ସନ୍ତାନ ଓ ପରିବାର ପ୍ରତି ତୁମର ଯେଉଁ ସ୍ନେହ ଓ ଆସକ୍ତି ରହିଛି ତାକୁ ଆହୁରି ପ୍ରସାରିତ କରିଦିଅ। ସ୍ନେହର ପରିସରକୁ ବ୍ୟାପକ କରିବାରେ ହିଁ ମଣିଷ ଜୀବନର ସାର୍ଥକତା ନିହିତ। ସ୍ନେହ ଯେତେ ବ୍ୟାପକ ହେବ, ଆନନ୍ଦ ସେତେ ସହଜଲବ୍ଧ ହେବ। ଧନ ସଂଗ୍ରହ କରିବାର ଯେଉଁ ସାମର୍ଥ୍ୟ ଓ ବାସନା ତୁମ ମନରେ ରହିଛି, ତାକୁ ପରିବାରର ସ୍ୱାର୍ଥ ସାଧନାରେ ଆବଦ୍ଧ ନ ରଖି ସମାଜର ନିଜ ଗାଁର ସ୍ୱାର୍ଥ ସାଧନାରେ ନିୟୋଜିତ କର। ଅବଶ୍ୟ ଏ ସବୁ ତତ୍ତ୍ୱ ବୁଝାଇବାର ମାଧ୍ୟମ ଥିଲା ଗ୍ରାମଦାନ। ଋଷିଆରେ ସାମୁହିକ collective farming ର ପ୍ରଚଳନ ଦ୍ୱାରା ଉତ୍ପାଦନ ବୃଦ୍ଧି ଆଶାନୁରୂପ ନ ହେବାରୁ ଚାଷୀକୁ ବ୍ୟକ୍ତିଗତ ଭାବରେ ଚାଷ କରିବା ପାଇଁ ଅଳ୍ପ ଅଳ୍ପ ଜମି ଦିଆଯିବା ଉଦାହରଣ ଦର୍ଶାଇ ନିଜ ସନ୍ତାନ, ନିଜ ପରିବାର ପାଇଁ ଖଟିବା ପଛରେ ଯେ ଗୋଟାଏ ପ୍ରକାର ପ୍ରେରଣା ରହିଛି ତାହା ରକ୍ଷା କରିବାକୁ ଗ୍ରାମଦାନରେ ଜମିର ମାଲିକାନା ସ୍ୱତ୍ୱ ଗ୍ରାମସଭା ହାତରେ ଦେଇ କିଛି ଜମି ବ୍ୟକ୍ତିଗତ ରୁଚି ଅନୁସାରେ (ଅବଶ୍ୟ ଯେଉଁ ରୁଚି ସମୂହ ସ୍ୱାର୍ଥର ବିରୋଧୀ ହୋଇ ନ ଥିବ) ଏବଂ କିଛି ଜମି ସମବାୟ ପଦ୍ଧତିରେ ଚାଷ କରିବା ବିଚାର ସେ ଦେଶ ଆଗରେ ଥୋଇଥିଲେ। ଏଇ ସଂଦର୍ଭରେ ସେ ସ୍ନେହ ମମତା ଓ ଧନାରାମ ତୃଷ୍ଣାକୁ ପ୍ରସାରିତ କରି ମଣିଷକୁ 'ବିଶ୍ୱମୈତ୍ରୀ' ଆଡ଼କୁ ବା ନିଜକୁ ସମସ୍ତଙ୍କ ମଧ୍ୟରେ ଦେଖିବା ବୃତ୍ତି ଆଡ଼କୁ ଆଗେଇ ନେବାକୁ ପ୍ରରୋଚିତ କରୁଥିଲେ। ଏହି ସୁନ୍ଦର ସଜୀବ ବିଶ୍ୱକୁ ମାୟା ମାୟା କହି ମିଥ୍ୟା ପ୍ରତିପନ୍ନ କରାଇବା - ଜୀବନ ଦର୍ଶନକୁ ମୋ ପରି ଜଣେ ସନ୍ତାନବତୀ ଅଜ୍ଞାନୀ ସ୍ତ୍ରୀ ପକ୍ଷରେ ଗ୍ରହଣ କରିବା ବଡ଼ କଷ୍ଟସାଧ୍ୟ ହେଉଥିଲା। ସ୍ନେହକୁ ପ୍ରସାରିତ କରିବାର ବିନୋବା ଜୀବନ ଦର୍ଶନ ମୋତେ ସହଜ ବୋଧ ହେଲା। ମୁଁ ମୋର ବ୍ୟକ୍ତିଗତ ଅନୁଭୂତିକୁ ମନେ ପକାଇଲି। ମୋର ପ୍ରଥମ ସନ୍ତାନ ହେବା ପରେ

ମୋର ମନେ ହେଲା ମୋର ଭଲ ପାଇବାର ପୁଞ୍ଜି ନିଃଶେଷ ହୋଇଗଲା । ଯେତେବେଳେ ମୋର ଦ୍ୱିତୀୟ ଥର ସନ୍ତାନ ସମ୍ଭାବନା ହେଲା, ମୋ ମନରେ ସବୁଠାରୁ ବଡ଼ ଦ୍ୱନ୍ଦ୍ୱ ସୃଷ୍ଟି ହେଲା ଯେ ମୁଁ ମୋର ପ୍ରଥମ ସନ୍ତାନକୁ ତ ସବୁ ସ୍ନେହ ଦେଇସାରିଛି, ଏହାପାଇଁ ତ ମୋ ପାଖରେ ଆଉ କିଛି ନାହିଁ, ମୁଁ ଏହାକୁ ବଞ୍ଚିତ କରି କେତେ ବଡ଼ ପାପ ନ କରିବି ! ମାତ୍ର ଦ୍ୱିତୀୟ ସନ୍ତାନ ଭୂମିଷ୍ଠ ହେବା ମାତ୍ରେ ମୋର ପ୍ରଥମ ସନ୍ତାନକୁ ମୁଁ ଯେତିକି ଭଲ ପାଉଥିଲି ଏହାକୁ ମଧ୍ୟ ସେତିକି ଭଲ ପାଇଲି । ଏହା ଅନୁଭବ କରି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲି । ସ୍ନେହର ପରିସର ବଢ଼େଇ ବଢ଼େଇ ସମଗ୍ର ବିଶ୍ୱକୁ ଭଲ ପାଇବାର ଏ ଯେଉଁ ପଦ୍ଧତି ବିନୋବାଜୀ ବତେଇଲେ ତାହା ସହିତ ମୋର ସେହି ସନ୍ତାନ ସ୍ନେହ ଦ୍ୱନ୍ଦ୍ୱର ଅନୁବନ୍ଧ କରି ମୁଁ ଉପଲବ୍ଧି କଲି ଯେ ମଣିଷ ମନରେ ଏତେ ସ୍ନେହ ପୂରି ରହିଛି ଯେ ସମଗ୍ର ବିଶ୍ୱକୁ ଭଲ ପାଇ ସାରି ସୁଦ୍ଧା ସେ ସ୍ନେହ ଶେଷ ହେବନାହିଁ । ସ୍ନେହର ପରିସର ବଢ଼ାଇ ସଂକୀର୍ଣ୍ଣ ସ୍ୱାର୍ଥ ପାଖରୁ ମୁକ୍ତ ହେବାର ହିଁ ସାଧନାରୁ ମୋତେ ବହୁତ ଆଶ୍ୱାସନା ମିଳିଲା ।

*(“ଅମୃତ ଅନୁଭବ”, ପୃଷ୍ଠା ୨୧୦-୨୨୦, ପୃଷ୍ଠା ୩୪୪-୩୪୫)*

* * *

# ଅନ୍ନପୂର୍ଣ୍ଣା ଦାସ

**(୧୯୨୨-୨୦୦୫)**

ଅନ୍ନପୂର୍ଣ୍ଣା ଦାସ ୨୨ ଜୁନ୍ ୧୯୨୨ ମସିହାରେ ଭଦ୍ରକର କୁଆଁସରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କର ନାମ ରାଧାକୃଷ୍ଣ ଦାସ ଏବଂ ମାତାଙ୍କ ନାମ ସାବିତ୍ରୀ ଦେବୀ। ତାଙ୍କ ପିତା ଓଡ଼ିଶାର ବିଦ୍ୟାଳୟଗୁଡ଼ିକର ସବ୍-ଇନ୍ସପେକ୍ଟର ଭାବରେ କାର୍ଯ୍ୟ କରୁଥିଲେ। ଅନ୍ନପୂର୍ଣ୍ଣା ଦାସ ରେଭେନ୍ସା ବାଳିକା ବିଦ୍ୟାଳୟରେ ପାଠ ପଢ଼ିଥିଲେ ଏବଂ ରେଭେନ୍ସା ମହାବିଦ୍ୟାଳୟରୁ ୧୯୪୭ ମସିହାରେ ଓଡ଼ିଆ ସମ୍ମାନ ସହ ସ୍ନାତକ ହାସଲ କରିଥିଲେ। ସେ ପ୍ରଥମେ ୧୯୩୪ ମସିହାରେ ମହାତ୍ମା ଗାନ୍ଧୀଙ୍କୁ ଓଡ଼ିଶାରେ ହରିଜନ ପଦଯାତ୍ରା ସମୟରେ ଦେଖିଥିଲେ। ସେହି ସମୟରୁ ସେ ତାଙ୍କ ଆଦର୍ଶ ପ୍ରତି ଆକର୍ଷିତ ହୋଇଥିଲେ। ସେ ୧୯୬୦ ମସିହାରୁ ୧୯୬୯ ପର୍ଯ୍ୟନ୍ତ  କସ୍ତୁରବା ଗାନ୍ଧୀ ମେମୋରିଆଲ ଟ୍ରଷ୍ଟରେ କାର୍ଯ୍ୟ କରିଥିଲେ। ସେ ଭୂଦାନ ଆନ୍ଦୋଳନରେ ମଧ୍ୟ ଭାଗ ନେଇ ସାରା ଭାରତ ଭ୍ରମଣ କରିଥିଲେ।

ଅନ୍ନପୂର୍ଣ୍ଣା ଦାସ ସାମାଜିକ ପ୍ରସଙ୍ଗରେ ଏବଂ ଗାନ୍ଧୀ ଏବଂ ବିନୋବାଙ୍କ ପ୍ରାସଙ୍ଗିକତା ଉପରେ ପ୍ରଭାବଶାଳୀ ପ୍ରବନ୍ଧମାନ ଲେଖିଛନ୍ତି। ସେ ଗୋପବନ୍ଧୁ ଚୌଧୁରୀ, ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନୀ ମଧ୍ୟ ଲେଖିଛନ୍ତି। ଅନ୍ନପୂର୍ଣ୍ଣା ଦାସଙ୍କ ଆତ୍ମଜୀବନୀଖଣ୍ଡ, "ମୋ ପିଲାଦିନ ଆଖିରେ ଭଦ୍ରକ" "ଶିଖା" ପତ୍ରିକାରେ ୨୦୦୫ ମସିହାରେ ପ୍ରକାଶିତ ହୋଇଥିଲା। ଏଥିରେ ସେ ସ୍ୱାଧୀନତା ଆନ୍ଦୋଳନ ସମୟରେ ତାଙ୍କ ଗାଁରେ ହେଇଥିବା ପରିବର୍ତ୍ତନ ସବୁର ଉଲ୍ଲେଖ କରିଛନ୍ତି। ତା ଛଡ଼ା ଜଣେ ପାଠକ ତାଙ୍କ ଦୃଷ୍ଟିରେ ଭଦ୍ରକର ଅତୀତ ଦିନର ସୁନ୍ଦର ଝଲକ ପାଇଥାଏ। ଏଥିସହ ସମାଜରେ ପ୍ରଚଳିତ ଜାତି ଏବଂ ଲିଙ୍ଗ ଉପରେ ଆଧାରିତ ଭେଦଭାବର ଉଲ୍ଲେଖ ମଧ୍ୟ ଏଥିରେ ରହିଛି।

ଅନ୍ନପୂର୍ଣ୍ଣା ଦାସ ସେହି କାଳଖଣ୍ଡର ନାରୀ ଥିଲେ ଯେତେବେଳେ ଭାରତରେ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଗଠନ ତଥା ନୂତନ ସାମାଜିକ ଶୃଙ୍ଖଳା ସହିତ ପରୀକ୍ଷଣ କରାଯାଉଥିଲା। ତାଙ୍କ ସ୍ମୃତିଲେଖ ଦର୍ଶାଏ ଯେ ତାଙ୍କର ଚିନ୍ତାଧାରା ଓ ଚେତନା ରାଜନୀତିର ବଳୟ ମଧ୍ୟରେ ସୀମିତ ନଥିଲା। ତାଙ୍କର ଆଲେଖ୍ୟ ତାଙ୍କୁ ମଣିଷର ଅନ୍ତର୍ନିହିତ ସମ୍ମାନ ଉପରେ ଦୃଢ଼ ବିଶ୍ୱାସ ରଖୁଥିବା, ଜଣେ ସ୍ୱତନ୍ତ୍ର ଦୃଷ୍ଟିକୋଣ ଥିବା ବ୍ୟକ୍ତି ଭାବେ ଦର୍ଶାଏ।

# ମୋ ପିଲାଦିନର ଆଖିରେ ଭଦ୍ରକ

ରାଜା ବାଦଶାହାଙ୍କ ଠାରୁ ଆରମ୍ଭ କରି ଦୁଃଖରଙ୍କୀ ଯାଏ ଯାହାକୁ ପଚାରିବେ ତୁମ ଜୀବନର ସବୁଠାରୁ ସୁଖମୟ ସମୟ କେବେ ଥିଲା, ସେ କହିବେ ପିଲାବେଳ। ଅଶୀବର୍ଷ ପାରି ହୋଇଗଲେ ଯେତେବେଳେ ସ୍ମରଣ ଶକ୍ତି କମି ଆସେ, ସେତେବେଳେ ମଣିଷ ତା ଜୀବନର ବହୁକଥା ସାଙ୍ଗରେ ମୂଲ୍ୟବାନ ଓ ଆନନ୍ଦଦାୟକ ଘଟଣା କଥା ଭୁଲିଯାଏ। ମାତ୍ର ପିଲାଦିନ କଥା ଭୁଲିପାରେ ନାହିଁ। ସେ ସମୟର ମଧୁର ସ୍ମୃତି ଟିକିନିଖି କରି ତା ମନରେ ଛାପି ହୋଇ ରହିଥାଏ। ଜୀବନ ଆରମ୍ଭର ପ୍ରଥମ ପୃଷ୍ଠା। ଅନ୍ୟ କୌଣସି ଗାର ବା ଲେଖା ସେଥିରେ ନ ଥାଏ। ନିର୍ମଳ ପୃଷ୍ଠାରେ ଅଲିଭା ଗାର ପରି ବାଲ୍ୟକାଳରେ ଏଇ ଅନୁଭୂତି। ପବିତ୍ର ନିର୍ମଳ ଛଳନା ବିହୀନ, କୁଟିଳତା ଶୂନ୍ୟ। ନିଜ ବିଷୟରେ ଭାବିବାର କିଛି ନାହିଁ। ଦାୟିତ୍ୱର ନାମଗନ୍ଧ ନାହିଁ। ପର ଆପଣା ଭେଦ ନାହିଁ। ପାପପୁଣ୍ୟର ଝାମେଲା ନାହିଁ। ଅପମାନ ଅସମ୍ମାନକୁ ମନେ ରଖିବାର ଅବସର ନାହିଁ। ନୂଆ ଝରିଆସୁଥିବା ସରୁ ସରଳ ଝରଣାଟିଏ ପରି ଆନନ୍ଦ ଛନ୍ଦମୟ ଜୀବନ। ଜୀବନର ନାନା ଅନୁଭୂତି ଭରା ଗହନ ପଥରେ ବାଲ୍ୟକାଳର ଏଇ ଆନନ୍ଦମୟ ଅଭୁଲା ସ୍ମୃତି ମଣିଷର ଶେଷ ମୁହୂର୍ତ୍ତଯାଏ ପାଥେୟ ହୋଇ ରହେ। କାମ ଭିତରେ ଥକି ଗଲେ, ରୋଗ କଷ୍ଟରେ ଶ୍ରାନ୍ତ ହୋଇଗଲେ, ବିପଦର ଝଞ୍ଜାରେ ପୋତି ହୋଇ ଯାଉଥିବା ବେଳେ ପିଲାବେଳର ମଧୁର ସ୍ମୃତିର ସ୍ମରଣ ମଧୁମଳୟର ସ୍ପର୍ଶ ପରି ଲାଗେ। 'ଚରୈବେତି, ଚରୈବେତି'। ଜୀବନର କଷଟି ପଥରରେ ଘର୍ଷଣର ଯାତନା ସହୁଥିବା ବେଳେ ଏଇ ସ୍ମୃତି ଚନ୍ଦନର ଶୀତଳ ପ୍ରଲେପ ପରି ଲାଗେ। ଜୀବନଯାତ୍ରାର କ୍ଲାନ୍ତିରେ ଯେତେବେଳେ ମଣିଷ ଅବଶ ହୋଇପଡ଼େ ଏଇ ବାଲ୍ୟ ତଥା କିଶୋର ବୟସର ମଧୁର ସ୍ମୃତି ମନେ ପଡ଼ି ତାକୁ ଆଗେଇ ଯିବାର ପ୍ରେରଣା ଦିଏ। ସ୍ଥାନ, କାଳ, ପାତ୍ର ଏଇ ସ୍ମୃତି ପାଖରେ ହାର ମାନନ୍ତି। ପିଲାଙ୍କ ଆଖିରେ ସାଂସାରିକ କାରବାରର ଭିନ୍ନ ଭିନ୍ନ ରଙ୍ଗର କାଚଥିବା ଚଷମା ଲାଗି ନ ଥାଏ। ତେଣୁ ସେମାନେ ଯାହା ଦେଖନ୍ତି ସରଳ ମନର ସ୍ୱଚ୍ଛ କାଚର ଚଷମାରେ ହିଁ ଦେଖନ୍ତି। ଯାହା କହନ୍ତି ଅନାବିଳ ହୃଦୟର ସତ୍ୟ କଥା ହିଁ କହନ୍ତି। ମୁଁ ବି ସେଇ

ପିଲାବେଳର ସ୍ମୃତି ଓ ଦୃଷ୍ଟିଭଙ୍ଗୀକୁ ଆଖି ଆଗରେ ରଖି ପିଲାଦିନର ଭଦ୍ରକ କଥା ଅଳ୍ପ କିଛି କହିବାକୁ ଯାଉଛି।

୧୯୩୨ ମସିହା ଜାନୁୟାରୀ ୨୧ ତାରିଖରେ ବାପା ମାଆ ଓ ମୋ ଉପର ଭାଇ ପ୍ରଫୁଲ୍ଲ ଚନ୍ଦ୍ର ଦାସ ତଥା ସାନଭାଇ ଗିରୀଶ ଓ ନୀଳାଦ୍ରି ସହିତ ମୁଁ ଅନୁଗୁଳରୁ ଆସି ଭଦ୍ରକରେ ପହଞ୍ଚିଲି। କୁଆଁସରେ ବାପା ଆଗରୁ ଭଦ୍ରକରେ ଥିବାବେଳେ ଜାଗା କିଣି ଘର କରିଥିଲେ। ବାପା ଅନୁଗୁଳରେ ଶିକ୍ଷା ବିଭାଗର ଜିଲ୍ଲା ଇନ୍ସପେକ୍ଟର ଥିଲେ। ସେ ଆମକୁ ଭଦ୍ରକରେ ପହଞ୍ଚେଇ ପ୍ରଫୁଲ୍ଲଭାଇଙ୍କୁ ଭଦ୍ରକ ହାଇସ୍କୁଲରେ ଓ ମୋତେ ପୁରୁଣା ବଜାର ଫ୍ରେଜର ବାଳିକା ସ୍କୁଲରେ ନାମ ଲେଖାଇ ଭର୍ତ୍ତି କରି ଦେଇ ଅନୁଗୁଳକୁ ଫେରିଗଲେ। ଫେବୃୟାରୀ ୧୬ ତାରିଖରେ ସେ ଚାକିରିରୁ ଅବସର ପାଇ ଭଦ୍ରକକୁ ଆସିଲେ। ଆଉ ଖଞ୍ଜାଏ ଘର, ଅମାରଘର, ରୋଷେଇ ଘର, ଢେଙ୍କିଶାଳ ଗୁହାଳ ହେରିକା ତିଆରି କରେଇଲେ। ତଳି ପକ୍କା ଚାଳ ଛପର ମାଟିର ଆଟୁଘର। ବାପା ଅବସର ପରେ ମଧ୍ୟ ସ୍କୁଲମାନଙ୍କର ଉନ୍ନତି, ଶିକ୍ଷାର ପ୍ରସାର, ପିଲାଙ୍କୁ ଶିକ୍ଷାରେ ସାହାଯ୍ୟ କରିବା ତଥା ପଢ଼େଇବା ଆଦି କାମ ତାଙ୍କର ଜାରି ରହିଥିଲା। ସେ ଇଉନିୟନ୍ ବୋର୍ଡ଼ର ଶିକ୍ଷା ବିଭାଗର ମାନେଜିଂ କମିଟିର ମେମ୍ବର ଅନେକ ଦିନ ଯାକେ ଥିଲେ। ଝିଅମାନଙ୍କୁ ଶିକ୍ଷା ଦେବାର ଆଗ୍ରହ ଥିଲେ ମଧ୍ୟ ସେତେବେଳେ ଝିଅସ୍କୁଲ ବେଶି ନଥିବାରୁ ଝିଅମାନେ ଅଳ୍ପ ବୟସରେ ବିଭା ହୋଇ ଯାଉଥିବାରୁ ସେ ଏ ଦିଗରେ ବେଶି କିଛି କରିପାରି ନ ଥିଲେ। ମୋ ବଡ଼ଭଉଣୀ ତିନିଜଣ ଅପର ପ୍ରାଇମେରୀ ବୃତ୍ତି ପରୀକ୍ଷାରେ ପାସ୍ କରିବା ପରେ ଦଶ ଏଗାର ବର୍ଷରେ ବିଭା ହୋଇଯାଇଥିଲେ। ମୋ ଉପର ଭଉଣୀ ହାରାମଣିଙ୍କ ସାଙ୍ଗରେ ଗୋଦାବରୀ ଅପା ଯାଜପୁରରେ ବାପା ସ୍କୁଲ ଡେପୁଟୀ ଇନ୍ସପେକ୍ଟର ଥିବାବେଳେ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ଦେଇଥିଲେ। ହାରାମଣି ଅପା ବିଭା ହୋଇ ଘର ସଂସାର କାମରେ ସଂପୂର୍ଣ୍ଣ ବୁଡ଼ିଗଲେ। ଗୋଦାବରୀ ଅପା ଗାନ୍ଧୀ ବିଚାର ଓ ସ୍ୱାଧୀନତା ସଂଗ୍ରାମରେ ବୁଡ଼ିଗଲେ। ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରା ଓଡ଼ିଶାରେ ଚାଲିଥିବା ବେଳେ ସେ ରମାଦେବୀଙ୍କ ସାଙ୍ଗରେ ହରିଜନ କାମ ତ କରୁଥିଲେ; ତା ସାଙ୍ଗରେ ଗାନ୍ଧିଜୀଙ୍କୁ ଓଡ଼ିଆ ପଢ଼ାଉ ଥିଲେ। ପରେ ବାଲେଶ୍ୱରର ଗୋପାଳପୁର ଗାଆଁର ସ୍ୱାଧୀନତା ସଂଗ୍ରାମୀ, ନେତା ତଥା ଏମ୍.ପି. ଶ୍ରୀଯୁକ୍ତ ରବୀନ୍ଦ୍ରମୋହନ ଦାସଙ୍କ ପୁଅଝିଅମାନେ ଉତ୍ତରୋତ୍ତର ଉଚ୍ଚଶିକ୍ଷା ପାଇଲେ। ମାତ୍ର ଅପା ଦୁହିଁଙ୍କର ଜ୍ଞାନ ବୁଦ୍ଧି ପ୍ରଖର ଥିଲେ ମଧ୍ୟ ସେ ସମୟର ସାମାଜିକ ପରିସ୍ଥିତି ବଶତଃ ଆଉ ପଢ଼ିପାରିଲେ ନାହିଁ। ହିନ୍ଦୁ ଓଡ଼ିଆ ଘରର ଝିଅମାନେ ଆଠନଅ ବର୍ଷରୁ ମୁଣ୍ଡରେ ଓଢ଼ଣାଦେଇ ଘରେ ଓ ବାହାରେ ଚଳପ୍ରଚଳ କରୁଥିଲେ।

ମୁଁ କୁଆଁସରେ ପହଞ୍ଚିବା ପରେ ଝିଅମାନେ ଆଠ ନଅ ବର୍ଷରୁ ମୁଣ୍ଡରେ ଲୁଗାଦେଇ ଚଳପ୍ରଚଳ ହେଉଥିବାର ଦେଖିଲି । ସେତେବେଳେ ଖ୍ରୀଷ୍ଟିୟାନ୍ ବା ବ୍ରାହ୍ମ ସମାଜର ଝିଅମାନେ ଉଚ୍ଚଶିକ୍ଷା ଲାଭକରି ଶିକ୍ଷା ବିଭାଗରେ ବା ସ୍ୱାସ୍ଥ୍ୟ ବିଭାଗରେ କାମ କରୁଥିଲେ । ଓଡ଼ିଆ ହିନ୍ଦୁଘର ଝିଅଙ୍କ ମଧ୍ୟରେ ପ୍ରଥମେ କୁମାରୀ ବୀଣାଦେଈ ଓ ତାଙ୍କ ସାନଭଉଣୀ ଜ୍ୟୋତ୍ସ୍ନା ଦେଈ ଉଚ୍ଚଶିକ୍ଷା ଲାଭ କରି ଡାକ୍ତରାଣୀ ହୋଇଥିଲେ । ତାଙ୍କ ପରେ ଝିଅମାନଙ୍କୁ ପଢ଼ାଇବା କାମ ଧୀରେ ଧୀରେ ସମାଜରେ ଚଳିଥିଲା । ମୁଁ କୁଆଁସରେ ପହଞ୍ଚିବା ବେଳେ ଗାଁରେ କୌଣସି ଝିଅ ସ୍କୁଲରେ ପଢୁଥିବାର ଦେଖିନାହିଁ, ଘରେ ରହି ଓଡ଼ିଆ ପଢ଼ି ପୋଥିପୁରାଣ ପଢ଼ି ପାରୁଥିବା ଝିଅ ବୋହୂଙ୍କ ସଂଖ୍ୟା ଖୁବ୍ କମ୍ । ଫକୀର ମୋହନଙ୍କ ରେବତୀ ପାଠ ପଢ଼ିଲା ବୋଲି ବାପା ମାଆ ମରିଗଲେ ବୋଲି ଯେଉଁ ଧାରଣା ତାହା ଜନମାନସରେ ପ୍ରଚଳିତ ଥିବାରୁ ବ୍ୟାସକବି ସେପରି ଗପ ଲେଖିଥିଲେ । ଝିଅ ପାଠ ପଢ଼ିଲେ ସାତ ପୁରୁଷ ନର୍କକୁ ଯିବା ଏବଂ ଝିଅ ଜନମ ପରଘରକୁ ତଥା ଝିଅ ଜନମ ଚୁଲୀ ମୁଣ୍ଡକୁ ଏହି ବିଚାର ସମାଜର ଶିରା ଶିରାରେ ଚଳୁଥିଲା ।

ମୁଁ ପିଲାଦିନରୁ କି ପ୍ରବୃତ୍ତି ନେଇ ଜନ୍ମ ହୋଇଥିଲି କେଜାଣି ସମାଜର ଏଇ ବିଶ୍ୱାସର ବିରୁଦ୍ଧରେ ଯିବାକୁ ସବୁବେଳେ ପ୍ରତିଜ୍ଞାବଦ୍ଧ ଥିବା ଭଳି କାମ କରୁଥିଲି । ମୋ ଭିତରେ ସ୍ନେହ, ମମତା, ଦୟା, ସେବାଭାବ, ଅନ୍ୟକୁ କଷ୍ଟ ବା ଲାଜ ନ ଦେବା ଆଦି ଅନେକ ବିଚାର ଭରି ରହିଥିଲା । ଈଶ୍ୱର ବିଶ୍ୱାସ ମଧ୍ୟ ପ୍ରବଳ ଥିଲା । ମୋତେ ଗାଁରେ ବୟସ୍କା ସ୍ତ୍ରୀ ଲୋକମାନେ ବରାବର ତାଗିଦ୍ କରୁଥିଲେ ମୁଣ୍ଡରେ ଲୁଗା ଦେବାକୁ । ମୁଁ ଉତ୍ତର ଦେଉଥିଲି, "ଯାହାକୁ ଲାଜ ମାଡୁଛି ସେ ମୁଣ୍ଡରେ ଲୁଗା ଦେଉ । ମୋତେ ଲାଜ ମାଡୁ ନାହିଁ । ତେଣୁ ମୁଁ ମୋଟେ ମୁଣ୍ଡରେ ଲୁଗା ଦେବି ନାହିଁ ।" ନଈରେ ପହଁରିବାରେ ଘୋର ବିରୋଧ । କିନ୍ତୁ ଭାଇମାନଙ୍କ ସାଙ୍ଗରେ ମୁଁ ସାଳନ୍ଦୀର ଭରା ବଢ଼ିପାଣି ବେଳେ ମାଛ ଭଳି ପହଁରୁ ଥିଲି । ବାପା ମୋତେ ବରାବର ସମର୍ଥନ କରୁଥିବାରୁ ମୋ ମନର ବଳ ବଢ଼ିଯାଉଥିଲା । ପୁଅଝିଅଙ୍କ ଭିତରେ ପରିବାରରେ ଚଳୁଥିବା ଭେଦଭାବପୂର୍ଣ୍ଣ ବ୍ୟବହାରକୁ ମୁଁ ଆଦୌ ପସନ୍ଦ କରୁ ନ ଥିଲି । ମୁଁ ବି ପୁଅଙ୍କ ପରି ସବୁ କରିପାରିବି ସେଇ ଚେଷ୍ଟାରେ ରହୁଥିଲି । ପୁଅମାନଙ୍କ ପରି ଉଚ୍ଚଶିକ୍ଷା ପାଇବାର ଇଚ୍ଛା ପ୍ରବଳ ଥିଲା । ଟ୍ରେନ୍‌ରେ ନିଜେ ଟିକେଟ କରି କୌଣସି ସ୍ଥାନକୁ ଯାଇ ଆସି ପାରିବାର ସାହସ ମଧ୍ୟ ଥିଲା ।

କରତରେ ଅଳ୍ପ କାଠ ଚିରି ପାରୁଥିଲି । କୁରାଢ଼ୀରେ କାଠ ହାଣିବାର ଅଭ୍ୟାସ ମଧ୍ୟ କରିଥିଲି । କୌଣସି ପ୍ରକାର ଭୟ ମଧ୍ୟ ମୋ ଭିତରେ ନ ଥିଲା । ଏପରି ନିର୍ଭୀକ ସ୍ୱଭାବ ପାଇଁ ବାପା ଓ ବଡ଼ଭାଇ ଗୋଲକଚନ୍ଦ୍ର ଦାସ ପ୍ରେରଣା ଦେଇଥିଲେ ।

ଭଦ୍ରକରେ ପହଞ୍ଚି ରହିବା ପରଠାରୁ ଚଳିବାର ଧାରା ବଦଳିଗଲା। ପ୍ରଥମେ ଟିକିଏ ଅସୁବିଧା ଲାଗିଲା। ପରେ ପରିସ୍ଥିତି ସହିତ ଖାପଖୁଆଇ ନେଲି। ଅନୁଗୁଳରେ ଦଉଡ଼ିବାକୁ ଲମ୍ବା ଲମ୍ବା ବଡ଼ ରାସ୍ତା ମିଳିଥିଲା। କୁଆଁସରେ ଗାଁ ଭିତରେ ସେ ସୁବିଧା ହେଲା ନାହିଁ। ତେଣୁ ଘରେ କେହି ତାଙ୍କ ପାଖକୁ ଯିବାକୁ ଡାକିଲେ ମୁଁ ଡିଆଁ ମାରି ଦଉଡ଼ି କରି ଯାଉଥିଲି। ପୁଅଝିଅ ନିର୍ବିଶେଷରେ ସମସ୍ତଙ୍କ ସାଙ୍ଗରେ ଖେଳୁଥିଲି। ଭାଲୁଗାତ କରି ବାଲିମାଟି କୁଡ଼ରେ ଖେଳୁଥିଲୁ। ସୂର୍ଯ୍ୟାସ୍ତ ହୋଇଯିବା ମାତ୍ରେ ଭାଲୁ ଆସିବା ଭୟରେ ପଳେଇ ଆସୁଥିଲୁ। ସୂର୍ଯ୍ୟାସ୍ତ ସମୟର ରଙ୍ଗୀନ୍ ଆକାଶକୁ ଚାହିଁ ଅନ୍ୟମନସ୍କ ହୋଇଯାଏ। ସୂର୍ଯ୍ୟାସ୍ତକୁ ଉପଭୋଗ କରିବାର ଆନନ୍ଦ ଓ ବିଷାଦ ମୁଁ ଏକା ଅନୁଭବ କରେ। ସେଥିରେ କେହି ଭାଗୀଦାର ନ ଥିଲେ। କୁଆଁସରେ ସେ ସୁବିଧା କେଉଁଠୁ ମିଳିବ ଖୋଜିଲି। ସାଳନ୍ଦୀ ନଦୀକୁ ଗାଧୋଇ ଯାଉଥିଲୁ। ଦେଖିଲି ନଈ କୂଳେ କୂଳେ କାଶତଣ୍ଡୀ ବଣ, ଥାନା ପାଖରେ ମାଟିର ଉଚ୍ଚ ବନ୍ଧ ରାସ୍ତା ଲମ୍ବିଥାଏ। ଧୋବ ଧାଉଳିଆ ବାବୁମାନେ ଅଳ୍ପ କେତେଜଣ ସେଠି ବୁଲିବାକୁ ଆସନ୍ତି। ବଡ଼ ଭାଇମାନେ ସେଇବାଟେ ଖେଳିବାକୁ ବୁଲିବାକୁ ଯାଆନ୍ତି। ସେତେବେଳେ ନୂଆ ବଜାରରେ ଅଳ୍ପ କେତୋଟି ଦୋକାନ। ପୋଷ୍ଟ ଅଫିସ୍ ଡାକ୍ତରଖାନା ସେଇ ପଟେ। ମୁଁ ପ୍ରତିଦିନ ନଈକୂଳକୁ ଯାଇ ଏକା ଠିଆ ହୋଇ ସୂର୍ଯ୍ୟାସ୍ତ ଦେଖି ଅନ୍ଧାର ନଇଁ ଆସିଲେ ଫେରିଆସେ।

କୁଆଁସରେ ଆମେ ପହଞ୍ଚିବା କ୍ଷଣି ଗାଁ ଲୋକେ ଆନନ୍ଦରେ ଘେରି ଆସିଲେ। ଛୁଆଁ ଅଛୁଆଁ ଭେଦ ପ୍ରବଳ। ଶିକ୍ଷିତ ଲୋକ ହାତ ଗଣନ୍ତା କେଇଜଣ। ବାପାଙ୍କର ଏହା ପୁରୁଣା ପରିଚିତ ସ୍ଥାନ। ତେଣୁ ସମସ୍ତେ ଚିହ୍ନା। ସମସ୍ତଙ୍କ ଭିତରର ସ୍ନେହ ଶ୍ରଦ୍ଧା ଆଦର ଆଖିରେ ଫୁଟି ଉଠୁଥାଏ। ବାବୁଘର ଆସିଲେଣି। ବ୍ରାହ୍ମଣ, କରଣ, ଖଣ୍ଡାୟତ, ଗୁଡ଼ିଆ, ମାଳୀ, ତନ୍ତୀ, କମାର, ଭଣ୍ଡାରୀ, ଚମାର, ଥଟାରି, ବୈଷ୍ଣବ, ଡଗରା, ରାଢ଼ୀ, ଧୋବା ଇତ୍ୟାଦି ସବୁରି ଘରୁ ବଡ଼ ମଣିଷ ଓ ଛୁଆମାନେ ଘେରିଗଲେ। ଝିଅ ବୋହୂମାନେ ଲଜ୍ଜା ରକ୍ଷା କରି ଘରେ ରହିଲେ। ବୟସ୍କା ସ୍ତ୍ରୀଲୋକମାନେ ଆସି ମାଆକୁ ଭେଟି ସୁବିଧା ଅସୁବିଧା ଆବଶ୍ୟକତା ଓ ସାହାଯ୍ୟ କଥା ବୁଝିଲେ। ସବୁଠୁ ନିକଟତମ, ଦରଦୀ ଓ ସାହାଯ୍ୟକାରିଣୀ ଥିଲା କୋଇଲି ନାନୀ। ରାଢ଼ୀଘର ବାଲ୍ୟବିଧବା ଝିଅଟିଏ, ବୟସ ୩୫ ରୁ ୪୦ ଭିତରେ ସେତେବେଳେ। ସେ ଗାଆଁଯାକ ସମସ୍ତଙ୍କର କୋଇଲି ନାନୀ। କେବେ ବିଭା ହୋଇଥିଲା କେବେ ବିଧବା ହେଲା ତାର ମନେ ନାହିଁ। ଏଇ ଗାଆଁରେ ଜନ୍ମ ହେଲା, ଏଇଠି ଚୁଡ଼ା କୁଟି କୁଟି ଜୀବନ ବିତେଇଲା, ଶେଷରେ ଏଇ ଗାଆଁରେ ମଶାଣିରେ ପୋଡ଼ା ହେଲା, ତାର ସାନଭାଇ ଭୋଳାନାଥ ବେହେରାଙ୍କର ବଂଶଧର ଏବେ ଅଛନ୍ତି। କୋଇଲିନାନୀ ବାପାଙ୍କୁ ଧରମ ବାପା କରିଥିଲା। ଆମ ଘରେ ଝିଅପରି ଚଳେ। ବାପା ମାଆ ତୀର୍ଥଯାତ୍ରାରେ ଯିବାବେଳେ

ତାକୁ ବି ସାଙ୍ଗରେ ନେଇ ଯାଉଥିଲେ। ସେ ପୋଥି ଶୁଣିବାକୁ ପ୍ରତିଦିନ ସଂଜବେଳକୁ ଆମ ଘରକୁ ଆସେ। ରାମ ଥଟ୍ଟାରୀ ପୋଥି ପଢ଼ନ୍ତି। ବାପା ବୁଝାନ୍ତି। ଆମ ଘରକୁ ଲାଗି କୃଷ୍ଣବୋଉ ଘର। ତାର ପୁତୁରାବୋହୂ ଗୋବିନ୍ଦବୋଉ ମଧ୍ୟ ବାପାଙ୍କ ସାଙ୍ଗରେ ତୀର୍ଥ କରି ଯାଇଥିଲେ। ସେ ମଧ୍ୟ ପ୍ରତିଦିନ ପୋଥି ଶୁଣିବାକୁ ଆସେ। ସେମାନେ ଖଣ୍ଡାୟତ। କୃଷ୍ଣବୋଉ ବାପାଙ୍କୁ ଧରମ ବାପା କରିଥିଲା, ସେ ଅନ୍ୟ କାମ ସାଙ୍ଗରେ କାହାରି ପିଲାଜନ୍ମ ବେଳେ ସେ କାମ କରିପାରୁଥିଲା। ଆମ ଘରକୁ ଲାଗି କରଣ ବୈଷ୍ଣବ ଗୋପାଳଭାଇଙ୍କ ଘର। ତାଙ୍କ ସ୍ତ୍ରୀ ବାପାଙ୍କୁ ଧରମ ବାପା କରିଥିଲା। ଅଦ୍ୟାବଧି ତିନିପୁରୁଷ ବିତିଯାଇଥିଲେ ମଧ୍ୟ ତାଙ୍କ ଘର ସାଙ୍ଗରେ ବେଭାର ଚଳେ। ପୂର୍ବପାଖର ଘରକୁ ଲାଗି ଆଉ ଗୋଟିଏ ଖଣ୍ଡାୟତ ଘର। ମଧୁଆ ବୋଉ ଘର। ସେ ଗୋଟାଏ ଡାକ୍ତର ପରି ଡେଲିଭରୀ କାମ କରିପାରେ। ସେ ଆମ ଘରେ ଝିଅପରି ଚଳେ। ମଧୁଆ ବୋଉର ବଂଶଧର ଏବେ ବି ସେଇ ଅନୁସାରେ ଆମ ସାଙ୍ଗରେ ଚଳନ୍ତି। ମାଆ ବା ଖୁଡ଼ୀର ଡେଲିଭରୀ ବେଳେ ସେମାନେ କେଉଁଠି ଥାଆନ୍ତୁ ପଛେ ମଧୁଆ ବୋଉ ସେଠାକୁ ଯାଏ। ମାସେ ଦି ମାସ ରହି ଘରକୁ ଫେରେ। ଉତ୍ତର ପଟର ପଡ଼ୋଶୀ ଦିଘର ତନ୍ତୀ। ତାଙ୍କ ବଂଶଧରମାନେ ଏବେ ବି ଆମକୁ ଦାଦା ଖୁଡ଼ୀ ଅପା ଡାକନ୍ତି। ଦଧିଆ ଗୁଡ଼ିଆକୁ ଆମେ ଦଧିଆଭାଇ ବୋଲି ଡାକୁ। ଏବେ ବି ତାଙ୍କ ବଂଶଧରମାନେ ସେଇ ହିସାବକ୍ରମରେ ଆମକୁ ଡାକନ୍ତି। ଅଗଣା ଚମାର ବାପାଙ୍କୁ ବାପା ବୋଲି ଡାକୁଥିଲା। ମୁଁ ତାକୁ ଅଗଣାଭାଇ ବୋଲି ଡାକେ। ମାଧିଆ କମାର ବି ବାପାଙ୍କର ଧର୍ମପୁଅ ପରି ଚଳେ। ବ୍ରାହ୍ମଣ ସାଇର ମଧୁ କର ଆମର ପୁରୋହିତ। ତାଙ୍କ ନାତିମାନେ ଆମକୁ ଅପା ବୋଲି ଡାକନ୍ତି।

କରଣ ଘରମାନଙ୍କ ସାଙ୍ଗରେ ଥିବା ସୂର୍ଯ୍ୟବନ୍ଧୁ ସମ୍ପର୍କ ଏବେ ବି ଚଳିଆସୁଛି। ବିଜୟଗୋବିନ୍ଦ ମହାପାତ୍ର, ନାରାୟଣ ମହାପାତ୍ର, ବ୍ରଜବଲ୍ଲଭ ମହାପାତ୍ର ଏମାନଙ୍କ ସାଙ୍ଗରେ ଅତ୍ୟନ୍ତ ଘନିଷ୍ଠତା। ବ୍ୟବହାର ମଧ୍ୟ ନିଜ ଘର ପରି। ମହାନ୍ତି ସାଇର ସମସ୍ତେ ବି ନିଜର ଘନିଷ୍ଠ ଲୋକ ପରି। ପରସ୍ପର ଭିତରେ କେତେ ସ୍ନେହ ଶ୍ରଦ୍ଧା ସମ୍ମାନ ଓ ଦରଦ। ବ୍ରଜଭାଇଙ୍କୁ ଜ୍ୱର ହେଲେ ବାପା ମାଆ ଔଷଧ ଥର୍ମୋମିଟର ଓ ବାଲି ସାଗୁ ରାନ୍ଧି ଦେଇ କରି ତାଙ୍କ ପାଖକୁ ଯାଆନ୍ତି। ଗାଁରେ ଯାହାକୁ ଜ୍ୱର ହେଲେ କି ବେମାରୀ ହେଲେ ବାପା ମାଆ ତାଙ୍କ ପାଖକୁ ଔଷଧ ପଥ୍ୟ ଦିଅନ୍ତି ଓ ଖବର ବୁଝନ୍ତି। ଦରକାର ହେଲେ ଆର୍ଥିକ ସାହାଯ୍ୟ ବି କରନ୍ତି। ଡାକ୍ତରଖାନା ଛୋଟଟିଏ ଥିଲା ନୂଆବଜାରରେ। ଗାଆଁ ଲୋକେ ସେଠାକୁ କମ୍ ଯାଆନ୍ତି। ଗାଆଁରେ କରିଦିଅନ୍ତି। ସେ ଅନସରୀ ମ୍ୟାଜିଷ୍ଟ୍ରେଟ ଥିଲେ। ଗାଁରେ ପଞ୍ଚାୟତଟିଏ ଗଢ଼ିଥିଲେ। ପଞ୍ଚାୟତରେ ସବୁ କଥା ବୁଝାହୁଏ। ବାପାଙ୍କୁ ସମସ୍ତେ ମାନୁଥିବାରୁ ସବୁ ସମସ୍ୟା ସହଜରେ ସମାଧାନ କରି ହୁଏ।

ହୋଲିଦିନ ସମସ୍ତେ ଆସି ବାପାଙ୍କୁ ନମସ୍କାର କରି ଟିପାଏ ମାତ୍ର ଅବିର ଲଗାଇ ଦେଇ ଯାଆନ୍ତି। କାର୍ତ୍ତିକ ପୂର୍ଣ୍ଣିମା ଦିନ ଝିଅବୋହୂମାନେ ଠାକୁର ଦର୍ଶନ କରିସାରି ବାପାଙ୍କୁ ପ୍ରଣାମ କରିବାକୁ ଆସନ୍ତି। ଜାତି ଭିନ୍ନ ହେଲେ ମଧ୍ୟ ଗାଁରେ ଗୋଟାଏ ଏକତା ଥିଲା। ସତେ ଯେମିତି ଗୋଟାଏ ପରିବାର। ପ୍ରତ୍ୟେକର ଭିନ୍ନ ଭିନ୍ନ କାମ ହେଲେ ମଧ୍ୟ ଭାବ ବିଚାର ଏକ। ବ୍ରଜ ଭାଇଙ୍କ ଦ୍ୱାରା ସଞ୍ଚାଳିତ ଶ୍ୟାମସୁନ୍ଦର ଥିଏଟର ପାର୍ଟି ବାହାରେ ମଧ୍ୟ ଖୁବ୍ ସୁନାମ କରିଥିଲା। ତାଙ୍କ ସୁଚାଳନାରେ ମହାଦେବଙ୍କ ଆଗରେ ଚୈତ ତାମସୀ ତିନିଦିନ କାଳ ହେଉଥିଲା। ସବୁ ଜାତିର ଲୋକେ ମିଶି କରୁଥିଲେ। ଧ୍ରୁବ ପ୍ରହ୍ଲାଦ ଆଦି ନାଟକ ମଧ୍ୟ ହେଉଥିଲା। ବ୍ରଜଭାଇଙ୍କ ରଥଯାତ୍ରା ବେଳେ ସମସ୍ତେ ପ୍ରସାଦ ପାଉଥିଲେ ଓ ରଥ ଟାଣୁଥିଲେ। ଗାଁରେ କାହାରି ଘରେ ଜୀରାଟିଏ କି ସୋରିଷ ଫୁଟିଲେ ଗାଆଁଯାକ ସମସ୍ତଙ୍କୁ ଜଣାପଡ଼ି ଯାଉଥିଲା। ଜନ୍ମ ମୃତ୍ୟୁ ବିବାହ ଆଦି କାର୍ଯ୍ୟରେ ସମସ୍ତେ ସହଯୋଗ କରୁଥିଲେ। କୋର୍ଟ କଚେରୀକୁ ଦଉଡ଼ି ସର୍ବସ୍ୱାନ୍ତ ନ ହେବା ପାଇଁ ଗାଁ ପଞ୍ଚାୟତରେ ଅନେକ ସମସ୍ୟାର ସମାଧାନ ହେଉଥିଲା। ଫୌଜଦାରୀ କେସ୍ କମ୍ ଥିଲା। ସେ କେସ୍ ସରକାରଙ୍କ ହାତକୁ ଯାଉଥିଲା। ଝିଅମାନେ ଜାତି ନିର୍ବିଶେଷରେ ଶାଶୁ ଘରକୁ ଯିବାବେଳେ ସମସ୍ତଙ୍କ ଘରକୁ ବିଦାୟ ନେବାକୁ ଯାଉଥିଲେ। ଗାଆଁରେ କରଣ ଘରମାନେ ଜମିଦାର, ବେଶି ଜମିବାଲା ଓ ଆର୍ଥିକ ସ୍ୱଚ୍ଛନ୍ଦ ଅବସ୍ଥାରେ ଥିଲେ। ଅନ୍ୟ ତଳ ଜାତିର କେଇ ଘରଙ୍କର ନିଜ ଚାଷ ଜମି ନ ଥିଲା। ସେମାନେ ଭାଗ ଚାଷ କରି ଚଳୁଥିଲେ। ନଈକୂଳ ପାଳମାନଙ୍କରେ ପରିବା ଶାଗ ଫସଲ ଯଥେଷ୍ଟ ହେଉଥିଲା। କେହି ମାଗିଲେ ଗୋଟାଏ ଦେବାକୁ ପାଳ କରୁଥିବା ଲୋକମାନେ କୁଣ୍ଠିତ ହେଉ ନ ଥିଲେ। ମୂଲିଆମାନଙ୍କ ମୂଲ ବହୁତ କମ୍ ଥିଲେ ମଧ୍ୟ ସବୁ ଜିନିଷର ଦର କମ୍ ଥିବାରୁ ଲୋକଙ୍କୁ ବାଧୁ ନ ଥିଲା। ଅଧଲା ପାହୁଲା ଛଦାମ ଦୋପାଇସି ସବୁ ବି ଚଳୁଥିଲା। ଛୋଟ ପରିବାରଟିଏ ପାଇଁ ପଇସାକର ଲୁଣ ହଳଦୀ ତେଲ ମସଲା ପର୍ଯ୍ୟାପ୍ତ ହେଉଥିଲା। ଗାଁର ଜନସଂଖ୍ୟା ବହୁତ ନ ଥିଲା। ଆମ ଘରେ ସକାଳେ ଗୋଟାଏ ମଧ୍ୟଭଳିଆ ହାଣ୍ଡିରେ ସବୁ ପରିବା ପକେଇ ଘାଣ୍ଟ ତରକାରୀଟିଏ ହେଉଥିଲା। ସକାଳ ଜଳଖିଆ କାମରେ ତାହା ଲାଗୁଥିଲା। ପାଖ ପଡ଼ିଶାର ଚାରିପାଞ୍ଚ ଘର ପ୍ରାୟ ପ୍ରତିଦିନ ସକାଳେ ପଖାଳ ଖିଆ ବେଳେ ଆମଘରୁ ତରକାରୀ ନେଉଥିଲେ। ସାଳନ୍ଦୀ ନଦୀ ତଥା ପୋଖରୀ ଓ ବିଲରୁ ଲୋକେ ମାଛ କଙ୍କଡ଼ା ଧରି ସ୍ୱଚ୍ଛନ୍ଦରେ ଖାଇପାରୁଥିଲେ। ପୁରୁଣା ବଜାରରେ ନାରାୟଣ ଚନ୍ଦ୍ର ମାଇନର ସ୍କୁଲ ଓ ନଈ ସେପାରିରେ ପୁଅମାନଙ୍କ ପାଇଁ ଭଦ୍ରକ ହାଇସ୍କୁଲ ଏକମାତ୍ର ଶିକ୍ଷା ଅନୁଷ୍ଠାନ ଥିଲା। ପିଲାମାନେ ଏହା ପୂର୍ବରୁ ବାଲେଶ୍ୱରକୁ ଯାଇ ମ୍ୟାଟ୍ରିକ୍ ପରୀକ୍ଷା ଦେଉଥିଲେ। ରଜସଂକ୍ରାନ୍ତି ସମୟରେ ପରସ୍ପର ଭିତରେ ପିଠାପଣା, ଫଳ ଆଦିର ଆଦାନ ପ୍ରଦାନ

ଚଳୁଥିଲା । ଦ୍ୱିତୀୟା ଓଷାରେ ମଧ୍ୟ ପରିବା ଆଦି ଦିଆନିଆ ହେଉଥିଲା । ଅଗିରା ପୁନେଇଁ ପରଦିନ ଅଗି ପାଉଁଶ କୁମାରୀ ଝିଅମାନେ ଉଠାଇ ଦେଉଥିଲେ । ରଜ ସଂକ୍ରାନ୍ତି ବେଳେ କଦମବେଢ଼ା ଛକ ପାଖରେ ହରିହାଟ ବସୁଥିଲା । ରାଧାକୃଷ୍ଣ, ବଳଭଦ୍ର, ରେବତୀ ତଥା ଶିବପାର୍ବତୀଙ୍କ ମୂର୍ତ୍ତି ଗଢ଼ି ପୂଜା କରାଯାଉଥିଲା । ସାତଦିନ ପର୍ଯ୍ୟନ୍ତ ଏ ପୂଜା ଚାଲୁଥିଲା । ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକ ଏଥିରେ ଭାଗ ନେଉଥିଲେ । ଦୋକାନ ବଜାର ବସୁଥିଲା ।

ଭଦ୍ରକର ଚାରିଆଡୁ ସ୍ତ୍ରୀ ପୁରୁଷ ଓ ପିଲା ଏଠାକୁ ଦେଖିବାକୁ ଆସୁଥିଲେ । ସିନେମା ଥିଏଟର ଆଦିର ଚଳଣି ନ ଥିବାରୁ ଲୋକଙ୍କର ମନୋରଞ୍ଜନ ପାଇଁ ଏହା ଏକ ବିଶିଷ୍ଟ କାର୍ଯ୍ୟକ୍ରମ ଥିଲା । ହରିବଂଶ ପୋଥି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପାଠ କରାଯାଉଥିଲା । କୃଷ୍ଣଙ୍କର ଭୂତକେଳି ନାଟରେ ଓଡ଼ିଆ ମୁସଲମାନମାନେ ଉଭୟ ବେଶ ହୋଇ ନାଚୁଥିଲେ । ଫାରୁକଶିଆଁ ବୋଲି ଜଣେ ବୟସ୍କ ମୁସଲମାନ କୃଷ୍ଣ ବେଶ ହୋଇ ଏଥିରେ ନାଚ କରୁଥିବାର ମୁଁ ଆଖିରେ ଦେଖିଛି । ଅନ୍ୟ ପୁଅ ପିଲାମାନେ ରାଧା ଓ ଗୋପୀ ବେଶ ଧରି ନାଚ କରୁଥିଲେ । ଦୂରରୁ ଯାତରା ଓ ଥିଏଟର ପାର୍ଟି ଆସି ଅଭିନୟ କରୁଥିଲେ । ଗାଁ ମଫସଲରୁ ସ୍ତ୍ରୀ ପୁରୁଷମାନେ ଦେଖିବାକୁ ଜମା ହୋଇଯାଉଥିଲେ । ଅନ୍ୟ ମନୋରଞ୍ଜନ କାର୍ଯ୍ୟ ସ୍ଥାୟୀ ଭାବରେ ନ ଥିବାରୁ ଏଥିରେ ଲୋକ ଜମା ହୋଇ ଭିଡ଼ କରୁଥିଲେ ।

ଜାଗର ବେଳେ କୁଆଁରେଶ୍ୱର ମହାଦେବଙ୍କ ଠାରେ ଖୁବ୍ ଭିଡ଼ ହେଉଥିଲା । ଶିବ ଓ ଚଣ୍ଡୀଙ୍କ ମନ୍ଦିର ମଝିରେ ଯେଉଁ ଜାଗା ଥିଲା ସେ ଜାଗା ପୂରି ଯାଉଥିଲା । ସେଠାରେ ଗୋଟାଏ ବଡ଼ ବଉଳଗଛ ଓ ତା ପାଖରେ ସ୍ୱଚ୍ଛପାଣିର ବାମ୍ଫିଟିଏ ଥିଲା । ଗାଁର ଅଧିକାଂଶ ଲୋକ ଏ ପାଣି ବ୍ୟବହାର କରୁଥିଲେ । ଗାଧୁଆ କାମ ଅଧିକାଂଶ ଲୋକ ନଈରେ କରୁଥିଲେ । ଦୋଳ ପୁନେଇ ବେଳେ ଆଖପାଖର ଅନେକ ଗାଆଁରୁ କୃଷ୍ଣ ମୂର୍ତ୍ତିମାନଙ୍କୁ ନିମନ୍ତ୍ରଣ କରି ଅଣାଯାଇ ମେଳନ କରାଯାଉଥିଲା । ଜାତି ନିର୍ବିଶେଷରେ ରଙ୍ଗ ଓ ଫଗୁ ଖେଳ ହେଉଥିଲା । ମେଳଣ ପାଞ୍ଚଦିନ ଠାକୁରମାନେ ମହାଦେବଙ୍କ ଆଗ ଜାଗାରେ ବିମାନରେ ରହୁଥିଲେ । ଗାଆଁରେ ଆନନ୍ଦ ଉଲ୍ଲାସ ଓ କୋଳାହଳର ବାତାବରଣ ଏଇ କେତେଦିନ ରହୁଥିଲା । ଗାଆଁରେ ଗୋଟିଏ ମସ୍‌ଜିଦ୍ ଅଛି । ପର୍ବ ପର୍ବାଣିରେ ସେଠି ନମାଜ କରିବାକୁ ମୁସଲମାନମାନେ ଜମା ହେଉଥିଲେ । ତାଜିଆ ଖେଳିବା ବେଳେ ଧର୍ମଭେଦ ଭୁଲିଯାଉଥିଲେ । ଧର୍ମପନ୍ଥା ଭିନ୍ନ ହେଲେ ମଧ୍ୟ ପରସ୍ପର ମଧ୍ୟରେ ବିଦ୍ୱେଷ ନ ଥିଲା । ମୁଁ ପୁରୁଣା ବଜାର ସ୍କୁଲକୁ ଚାଲିକରି ଯିବାବେଳେ ବାଟରେ ମୁସଲମାନ ବସ୍ତି, ଓଡ଼ିଆ ଘର ଓ ମାରୱାଡ଼ୀ ପଟ୍ଟି ପାର ହୋଇଯାଉଥିଲି । ସଡ଼କ ପାଖର ସବୁ ସାଇର ଲୋକେ, ମୁଁ ସରକାରୀ ବୃତ୍ତି ପାଇ ପଢୁଛି ଜାଣି ଭାରି ଖୁସି ହେଉଥିଲେ । ମୋର

କୌଣସି ଅସୁବିଧା ନ ହେବା ଦିଗକୁ ବେଶ୍ ଧ୍ୟାନ ଦେଉଥିଲେ। ସେତେବେଳେ ବଳଦଗାଡ଼ି ବା ସାଇକେଲ ଯାତ୍ରାର ମାଧ୍ୟମ ଥିଲା। କୌଣସି ସାଇକେଲ ବାଲା ମୋ ପାଖ ମାଡ଼ିବା କ୍ଷଣି ବସ୍ତିଲୋକେ ତାକୁ ମାରିବାକୁ ଉଠି ଆସୁଥିଲେ । ମୋ ପଢ଼ା ଦେଖି ମୁସଲ୍‌ମାନମାନେ ଏତେ ଆନନ୍ଦିତ ହେଲେ ଯେ ତାଙ୍କ ଝିଅ ପଢ଼ିଲେ ମୋ ପରି ବୃତ୍ତି ପାଇବ କି ବୋଲି ମୋତେ ପଚାରିଲେ। ମୁଁ ୪ର୍ଥ ଶ୍ରେଣୀ ପାସ୍ କରିବା ପରେ ହମିଦା ବୋଲି ମୁସଲମାନ ଝିଅଟିଏ ଫ୍ରେଜର ବାଳିକା ସ୍କୁଲର ନାମ ଲେଖାଇ ମୋ ସାଙ୍ଗରେ ପ୍ରତିଦିନ ସ୍କୁଲକୁ ଗଲା। ବର୍ଷକ ପରେ ମୁଁ ଉ.ପ୍ରା. ବୃତ୍ତି ପରୀକ୍ଷାରେ ପାସ୍ କରି ସେ ସ୍କୁଲ ଛାଡ଼ିଲି। ହମିଦା ଖବର ଆଉ କିଛି ପାଇ ନାହିଁ ଆଜି ପର୍ଯ୍ୟନ୍ତ। ପଞ୍ଚମ ଶ୍ରେଣୀ ପାସ୍ କଲା ପରେ ମୋର ପୋଥିରେ ଡୋରି ବନ୍ଧାଗଲା। ଭଦ୍ରକରେ ସେତେବେଳେ ଆଉ କୌଣସି ବାଳିକା ସ୍କୁଲ ନ ଥିଲା। ପୁରୁଣା ସଂକୀର୍ଣ୍ଣ ଭାବର ପ୍ରବଳ ଜୁଆର। ପୁଅମାନଙ୍କ ସାଙ୍ଗରେ ଭଦ୍ରକ ହାଇସ୍କୁଲରେ ପଢ଼ିବାକୁ ଜୁ ନାହିଁ। ଘରେ ବସି ପୋଥି ପୁରାଣ, ଶରତଚନ୍ଦ୍ର ଗ୍ରନ୍ଥାବଳୀ, ବଙ୍କିମଚନ୍ଦ୍ର ଗ୍ରନ୍ଥାବଳୀ, ବଙ୍ଗଳା ଉପନ୍ୟାସ ଓ ପତ୍ରିକା, ଓଡ଼ିଆ ଉପନ୍ୟାସ ଓ ପତ୍ରିକା, ରାଧାନାଥ ରାୟ, ମଧୁସୂଦନ ରାଓ ତଥା ଫକୀରମୋହନ ସେନାପତିଙ୍କ ଗ୍ରନ୍ଥାବଳୀ ସବୁ ପଢ଼ିଲି। ସହକାର, ନବଭାରତ, ଯୁଗବୀଣା ଆଦି ପତ୍ରିକା ନିୟମିତ ପଢ଼ିଲି। ଦି ତିନିଥର କୌଣସି ବିଷୟ ପଢ଼ିଲେ ମୋର ମୁଖସ୍ଥ ହୋଇ ଯାଉଥିଲା। ଆଗକୁ କେମିତି ପଢ଼ିବି ଏଇ ଚିନ୍ତା ମନ ଭିତରେ ସବୁବେଳେ ଖେଳୁଥାଏ। ଗାଆଁକୁ ବୈଷ୍ଣବ ସମ୍ପ୍ରଦାୟର ଉଚ୍ଚଶିକ୍ଷିତ ସନ୍ନ୍ୟାସୀମାନେ ଆସି ବାପାଙ୍କ ସାଙ୍ଗରେ ଆଲୋଚନା କରୁଥିବା ବେଳେ ମୁଁ ବସି ସବୁ ଏକାଗ୍ରମନରେ ଶୁଣେ। ବାପା ଏ ଦିଗରେ ଉତ୍ସାହିତ କରନ୍ତି। ଗାଁରେ କୀର୍ତ୍ତନ ସମାରୋହ ହେଲେ ମୁଁ ଯାଇ ଶୁଣେ। ପୁରୁଷଙ୍କ ଭିତରେ ବସି ଶୁଣୁଛି ବୋଲି ମୋତେ ଗାଁର ସ୍ତ୍ରୀଲୋକମାନେ ଅଣ୍ଡିରାଚଣ୍ଡୀ କହନ୍ତି। କିନ୍ତୁ ବାପା କେବେ ଏଥିରେ ବାଧା ଦିଅନ୍ତି ନାହିଁ। ବିବାହ ପ୍ରସ୍ତାବ ଆସିବାକୁ ଲାଗିଲା। ବାପା ସବୁ ଶୁଣନ୍ତି। ମାତ୍ର ସେ କହନ୍ତି, “ସେ ଗୋଟାଏ ଅଲଗା ପ୍ରକୃତିର ଝିଅ। ତାକୁ ଏତେ ଶୀଘ୍ର ବିଭା କରିଦେଲେ ଭଲ ହେବନାହିଁ।” ଧୀରେ ଧୀରେ ମୋ ଭିତରେ ଗୋଟାଏ ବିଚାର ଦୃଢ଼ ହୋଇଗଲା ଯେ ମୁଁ ବିବାହ କରି କୋଣ ଭିତରେ ରହିବି ନାହିଁ କି ରୋଷେଇ କରି ଝିଅ ଜନମ ଚୁଲୀ ମୁଣ୍ଡକୁ ଏକଥା ସିଦ୍ଧ ହେବାକୁ ଦେବି ନାହିଁ। ୧୯୩୬ରେ ପାଟନାରୁ ସେକ୍ରେଟାରୀଏଟ୍ କଟକକୁ ଉଠି ଆସିବାରୁ ବଡ଼ଭାଇ ଗୋଲକଚନ୍ଦ୍ର ପାଟନାରୁ କଟକ ଆସିଲେ।

ମୁଁ ଜିଦ୍‌କରି ୧୯୩୬ ଡିସେମ୍ବର ମାସର ଶେଷଆଡ଼କୁ ତାଙ୍କ ସାଙ୍ଗରେ କଟକ ଯାଇ ୧୯୩୭ ଜାନୁୟାରୀରେ ରେଭେନ୍ସା ବାଳିକା ବିଦ୍ୟାଳୟରେ ନାଁ ଲେଖାଇ ପଢ଼ିଲି।

ମୁଁ ପଢ଼ିବାକୁ ଯିବା ପରେ ଗାଁରୁ ଜଣେ ଜଣେ ଝିଅ ବାହାରିଲେ ପଢ଼ିବା ପାଇଁ, ପରେ ପଦ୍ମସିଂହ ବାଳିକା ମାଇନର ସ୍କୁଲ ହେଲା। ଝିଅମାନେ ସେଠି ପଢ଼ିଲେ। କ୍ରମେ ବାଳିକା ହାଇସ୍କୁଲ, କଲେଜ ଆଦି ପ୍ରତିଷ୍ଠିତ ହେଲା।

ସେତେବେଳେ ଭଦ୍ରକ ସବ୍‌ଡିଭିଜନ୍ ଥିଲା ବାଲେଶ୍ୱରରେ ସବୁ ବଡ଼ ଅଫିସର ମାନଙ୍କର ହେଡ୍‌କ୍ୱାଟର। ତଥାପି ଭ୍ରଦକ କୌଣସି କଥାରେ ଊଣା ନ ଥିଲା। ଶିକ୍ଷା ସଭ୍ୟତା ବ୍ୟବସାୟ ବାଣିଜ୍ୟ ସବୁ କଥାରେ ଆଗୁଆ ଥିଲା। ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ଅଗ୍ରଗଣ୍ୟ ଥିଲା। ଲୁଣମରା ଆନ୍ଦୋଳନ ବେଳେ ଅନେକ ଲୋକ ଏଠୁ ଗିରଫ ହୋଇଥିଲେ। ମହାତ୍ମା ଗାନ୍ଧୀ ଭଦ୍ରକ ଆସି ଗରଦପୁରର ବାଳାଶ୍ରମରେ ତିନିଦିନ ରହିଥିଲେ। ସେତେବେଳେ ଜୀବରାମ୍‌ଜୀ ସେ ଆଶ୍ରମ ଚଳାଉଥିଲେ। ତାଙ୍କ ଅନ୍ତେ ଈଶ୍ୱରଲାଲ ବ୍ୟାସ କିଛିଦିନ ସେକ୍ରେଟାରୀ ହେଲେ। ସେ ଥିବା ବେଳୁ ଆଜି ପର୍ଯ୍ୟନ୍ତ ସ୍ୱାଧୀନତା ସଂଗ୍ରାମୀ କପିଳ ଚରଣ ଦାସ ଆଶ୍ରମ ଚଳାଉଛନ୍ତି। ଦୁଇଶହରୁ ଊର୍ଦ୍ଧ୍ୱପିଲା ଆଶ୍ରମରେ ରହି ଶିକ୍ଷା ଲାଭ କରୁଛନ୍ତି। ପ୍ରାୟ ସବୁପିଲା ଅନାଥ କହିଲେ ଚଳିବ। ସରକାରୀ ଗ୍ରାଣ୍ଟରେ ଏବେ ଆଶ୍ରମ ଚଳୁଛି।

ଭଦ୍ରକରେ କାଳିପୂଜା ବିଶେଷ ପ୍ରସିଦ୍ଧ। ଦୁର୍ଗାପୂଜା ବି ବେଶ୍ ଆଡ଼ମ୍ବରରେ କେତେ ଜାଗାରେ ହୁଏ। ମାତ୍ର କାଳୀପୂଜା କେବଳ ଚରମ୍ପାରେ ବେଶ୍ ଜାକଜମକରେ ହୁଏ। କଟକର ବାଲିଯାତ୍ରାରେ ଯେମିତି ନାନାସ୍ଥାନରୁ ନାନାପ୍ରକାର ଜିନିଷ ଆସି ବିକ୍ରୀ ହୁଏ ଏଠିବି ସେମିତି ହୁଏ। ସାତଦିନରୁ ବେଶି ବିକ୍ରୀ ମେଳା ରହେ। ଦୂର ଦୂରାନ୍ତରରୁ ଲୋକେ ଆସି ଦେଖନ୍ତି ଓ ଜିନିଷ ବିକା କିଣା କରନ୍ତି। କେବେ କେବେ ସର୍କସ୍ ପାର୍ଟି ଆସି ସରଗରମ କରି ଦିଅନ୍ତି କାଳିପୂଜା ଉତ୍ସବକୁ। ଯାତ୍ରା ଥିଏଟର ତ ସବୁ ବର୍ଷ ହୁଏ।

ଆମ ପିଲାବେଳେ ବସ୍ ଚଳାଚଳ ମୋଟେ ନ ଥିଲା। ଭଦ୍ରକ ରେଳ ଷ୍ଟେସନ୍ ଗୋଟାଏ ବଡ଼ ଜଙ୍କସନ୍ ଥିଲା। ଲୋକେ କଲିକତା ବା ପୁରୀ ଆଦି ସ୍ଥାନକୁ ତଥା ପ୍ରଦେଶ ବାହାରକୁ ରେଳରେ ହିଁ ଯିବା ଆସିବା କରୁଥିଲେ। ଫୁଟ୍‌ବଲ୍, ହକି, ବ୍ୟାଡ଼ମିଣ୍ଟନ୍ ଖେଳ ପ୍ରସିଦ୍ଧ ଥିଲା। ଶିକ୍ଷିତ ଲୋକମାନେ ଧୋତି ପଞ୍ଜାବୀ ବା ସାର୍ଟ ପିନ୍ଧୁଥିଲେ। ଚାନ୍ଦବାଲି ବନ୍ଦର ଯୋଗୁଁ ଭଦ୍ରକ ଗୋଟାଏ ବାଣିଜ୍ୟ କେନ୍ଦ୍ର ଥିଲା। ମାରୱାଡ଼ୀମାନେ ରାଜସ୍ଥାନରୁ ଆସି ବେପାର ବାଣିଜ କରି ବେଶ୍ ଧନୀ ହୋଇ ଯାଇଥିଲେ। ଓଡ଼ିଆ ଓ ମୁସଲମାନମାନେ ଏଠାକାର ସ୍ଥାୟୀ ବାସିନ୍ଦା ହେଲେ ମଧ୍ୟ ସେମାନଙ୍କ ଠାରୁ ଗରିବ ଥିଲେ। ସେତେବେଳେ ଭଦ୍ରକ ବାଲେଶ୍ୱର ଜିଲ୍ଲାର ଗୋଟିଏ ସବ୍‌ଡ଼ିଭିଜନ ଥିଲା। ବାଲେଶ୍ୱରରେ ସବୁ ବିଭାଗର ଅଫିସରମାନଙ୍କ ହେଡ୍‌କ୍ୱାଟର। ଶିକ୍ଷା, ସଭ୍ୟତା, ଚାକିରି,

ବ୍ୟବସାୟ ବାଣିଜ୍ୟ ସବୁ କଥାରେ ଆଗୁଆ ଥିଲା। ଚାନ୍ଦବାଲି ବନ୍ଦର ଗୋଟାଏ ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର ଥିଲା। କୋଷ୍ଟ କେନାଲ୍ ବାଟେ ଲୋକେ ବାଲେଶ୍ୱର, ଭଦ୍ରକ, କଟକ, ପୁରୀ ଆଦି ସ୍ଥାନକୁ ଯା ଆସ କରୁଥିଲେ। ରାଧାନାଥ ରାୟଙ୍କ ସାଙ୍ଗରେ ଆମ ବାପା ସେଇ ଜଳପଥରେ ସ୍କୁଲ କାର୍ଯ୍ୟ ସଂକ୍ରାନ୍ତରେ କଟକ, ପୁରୀ, ଖୋର୍ଦ୍ଧା ଆଦି ସ୍ଥାନକୁ ଯା ଆସ କରୁଥିଲେ ବୋଲି କହନ୍ତି। କଲିକତାରୁ ଖଡ଼ଗପୁର, ବାଲେଶ୍ୱର, ଭଦ୍ରକ, କଟକ ଦେଇ ରେଳପଥ ହୋଇଥିଲା ପୁରୀ ତଥା ଦକ୍ଷିଣ ଭାରତକୁ ଯିବାକୁ। ପୁରୀରୁ କଲିକତା ଯାଏ ଜଗନ୍ନାଥ ସଡ଼କ ରାଣୀ ଅହଲ୍ୟାବାଇ କରିଥିଲେ। ଲୋକେ ପାଦରେ ଚାଲି ସେ ବାଟରେ ଯାଆସ କରୁଥିଲେ। ଆମେ ପିଲାବେଳେ ବଡ଼ଭାଇ ପ୍ରଫୁଲ୍ଲ ଚନ୍ଦ୍ର ଦାସଙ୍କ ସହ ସେ ରାସ୍ତାରେ ଯିବା ବେଳେ ଗୋଶାଳା ଛକରେ ତାର ଧୂଳି ମୁଣ୍ଡରେ ମାରି ନମସ୍କାର କରି ଯାଉଥିଲୁ। ବସ୍ ଚଳାଚଳ ଆରମ୍ଭ ହେଇ ନ ଥିଲା। ଟା ଚଳଣ ଭଦ୍ରକରେ ଆଦୌ ନ ଥିଲା କହିଲେ ଚଳେ। ସାଳନ୍ଦୀ ଓ ବୈତରଣୀ ନଦୀର ପ୍ରବଳ ବନ୍ୟାରେ ଭଦ୍ରକ ପ୍ରତିବର୍ଷ ବର୍ଷାଦିନେ ଉବୁଟୁବୁ ହେଉଥିଲା। ବନ୍ୟା ପ୍ରପୀଡ଼ିତ ଭଦ୍ରକର ଅବସ୍ଥା ଦେଖିବାକୁ ତଥା ଲୋକଙ୍କୁ ଦୁଃଖବେଳେ ସହାୟତା ଦେବାକୁ ଥରେ ଗାନ୍ଧିଜୀ କୋଷ୍ଟ କେନାଲ ବାଟେ ଆସି ମନ୍ତେଇ ନଈ କୂଳର ଚାରିବାଟିଆ ସର୍କିଟ ହାଉସ୍‌ରେ ଦି ଦିନ ରହିଥିଲେ। ତାଙ୍କରି ପ୍ରେରଣାରେ ଜୀବରାମଜୀ କଲ୍ୟାଣୀ ଭଦ୍ରକ ଆସି ବନ୍ୟା ପ୍ରପୀଡ଼ିତଙ୍କ ଉଦ୍ଧାର ତଥା ଅନାଥ ବାଳକ ବାଳିକାମାନଙ୍କ ଥଇଥାନ ପାଇଁ ଗରଦପୁରରେ ଓଡ଼ିଶା ଗାନ୍ଧୀ ବାଳାଶ୍ରମ ନାମରେ ଆଶ୍ରମଟିଏ ଖୋଲିଲେ। ପୁରୁଣ ବଜାରର ଜଣେ ଧନୀ ମହିଳା ନିଶାମଣି ଦେବୀ ଜମି ଜାଗା ଦେଇଥିଲେ ଓ ବଞ୍ଚିଥିବା ଯାଏ ସବୁ କାମରେ ସାହାଯ୍ୟ କରୁଥିଲେ। ଗାନ୍ଧୀଜୀ ହରିଜନ ପଦଯାତ୍ରା ବେଳେ ୧୯୩୪ ଜୁନ୍ ମାସରେ ତିନିଦିନ ଏ ଆଶ୍ରମରେ ରହିଥିଲେ। ବ୍ୟାସଜୀଙ୍କ ଅନ୍ତେ ସେ ବର୍ତ୍ତମାନ ଏହାର ସଂପୂର୍ଣ୍ଣ ଦାୟିତ୍ୱ ନେଇ ଚଳାଉଛନ୍ତି। ଅନେକ ଅସହାୟା, ବିଧବା, ପରିତ୍ୟକ୍ତା ତଥା ଅନାଥ ପୁଅଝିଅ ଏ ଆଶ୍ରମରେ ରହି ନିଜର ଉନ୍ନତି କରି ପାରିଛନ୍ତି ଓ ଏବେ ବି କରୁଛନ୍ତି। କପିଳବାବୁ ଅନେକଥର ଜେଲ୍ ଯାଇଛନ୍ତି। ଗାନ୍ଧିଜୀଙ୍କ ଖାସ୍ ତତ୍ତ୍ୱାବଧାନରେ ସେବା ଗ୍ରାମରେ ତାଲିମ ପାଇଛନ୍ତି। ଏବେ ରାଷ୍ଟ୍ରପତି ପୁରସ୍କାର ମଧ୍ୟ ପାଇଛନ୍ତି।

ଭଦ୍ରକରେ ବହୁ ବର୍ଷ ପୂର୍ବେ ଥରେ ବୌଦ୍ଧଭିକ୍ଷୁମାନଙ୍କର ସମ୍ମିଳନୀ ହୋଇଥିଲା। ବୌଦ୍ଧଭିକ୍ଷୁମାନଙ୍କୁ ଭଦ୍ର ନାମରେ ସେତେବେଳେ ସମ୍ବୋଧନ କରୁଥିବାରୁ ଏ ସ୍ଥାନର ନାମ ଭଦ୍ରକ ହୋଇଛି ବୋଲି ଅନୁମାନ କରାଯାଏ। ଶ୍ରୀଚୈତନ୍ୟ ପୁରୀକୁ ଯିବା ବାଟରେ ତାଙ୍କ ସହଯାତ୍ରୀ ବୈଷ୍ଣବମାନଙ୍କ ସହିତ ଏଠି ରହିଥିଲେ। କୁଆଁସରେ ତାଙ୍କ ବିଗ୍ରହ ଥିବା ମନ୍ଦିରଟିଏ ପଦଚିହ୍ନ ଥିବା ଛୋଟ ମନ୍ଦିରଟିଏ ଏବେ ବି ରହିଛି ଓ ପୂଜା ପାଉଛି।

ପ୍ରତିବର୍ଷ ଏଠାରେ ତାଙ୍କ ପଦଯାତ୍ରାର ସ୍ମୃତି ଉଦ୍ଦେଶ୍ୟରେ ବାଲିଯାତ୍ରା ଏବେ ବି ହେଉଛି। ଉତ୍ତର ଆଡୁ ଯେତେ ଲୋକ ପୁରୀକୁ ଜଗନ୍ନାଥଙ୍କ ଦର୍ଶନ ପାଇଁ ଯାଆନ୍ତି। ଏଇ ଭଦ୍ରକ ବାଟେ ଜଗନ୍ନାଥ ସଡ଼କରେ ଯାଆନ୍ତି। ତେଣୁ ଅନେକ ଭକ୍ତ ସାଧୁ ସନ୍ଥ ସନ୍ନ୍ୟାସୀଙ୍କ ପଦଧୂଳିରେ। ଆଜନ୍ମ ବ୍ରହ୍ମଚାରୀ ସର୍ବଶ୍ରେଷ୍ଠ ଗାନ୍ଧୀଭକ୍ତ ସନ୍ଥ ବିନୋବାଙ୍କର ରହଣି ମଧ୍ୟ ଏଠାରେ ହୋଇଥିଲା। ମୋ ଉପରଭାଇ ପ୍ରଫୁଲ୍ଲ ଚନ୍ଦ୍ର ଦାସ ତାଙ୍କୁ ଏଇଠି ଭେଟି ତାଙ୍କ ଗହଣରେ ତିନିଚାରି ଦିନ ରହିଥିଲେ। ପିଲାବେଳେ ମୁଁ ଗାନ୍ଧିଜୀଙ୍କୁ କୁଆଁସ ସ୍କୁଲ ପାଖରେ ପ୍ରଥମେ ଭେଟିଥିଲି। ସେଇଦିନଠାରୁ ମୋ ଜୀବନଧାରା ଗାନ୍ଧୀ କାମ ତଥା ବିଚାର ଆଡ଼କୁ ମୁହାଁଇ ଥିଲା। ପରେ ବି.ଏ. ପାସ୍ କଲାପରେ ମୁଁ ଗାନ୍ଧୀ କାମରେ ହିଁ ନିଜକୁ ଉତ୍ସର୍ଗ କରି ଦେଇଥିଲି।

ପଢ଼ାଛାଡ଼ି ଘରେ ବସିଥିବା ତିନିବର୍ଷ ଭିତରେ ମୁଁ ଭଦ୍ରକର ତିନିଜଣ ଖ୍ୟାତନାମା କବିଙ୍କ ସମ୍ପର୍କରେ ଶୁଣିଥିଲି। ଗାଁରେ ଚୈତ୍ର ସଂକ୍ରାନ୍ତି ସମୟରେ ଯେଉଁ ମୋଗଲ ତାମସା ହେଉଥିଲା ତାର ଲେଖକ ଥିଲେ ବଂଶୀଧର ଗୋସ୍ୱାମୀ। ସେ ନାଟକ ବ୍ୟଙ୍ଗ ନାଟକ ଥିଲା। ତା ପରେ ମୋ ଜ୍ଞାତସାରକୁ ଆସିଲେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର। ପିଲାଦିନୁ ତାଙ୍କର କେତେକ କବିତା ପଢ଼ିଥିଲି ଓ ସେସବୁ ମୋର ମୁଖସ୍ଥ ହୋଇଯାଇଥିଲା। ପରେ ତାଙ୍କର ଆଉ କିଛି ଲେଖା ପଢ଼ିବାର ଓ ତାଙ୍କୁ ଦର୍ଶନ କରିବାର ସୁଯୋଗ ପାଇଥିଲି। ତୃତୀୟରେ ଇରମର ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ଲେଖା ପଢ଼ି ଦେଶ ଭାବନାରେ ଉଦ୍‌ବୁଦ୍ଧ ହୋଇଥିଲି। ଏବେ ବି ତାଙ୍କ କବିତାବଳୀରୁ କିଛି କିଛି ମୋର ମୁଖସ୍ଥ ଅଛି।

ସ୍ୱାଧୀନତା ଆନ୍ଦୋଳନରେ ବି ଭଦ୍ରକ ବେଶ୍ ଆଗୁଆ ଥିଲା। କୁଆଁସର କୈଳାସ ଚନ୍ଦ୍ର ମହାନ୍ତି, ଗୋକୁଳାନନ୍ଦ ମହାନ୍ତି, ଅଗରପଡ଼ାର ହରେକୃଷ୍ଣ ମହତାବ, କାଳୀମହଲାର ହନିଫ୍ ବାବୁଙ୍କ ନାମ ଭଦ୍ରକରେ ପ୍ରସିଦ୍ଧ। ଭଦ୍ରକର ଅଧିକାଂଶ ଗାଆଁରେ ଏମାନଙ୍କ ନାମ, କାମ ଓ ଗୁଣର ବାର୍ତ୍ତା ସେତେବେଳେ ଖେଳି ବୁଲୁଥିଲା। ଏବେ ବି ପ୍ରସିଦ୍ଧ। ଦିଲ୍ଲୀରେ ବା ବାହାର ପ୍ରଦେଶରେ ଲୋକେ ଭଦ୍ରକ ଜିଲ୍ଲା କହିଲେ ଯେତେ ବୁଝନ୍ତି ନାହିଁ ମହତାବ ଜିଲ୍ଲା କହିଲେ ତାଠୁ ଶୀଘ୍ର ବୁଝନ୍ତି। ଲୁଣମରା ଆନ୍ଦୋଳନ ବେଳେ ମହତାବ ବାବୁ, କୈଳାଶ ବାବୁ, ଗୋକୁଳି ବାବୁ ଓ ହନିଫ୍ ବାବୁ ହେରିକା ଭଦ୍ରକର ନେତାମାନେ ଜେଲ୍‌ରେ ଥିଲେ। ସେତେବେଳେ ଗରଦପୁର ଆଶ୍ରମ ଜୀବରାମଜୀ ଚଳାଉଥାଆନ୍ତି। ବାଲେଶ୍ୱର ଇଞ୍ଚୁଡ଼ି, ଭଦ୍ରକର ଇରମ୍ ତଥା ବିଦେଇପୁର ଲୁଣମରା ପ୍ରଧାନ କେନ୍ଦ୍ର ଥିଲା। ଜୀବରାମଜୀ ପ୍ରଥମେ ଲୁଣମାରି ଦେଖାଇଥିଲେ। ସେ ଇଞ୍ଚୁଡ଼ିକୁ ଯାଇଥିଲେ ଲୁଣମାରି ସତ୍ୟାଗ୍ରହୀ ହେବାକୁ। ପଡ଼ିଆରେ ଝାଡ଼ା ଫେରିସାରି ଫେରିଲା ବେଳେ ଲୋଟାରେ ଲୁଣ ପାଣି ଆଣିଥିଲେ। ଗାଁର ବୁଢ଼ୀଟିଏ ବତେଇଦେଲା ଯେ ତାକୁ ହାଣ୍ଡିରେ ରଖି

ଚୁଲୀରେ ଜାଳ ଦେଇ ମାରିଦେଲେ ଲୁଣ ବାହାରିବ । ସେଇଆ କରିବାରୁ ଲୁଣ ବାହାରିଲା । ଆଚାର୍ଯ୍ୟ ହରିହର ଦାସ ଲୁଣମରା ଆନ୍ଦୋଳନର ନେତା ଥିଲେ । ଜୀବରାମଜୀଙ୍କ ପ୍ରୟୋଗ କଥା ସମସ୍ତେ ଶୁଣି ବହୁତ ଖୁସି ହେଲେ । ଏଥିରେ ଯେଉଁମାନେ ଯୋଗ ଦେଉଥିଲେ ସେମାନଙ୍କୁ ସରକାର ଗିରଫ କରୁଥିଲେ । ଇରମ୍ ଓ ବିଦେଇପୁରର ଅନେକ ଲୋକ ଜେଲ୍‌ରେ ରହିଥିଲେ । ଗରଦପୁର ଆଶ୍ରମର କପିଳବାବୁ ଲୁଚି ଲୁଚି ଯାଇ ତାଙ୍କ ପରିବାରକୁ ଅର୍ଥ ବସ୍ତ୍ର ଆଦି ଯୋଗାଇ ଦେଉଥିଲେ । ନୀଳମଣି ରାଉତରାୟ ବି ଜଣେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ । ମୋ ବଡ଼ଭାଇଙ୍କ ବନ୍ଧୁ । ତାଙ୍କ କଥା ଆଗରୁ ଶୁଣିଥିଲେ ମଧ୍ୟ କେତେବର୍ଷ ପରେ ଭେଟିଥିଲି । ଇରମ୍, ଇଞ୍ଚୁଡ଼ିରେ ସ୍ତମ୍ଭରେ ଜୀବରାମଜୀ ଓ ଅନ୍ୟ କେତେକଙ୍କ ନାଆଁ ଲେଖା ହୋଇଛି । ଆନ୍ଦୋଳନ ବେଳେ ଶାଖା ଗାଆଁରେ ଲୋକଙ୍କ ଭିତରେ ଯେଉଁ ସ୍ନେହ ଶରଧା, ଆପଣାପଣ, ସରଳତା, ଭାବ ବିନିମୟ ଥିଲା ସ୍ୱାଧୀନତା ପରେ ସେ ସବୁ ରହିଲା ନାହିଁ ।

ପିଲାବେଳେ ଗାଆଁ ପିଲାଙ୍କୁ ଅମୁକ ଲୋକର ଘରକୁ ବାଟ ପଚାରିଲେ ସେମାନେ ହାତଧରି ବାଟ କଢ଼େଇ ନେଇ ଯାଉଥିଲେ । ସମସ୍ତେ ଯେପରି ନିଜ ପରିବାରର ଲୋକ । ସେତେବେଳେ ବାସୁଦେବପୁର ଅଞ୍ଚଳ ଲୁଣମରା ଆନ୍ଦୋଳନର ହାୱାରେ ଶ୍ରୀଚରଣ କପିଳବାବୁଙ୍କ ବାପା ମିଛୁପାନ ଦାସ ଫକୀରପୁରରେ ଘର କରି ରହୁଥିଲେ । ତାଙ୍କ ଘର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଗୋଟାଏ ଅଭୟ ଆଶ୍ରୟସ୍ଥାନ ଥିଲା । ପାଖ ଆଖରେ ଗାଆଁ ଘର ଗଛ କିଛି ନ ଥିଲା ଅନେକଦୂର ପର୍ଯ୍ୟନ୍ତ । କେବଳ ବିଲ ତେଣୁ ପୋଲିସବାଲା ଆସୁଥିବାର ଦୂରରୁ ଦେଖାଗଲେ ସଂଗ୍ରାମୀମାନେ ଲୁଚି ଯାଉଥିଲେ ଅନ୍ୟତ୍ର । ଦାସଙ୍କ ଘରେ ପୋଲିସ୍ ପହଞ୍ଚି ତଲାସ କରି କାହାରିକୁ ପାଉ ନ ଥିଲେ । ତାଙ୍କ ଘରେ ଖାଇ ପିଇ ଫେରି ଯାଉଥିଲେ । ପ୍ରାଣମୂର୍ଚ୍ଛା କାମ କରିଥିବା ଆଉ ଜଣେ ସଂଗ୍ରାମୀ ହେଉଛନ୍ତି ଚକ୍ରଧର ବେହେରା । ସେ କବିରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ତୁମୂଳ ସଂଗ୍ରାମ କରିଥିଲେ । କନିକା ରାଜା ବ୍ରିଟିଶ ସରକାରଙ୍କୁ ହାତରେ ରଖିଥିବାରୁ ଚକ୍ରଧର ବାବୁଙ୍କୁ ବହୁତ କଷ୍ଟ କରିବାକୁ ପଡ଼ିଥିଲା । ତେଣୁ ଲୋକେ ତାଙ୍କୁ କନିକା ବୀର ଚକ୍ରଧରବାବୁ ବୋଲି କହନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସ ତାଙ୍କ 'ବନ୍ଦୀର ଆତ୍ମକଥା' ଓ 'କାରାକବିତା' ବହିରେ କନିକା ବିଷୟରେ ବଡ଼ କରୁଣରସରେ କବିତା ଲେଖିଛନ୍ତି । ନାରୀ ନେତ୍ରୀମାନଙ୍କ ଭିତରେ ସେତେବେଳେ ମୁଁ ସରଳା ଦେବୀଙ୍କ ନାମ ଶୁଣିଥିଲି । ସେ ବାପାଙ୍କ ପାଖକୁ କେବେ କେମିତି ଆସୁଥିଲେ । ତାଙ୍କ ପ୍ରେରଣାରେ ମୋ ମାଆ ପାଇଁ ଖଣ୍ଡିଏ ନାଲିଧଡ଼ି ହଳଦିଆ ରଙ୍ଗର ଖଦଡ଼ ଶାଢ଼ୀ କିଣା ଯାଇଥିଲା । କୁନ୍ତଳା କୁମାରୀ ସାବତଙ୍କ 'ସ୍ଫୁଲିଙ୍ଗ' ବହିରେ ଥିବା କବିତାମାନ ଆମ ପିଲାଙ୍କୁ ଭାରି ଆନନ୍ଦ ଦେଉଥିଲା । କଟକର

ସତ୍ୟଭାମାପୁର ଗାଆଁର ବାରିଷ୍ଟର ମଧୁସୂଦନ ଦାସ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ନ ଥିଲେ ମଧ୍ୟ ସ୍ୱଦେଶୀ ଭାବନା ତାଙ୍କ ଭିତରେ ପ୍ରଚୁର ପରିମାଣରେ ଥିଲା। ସେତେବେଳେ ସେ ଏକମାତ୍ର ଓଡ଼ିଆ ଥିଲେ ଯିଏ ବିଲାତରେ ଓକିଲାତି ପଢ଼ି ଆସିଥିଲେ। ଓଡ଼ିଶା ପାଇଁ ଯେତେ ଭାବୁଥିଲେ ଏବଂ ଓଡ଼ିଶାର ଗୌରବ ବୃଦ୍ଧି ଲାଗି ଯେତେ କାମ କରୁଥିଲେ ମଧ୍ୟ ସେ ବିଲାତ ଯାଇଥିବାରୁ କରଣମାନେ ତାଙ୍କୁ ଆଉ ଜାତିରେ ପୂରାଇ ନ ଥିଲେ। ଆମ ପିଲାଙ୍କ ଭିତରେ ତାଙ୍କ ବିଷୟରେ ଦି ଧାଡ଼ି କବିତା ସାରା ଓଡ଼ିଶାରେ ଚଳୁଥିଲା। "ଇଂଗ୍ରେଜୀ ପାଠ ପଢ଼ିବି, ମଧୁବାବୁ ସାଙ୍ଗେ ଲଢ଼ିବି।" ଆମ ବାପା ତାଙ୍କୁ ପ୍ରଶଂସା କରି ସବୁବେଳେ କହୁଥିଲେ। ଦୁର୍ଭାଗ୍ୟବଶତଃ ମୁଁ ତାଙ୍କୁ ଦର୍ଶନ କରିପାରିନାହିଁ। କଟକ ଯାଇ ପଢ଼ିବା ପୂର୍ବରୁ ତାଙ୍କର ଦେହାନ୍ତ ହୋଇସାରିଥିଲା। ଗୋରା କବରଖାନାରେ ତାଙ୍କ ସମାଧିରେ ଶ୍ରଦ୍ଧାଞ୍ଜଳି ଦେବାକୁ କେତେଥର ଯାଇଛି। ପରେ ଜାଣିଲି ଯେ ସେ ମାଆ ରମାଦେବୀଙ୍କ ନିଜ ବଡ଼ବାପା ଥିଲେ।

କଟକ ଓଡ଼ିଆବଜାରର ବୋଷ ପରିବାରର ପୁଅ ବୋଷ ଜଣେ ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ। ଦେଶକୁ ସ୍ୱାଧୀନ କରିବା ପାଇଁ ଗାନ୍ଧିଜୀଙ୍କ ପାଖରୁ ଚାଲିଯାଇ ଅନ୍ୟତ୍ର ରହି ଭାରତୀୟ ଲୋକମାନଙ୍କୁ ଏକତ୍ରିତ କରି ଆଜାଦ୍ ହିନ୍ଦ୍ ଫୌଜ ଗଢ଼ିଥିଲେ। ତାଙ୍କର ସଶସ୍ତ୍ର ବିଦ୍ରୋହ ପ୍ରତି ବ୍ରିଟିଶ ସରକାରଙ୍କର ଭୟ ଥିଲା। ଏ ପାଖରେ ମହାତ୍ମା ଗାନ୍ଧୀଙ୍କ ଅହିଂସା ସତ୍ୟାଗ୍ରହ, ସେ ପାଖରେ ବର୍ମା ଜାପାନ ପଟୁ ଆଜାଦ୍ ହିନ୍ଦ୍‌ର ହୁଙ୍କାର ବ୍ରିଟିଶ ସରକାରଙ୍କୁ ମନେ ମନେ ଭାରତ ଛାଡ଼ିବା ପାଇଁ ବାଧ୍ୟ କରାଇଥିଲା। ଆମେ ପିଲାମାନେ ବୋଷଙ୍କ କଥା ଶୁଣି ଚକିତ ହୋଇ ଯାଉଥିଲୁ। ବାଘା ଯତୀନ୍, ଖୁଦୀରାମ୍‌ଙ୍କ ଫାଶୀ କଥା ବି ଆମ ପିଲାଙ୍କ କାନରେ ପଡୁଥାଏ। ସ୍ୱାଧୀନତା ସଂଗ୍ରାମର ଅନ୍ୟ ନେତାମାନଙ୍କ ଅପେକ୍ଷା ପଣ୍ଡିତ ଜବାହରଲାଲ ନେହରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ କଥା ଆମେ ବେଶି ଜାଣିଥିଲୁ। ପଞ୍ଜାବର ନେତା ଲାଲା ଲଜ୍‌ପତ୍ ରାୟଙ୍କ କଥା ବିଶେଷ ଭାବରେ ଶୁଣିଥିଲୁ। "ଲାଲା ଲଜ୍‌ପତ୍ ନାହିଁ ଏ ଜବନେ ପଞ୍ଜାବ କେଶରୀ ଭାରତ ନେତା, ପାଷାଣ ହୃଦ ମୋ ତରଳି ଯାଉଛି ଶୁଣି ଏ ଦାରୁଣ ଶୋକ ବାରତା। ଏ ଗୀତ ଦି ଧାଡ଼ି ଅନେକ ଆଡ଼େ ଶୁଣାଯାଉ ଥାଏ। ବାପାଙ୍କ ପାଖରୁ ସ୍ୱାଧୀନତା ସଂଗ୍ରାମ ବିଷୟରେ ଅନେକ କଥା ଶୁଣିବାକୁ ପାଉଥିଲି। ସେ ବ୍ରିଟିଶ ସରକାରଙ୍କର ନିଷ୍ଠାପର କର୍ମଚାରୀ ଥିଲେ ଶିକ୍ଷା ବିଭାଗରେ। କିନ୍ତୁ ସବୁ ଖବର ରଖୁଥିଲେ ଓ ଅଳ୍ପକିଛି ଆମକୁ ଜଣାଉଥିଲେ। ମହାତ୍ମା ଗାନ୍ଧୀଙ୍କୁ ସେ ଭଗବାନଙ୍କ ଅବତାର ପରି ମାନୁଥିଲେ। କାରଣ ଗାନ୍ଧୀଜୀ ଆଜାନୁ-ବାହୁ ଥିଲେ ଏବଂ ଭାରତ ପରି ଧର୍ମବିଶ୍ୱାସୀ ଦେଶକୁ ଅହିଂସା ସତ୍ୟାଗ୍ରହ ଦ୍ୱାରା ସ୍ୱାଧୀନ କରେଇବାର ପ୍ରୟାସ କରୁଥିଲେ ବୋଲି ତାଙ୍କୁ ଚିର ନମସ୍ୟ ଭାବରେ ଗ୍ରହଣ କରିଥିଲେ।

ବ୍ରିଟିଶ ସରକାର ଡାକ, ତାର, ରେଳ, ଶିକ୍ଷା ବିଭାଗ ସବୁ ଖୋଲିଥିଲେ ତାଙ୍କ ଶାସନର ସୁବିଧା ପାଇଁ। ଦେଶବାସୀଙ୍କ ସୁବିଧା ପାଇଁ ନୁହେଁ। ଦେଶବାସୀ ବଢ଼ି ବୁଡ଼ି ମରୁଡ଼ି ବାତ୍ୟାରେ ପୋକମାଛି ପରି ମରୁଥିଲେ। ଲୋକ ଦେଖାଣିଆ ସାହାଯ୍ୟ ସରକାର ଦେଉଥିଲେ। ଲୋକେ ସରକାରୀ ଚାକିରି କଲେ ଶାସନର ସୁବିଧା ହେବ। ତେଣୁ ସରକାର ତାଙ୍କ ପାଇଁ ମାସିକ ଦରମା ଓ ଚାକିରି ପରେ ପେନ୍‌ସନ୍‌ର ବ୍ୟବସ୍ଥା କରିଥିଲେ। ଫଳରେ ଲୋକଙ୍କର ଗୋଲାମୀ ମନୋବୃତ୍ତି ହୋଇଗଲା। ଶାସନ ଶୃଙ୍ଖଳା ଖୁବ୍ କଡ଼ା ଥିଲା। ଏହା ଶାସକଙ୍କ ସୁବିଧା ପାଇଁ କରା ଯାଇଥିଲା। ଶାସିତଙ୍କ ମଙ୍ଗଳ ପାଇଁ ନୁହେଁ। ଭାରତୀୟ ନାରୀମାନଙ୍କୁ ଛତ୍ରପତି ଶିବାଜୀଙ୍କ ପରି ସମ୍ମାନ ସରକାର ଦେଇ ନ ଥିଲା। ତାହା ହୋଇଥିଲେ ଆଙ୍ଗ୍ଲୋ ଇଣ୍ଡିଆନ୍ ସମ୍ପ୍ରଦାୟର ସୃଷ୍ଟି ହୋଇ ନ ଥାନ୍ତା। ଶାସନର ନୀତି ଥିଲା ହାତରେ ହାତ ଘଷି ହାତକୁ ଭାଙ୍ଗିବା। ଭାରତୀୟ ସୈନ୍ୟ ବିଭାଗରେ ପୂରେଇ ଭାରତୀୟମାନଙ୍କୁ ଦଳିପେଷି ମାରୁଥିଲେ। ସେବା ଭାବର ମଞ୍ଜି ପୋତି ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଦ୍ୱେଷ ଭାବ ବଢ଼ାଇଥିଲେ। ଚହଟ ଚିକ୍କଣ ଥିବାର ଜନସାଧାରଣ ଏକଥା ବୁଝି ପାରୁ ନ ଥିଲେ। ଆମେ ପିଲା ବିଶେଷ ଦିନ ମାନଙ୍କରେ ମହାରାଣୀ ଭିକ୍ଟୋରିଆଙ୍କର ଜୟ ରଜା ପଞ୍ଚମ ଜର୍ଜଙ୍କର ଜୟ ସ୍ଲୋଗାନ୍ ଦେଇ ସ୍କୁଲ ତରଫରୁ ପ୍ରଭାତ ଫେରି କରୁଥିଲୁ। ମୃତ୍ୟୁପରେ କଳାକନା ଟିକିଏ ଜାମାରେ ମାରି ସ୍କୁଲକୁ ଯାଉଥିଲୁ। ଆମକୁ ଧାରଣା ଦିଆଯାଇଥିଲା ଯେ ଆମ ଦେଶ କୁସଂସ୍କାରରେ ପୂର୍ଣ୍ଣ ଏବଂ ବିଲାତ ଶିକ୍ଷା ସଭ୍ୟତାରେ ଆମର ଆଦର୍ଶ। ଭାରତ ନାନାଧର୍ମ, ସମ୍ପ୍ରଦାୟ, ଜାତି ଓ ଭାଷାର ଦେଶ। ପରସ୍ପର ଭିତରେ ବିଦ୍ୱେଷ ସୃଷ୍ଟି କରିବାର ଚେଷ୍ଟା ପଣ୍ଡ ହୋଇଥିଲା ଗୋଟିଏ ଇଂରେଜୀ ଭାଷା ରାଜଭାଷା ରୂପେ ପ୍ରଚଳିତ ହେବାରୁ ହିତେ ବିପରୀତ ହୋଇଥିଲା। ଭାରତୀୟମାନେ ଏକମନ ଏକପ୍ରାଣ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ। ସାରା ଭାରତରେ ଯେଉଁକଥା ଭଦ୍ରକରେ ବି ସେଇକଥା ହେଲ। ମୋଗଲ ରାଜତ୍ୱ ବେଳେ ହିନ୍ଦୁମାନେ ମୁସଲମାନଙ୍କର ବିରୁଦ୍ଧରେ ବିଦ୍ରୋହ କରୁଥିଲେ। ଯେତେବେଳେ ଜାଣିଲେ ଯେ ତୃତୀୟ ପକ୍ଷ ଉଭୟଙ୍କୁ ଦମନ କରି ତାଙ୍କୁ ଶାସନ କରିବାକୁ ଆସିଛନ୍ତି ସେତେବେଳେ ସେମାନେ ପରସ୍ପର ମଧ୍ୟରେ ମୈତ୍ରୀ ସ୍ଥାପନ କରିବାକୁ ଆରମ୍ଭ କଲେ। ଭଦ୍ରକରେ ହିନ୍ଦୁ ମୁସଲମାନଙ୍କ ଧର୍ମ ମଧ୍ୟରେ ସଂସ୍କାର ଓ ଆଚରଣଗତ ଭେଦ ଥିଲେ ମଧ୍ୟ ପରସ୍ପର ପ୍ରତି ସ୍ନେହ ସହାନୁଭୂତି ରଖି ସେମାନେ ଦୁଇଭାଇ ପରି ଚଳୁଥିଲେ।

ସରକାର ମଦ ଭାଟିମାନଙ୍କରୁ ଅନେକ ଆୟ କରୁଥିଲା। ଭଦ୍ରକରେ ମଧ୍ୟ ଏ ଅବସ୍ଥା ଚଳିଲା। ଧୀରେ ଧୀରେ ଲୋକେ ମଦ ଅଫିମ ବ୍ୟବହାର କରିବା ଆଡ଼କୁ ବେଶି ଆଗ୍ରହ କଲେ। ଲୋକେ କ୍ୟାନ୍‌ସର କଥା ଶୁଣି ନ ଥିଲେ। କୁଷ୍ଠରୋଗ କମ୍

ଥିଲା। ରୋଗ ବେମାରୀରେ ଡୁଟୁକା ଔଷଧ, କବିରାଜୀ, ଝଡ଼ାଫୁଙ୍କା ଓ ଅଳ୍ପ ହୋମିଓପ୍ୟାଥିକ୍ ଔଷଧର ବ୍ୟବହାର ଥିଲା।

ଆଜି ଯେଉଁ ଭଦ୍ରକ ସାମ୍ପ୍ରଦାୟିକ ଗଣ୍ଡଗୋଳର ସୁପ୍ତ ଆଗ୍ନେୟଗିରି ପରି ହୋଇଛି ସେତେବେଳେ ତାହା ନ ଥିଲା। ରଜ ସଂକ୍ରାନ୍ତି ବେଳେ କଦମ୍ ବେଢ଼ାରେ ହରିହାଟ ପର୍ବ ସାତଦିନ ପାଳନ କରାଯାଏ। ରାମ ଲକ୍ଷ୍ମଣ ସୀତା ହନୁମାନ ତଥା ଶିବ ପାର୍ବତୀଙ୍କ ମୃଣ୍ମୟ ମୂର୍ତ୍ତି ପ୍ରତିଷ୍ଠା କରି ସାତଦିନ କାଳ ନାମ ସଂକୀର୍ତ୍ତନ, ହରିବଂଶ ପୋଥି ଇତ୍ୟାଦି ପାଠ କରାଯାଏ। ଦୋକାନ ବଜାର ବସେ, ଯାତ୍ରା ଥିଏଟର ହୁଏ। ବହୁ ଲୋକର ସମାଗମ ହୁଏ। କୃଷ୍ଣଙ୍କ ଭୂତକେଳି ନାଚ ପୁଅପିଲାମାନେ ବେଶ ହୋଇ କରନ୍ତି। ଫାରୁକ୍‌ମିଆଁ ବୋଲି ଜଣେ ମୁସଲମାନ ଭାଇ ବରାବର କୃଷ୍ଣ ପାର୍ଟ କରୁଥିବାର ମୁଁ ଦେଖିଛି। ମୁସଲମାନ ପର୍ବରେ ତାଜିଆ ବାହାରିଲେ ହିନ୍ଦୁପିଲା ବି ଯୋଗ ଦେଉଥିଲେ। କ୍ରମଶଃ ଏ ରୀତି କମିଗଲା। ବାହାରୁ ମୁସଲମାନ ଲୋକ ଆସି ଭେଦଭାବ ସୃଷ୍ଟି କରିଦେଲେ। ଥରେ ଦଶହରା ବେଳେ ଦେବୀ ମେଢ଼ ପାଣିରେ ପଡ଼ିବା ବେଳେ ଭାରି ଗଣ୍ଡଗୋଳ ହେଲା। ବ୍ରିଟିଶ ସରକାର ତାକୁ ଦମନ କରିଥିଲେ। ପରେ ଯାତ୍ରା ପର୍ବରେ ଆଉ ସେପରି ଗଣ୍ଡଗୋଳ ହୋଇନାହିଁ। ଧାମନଗରରେ ମୁସଲମାନମାନଙ୍କର ଉତ୍ସ ପର୍ବ ଅଦ୍ୟାବଧି ପ୍ରତିବର୍ଷ ଶାନ୍ତିପୂର୍ଣ୍ଣ ଭାବରେ ହେଉଛି। ବିଭିନ୍ନ ଦେଶର ମୁସଲମାନମାନେ ଏଥିରେ ସମବେତ ହୁଅନ୍ତି।

ଅନେକ ଭଲ କଥା ଭିତରେ ଅନେକ କୁସଂସ୍କାର ବି ଥିଲା। ବାଲ୍ୟ ବିବାହ, ବାଲ୍ୟ ବିଧବା ତଥା ପରିତ୍ୟକ୍ତାମାନଙ୍କର ଦୁଃଖମୟ କରୁଣ ଜୀବନର ଅନେକ ଦୃଷ୍ଟାନ୍ତ ଦେଖିବାକୁ ମିଳୁଥିଲା। ମୁସଲମାନ ରାଜତ୍ୱ ସମୟରେ ମୁସଲମାନ ନେଇଯିବା ଭୟରେ ଅଳ୍ପ ବୟସରେ ଝିଅମାନଙ୍କୁ ବିଭା କରିଦେବାକୁ ଲୋକେ ଧର୍ମ ମନେ କରୁଥିଲେ। ଥରେ ଧର୍ମଚ୍ୟୁତ ହେଲେ ଆଉ ହିନ୍ଦୁଧର୍ମକୁ ଫେରିବାର ଉପାୟ ନ ଥିଲା। ପୂର୍ବକାଳରେ କଳାପାହାଡ଼ ଓ ବିଂଶ ଶତାବ୍ଦୀରେ ବାରିଷ୍ଟର ମଧୁସୂଦନ ତାର ପ୍ରତ୍ୟକ୍ଷ ଦୃଷ୍ଟାନ୍ତ। ଝିଅବୋହୂମାନେ ହାତରେ ମୁହଁରେ ଚିତା କୁଟେଇ ନିଜର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଅସୁନ୍ଦର କରି ଦେଉଥିଲେ। ଲୋକେ କହୁଥିଲେ ଯେଉଁ ଝିଅ ଚିତା ନ କୁଟେଇବ ମଲାବେଳେ ଯମରାଜା ତାର ଚିତା କୁଟେଇବେ। ସୁନ୍ଦରୀ ଝିଅମାନଙ୍କୁ ଆଗେ ଯେମିତି ମୁସଲମାନ ନେଇଯାଇ ବିଭା ହେଉଥିଲେ ଇଂରେଜମାନେ ବି ସେମିତି ନେଇଗଲେ। କିନ୍ତୁ ନିଜ ଦେଶକୁ ନ ନେଇ ଭାରତରେ ଛାଡ଼ିଗଲେ। ଫଳରେ ଆଙ୍ଗ୍ଲୋଇଣ୍ଡିଆନ୍ ସମ୍ପ୍ରଦାୟର ସୃଷ୍ଟି ହେଲା। ଧର୍ମନଷ୍ଟ ହେବା ଭୟରେ ହିନ୍ଦୁମାନେ ମୁସଲମାନ ବା ଖ୍ରୀଷ୍ଟିୟାନମାନଙ୍କ ଘରେ ଖାଉନଥିଲେ। ଏପରିକି ଅନେକ ନୈଷ୍ଠିକ ହିନ୍ଦୁ ସେମାନଙ୍କୁ ଛୁଇଁଥିଲେ ଘରକୁ ଆସି

ଗାଧୋଇ ଲୁଗା ଧୋଇ ପକାଉଥିଲେ। ଉଚ୍ଚଜାତି ଓ ନୀଚଜାତିଙ୍କ ଭିତରେ ବି ପ୍ରବଳ ଭେଦଭାବ ଥିଲା। ବାପାଙ୍କ ମୁହଁରୁ ଅନେକଥର ଶୁଣିଛି ଯେ ସେ ରେଭେନ୍ସା କଲେଜରେ ପଢୁଥିବା ବେଳେ ତାଙ୍କର ଜଣେ ବ୍ରାହ୍ମଣ ସହପାଠୀଙ୍କ ସାଙ୍ଗରେ ଖୁବ୍ ଘନିଷ୍ଠତା ଥିଲା। ହଷ୍ଟେଲ୍‌ର ପୂଜାରୀ ଦିନେ ସେଇ ବ୍ରାହ୍ମଣ ତାଟିଆରେ ବାପାଙ୍କୁ ତରକାରୀ ବାଢ଼ି ଦେଇଥିଲେ ଏବଂ ବାପା ସେ ତାଟିଆରେ ଖାଇଥିବାରୁ ସେ ଘୋର ଆପତ୍ତି କଲେ। ସେ ତାଟିଆକୁ ନିଆଁରେ ପୋଡ଼ିବା ପରେ ବ୍ରାହ୍ମଣ ବନ୍ଧୁ ତାକୁ ବ୍ୟବହାର କରିଥିଲେ। ହରିଜନମାନଙ୍କ ପ୍ରତି ମଧ୍ୟ ସେହିପରି ବ୍ୟବହାର ଥିଲା ଯଦ୍ୟପି ସେମାନେ ହିନ୍ଦୁ ଦେବାଦେବୀମାନଙ୍କୁ ମାନୁଥିଲେ। ଉଚ୍ଚଜାତିର ପିଲାମାନେ ତାଙ୍କ ଜାତିରୁ ତଳ ଜାତିର ଗୁରୁଜନମାନଙ୍କୁ ପ୍ରଣାମ କରୁ ନ ଥିଲେ। ମୁଁ ଥରେ ଆମ ଗାଆଁର ରାଢ଼ୀଘର ବାଲ୍ୟବିଧବା ବୟସ୍କା ଓ ଆମଘରର ଅତି ଆପଣାର କୋଇଲି ନାନୀଙ୍କୁ ପ୍ରଣାମ କରିଥିଲି। ତାଙ୍କ ଦେହରେ ମୋ ଗୋଡ଼ ବାଜିଯିବାରୁ। ପାଖରେ ଥିବା ଅନ୍ୟ ସ୍ତ୍ରୀଲୋକମାନେ ଏହା ଦେଖି କହିଲେ, 'ଏଇଟା ଚଣ୍ଡୀଟାଏ। ଯାର ଜ୍ଞାନ ବୁଦ୍ଧି କିଛି ନାହିଁ' ମୁଁ ତୁରନ୍ତ ଉତ୍ତର ଦେଇଥିଲି, 'ତା ଦେହରେ ବି ଭଗବାନ ଅଛନ୍ତି। ସେ ମୋ ମାଆ ବୟସର ଗୁରୁଜନ। ତାକୁ ଜୁହାର ହେଲେ କ୍ଷତି କଅଣ ?' ସମସ୍ତେ ହସିଲେ। ମୁଁ ବାପାଙ୍କୁ ଏ କଥା ଜଣାଇବାରୁ ସେ ମୋତେ ବୋଧ ଦେବାକୁ କହିଲେ, 'ତୁ ଠିକ୍ କରିଛୁ।'

ହରିଜନ ପିଲାଙ୍କୁ ମୁଁ ଛୁଇଁଦେଲେ ଗାଁରେ ସମସ୍ତେ କହନ୍ତି, "ଯାଆ, ଗାଧୋଇ ପଡ଼ି ଲୁଗା ପାଲଟି ପକା।" ମୁଁ ନାହିଁ କରେ ଏବଂ ବାପାଙ୍କୁ ଜଣାଏ ଯେ, "ମୁଁ କାହିଁକି ଲୁଗା ଧୋଇବି ? ତା ଦେହରେ କ'ଣ ଭଗବାନ ନାହାନ୍ତି ?" ବାପା ମୋତେ ଶାନ୍ତ କରିବାକୁ ସମର୍ଥନ କରନ୍ତି। ରଜଦିନ ଆମ ଘରଠାରୁ ତଳ ଜାତିର କେତେକ ପ୍ରିୟଜନଙ୍କ ଘରୁ ମୁଁ ଟିକିଏ ଟିକିଏ ପୋଡ଼ପିଠା ମାଗି ଖାଇଦେଇ ଆସେ। ଘରେ ଓ ଗାଆଁରେ ସମସ୍ତେ କହନ୍ତି, "ସେଇଟା ଅଣ୍ଡିରୀ ଚଣ୍ଡୀଟାଏ। ତାକୁ କିଛି କହିବା ବା ବୁଝେଇବା ବ୍ୟର୍ଥଶ୍ରମ।" ଆମ ଘରେ ଧୋବଣୀ ଗୋବିନ୍ଦ ବୋଉ କାନି ଫିଟେଇ ପାନ ଖାଇଦିଏ। ସେ ବ୍ୟସ୍ତ ହୁଏ। ସ୍ନେହରେ କିଛି କହେ ନାହିଁ। ଭଣ୍ଡାରୁଣୀ ସାରିଆମା ମାଉସୀକୁ ନିଜ ମାଉସୀ ପରି ବ୍ୟବହାର କରେ। ଭଣ୍ଡାରୀ ଶ୍ୟାମଭାଇଙ୍କୁ ନିଜ ଭାଇ ପରି ବ୍ୟବହାର କରେ। ଏବେ ବି ତାଙ୍କ ପୁଅମାନେ ମୋତେ ପିଉସୀ ହିସାବରେ ଅପା ଓ ମୋ ଭାଇମାନଙ୍କୁ ଦାଦା ବୋଲି ଡାକନ୍ତି। ରାମ ଥଟ୍ଟାରୀ ବାପାଙ୍କ ପାଖରେ ସନ୍ଧ୍ୟା ପ୍ରାର୍ଥନା ପରେ ପୁରାଣ ପଢ଼େ। ମୁଁ ତାକୁ ବଡ଼ଭାଇ ପରି ଭଲ ପାଏ। ଗାଁର ସବୁ ଝିଅବୋହୂମାନେ ଧନୀ ଗରିବ ନିର୍ବିଶେଷରେ ଆର୍ଥିକ ଅବସ୍ଥା ଅନୁସାରେ ସୁନା ଓ ରୂପାର ଗହଣା ନାକ, କାନ, ବେକ, ହାତ, ଗୋଡ଼ ସବୁଆଡ଼େ ପିନ୍ଧିଥାଆନ୍ତି। ମୋ ହାତରେ କେବଳ ରୂପାର ଗୁନ୍ଥା ବଟଫଳ

ପଟେ ଥାଏ ଯାହାର ବଟଫଳ ସବୁ ଚେପା ଭଙ୍ଗା ଅବସ୍ଥାରେ ଥାଏ। ବାପା ବୁଝେଇ ଦେଇଥିଲେ ସ୍ତ୍ରୀ ଲୋକମାନଙ୍କୁ ଦାସୀ ପରି ଘରେ ବନ୍ଦ କରି ପୁରୁଷର ଅଧୀନରେ ରହିବାକୁ ଏ ଗହଣା ସବୁ ଲଗାଇ ଦିଆଯାଉଥିଲା। ମୁଁ ତାର ସାରାଂଶ ମାନି ନେଇଥିଲି ଯେ ମୁଁ କାହାରି ଦାସୀ ହେବିନାହିଁ କି ପରାଧୀନ ଭାବରେ ରହିବି ନାହିଁ। କେବଳ ଭଗବାନଙ୍କର ମୁଁ ଦାସୀ। ମୋର ଗହଣା ଲୋଡ଼ା ନାହିଁ। ସ୍ୱାଧୀନ ରହିବାକୁ ଜିଦ୍ କରି ପାଠ ପଢ଼ି ବି.ଏ. ଯାଏ ଗଲି। ମୋ ପାଠପଢ଼ା ଭଦ୍ରକରେ ଝିଅମାନଙ୍କ ପାଠ ପଢ଼ିବାର ସୁଅ ଫିଟାଇ ଦେଇଥିଲା। ଏବେ ଝିଅମାନେ ପାଠ ପଢ଼ିବା ଗୋଟାଏ ଅନିବାର୍ଯ୍ୟ ବ୍ୟବସ୍ଥା ହୋଇଯାଇଛି। ମୁଁ ସେକାଳର ଶିକ୍ଷିତା ଅବିବାହିତାଟିଏ ଏବେ ପାଳଭୂତ ପରି ଗାଁରେ ବୁଲୁଛି।

ଭଦ୍ରକର ଅନେକ ଗାଆଁ ପରି କୁଆଁସରେ କେତୋଟି ପର୍ବ ପ୍ରାୟ ଅଧିକାଂଶ ଘରେ ପାଳନ୍ତି। ରଜ, କୁଆଁରପୁନେଇ, ଦଶହରା, ଅଗିରାପୁନେଇଁ, ଦୋଳଯାତ୍ରା, ଝୁଲଣ ପୂର୍ଣ୍ଣିମା, ଶିବ ଚତୁର୍ଦ୍ଦଶୀ, ମାଣବସା ଗୁରୁବାର, ପଣା ସଂକ୍ରାନ୍ତି, ଗଣେଶ ଚତୁର୍ଥୀ, ଶ୍ରୀପଞ୍ଚମୀ, ଧନୁସଂକ୍ରାନ୍ତି ଆଦି ନାନା ପର୍ବ ଗାଆଁର ରୁଟିନ ଗତ ଜୀବନକୁ ପରିବର୍ତ୍ତନ କରି ଆନନ୍ଦମୁଖର କରିଦିଏ। ଗାଆଁରେ କେତୋଟି ପୋଖରୀ ଓ ଖାଲିଜାଗା ଥିଲା। ବର୍ଷାଦିନେ କଇଁଫୁଲ ଫୁଟେ। ଭାଇମାନେ ତୋଳି ଆଣି ଭଉଣୀମାନଙ୍କୁ ଦିଅନ୍ତି। କୁଆଁରପୁନେଇ ପୂର୍ବଦିନ ସନ୍ଧ୍ୟାବେଳେ ଝିଅମାନେ ଫୁଲର ପାଖୁଡ଼ା ଖଞ୍ଜି ଚଉରା ମୂଳରେ ବଡ଼ଘର କରନ୍ତି। ପିଲା ବଡ଼ ସମସ୍ତେ ଘର ଘର ବୁଲି ଏଇ କଇଁଫୁଲ ପାଖୁଡ଼ାର ବଡ଼ଘର ଦେଖନ୍ତି। ମାଣବସା ବେଳେ ସବୁ ଘରେ ଝୋଟିଚିତା ପଡ଼େ। ଝିଅବୋହୂମାନେ ନାନା ପ୍ରକାର ଝୋଟି ଚିତାରେ ଘରକୁ ସୁନ୍ଦର କରନ୍ତି ମା ଲକ୍ଷ୍ମୀଙ୍କ ଆଗମନ ପାଇଁ। କାର୍ତ୍ତିକ ପୂର୍ଣ୍ଣିମା ବେଳେ ବୁଡ଼, ପଞ୍ଚୁକ ପାଳନ ସାଙ୍ଗରେ ଚଉରାମୂଳେ ପକାଯାଏ। ଝିଅମାନେ ଅଭ୍ୟାସ କରନ୍ତି। ବୈଶାଖ ଓ ଜ୍ୟେଷ୍ଠ ମାସରେ କୋଇଲି ଓଷା ହେଉଥିଲା। କ୍ରମେ ବୁଡ଼ିଗଲା। କୃଷ୍ଣ ମଥୁରାକୁ ଯିବା ପରେ ଯଶୋଦା ପୁଅକୁ ଝୁରି ଝୁରି ଆମ୍ବଗଛ ଡାଳରେ ମାଟିର କୋଇଲିଟିଏ ପିଞ୍ଜରା ଭିତରେ ରଖି ସେ ଦୁଇମାସ ଆମ୍ବ ନଖାଇ କୋଇଲିଟିକୁ ପୂଜା କରୁଥିଲେ। ତାକୁ କହୁଥିଲେ ତାଙ୍କ ହୃଦୟର ବେଦନା କଳା କହ୍ନେଇକୁ ଯାଇ ଜଣାଇବାକୁ। କୁମାରୀ ଝିଅମାନେ ଏ ଓଷା ପୂର୍ବେ କରୁଥିଲେ। ଆମ ଗାଆଁରେ ତଥା ଭଦ୍ରକରେ ଅନେକ ଆମ୍ବତୋଟା ଥିଲା। କଞ୍ଚା ପାଚିଲା ଆମ୍ବ ଖାଇବା ପାଇଁ ପିଲାଏ ସେଠି ଭିଡ଼ କରୁଥିଲେ। ଉଦୁଉଦିଆ ଖରାବେଳେ ମାଆବାପା ଶୋଇଗଲେ ପିଲାଙ୍କର ଏ କାର୍ଯ୍ୟକ୍ରମ ନିୟମିତ ହେଉଥିଲା। ସ୍କୁଲକୁ ଯିବା ଓ ଫେରିବା ବେଳେ ମଧ୍ୟ ଏ କାମ ହୁଏ। ଚୈତ୍ର ସଂକ୍ରାନ୍ତି ବେଳେ ଗାଁର କୁମାରେଶ୍ୱର ମହାଦେବଙ୍କ ଆଗରେ ଝାମୁ ଯାତ୍ରା

ହୁଏ। ମାଆ ମଙ୍ଗଳାଙ୍କ ପ୍ରତି ଭକ୍ତିରେ ଦିନଯାକ ନିର୍ଜଳା ଉପବାସ କରି ଘଣ୍ଟପାଟୁଆମାନେ ଉପରଓଳି ନିଆଁ ଉପରେ ଚାଲନ୍ତି। ପ୍ରାୟ ଆଠଫୁଟ ଲମ୍ବ ଆଣ୍ଠୁଆ ଗହୀର ଗାତ ଖୋଳି ସେଥିରେ ନିଆଁ ଜାଳି ମୁଠା ମୁଠା ଝୁଣା ଫିଙ୍ଗି ଜଳି ଯାଉଥିବା ବେଳେ ପାଟୁଆମାନେ ତା ଉପରେ ଏ ମୁଣ୍ଡରୁ ସେ ମୁଣ୍ଡକୁ ଚାଲି ଚାଲି ଯାଆନ୍ତି। ତାଙ୍କ ପାଦ ପୋଡ଼ିଯାଏ ନାହିଁକି ଫୋଟକା ହୁଏ ନାହିଁ। ଉପରେ ବାଉଁଶ ବାନ୍ଧି ତା ଦେହରେ ଗୋଡ଼ ଛନ୍ଦି ନିଆଁ ଆଡ଼କୁ ମୁଣ୍ଡ କରି ଝୁଲନ୍ତି। ତାଙ୍କର ବି କିଛି କ୍ଷତି ହେବାର ଦେଖାଯାଏ ନାହିଁ। ଝଙ୍କଡ଼ ସାରଳାଙ୍କ ପାଖରେ ଝାମୁଯାତ୍ରା ହୁଏ। ଏଇ ଚୈତ୍ର ସଂକ୍ରାନ୍ତି ମାସନ୍ତଠାରୁ ପ୍ରଥମଦିନ ପର୍ଯ୍ୟନ୍ତ ତିନିଦିନ ରାତିରେ ଚୈତ୍ର ତାମସା ହୁଏ। ଚୌଡ଼ା ତାମସା, ମୋଗଲ ତାମସା ଓ ଯୋଗୀ ତାମସା ପ୍ରତିଦିନ ଗୋଟିଏ ତାମସା ହୁଏ। ମୋଗଲ ତାମସା ଏଥିରେ ପ୍ରଧାନ। ଏହା ବଂଶୀଧର ଗୋସ୍ୱାମୀଙ୍କର ଲିଖିତ ଗୋଟିଏ ବ୍ୟଙ୍ଗ ନାଟକ। ମୋଗଲ ରାଜତ୍ୱରେ ଶାସକମାନଙ୍କର ବ୍ୟବହାର ଏଥିରେ ପ୍ରଦର୍ଶିତ ହୋଇଥାଏ।

ଗାଆଁରେ ଗୋଟିଏ ଦୁଇଟି ଜାଗାରେ ନିରୋଳା ଦିପହର ବେଳେ ବୟସ୍କା ସ୍ତ୍ରୀଲୋକମାନେ କୁମାରୀ ଝିଅମାନଙ୍କୁ ବିବାହ ବେଳର କାନ୍ଦଣା ଗୀତ ଶିଖାନ୍ତି। ଥରେ ମୁଁ ଭୁଲ୍‌ରେ ଗୋଟାଏ ଜାଗାକୁ ଚାଲିଯାଇଥିଲି। ଅଳ୍ପ ସମୟ ରହିବା ପରେ ଦଉଡ଼ି କରି ସେଠୁ ପଳେଇ ଆସି ବଡ଼ଭାଇ ଓ ବାପାଙ୍କୁ ସେ ଖବର ଦେଲି। ବାପା କହିଲେ ତୁ ଆଉ ଆଉ ସେଠିକି ଯିବୁ ନାହିଁ। ଗାଁର ସ୍ତ୍ରୀଲୋକମାନେ କହିଲେ – "ଏଇଟା ଅଣ୍ଡିରା ଚଣ୍ଡୀଟାଏ।" ଦୁଇ ତିନିଦିନ ସାଇକେଲ୍ ଚଢ଼ିବାର ଅଭ୍ୟାସ କଲି। ମୋ ମାଆ ପାଖକୁ ଅନେକ ଆପତ୍ତି ଅଭିଯୋଗ ଆସିଲା। ଗାଁଆଯାକର ସ୍ତ୍ରୀଲୋକ କହିଲେ, "ଏଇଟା ଅଣ୍ଡିରାଚଣ୍ଡୀଟାଏ। ଭାଇମାନଙ୍କ ସାଙ୍ଗରେ ସାଇକେଲ ଚଢୁଛି, ନଈରେ ପହଁରୁଛି, ଗଛ ଚଢୁଛି। ମୁଣ୍ଡରେ ଲୁଗା ଦେଉନାହିଁ। କୀର୍ତ୍ତନ ଓ ଧର୍ମଚର୍ଚ୍ଚାବେଳେ ପୁରୁଷମାନଙ୍କ ଭିତରେ ଯାଇ ବସୁଛି। ଖଣ୍ଡେ ଅଧେ ଗହଣା ବି ଦେହରେ ରଖୁନାହିଁ। ଏତେ ବଡ଼ଘର ଝିଅ ହେଲେ ବି ବେକରେ କାନରେ ନାକରେ ହାତରେ ଗୋଡ଼ରେ କେଉଁଠି କିଛି ନାହିଁ।" ସମାଜର ଏଇ ପରିସ୍ଥିତିରୁ ମୋ ପରି କେତେଝିଅ ବାହାରିଥିବେ। ସେଦିନର ସେ ଗାଆଁ, ଆଉ ଆଜିର ଗାଆଁ ଭିତରେ ଆକାଶ ପାତାଳ ପ୍ରଭେଦ।

ଏ କୁଆଁସ ଗାଆଁ ମୋ ଘର, ଏ ଭଦ୍ରକ ମୋର ରାଜ୍ୟ, ଏଠାକାର ସବୁ ଲୋକ ମୋର ଆପଣାର, ଏଇ ଭାବନାରେ ମୁଁ ପୁଷ୍ଟ ହୋଇଥିଲି। ପରେ ଗାନ୍ଧୀ ବିନୋବାଙ୍କ କାମରେ ଯୋଗ ଦେଇ ମୋ ଘରର ପରିସର ତଥା ପରିବାର ବିଶ୍ୱବ୍ୟାପକ ହୋଇଯାଇଛି। ମୋର ଏ ଭାବ ଆଜିର ଆତ୍ମକୈନ୍ଦ୍ରିକ ସମାଜ ବୁଝୁନାହିଁ କି ବୁଝିବନାହିଁ। ନିରବ ଦେଶପ୍ରେମୀ ହୋଇ ବସି ରହିଛି। ପିଲାବେଳେ ଗାଁ ବାହାର ଲୋକ କାହାରି ଘରକୁ

ବାଟ ପଚାରିଲେ ଆମେ ପିଲାଏ ତାଙ୍କୁ ସାଙ୍ଗରେ ନେଇ ଯଥାସ୍ଥାନରେ ପହଞ୍ଚେଇ ଦେଉଥିଲୁ। ଏବେ ବି ମୋ ଭିତରେ ଏଇ ଭାବ ଓ ଚେଷ୍ଟା ରହିଛି। କିନ୍ତୁ ଗାଆଁ ଓ ଦେଶର ସମୟ, ପରିସ୍ଥିତି ଓ ଭାବଭାବନା ବଦଳିଯାଇଛି। ମୁଁ ଅଣନିଃଶ୍ୱାସୀ ହୋଇ ପଡ଼ିଲେ ବି ଏସବୁ ନିରବରେ ଦେଖି ଯାଉଛି।

"ସମୟର ସୁଖ ଯାଉଛି ବହି
ପିଲାଦିନ ସୁଖ ନ ହେବ କହି।"

*("ମୋ ପିଲାଦିନ ଆଖିରେ ଭଦ୍ରକ", ଶିଖା, ପୃଷ୍ଠା ୬୦-୭୫)*

* * *

**ସମାଜ ସେବୀ**

# ନିରୁପମା ରଥ

## (୧୯୨୬-୨୦୧୧)

ନିରୁପମା ରଥ ୧୯୨୬ ମସିହାରେ କଟକ ଚାନ୍ଦୋଲଠାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ଚତୁର୍ଭୁଜ ମହାନ୍ତି ଶିକ୍ଷା ବିଭାଗରେ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଥିଲେ। ତାଙ୍କୁ ତାଙ୍କ ମାଉସୀମଉସା (ମାଆଙ୍କ ଭଉଣୀ ଏବଂ ତାଙ୍କ ସ୍ୱାମୀ) ପୋଷ୍ୟପୁତ୍ରୀ ଭାବେ ଗ୍ରହଣ କରିଥିଲେ। ସେ ସେମାନଙ୍କ ସହିତ କଟକ ସହରରେ ରହୁଥିଲେ। ତାଙ୍କ ମାମୁଁ ଜୟକୃଷ୍ଣ ପଟ୍ଟନାୟକ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ; ତାଙ୍କର ଦୁଇପୁଅ ଅନନ୍ତ ପଟ୍ଟନାୟକ (୧୯୧୨-୧୯୮୭) ଏବଂ ଗୁରୁଚରଣ ପଟ୍ଟନାୟକ (୧୯୧୭-୨୦୧୨) ମଧ୍ୟ ନିରୁପମାଙ୍କ ପାଳିକା ମାତାଙ୍କ ଦ୍ୱାରା ପାଳିତ ହୋଇଥିଲେ। ସେ ଦିହେଁ ଯୁବାବସ୍ଥାରେ ଓଡ଼ିଶାରେ ବାମପନ୍ଥୀ ଆନ୍ଦୋଳନର ପୁରୋଧା ଥିଲେ। ମାମୁଁପୁଅ ଭାଇଙ୍କ ମେଳରେ ବଢ଼ି ନିରୁପମା ପିଲାଦିନୁଁ ସମାଜବାଦୀ ଓ ବାମପନ୍ଥୀ ଆଦର୍ଶ ପ୍ରତି ଆକର୍ଷିତ ହୋଇଥିଲେ। ନିରୁପମା ରଥ ୧୯୪୫ ମସିହାରୁ ୧୯୫୦ ପର୍ଯ୍ୟନ୍ତ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଅଧ୍ୟୟନ କରିଥିଲେ ଏବଂ ସମୟ କ୍ରମେ ରାଜ୍ୟର ଜଣେ ଜଣାଶୁଣା ସ୍ତ୍ରୀ ରୋଗ ବିଶେଷଜ୍ଞ ହୋଇଥିଲେ। ଜାତି ଉପରେ ଆଧାରିତ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ତଥା ନିଜ ପରିବାରର ଇଚ୍ଛା ବିରୁଦ୍ଧରେ ଯାଇ ନିରୁପମା ଜଣେ ବ୍ରାହ୍ମଣ ଯୁବକ ଗଙ୍ଗାଧର ରଥଙ୍କୁ ୧୯୪୬ ମଇ ୪ ତାରିଖରେ ବିବାହ କରିଥିଲେ। ଗଙ୍ଗାଧର ରଥ (୧୯୨୨-୨୦୦୮) ପେସାରେ ଜଣେ ଆଇନଜୀବି ଥିଲେ।

ନିରୁପମା ପାଠ ପଢ଼ା ସମୟରୁ ଦେଶର ବିଭିନ୍ନ ଛାତ୍ର ଆନ୍ଦୋଳନରେ ଭାଗ ନେଇଥିଲେ। ସେ ଏକ ଆଦର୍ଶ ସାମାଜିକ ଶୃଙ୍ଖଳା ଗଠନ କରିବାର ଉପାୟ ଭାବରେ କମ୍ୟୁନିଜିମ୍ ଏବଂ ସମାଜବାଦ ପ୍ରତି ଆକର୍ଷିତ ହୋଇଥିଲେ ଏବଂ ଓଡ଼ିଶାରେ ଅନେକ ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ। ସେ ନିଜ ଜୀବନ କାଳରେ ରାଜାରାଜୁଡ଼ାଙ୍କ ଅତ୍ୟାଚାର ଏବଂ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ। ତାଙ୍କ କାର୍ଯ୍ୟକୁ ସ୍ୱୀକୃତି ଦେଇ ତାଙ୍କୁ ୧୯୭୨ମସିହାରେ ସୋଭିଏତ୍ ଲ୍ୟାଣ୍ଡ୍ ନେହରୁ ପୁରସ୍କାର, ୧୯୯୩ ମସିହାରେ ଜାତୀୟ ଏକତା ପୁରସ୍କାର ଏବଂ ଅନ୍ୟାନ୍ୟ ଚିକିତ୍ସା ଏବଂ ସାହିତ୍ୟିକ ପୁରସ୍କାର ପ୍ରଦାନ କରାଯାଇଥିଲା।

ନିରୁପମା ଇଣ୍ଡିଆନ ମେଡ଼ିକାଲ ଆସୋସିଏସନର ପ୍ରତିଷ୍ଠାତା ସହଯୋଗୀ ଥିଲେ। ସେ ୧୯୮୭ ମସିହାରୁ ୨୦୦୦ ମସିହା ପର୍ଯ୍ୟନ୍ତ ଇଣ୍ଡିଆନ୍ ମେଡିକାଲ୍ ଆସୋସିଏସନର ଓଡ଼ିଶା ରାଜ୍ୟ ସଭାପତି ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ। ସେ ମହିଳାମାନଙ୍କ ସମସ୍ୟା ଉପରେ ବିଶେଷ କରି ନାରୀମାନଙ୍କ ସ୍ୱାସ୍ଥ୍ୟ ଏବଂ ଶିଶୁମାନଙ୍କ ଯତ୍ନ ଉପରେ ଅନେକ ପୁସ୍ତକ ଏବଂ ପ୍ରବନ୍ଧ ଲେଖିଛନ୍ତି। ତାଙ୍କ ପୁସ୍ତକଗୁଡ଼ିକରେ ଶିଶୁସ୍ୱାସ୍ଥ୍ୟ (୧୯୭୨), ପ୍ରସୂତି ବିଜ୍ଞାନ (୧୯୭୬), କନ୍ୟା (୧୯୯୧), ନାରୀ ଓ ଆଇନ୍ (୧୯୯୫) ଅନ୍ତର୍ଭୁକ୍ତ। ତାଙ୍କର ଆତ୍ମଜୀବନୀ "ଅଲିଭା ସ୍ମୃତି ଅଭୁଲା ଅନୁଭୂତି" ୨୦୦୪ ମସିହାରେ ପ୍ରକାଶିତ ହୋଇଥିଲା। ନିମ୍ନ ଉଦ୍ଧୃତାଂଶରେ ସେ ଜଣେ ଯୁବନେତ୍ରୀ ଭାବରେ ଓଡ଼ିଶା ତଥା ଓଡ଼ିଶା ବାହାରେ ବିଭିନ୍ନ ସାମାଜିକ ଓ ରାଜନୈତିକ ଆନ୍ଦୋଳନର ଗତିବିଧି ସହିତ ଜଡ଼ିତ ଥିବା ବିଷୟରେ ବର୍ଣ୍ଣନା କରିଛନ୍ତି।

## ଆନ୍ଦୋଳନ

ଆନ୍ଦୋଳନ ହେବ ମୋର ଜୀବନର ମନ୍ତ୍ର ଏକଥା ମୁଁ କେବେ ଜ୍ଞାତ ସାରରେ ଭାବିନଥିଲି। ମାତ୍ର ମୋର ଅଜ୍ଞାତରେ ଆନ୍ଦୋଳନାତ୍ମକ ଭାବପ୍ରବଣତା ଅର୍ଥାତ୍ ବିଦ୍ରୋହାତ୍ମକ ଚେତନା ମୋର ମନ ଭିତରେ ଗଢ଼ି ଉଠିଛି – ଲୁକ୍କାୟିତ ଭାବେ ଗୋପନରେ। ଅନ୍ୟାୟ, ଅନୀତି, ଦୁର୍ନୀତି ବିରୋଧରେ ମୋର ରକ୍ତର ଉଷ୍ଣତା ସ୍ୱାଭାବିକ ତାପମାତ୍ରାର ଉପରକୁ କ୍ରମଶଃ ବୃଦ୍ଧି ପାଇଚାଲିଛି। ପିଲାଦିନରୁ ମୋର ପାରିପାର୍ଶ୍ୱିକ ଅବସ୍ଥା – ଗରିବ ନିରନ୍ନ ମଣିଷର ଆର୍ତ୍ତନାଦ, କ୍ଷୁଧାର ଅନଳ, ମୋର ଉଷ୍ମ ରକ୍ତକୁ କରିଛି ଆଗ୍ନେୟ ଗିରିରୁ ପ୍ରବାହିତ ଲାର୍ଭା ପରି ଉତ୍ତପ୍ତ। ସେହି ଉତ୍ତାପରେ ମୋର ଦେହ ଓ ମନର ମେସିନାରୀ, ଆସ୍ତେ ମୋର ଅଜାଣତରେ ଚାଳିତ ହୋଇ ସୃଷ୍ଟି କରିଛି ମୋ ଭିତରେ ସାମାଜିକ ଅନ୍ୟାୟ, କଷଣ, ଶୋଷଣ, ବିରୁଦ୍ଧରେ ବିଦ୍ରୋହର ଅଗ୍ନି – ଆନ୍ଦୋଳନାତ୍ମକ ମନୋଭାବ।

ପରିଣତିରେ ବିଭିନ୍ନ ପ୍ରକାରର ଜନଆନ୍ଦୋଳନ, ଛାତ୍ରୀ ମହିଳା ଆନ୍ଦୋଳନ, ନିପୀଡ଼ିତ ନିଷ୍ପେଷିତ ଅତ୍ୟାଚାରିତ ନିରକ୍ଷର ଜନଗଣଙ୍କର ଆନ୍ଦୋଳନ ମଧ୍ୟକୁ ଟାଣି ହୋଇଗଲି।

ସର୍ବଭାରତୀୟ ଓ ରାଜ୍ୟସ୍ତରୀୟ ଛାତ୍ର ଆନ୍ଦୋଳନରେ ସଂଶ୍ଲିଷ୍ଟ ରହୁଥିଲି। ମୁଁ ପିଲାଟି ଦିନରୁ ବିଭିନ୍ନ ଛାତ୍ର ଆନ୍ଦୋଳନରେ ଥିଲି। ସେହି ଛାତ୍ର ଆନ୍ଦୋଳନରୁ ମୋର ପରବର୍ତ୍ତୀ ଜୀବନର ମୂଳଭିତ୍ତି ପଡ଼ିଥିଲା। ମୋର ରାଜନୈତିକ ଜୀବନ, ସ୍ୱାଧୀନତା ସଂଗ୍ରାମ, ସାଂଗଠନିକ ଜୀବନର ବିକାଶ ସେହି ଛାତ୍ର ଆନ୍ଦୋଳନରୁ ହିଁ ଘଟିଲା।

**ଗଡ଼ଜାତ ଆନ୍ଦୋଳନ**

ଗଡ଼ଜାତ ଆନ୍ଦୋଳନ କଥା ବର୍ତ୍ତମାନ ପିଢ଼ି ପାଇଁ ସୁଦୂର ଇତିହାସ କିନ୍ତୁ ସେମାନଙ୍କର ସଂଗ୍ରାମ ଥିଲା ଅଧିକ କଠିନ। ରାଜସାହୀ ବିରୁଦ୍ଧରେ ସଂଗ୍ରାମ ଏବଂ ତାହା ସହିତ ଭାରତବର୍ଷର ସ୍ୱାଧୀନତା ପାଇଁ ସଂଗ୍ରାମ ଏକ ଦ୍ୱିମୁଖୀ ସଂଗ୍ରାମ ସେମାନଙ୍କୁ କରିବାକୁ ପଡୁଥିଲା। ୧୯୩୮ ମସିହାରେ ଢେଙ୍କାନାଳର ଅତ୍ୟାଚାରୀ ରାଜା ଶାସନ ବିରୁଦ୍ଧରେ ପ୍ରଜା ମଣ୍ଡଳର ଆହ୍ୱାନରେ ଛାତ୍ରୀମାନଙ୍କର ପ୍ରଥମ ଆନ୍ଦୋଳନ ହୋଇଥିଲା। ମୁଁ ସେହି ଆନ୍ଦୋଳନରେ ଯୋଗ ଦେବାପାଇଁ ଢେଙ୍କାନାଳ ଯାଇଥିଲି।

୧୯୪୨ ମସିହାରୁ ୧୯୪୬ ମସିହା ପର୍ଯ୍ୟନ୍ତ ଘୋର ବ୍ରିଟିଶ ବିରୋଧୀ ଆନ୍ଦୋଳନ ଚାଲିଥିଲା। ମୁଁ ସେଥିରେ ପ୍ରତ୍ୟକ୍ଷ ଭାବେ ଜଡ଼ିତ ଥିଲି।

୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ (Quit India movement)ର ଗାନ୍ଧିଜୀ ଆହ୍ୱାନ ଦେଲେ। ତାଙ୍କର ଆହ୍ୱାନ 'କର ଅବା ମର' ଆହ୍ୱାନକୁ ଦୋହରାଇ ସ୍କୁଲ, କଲେଜ ରାଜରାସ୍ତାରେ ସଭା, ଶୋଭାଯାତ୍ରା ଆଦିରେ ନିଜକୁ ହଜାଇ ଦେଉଥିଲି।

୧୯୪୬ ମସିହାରେ ଗାର୍ଲସ ଷ୍ଟୁଡେଣ୍ଟ ଆସୋସିଏସନ ଗଠନ କରି ଛାତ୍ରୀମାନଙ୍କୁ ଛାତ୍ର ଆନ୍ଦୋଳନ ମଧ୍ୟକୁ ଆଣିବା ପାଇଁ ପ୍ରୟାସ କରିଥିଲି। ସାଙ୍ଗରେ ଥିଲେ ନନ୍ଦିନୀ ଶତପଥୀ, ସାବିତ୍ରୀ ଆଚାର୍ଯ୍ୟ ପ୍ରମୁଖ ବନ୍ଧୁମାନେ।

ସେହି ୧୯୪୬ ମସିହା ଡିସେମ୍ବର ୧୮ ତାରିଖରେ ରେଭେନ୍ସା କଲେଜର ଶିଖରୁ ଇଉନିଅନ୍ ଜ୍ୟାକ୍ ପତାକାକୁ ଓହ୍ଲାଇ ଦିଆଯାଇଥିଲା। ମନମୋହନ ମିଶ୍ର ଓ ବସନ୍ତ ମିଶ୍ର ପ୍ରମୁଖ ଏଥିରେ ମୁଖ୍ୟ ଥିଲେ। ମୁଁ, ନନ୍ଦିନୀ ଶତପଥୀ, ଶ୍ୟାମଳୀ ଲାହିଡ଼ି, ପ୍ରମୁଖ ଏହି ଆନ୍ଦୋଳନରେ ଭାଗନେଇ ପୁରୋଭାଗରେ ଥିଲୁ।

ଅନ୍ୟାନ୍ୟ ଛାତ୍ର ଏବଂ ଛାତ୍ରୀ ନେତାମାନଙ୍କ ଦ୍ୱାରା ମଧ୍ୟ ପଡ଼ିଆ ଭରପୂର ହୋଇଥିଲା। ତା ପରେ କଲେଜରୁ ଯେଉଁ ବିରାଟ ଶୋଭାଯାତ୍ରା ବାହାରିଥିଲା ମୁଁ ତାକୁ ଲିଡ୍ କରି ଆଗରେ ଥିଲି।

ଏହି ଶୋଭାଯାତ୍ରା ବକ୍ସିବଜାରରେ ପହଞ୍ଚିବା ବେଳେ ବ୍ରିଟିଶ ପୁଲିସ ବାହିନୀ ଆମକୁ ଅଟକାଇ ଗିରଫ କରିବାକୁ ଆସିଥିଲେ। ମାତ୍ର ଲେଡି ପୋଲିସ ନ ଆସିଲେ 'ଆପଣମାନେ ଆମକୁ ଗିରଫ କରିପାରିବେ ନାହିଁ' କହି ଆଗେଇ ଯିବାର ଉଦ୍ୟମ କଲୁ। ବ୍ରିଟିଶ କମାଣ୍ଡାଣ୍ଟ୍ ବାଓନେଟ୍ ଦେଖାଇ ଆମ ଆଡ଼କୁ ମାଡ଼ି ଆସିଲେ। ଆମେ ତାକୁ ଖାତିର ନ କରି ତାଙ୍କୁ ଠେଲି ଦେଇ ଶୋଭାଯାତ୍ରାକୁ ଆଗେଇ ନେଲୁ। ଏହି ଠେଲାପେଲାରେ ଉର୍ମିଳା ନାମ୍ନୀ ଝିଅକୁ ପୋଲିସ ପକାଇ ଦେଇ ପଦାଘାତ କରିଥିଲେ। ସେଦିନ ପୋଲିସ ସହ କଟକ ରାଜାରାସ୍ତାରେ ଯେଉଁ ମୁକାବିଲା ହୋଇଥିଲା ଭୁଲିବାର ନୁହେଁ। ଗୌରୀ ଶଙ୍କର ପାର୍କରେ ଏକ ବିରାଟ ସଭା ହୋଇଥିଲା। ମୁଁ ସେଥିରେ ସଭାପତିତ୍ୱ କରିଥିଲି। ଏହି ସଭା ପରେ ରଙ୍ଗାଧର ବିଶ୍ୱାଳ ପ୍ରମୁଖ ବନ୍ଧୁମାନେ ମୋତେ ନେଇଗଲେ। ମୁଁ ଅଣ୍ଡର ଗ୍ରାଉଣ୍ଡରେ ରହିଲି। ପୋଲିସ ବହୁ ଚେଷ୍ଟା କଲା ମାତ୍ର ମୋତେ ଗିରଫ କରି ପାରିଲା ନାହିଁ।

**ପଟିଆବନ୍ଧ ଆନ୍ଦୋଳନ**

୧୯୪୬ ମସିହା ବେଳେ ଭାରତଛାଡ଼ ଆନ୍ଦୋଳନର ଶେଷ ପର୍ଯ୍ୟାୟର ତୂର୍ଯ୍ୟନାଦ ଚାଲିଥାଏ। ଆମେ ସମସ୍ତେ 'ବ୍ରିଟିଶ ହଟାଅ' ସଂଗ୍ରାମରେ ନିମଜ୍ଜିତ ଥିଲୁ। ସେତିକି ବେଳେ ସମ୍ବାଦ ମିଳିଲା ପଟିଆବାସୀଙ୍କର ଆହ୍ୱାନ 'କୁଆଖାଇ ବନ୍ୟାର ପ୍ରକୋପରୁ ପଟିଆବାସୀଙ୍କୁ ରକ୍ଷା କରିବା ପାଇଁ ବନ୍ଧ ପକେଇବାକୁ ହେବ।' ବାହାରୁ କେତେଜଣ ଶୁଭାନୁଧ୍ୟାୟୀଙ୍କୁ ଡକାଗଲା। ଆମେ ମଧ୍ୟ ପଟିଆବାସୀଙ୍କ ଆହ୍ୱାନରେ ଯାଇଥିଲୁ। ଛାତ୍ରୀସଂଘ ତରଫରୁ ମୋ ସହ ଥିଲେ ଜୟନ୍ତୀ ଓ ଭବନ୍ତି ମହାନ୍ତି, ସାବିତ୍ରୀ ମିଶ୍ର ଆହୁରି କେତେକ।

ସେଦିନ ମନମୋହନ ମିଶ୍ରଙ୍କ 'ଚଳା କୋଦାଳ ଚଳା କୋଦାଳ ପଟିଆବନ୍ଧେ ଛନ୍ଦେ ଛନ୍ଦେ, ଭରିଦେ ମାଟି ଲାଲ୍' ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲା। ଗୀତର ଛନ୍ଦେ ଛନ୍ଦେ ସମସ୍ତେ ମୁଣ୍ଡରେ ମାଟି ବୋହି ବନ୍ଧରେ ପକାଉଥିଲେ। ଗଙ୍ଗାଧର ରଥ ମଧ୍ୟ ଯାଇଥିଲେ। କି ଉନ୍ମାଦନା! - ନାଚ, ଗୀତ, ଝାଞ୍ଜ, ମୃଦଙ୍ଗର ଆୱାଜରେ ଧରଣୀ ପ୍ରକମ୍ପିତ ହେଉଥିଲା। ବହୁତ ଲୋକଙ୍କର ସମାଗମ। ପ୍ରତିଯୋଗିତା କରି ମାଟି ପକେଇ ଚାଲିଲୁ ଅପୂର୍ବ ଉନ୍ମାଦନାରେ। ପଟିଆବନ୍ଧ ଦୀର୍ଘ ୭ମାଇଲ୍ ଧରି ତିଆରି ହୋଇଗଲା।

୧୯୪୬ ମାର୍ଚ୍ଚରୁ ସେପ୍ଟେମ୍ବର ମାସ ଯାଏ ବନ୍ଧ କାର୍ଯ୍ୟ ଚାଲିଲା। ଦୀର୍ଘ ୭ମାଇଲ୍ ଯେଉଁ ବନ୍ଧ ପଡ଼ିଥିଲା, ଆଜି ସେହି ବନ୍ଧ ଛିଡ଼ା ହୋଇରହିଛି – ପଟିଆ ବାସୀଙ୍କ ଗର୍ବ ଓ କୃତିତ୍ୱର ସ୍ମାରକୀ। ଯାହାକୁ ଅନେଇ ଦେଲେ ମୋର ଗର୍ବ ଆସେ ଏହି ବନ୍ଧରେ ମୋ ହାତରୁ ମୁଠାଏ ମାଟି ପଡ଼ିଛି। ସେହି ବନ୍ଧ ପଡ଼ିଲା ଦିନର ଛବି ଏବେବି ମୋ ମନରେ ସଜୀବ ରହିଛି। ଲୋକଙ୍କ ମଧ୍ୟରେ ଉଦ୍ଦୀପନା, ଗଗନ ପବନ ନିନାଦିତ ବଜ୍ର ଗମ୍ଭୀର ସ୍ଲୋଗାନ – 'ବନ୍ଧ ନିଶ୍ଚୟ ପକେଇବୁ, ଚାଷୀ ଭାଇ ଲାଲ୍ ସଲାମ୍, ଇନକିଲାବ – ଜିନ୍ଦାବାଦ୍' ଚାରିଆଡ଼େ ପ୍ରତିଧ୍ୱନିତ ହେଉଥିଲା। ଏବେ ମଧ୍ୟ ସେହି ଆୱାଜ ମୋ କାନରେ ପ୍ରତିଧ୍ୱନିତ ହୁଏ। ସେହି ଉଦ୍ଦୀପନା ଓ ସେହି ଛବି ଆଜି ଆଖିରେ ନାଚି ଉଠେ। ସମସ୍ତଙ୍କୁ ଭାତ ଗଣ୍ଡାଏ ମିଳିବ, କେହି ଉପାସ ରହିବେ ନାହିଁ। ସେଥି ସକାଶେ ଆନନ୍ଦର ଉତ୍ସ ଛୁଟିଥିଲା। ଚାରିପଟୁ ଗ୍ରାମାଞ୍ଚଳରୁ ଲୋକେ ଝାଞ୍ଜ ମୃଦଙ୍ଗ ଧରି ଜମିଥିଲେ ଏବଂ ଆମ ସହ ବାଜଣାର ତାଳେ ତାଳେ ଆନନ୍ଦରେ ନାଚୁଥିଲେ। ସେ ଦୃଶ୍ୟ ଭୁଲିବାର ନାହିଁ, ଭୁଲି ନାହିଁ ମଧ୍ୟ।

୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା। ତେଣୁ ସ୍ୱାଧୀନତା ପାଖେଇ ଆସୁଥିବା ଦିନମାନଙ୍କରେ ସ୍ୱାଧୀନତା ପାଇଁ ପ୍ରବଳ ଛାତ୍ର ଆନ୍ଦୋଳନ ହୋଇଥିଲା। ୧୯୪୭ ମସିହାରେ ସ୍ୱାଧୀନତା ପାଇଁ ବ୍ରିଟିଶ୍ ସରକାର ବିରୋଧରେ ବ୍ରିଟିଶ ସରକାରଙ୍କୁ ହଟେଇବା ପାଇଁ ନିତି ଛାତ୍ର ଏବଂ ଯୁବ ଶ୍ରେଣୀର ବିକ୍ଷୋଭ ହେଉଥିଲା। ୩୦ ଜାନୁଆରୀ ୧୯୪୭ ଦିନ ଏକ ବିରାଟ ପଟୁଆର କଟକ ସହର ପରିକ୍ରମା କଲା, ତାର ଅଗ୍ରଭାଗରେ ମୁଁ ମଧ୍ୟ ଥିଲି ଏବଂ ଚାନ୍ଦିନୀଚୌକରେ ଶୋଭାଯାତ୍ରା ଶେଷ ହୋଇ ସଭା ହେଲା। ସେଠାରେ ମୁଁ ଅଧ୍ୟକ୍ଷତା କରିଥିଲି।

ସେହି ୧୯୪୭ରେ ଶ୍ରୀରାମ ଚନ୍ଦ୍ର ଭବନରେ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ଡ୍ରାମା କରିଥିଲୁ। ଭବନ୍ତି ମହାନ୍ତି, ନନ୍ଦିନୀ, ରାଜଶ୍ରୀ ଦଳ ବେହେରା ପ୍ରମୁଖ ଫିରିଙ୍ଗି ମାନଙ୍କ ବିରୋଧରେ ଯେଉଁ ଡ୍ରାମା କରିଥିଲେ, ସାରା କଟକ ସହରରେ ଆଲୋଡ଼ନ ସୃଷ୍ଟି କରିଥିଲା ଏବଂ ବ୍ରିଟିଶ ବିରୋଧୀ ଆନ୍ଦୋଳନକୁ ଅଧିକ ସୁଦୃଢ଼ କରିଥିଲା।

**ସୀମା ଆନ୍ଦୋଳନ ୧୯୫୫**

ମଧୁପୁର ହାଉସରେ ଅବସ୍ଥିତ ଅଲ୍ ଇଣ୍ଡିଆ ରେଡ଼ିଓ ଷ୍ଟେସନ୍ ସମ୍ମୁଖରେ ଗଣ ବିକ୍ଷୋଭ ବେଳେ ପୋଲିସ ଫାୟାରିଂ କରିଥିଲା। ସୁନୀଲ ନାମକ ନିରୀହ ଯୁବକ ଗୁଳିରେ ଟଳି ପଡ଼ିଥିଲେ। ମୁଁ ଓ ମୋର କେତେକ ମହିଳା ସହକର୍ମୀ ଯେଉଁମାନେ କି ସୀମା ଆନ୍ଦୋଳନରେ ଭାଗ ନେଇଥିଲୁ, ଫାୟାରିଂ ଖବର ପାଇ ରେଡ଼ିଓ ଷ୍ଟେସନ୍ ପାଖରେ

ପହଞ୍ଚିଲୁ ଏବଂ ବିକ୍ଷୋଭରେ ମିଶିଲୁ, ତା ଛଡ଼ା ମୁଁ ଅଧିକ ଉତ୍‌କଣ୍ଠିତ ଥିଲି ଗଙ୍ଗାଧର ରଥଙ୍କ ପାଇଁ, ଯେ କି ରେଡ଼ିଓ ଷ୍ଟେସନ ସାମନା ବିକ୍ଷୋଭରେ ଥିଲେ ଏବଂ ଗୁଳି ଫାୟାରିଂ ସତ୍ତ୍ୱେ ଶେଷ ପର୍ଯ୍ୟନ୍ତ ସେଠିଥିଲେ। ବିକ୍ଷୋଭକୁ ମାଳତୀ ଦେବୀ ମେଡ଼ିକାଲ୍ ଛାତ୍ରଙ୍କୁ ନେଇ ପ୍ରୋସେସନ୍‌ରେ ଆସୁଥିଲେ - ମାତ୍ର ପୋଲିସ୍ ତାଙ୍କୁ ବକ୍ସିବଜାର ଛକରୁ ଛାଡ଼ିଲା ନାହିଁ, ଅଟକେଇ ଦେଲା।

ଏହିଭଳି କେତେ ଦିନ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ - ସୀମା ଆନ୍ଦୋଳନ କଟକ ସହରରେ ପୀଠସ୍ଥଳୀମାନଙ୍କରେ ଯେପରି ରେଡ଼ିଓ ଷ୍ଟେସନ କଲେକ୍ଟରୀଏଟ୍, ରେଭେନ୍ସା କଲେଜ କ୍ୟାମ୍ପସ୍, ମେଡ଼ିକାଲ୍ କଲେଜ୍ କ୍ୟାମ୍ପସ୍‌ରେ ଚାଲିଥିଲା, ମୁଁ ମୋର ପ୍ରଫେସନାଲ୍ ୱାର୍କ-ପ୍ରାକ୍ଟିସ୍‌କୁ ଭ୍ରୂକ୍ଷେପ ନ କରି, ପ୍ରତ୍ୟେକ ଦିନ କଟକରେ କେଉଁଠି ନା କେଉଁଠି ମୋର ସାଥୀ ସହକର୍ମୀଙ୍କ ସହିତ ରକ୍ତମୁଖା ପୋଲିସ୍ ଓ ଗୁର୍ଖା ବାହିନୀର ଲାଠି ଗୁଳିକୁ ଖାତିର ନ କରି ବିକ୍ଷୋଭରେ ସାମିଲ ହେଉଥିଲି।

ସେହି ଆନ୍ଦୋଳନ ସମୟରେ ଏକ ବିରାଟ ଶୋଭାଯାତ୍ରା କଲେକ୍‌ଟ୍ରିଏଟ୍ ପର୍ଯ୍ୟନ୍ତ ଗୁର୍ଖା ଜାଠ ବାହିନୀ ଘେରରେ ଯାଇଥିଲା। ମୁଁ ଅନ୍ୟମାନଙ୍କ ସହିତ ଏହି ଶୋଭାଯାତ୍ରାରେ ଯାଇଥିଲି। ସେଠାରେ ହୋଇଥିବା ସଭାରେ ମୁଁ ମଧ୍ୟ ସଂକ୍ଷିପ୍ତ ଭାଷଣ ଦେଇଥିଲି।

ଯେହେତୁ ମୋର ଓଡ଼ିଆ ପ୍ରାଣ ଦିବାରାତ୍ରୀ ବିଚଳିତ ହେଉଥିଲା, ସେଥି ସକାଶେ ସହକର୍ମୀଙ୍କ ସହ ବିକ୍ଷୋଭଛଡ଼ା ଅନ୍ୟ ସମୟରେ ମହିଳା ଛାତ୍ରଙ୍କ ମଧ୍ୟରେ ସାଇ ବସ୍ତିରେ ଗ୍ରୁପ୍ ମିଟ୍ କରି ଜନମତ ସୃଷ୍ଟି କରିବାରେ ଲାଗି ପଡ଼ିଥିଲୁ।

ଭାରତ ସ୍ୱାଧୀନ ହେଲାପରେ ମଧ୍ୟ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଅନେକ ପଡ଼ୋଶୀ ରାଜ୍ୟମାନଙ୍କରେ ମିଶି ରହିଥିଲା। ସେହି ଦୁଃଶ୍ଚିନ୍ତାରେ ମନରେ ଅସହ୍ୟ ବେଦନା ଓ ବିଦ୍ରୋହ ହେଉଥିଲା। ଷଢ଼େଇକଳା ଓ ଖରସୁଆଁ ଆସିବା ପରିବର୍ତ୍ତେ ବିହାରକୁ ଦେଇ ଦେଲେ। ତେଣୁ ସମସ୍ତ ଶକ୍ତି ସାମର୍ଥ୍ୟ ଲଗେଇ ନିଜର ଧନ୍ଦା ବେଉସାକୁ ଭୁଲି ଲାଗି ପଡ଼ିଲୁ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପାଇଁ।

ଓଡ଼ିଆ ଭାଷା ତଥା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ପ୍ରତି ଅନୁରାଗ, ମତେ ଏହି ଗଣ ଆନ୍ଦୋଳନ ମଧ୍ୟକୁ ଟାଣି ଆଣିଥିଲା।

**କାମ୍‌ଗାର ଆନ୍ଦୋଳନ**

ଅଖିଳ ଭାରତ ଛାତ୍ର ସଂଘର ସର୍ବ ଭାରତୀୟ ସମ୍ମିଳନୀରେ ୧୯୪୭ରେ ଯୋଗ ଦେବା ପାଇଁ ଓଡ଼ିଶାରୁ ପ୍ରାୟ ୧୦/୧୨ ଜଣ ଆମେ ବମ୍ବେ ଯାଇଥିଲୁ। ଆମ

ମଧ୍ୟରେ ଥିଲେ ସଦାନନ୍ଦ ମହାନ୍ତି, ବିଶ୍ୱନାଥ ସାହୁ, ବଂଶୀଧର ଶତପଥୀ, ଅଖିଳ ମୋହନ ପଟ୍ଟନାୟକ, ନରସିଂହ ପଣ୍ଡା। ତନ୍ମଧ୍ୟରୁ ମୁଁ ଓଡ଼ିଶାର ପ୍ରତିନିଧି ଦଳରେ ଏକମାତ୍ର ଝିଅ ଥିଲି। ପ୍ରଥମେ ଅଧିବେଶନ ହେଲା ଏକ ତିନିମହଲା କୋଠା ଉପରେ – ବିରାଟ ହଲରେ। ସଦାନନ୍ଦ ବାବୁ ଆମ ଚାର୍ଜରେ ଥିଲେ, ମତେ କହିଗଲେ – ଝିଅ ପିଲାଟା, ମୁଁ ଆସିବା ଯାଏ କେଉଁଠିକି ଏକାକୀ ବାହାରକୁ ଯିବୁନି। ଏତକ ଶୁଣେଇ ଦେଇ କୁଆଡ଼େ ଚାଲିଗଲେ। ଇତ୍ୟବସରେ ଆମକୁ ବେଆଇନ ଘୋଷିତ ପ୍ରୋସେସନ ପାଇଁ ଡାକରା ପଡ଼ିଲା।

ବି.ଜି. ଖେର ମୁଖ୍ୟମନ୍ତ୍ରୀ ଥାନ୍ତି ସେତେବେଳେ, ହୋମ ମିନିଷ୍ଟର ମୋରାରଜୀ ଦେଶାଇ, ଛାତ୍ରସଂଘର ପ୍ରୋସେସନକୁ ବେଆଇନ ଘୋଷଣା କରିଥିଲେ। ସେତେବେଳେ ଏହି ପ୍ରୋସେସନରେ ମୁଁ, ଗୀତା ମୁଖାର୍ଜୀ, କଳ୍ପନା ଯୋଷୀଙ୍କ ସହ ସମ୍ମୁଖରେ ଥିଲି। ଛାତ୍ରମାନେ ବ୍ୟାନ ଅମାନ୍ୟ କରିବାକୁ ସ୍ଥିର କରି ଆଗେଇ ଚାଲିଲେ, ପୋଲିସ ଓ ମିଲିଟାରିର ଶତ ବାଧା ପ୍ରତିବନ୍ଧନ ସତ୍ତ୍ୱେ। ଏହା ଏକ ସାଧାରଣ ପ୍ରୋସେସନ ନଥିଲା। ଲୋକେ ସମର୍ଥକମାନେ ମଧ୍ୟ ସାଙ୍ଗରେ ଚାଲିଥିଲେ, ଏହା ଥିଲା ଏକ ଜନସମୁଦ୍ର, ଥାଳିମାରିଲେ ମୁଣ୍ଡ ଉପରେ ଥାଳି ଚାଲିଯିବ। ବ୍ୟାନ ପ୍ରତ୍ୟାହାର କର, ଇନ କିଲାବ ଜିନ୍ଦାବାଦ, ବମ୍ବେ ସରକାର – ମୁର୍ଦ୍ଦାବାଦ ସ୍ଲୋଗାନରେ ଗଗନ ପବନ କମ୍ପୁଥିଲା। କାମଗାର ମଇଦାନ ଅଭିମୁଖେ ବମ୍ବେର କେନ୍ଦ୍ରସ୍ଥଳୀରୁ ଯେଉଁ ରାସ୍ତା ଦେଇ ଯାଉଥିଲୁ ସେହି ରାସ୍ତାରେ ଚାଲିଲା ଟିଅର ଗ୍ୟାସ। ଆମ ଆଖି ଅନ୍ଧାର ହୋଇଗଲା। ବ୍ଲାଙ୍କ ଫାୟାରିଂ ମଧ୍ୟ ଚାଲିଥାଏ। ଦୁଇପାର୍ଶ୍ୱରୁ କୋଠାଉପରୁ ଲୋକେ ସ୍ତ୍ରୀ ଲୋକ ଝିଅ ବୋହୂମାନେ ଆମ ଉପରେ ବାଲ୍ଟିରେ ପାଣି ଢାଳୁଥିଲେ ଓ ପିଆଜ ଫିଙ୍ଗୁଥିଲେ। ତା ହେଲେ ଆମେ ଦେଖି ପାରିବୁ, ଟିଅର ଗ୍ୟାସ୍‌ରେ ଆଖିଜଳିବ ନାହିଁ। ଅଭୁତପୂର୍ବ ସହାନୁଭୂତି ଲୋକଙ୍କର ଦେଖିଲୁ। ମୋ ଆଖି ତ ବେଶି ଜଳିଲା ଓ କୁମ୍ଭାଟୁଆ ଆଖି ହୋଇଗଲା। କାରଣ – ମୁଁ ପିଆଜ ନ ଲଗେଇ ଖାଲି ଦୁଇ ପଟେ ଚାହେଁ କିଭଳି ଏଠି ସ୍ତ୍ରୀ ଲୋକେ ସଚେତନ। ଏହିଭଳି ଭାବରେ ଟିଅର ଗ୍ୟାସ ଏବଂ ବ୍ଲାଙ୍କ ଫାୟାରିଂ ଓ ମଝିରେ ମୃଦୁ ଲାଠିଚାଳନା ହେଉଥାଏ, ମଝିରେ ଠେଲାପେଲା ମଧ୍ୟରେ ଆଗେଇ ଗଲୁ କାମଗାର ମଇଦାନକୁ। ମୋ ଆଖି ପୋଡୁଥାଏ – ଓଡ଼ିଶାର ପ୍ରତିନିଧି ବର୍ଗ କିଏ କୁଆଡ଼େ ଥିଲେ। ଦମ୍ଭରେ ଚାଲିଥାଏ, ଦେଶ ପାଇଁ ଯଦି ମରଣ ଆସେ ଭୟ ନାହିଁ। ଜୀବନକୁ ପାଣି ଛଡ଼େଇ ନେଇ ଯାଇଥିଲୁ – କାମଗାର ମଇଦାନରେ ପ୍ରବେଶକଲୁ। ସେତେବେଳେ ମୋ ସାଙ୍ଗରେ ଥିଲେ ରୋଜା ଦେଶପାଣ୍ଡେ। ମିଲିଟାରୀର ବନ୍ଧୁକ ବାନଟ ଆଗଉଥିବା ଛାତ୍ରଛାତ୍ରୀଙ୍କୁ ପଏଣ୍ଟ କରି ରହିଥିଲା। ମିଲିଟାରୀର ଲାଉଡ଼ ସ୍ପିକରରେ ସତର୍କ କରାଇଦିଆ ଯାଉଥିଲା

ଆଗକୁ ନ ଯିବା ପାଇଁ। ମାତ୍ର ଆମେ ଆଗେଇ ଚାଲିଲୁ ତା ପରେ ହେଲା ଫାୟାରିଂ। ମୁଁ ତଳେ ଶୋଇପଡ଼ିଲି, ଆଗରୁ ଶୁଣିଥିଲି ତଳେ ଶୋଇପଡ଼ିଲେ ଗୁଳି ଉପରେ ଉପରେ ଚାଲିଯାଏ, ଦେହରେ ବାଜେ ନାହିଁ। ରୋଜାକୁ ଯେତେ ଟାଣିଲି ତଳେ ଲମ୍ବା ହୋଇଯିବାକୁ କିଛି ବୁଝିପାରିଲା ନାହିଁ। ରୋଜା ଜୋରରେ ଆଘାତ ପାଇ ରକ୍ତରେ ଜୁଡୁବୁଡୁ ହୋଇଗଲା। ମୁଁ ମଧ୍ୟ କିଞ୍ଚିତ୍ ଆହତ ହେଲି। ହେଲେ ଘୁଷୁଡ଼ି ଘୁଷୁଡ଼ି ରୋଜାଙ୍କୁ ଟାଣି ଟାଣି ସଂଲଗ୍ନ ଏକ ଭଙ୍ଗା କାନ୍ଥ ପାଖକୁ ନେଇଗଲି – ମୋର ଅବସ୍ଥା ମଧ୍ୟ ସେତେବେଳକୁ ହେଲାଣି। ସେ କାନ୍ଥ ଆମର ସିନିଅର କମ୍ରେଡ଼ମାନେ ବାଟ କରି ଦେଇଥିଲେ – ଗଣେଶମ ପ୍ରମୁଖ। ସେମାନେ ଜାଣନ୍ତି ରଣ କୌଶଳ ମାତ୍ର ଆମେ ଅନଭିଜ୍ଞ ଥିଲୁ। ସେଇଠୁ ରୋଜାକୁ ରକ୍ତାକ୍ତ ଅବସ୍ଥାରେ ଟେକି ଭଙ୍ଗାକାନ୍ଥ ଆରପଟକୁ ନେଇଗଲୁ। ମୋର ଦମ୍ ଉଡ଼ିଯାଉଥାଏ। ଗଣେଶମ୍ ଆମକୁ ଅପେକ୍ଷା କରିଥିଲେ। ଆମକୁ ଗଣେଶମ୍ ଓ ପ୍ରତୀକ୍ଷାରେ ଥିବା କମ୍ରେଡ଼ମାନେ ସାଷ୍ଟାଙ୍ଗକଲେ। ଓଡ଼ିଶା ପ୍ରତିନିଧିମାନେ ମତେ ପାଇଲେ ନାହିଁ। ଭାବିଲେ ମୁଁ ମରିଯାଇଛି – ବ୍ୟାକୁଳ ହୋଇ ମତେ ଖୋଜୁଥିଲେ। ଅବଶେଷରେ ସମସ୍ତେ ଭେଟା ଭେଟି ହେଲୁ। ବହୁତ ଗାଳି ଖାଇଲୁ – ସଦାନନ୍ଦ ବାବୁ ପ୍ରମୁଖ ଆମ ପ୍ରତିନିଧିମାନଙ୍କ ଠାରୁ। ତା ପରେ ଶିବାଜୀ ପାର୍କରେ ମିଟିଂ ହେଲା। ଅନ୍ୟାନ୍ୟ ବକ୍ତାଙ୍କ ମଧ୍ୟରେ ଓଡ଼ିଶାରୁ ମୁଁ ଜଣେ ଝିଅ ପ୍ରତିନିଧି ଥିବାରୁ – ମତେ ମଞ୍ଚରେ ଛିଡ଼ା କରେଇ ଦେଇଥିଲେ। ମୋ ଭାଷଣ ବେଳେ ଯେଉଁ କରତାଳି ପଡ଼ିଲା ମୁଁ ନିଜକୁ ଧନ୍ୟ ମନେ କଲି। ପରବର୍ତ୍ତୀ ସମୟରେ ମିଟିଂ ପରେ ସିନିଅର କମ୍ରେଡ଼ମାନେ ଓ ଗୀତା ମୁଖାର୍ଜୀ ପ୍ରମୁଖ ଏବଂ ଅନ୍ୟାନ୍ୟ ରାଜ୍ୟରୁ ଆସିଥିବା ସିନିଅର ଛାତ୍ର ଛାତ୍ରୀ ପ୍ରତିନିଧିମାନେ ବହୁତ କୋଳାକୋଳି କରି ଅଭିନନ୍ଦନ ଜଣାଇଥିଲେ।

*(ଅଲିଭା ସ୍ମୃତି ଅଭୁଲା ଅନୁଭୂତି, ପୃଷ୍ଠା ୫୯-୬୮)*

* * *

# ସୁମନୀ ଝୋଡ଼ିଆ

**(ଜନ୍ମ: ୧୯୬୩)**

ସୁମନୀ ଝୋଡ଼ିଆ ଓଡ଼ିଶାର ରାୟଗଡ଼ା ଜିଲ୍ଲାର କାଶିପୁର ବ୍ଲକ ଅନ୍ତର୍ଗତ ସିରିଗୁଡ଼ା ଗାଁର ଜଣେ ଆଦିବାସୀ ସମାଜ ସେବୀ। ତାଙ୍କ ପିତା ରବି ଝୋଡ଼ିଆ କାଶୀପୁରର ଜଣେ ୱାର୍ଡ ମେମ୍ବର ଥିଲେ। ସୁମନୀ କିଛି ଦିନ ପାଇଁ ଏକ ଗ୍ରାମ ବିଦ୍ୟାଳୟକୁ ଯାଇଥିଲେ, କିନ୍ତୁ ସେ ପାଠପଢ଼ା ଅଧାରୁ ବନ୍ଦ କରିଦେଇଥିଲେ। ସୁମନୀ ଗୋବିନ୍ଦ ଝୋଡ଼ିଆଙ୍କୁ ବିବାହ କରିଛନ୍ତି; ଗୋବିନ୍ଦ ଝୋଡ଼ିଆ ବୃତ୍ତିରେ ଜଣେ କୃଷକ।

ବର୍ଷ ବର୍ଷ ଧରି ସୁମନୀ ନିଜ ଅଞ୍ଚଳରେ ଦେଶୀ ମଦ ତିଆରି ଓ ବିକ୍ରୟ ବିରୁଦ୍ଧରେ ଆନ୍ଦୋଳନ କରିଛନ୍ତି। ଶିଳ୍ପ ପ୍ରତିଷ୍ଠା ପାଇଁ ବେସରକାରୀ କମ୍ପାନୀମାନଙ୍କୁ ଆଦିବାସୀ ଜମି ଲିଜ୍ ଦେବା ସରକାରଙ୍କ ନିଷ୍ପତ୍ତି ବିରୁଦ୍ଧରେ ଏବଂ ଜଙ୍ଗଲ ଉତ୍ପାଦନ ଉପରେ ଆଦିବାସୀଙ୍କ ଅଧିକାର ଦାବି କରି ମଧ୍ୟ ସେ ସ୍ୱର ଉତ୍ତୋଳନ କରିଛନ୍ତି। ସେ ୧୯୯୫ ମସିହାରେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଆଦିବାସୀ ବିକାଶ ପରାମର୍ଶଦାତା ଭାବରେ ନିଯୁକ୍ତ ହୋଇଥିଲେ। ତାଙ୍କୁ ୨୦୦୧ ମସିହାରେ ଭାରତ ସରକାର ମହିଳା ଓ ଶିଶୁ ବିକାଶ ମନ୍ତ୍ରଣାଳୟ ଦ୍ୱାରା ରାଣୀ ଗାଇଡିନଲିଉ ସ୍ତ୍ରୀ ଶକ୍ତି ପୁରସ୍କାର ପ୍ରଦାନ କରିଥିଲେ। ସେ ଭାରତ ସରକାରଙ୍କ କର୍ପୋରେଟ ବ୍ୟାପାର ମନ୍ତ୍ରଣାଳୟରେ ପଞ୍ଜୀକୃତ ହୋଇଥିବା ମାଣ୍ଡିବିସି ମିଲେଟସ୍ ଫାର୍ମ ପ୍ରଡ୍ୟୁସର କମ୍ପାନୀ ଲିମିଟେଡର ନିର୍ଦ୍ଦେଶକ ଭାବରେ ନିଯୁକ୍ତ ହୋଇଥିଲେ।

ଓଡ଼ିଶାର ଆଦିବାସୀ ସମ୍ପ୍ରଦାୟ ପାଇଁ ଅତୁଳନୀୟ ସେବା କରିଥିବା ସୁମନୀ ଝୋଡ଼ିଆ ଅନେକ ଆଦିବାସୀ ଗୋଷ୍ଠୀକୁ ନେଇ ଗଠିତ "ଆମ ସଙ୍ଗଠନ"ର ସଭାପତି ଭାବରେ କାର୍ଯ୍ୟ କରନ୍ତି। ସେ ରାଜ୍ୟର ଆଦିବାସୀ ପରାମର୍ଶଦାତା କମିଟିର ସଦସ୍ୟ ମଧ୍ୟ ଅଛନ୍ତି।

ସୁମନୀଙ୍କ ମୌଖିକ ସ୍ମୃତି "ମୁଇଁ ସୁମନୀ କହୁଚେ" ୨୦୦୫ ମସିହାରେ ପ୍ରକାଶିତ ହୋଇଥିଲା । ଯାହା ସୁମନୀ କହିଥିଲେ, ତାକୁ ପ୍ରଥମେ ରେକଡିଙ୍ଗ୍ କରାଯାଇ ପରେ ପ୍ରକାଶନ ଉଦ୍ଦେଶ୍ୟରେ ଲିପିବଦ୍ଧ କରାଯାଇଅଛି । ସୁମନୀ ଏଥିରେ ତାଙ୍କ ପିତୃପୁରୁଷଙ୍କ କାହାଣୀ, ଆଦିବାସୀ ଜୀବନ ଶୈଳୀ ଏବଂ ଆଦିବାସୀମାନଙ୍କ ମଧ୍ୟରେ ତୃଣମୂଳ ସ୍ତରରେ ତାଙ୍କର କାର୍ଯ୍ୟ ବର୍ଣ୍ଣନା କରିଛନ୍ତି । ତୃଣମୂଳ ସ୍ତରରେ ସୁମନୀଙ୍କ ଉତ୍ସର୍ଗୀକୃତ କାର୍ଯ୍ୟ ତାଙ୍କୁ ଭାରତର ପ୍ରମୁଖ ଆଦିବାସୀ ସମାଜ ସେବୀ ଭାବରେ ପରିଣତ କରିଛି । ନିମ୍ନ ଉଦ୍ଧୃତାଂଶ ହାଣ୍ଡିଆ, ଦେଶୀ ମଦ ତିଆରି ଏବଂ ବିକ୍ରୟ ବିରୁଦ୍ଧରେ ତାଙ୍କର ପ୍ରଥମ ଆନ୍ଦୋଳନ ଉପରେ ଆଲୋକପାତ କରେ । ତାଙ୍କ ଦ୍ୱାରା ଗଠିତ ମହିଳାମାନଙ୍କ ପାଇଁ ସ୍ୱୟଂ ସହାୟକ ଗୋଷ୍ଠୀର ସଫଳତା ପ୍ରମାଣ କରେ ଯେ ସୁମନୀଙ୍କ ଆନୁଷ୍ଠାନିକ ଶିକ୍ଷାର ଅଭାବ ତାଙ୍କ କର୍ମପଥରେ ଠିଆ ହୋଇନାହିଁ ।

## ମଦ କଥାରୁ ମୁଖ୍ୟମନ୍ତ୍ରୀର ଆଡ୍‌ଭାଇଜର

ମଦ ଆଗଠୁଁ ଅଛି । ଆମେ ଗୁଟାଏ ମିଟିଂ କଲୁ କଳାହାଣ୍ଡିରେ ବିଶ୍ୱନାଥପୁର ଗାଁରେ । ଆମେ ସବୁ ଏରିଆର ଏଗାର ଜିଲ୍ଲାର ପାଞ୍ଚଶ ମହିଳା – କାଶୀପୁରର ପଚାଶ କି ଷାଠିଏ – ଜମିଥିଲୁ । ସେଠି ଗୁଟେ ରାଜ୍ୟସ୍ତରୀୟ ମିଟିଂ ହେଲା । ମୁଁ ମୋର ଛୋଟ ପୁଅପିଲାକୁ ଛାଡ଼ି ଯାଇଥିଲି । ସେଠି ମିଟିଂ କଲୁଁ ଯେ କିମ୍‌ତି ନିଜ ଗୋଡ଼ରେ ନିଜେ ଛିଡ଼ା ହୋଇ ପାର୍‌ବା । ସବୁରେ ଆମର୍ ଅଧିକାର ଅଛି, ତେବେ ଆମ ହାତରେ କାହିଁକି ଆଣି ପାରୁନାହିଁ । କିମ୍‌ତି କଲେ କିମ୍‌ତି ଆଣି ପାର୍‌ବା । ଆମ ହାତ୍‌ରେ ସବୁ ତିଆରି କରୁଚ, ଆମେ କାଇଁ ଜାଣ୍‌ବାର ନାଇଁ, ବୋଲି ମିଟିଂ ହେଲା । ବିଜୁ ପଟ୍ଟନାୟକ ସେତେବେଲ୍‌କୁ ମୁଖ୍ୟମନ୍ତ୍ରୀ ଥିଲା । ବିଜୁ ପଟ୍ଟନାୟକକୁ ଆମେ ଡାକ୍‌ବା ପାଇଁ ଚେଷ୍ଟା କରିଥିଲୁ । ସେ ରାୟଗଡ଼ା ଆସିଲା, ସେଦିନ କଳାହାଣ୍ଡି ଆସି ପାର୍‌ଲାନି । କଳାହାଣ୍ଡିର ତସିଲ୍‌ଦାର ଆସି ବୁଝେଇଦେଲା ଆମକୁ, ନାଇଁ ମାମାନେ, ମୁଖ୍ୟମନ୍ତ୍ରୀ ଆସ୍‌ବାଟା ଥିଲା, ରାୟଗଡ଼ା ପଲେଇଗଲା, ମୁଖ୍ୟମନ୍ତ୍ରୀ ଆସିବ ପୁଣି ବୋଲି ଆମକୁ ବୁଝେଇଦେଲା । ଆମେ ମାନିଗଲୁ ।

ମଦରେ ସୁନା ଯାଉଚି । ମଦରେ ଜମି ଯାଉଚି । ମଦରେ ଗାଈ ମରୁଚି । ମଦରେ ମାଇକିନାକେ ମାରୁଚ । ପୁଅକୁ ବାପା ମାରୁଚି । ବାପାକୁ ପୁଅ ମାରୁଚି । ଘରର ସବୁ ଜିନିଷ ଯାକ ମଦରେ ଯାଉଚି । କୁଲି ମଜୁରି ସେତେବେଳକୁ ପଚିଶ ଟଙ୍କା ଥିଲା ସରକାର କରି ଦେଇଥିଲା ପଚିଶ ଟଙ୍କା । ହେଲେ, ଦେଉଥିଲେ ମା ମାନଙ୍କୁ ଦଶ ଟଙ୍କା, ବାପ ମାନଙ୍କୁ ପନ୍ଦର ଟଙ୍କା । ବାକି ଦଶ ଟଙ୍କା କୁଆଡ଼େ ଗଲା – ଏଇଟା ଗୁଟାଏ କଥା । ତାପରେ ଅନାବାଦୀ ଡଂଗର ଜମି । ତିରିଶ୍ ଡିଗ୍ରୀ ଉପରକୁ ତମର, ତଳକୁ ଆମର –

ଆଦିବାସୀଙ୍କର। ଜଳ, ଜଙ୍ଗଲ, ଜମି ଆଦିବାସୀର ବୋଲି କହୁଚ, ଜଙ୍ଗଲ କେମିତି ନଉଚ ? ଜଂଗଲ ଜାତୀୟ ଦର୍ବ - ଆମ ହାତରେ ଲାଇସେନ୍ସ ହଉନି, ସରକାର କାହିଁକି ନଉଚି ? ଆମର ଅଧିକାର ଅଛି, ଆମକୁ କାହିଁକି ଲିଜ୍ ମିଲିବ ନାଇଁ ? ଜମି ପଟା, କିଣା ହେଉ କି ନିଜର ହେଉ, ସ୍ୱାମୀ ନାଆଁରେ କାହିଁକି ହଉଚି, ଆମ ନାଆଁରେ କାହିଁକି ହଉନି ? ଆମେ ଆଦିବାସୀ ଲୋକ ଗୁଟେ ଟଙ୍କା ଦେଲେ ଛାଡ଼ିକରି ପଳେଇଯାଉଚ। ଜମି ଆମ ନାଆଁରେ ଥିଲେ ଜମି ଛଡ଼ାଇ ପାର୍‌ବେ ନାଇଁ। ଆଦିବାସୀ କୂଳରେ ବାପ ସମ୍ପତ୍ତିରେ ଝିଅକୁ କାହିଁକି ଅଧିକାର ନାଇଁ ? ସବୁ ପୁଅ ପାଉଚି। ଏମିତି ଦଶଟା ପଏଣ୍ଟ ଦାବି ଲେଖିକରି ମୁଖ୍ୟମନ୍ତ୍ରୀକୁ ଦେଲୁ। ହେଲାପରେ ମୁଖ୍ୟମନ୍ତ୍ରୀ କୋଡ଼ିଏ ଦିନ ଶୁଣିଲାନି, ତାପରେ ଆମକୁ ଡାକ୍‌ଲା।

ମୁଖ୍ୟମନ୍ତ୍ରୀ ଡାକିଲାରୁ ଆମେ ଅନ୍ୟଲୋକ ଆଠଜଣ ଓ ଆଦିବାସୀ ମହିଳା କୋଡ଼ିଏ ଜଣ, ଏମିତି ଅଠେଇଶ ଜଣ ଗଲୁ। ଭୁବନେଶ୍ୱରରେ ତିନିଦିନ ଟ୍ରେନିଂ କଲୁ - କିଏ କୋଉ କଥା କହିବା। କିଏ ଧରିଲେ କୁଲି ମଜୁର, କିଏ ଧରିଲେ ମଦ। ଆଉ କେତେ କଅଣ। ସେଠି କହିଲେ ଏ ଆଦିବାସୀ ମହିଳାମାନଙ୍କୁ ମୁଖ୍ୟମନ୍ତ୍ରୀ ମାନ୍‌ବ ହେଲେ - ସେ ମାନୁ ନାଇଁ ବୋଲି ଭୁବନେଶ୍ୱରର ଅଫିସ୍‌ର କହିଲେ, ଯାତ୍ରା ଅଫିସର ବି କହିଲେ। ଆଉ କିସ୍ କର୍‌ବା - ମାନ୍‌ଲେ ମାନୁ, ନ ହେଲେ ନାଇଁ, ଆମେ ପଂଚ୍‌ବୁ ତାର ଗେଟ୍ ପାସ୍ ଆମକୁ ଦେଇଥିଲା, ସେ ଗେଟ୍‌ପାଶ ଧରିକରି ଗଲୁ।

ତାର ବଡ଼ିଗାର୍ଡ଼ କହିଲା - ମା, ମୁଖ୍ୟମନ୍ତ୍ରୀ ଦଶଟା ବେଳକୁ ଆଇବ। ଯିଏ କଥା ପଦେ କହିପାରିବ, ସିଏ ଆଗୁଆ ଥିବ, ବୋଲି କହିଲା। ଜଣେ କହିଲା କଳାହାଣ୍ଡିର ଆଗକୁ ଯାଉ, କିଏ କହିଲା ସୁମନୀ ଆଗକୁ ଯାଉ। ମୁଇଁ କହିଲି କିଆଁ ଏତେ ଟଣାଟଣି, କାହାକୁ କିଚି ଦବାଟା ନାଇଁ। କଥା ପଦେ କହିବାଟା।

ବୁଢ଼ା (ବିଜୁବାବୁ)କୁ ଦେଖି ମଂଜରୀ ମାଇପିଟା ତ ଥରିଗଲା। ସେ ଥରିଗଲାରୁ ମୁଁ ଠିଆ ହେଲି। ଠିଆ ହେଲାରୁ, "ଏ, କଉ ଜିଲ୍ଲା, କୋଉ ଗାଁ, କ'ଣ ନାଆଁ" ବୋଲି ପଚାରିଲାରୁ "ଆଗିଆଁ, କାଶୀପୁର ବଲକ୍, ରାୟଗଡ଼ା ଜିଲ୍ଲା, ଶିରିଗୁଡ଼ା ଗାଁ, ନାଆଁ ସୁମନୀ ଝୋଡ଼ିଆ। କଳାହାଣ୍ଡି ବିଶ୍ୱନାଥପୁରରେ ଆମେ ମିଟିଂ କଲୁ। ତତେ ଡାକିଥିଲୁ। ତୁ ନ ଆସି ପାରିଲାକୁ ଆମେ ଦଶ୍‌ଟା ଦାବିଦେଇଚୁ। ଦାବି କଣ୍ କଲୁ, ପୂରଣ ହେବ କି ନାଇଁ, ସିଟା ବୁଝିବାକେ ଆମେ ଆସିଚୁ" ବୋଇଲାକୁ କହିଲା, "ଆରେ, ନାତୁଣୀ, ମୋ ନାତୁଣୀ" ବୋଲି ପିଠିରେ ଢୁମ୍ ଢୁମ୍ ମାରିକରି ବୁଢ଼ା ସାଙ୍ଗରେ ନେଇ - ପାଞ୍ଚ ମିନିଟ୍ ରହିବୁ ନାଇଁ ବୋଲି ଲୋକ ଭାବୁଥିଲେ - ପାଞ୍ଚ ଘଣ୍ଟା ରହିଲୁ। ସବୁ ବିଷୟରେ କହିଲୁ - କିଏ ମାଇନିଂ ବିଷୟରେ, କିଏ ମଦ ବିଷୟରେ, କିଏ କୁଲି ମଜୁରି ବିଷୟରେ

କହିଲା । କିଏ ମଝିରେ ମଝିରେ ଛାଡ଼ି ଦଉଥିଲେ । ମୁଁ ସବୁ ବିଷୟରେ – ଯେ ଏଇଟା ଛାଡ଼ିଗଲା – ବୋଲି ସବୁ ବିଷୟରେ ପୂରଣ କରି କହିଦେଲି । ଅନ୍‌ଦାରୀ ମାଝି, ସବାଇ ମାଝି ମଦ ବିଷୟରେ ବହୁତ କହିଲେ । "ଆଗିଆଁ, ମଦରେ ସୁନା ଯାଉଚି, ମଦରେ ଜମି ଯାଉଚି, ମଦରେ ମାଡ଼ଗୋଳ, ମଦରେ ମାର୍‌ପିଟ୍, ଏ ମଦକୁ ଲାଇସେନ୍ ଯଦି ଦେବୁ – ମହୁଲ ଲାଇସେନ୍ ଦବୁ – ବୋଇଲେ କୋଡ଼ିଏ ପଚିଶ ଜଣ ମହିଳା ଆସିବୁ, ଏଇ ତୋର ବାସନ ମାଜିବୁ, ହେଲେ ଯିବୁ ନାଇଁ" ବୋଲି ବୁଢ଼ାକୁ ଧମ୍‌କାଇଲୁ । ତୁ ମହୁଲ୍ ଲାଇସେଁସ୍ କାହିଁକି ଦଉଚୁ ? "ନାଇଁ ମା ମାନେ, ଗୋ ଖାଇବା ଖାଦ୍ୟ ପାଇଁ ଦେଉଚୁ, ଏଟା ମୁଇଁ ମଦ ରାନ୍ଧିବା ପାଇଁ ଦେଉନି ।" "ଆଗ ବାଟେ ମୁଁଡ଼ ଅଛି କି ପଛ ବାଟେ, ଆଗିଆଁ, ସେ ଭଳିଆ ଗୋ ଖାଦ୍ୟ କି ? ଲୋକ ଗୋ ଖାଦ୍ୟ ପାଇଁ ମହୁଲ୍ କିଣି ନେବାଟା ଦେଖୁଚୁ କି ?"– ଏମ୍‌ତି କେତେ କହିଲୁ । ସେ କହିଲା, "କଟକ ସହରରେ ସେଦିନ ପାଞ୍ଚଶ ଲୋକ ମରିଗଲେ, ମୁଁ ମଦ ବନ୍ଦ କରିପାରିଲିନି । ତମର ପଛ କାନିରେ ମାଣ୍ଡିଆ ନେଇ ଯେମ୍‌ତି ରୋଷେଇ କରୁଚ, ସେ ଭଳିଆ ମଦ ରାନ୍ଧିକରି ଖାଉଚ । ତମର ମହିଳା ମଣ୍ଡଳ, ତୁମର ଯୁବକ୍ ସଂଘ୍ ଯଦି ରାଜି ହେଇଯିବ, ତମର ଅଞ୍ଚଳରେ ମଦ ରନ୍ଧା ହେବ ନାଇଁ । ମୁଇଁ କିଛି ମଦ ବନ୍ଦ କରି ପାର୍‌ବି ନାଇଁ ।" "ଯଦି ମଦ ବନ୍ଦ କରି ନପାରିବୁ, ତେବେ କାହିଁକି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଚୁ ? ଯାହାକର୍, ମଦ ପାଇଁ ଆମେ ଆନ୍ଦୋଳନ କର୍‌ବୁ ଏକା । ମଦ ପାଇଁ ତୁଇ ଲେଖିକରି ଖଣ୍ଡେ ଦେ । ଆମେ ଯାଇ ମଦ ଆନ୍ଦୋଳନ କର୍‌ବୁ" ବୋଲି କହିଲୁ । ଆମେ ମଦ ସାଂଗକୁ ଜମି ବିଷୟରେ, ମାଇନିଂ ବିଷୟରେ, କୁଲି ମଜୁରି ବିଷୟରେ, ଲାଇସେନ୍ ବିଷୟରେ କହିଲୁ । କୁହା ହେଲାକେ ସେ ବୁଢ଼ା ଆମ ଭିତରୁ ତିନି ଜଣକେ ଆଡ୍‌ଭାଇଜର୍ ରଖିବାକୁ କହିଲା । ଆମେ କହିଲୁ, ଆମେ ଏବେ ଜିଲ୍ଲାରୁ ଏତେ ଆସିଛନ୍, ତିନିଜଣ ସବୁଆଡ଼ କଥା କହିପାରିବେ ନାଇଁ । ଆଠ୍‌ଜଣକେ ଆଡ଼ଭାଇଜର୍ କର୍ ବୋଲି ମୁଖ୍ୟମନ୍ତ୍ରୀକେ ଲେଖି ଜଣାଇଲୁ । ରାୟଗଡ଼ା ଛଡ଼ା ଢେଙ୍କାନାଲ୍, ସୁନ୍ଦରଗଡ଼, ସମ୍ବଲପୁର, କଳାହାଣ୍ଡି, ଫୁଲବାଣୀର ମହିଳାଙ୍କ ନାଆଁ ଦେଲାରୁ ସେ ଏତେ ଜଣଙ୍କୁ ଆଡ଼ଭାଇଜର ରଖିଲା । ଆଡ୍‌ଭାଇଜର୍ ରଖିଲା ଯେ ଆମ୍ ଆଡ଼ଭାଇଜରଙ୍କୁ ଚିନେଇବାପାଇଁ ଆଡ଼ଭାଇଜର୍ ରଖିଲା । "ତୁମର କଥା ମୁଇଁ ମାନିକରି ରହିବି, ମୋର କଥା ତୁମେ ମାନିକରି ରହିବ" ବୋଲି ଆଡ୍‌ଭାଇଜର୍ ରଖିଲା । ଆଡ୍‌ଭାଇଜର୍ ରଖିବାର ଛଅ ମାସ ହେଲାକୁ, ଓଡ଼ିଶାରେ ତିରିଶ୍‌ଟା ଜିଲ୍ଲା ଅଛି, ସେ ତିରିଶ୍‌ଟା ଜିଲ୍ଲାର ଜିଲ୍ଲାପାଳକୁ ଡାକ୍‌ଲା, ତାର ଡି.ଜି. ପୁଲିସ୍‌କେ ଡାକ୍‌ଲା – ଏମ୍‌ତି କେତେ ବଡ୍ ବଡ୍ କଲେକ୍ଟର, ଡିଏସ୍‌ପି. ପୁଲିସ୍‌କୁ ଡାକିକରି ସେକେରେଟେରୀ ଅଫିସ୍‌ରେ ଗୁଟେ ମିଟିଂ କରେଇଲା । ମିଟିଂ ହେବା ଜାଗାରେ ଚେଆର୍ ପଡ଼ିଚି, ଆମେ ଆଠଜଣ ମହିଳା ଯାଇ ବସିଚୁ – ସେ କଲେକ୍ଟରମାନେ କହିଲେ,

ମୁଖ୍ୟମନ୍ତ୍ରୀ ଆସ୍‌ବେ, ଝିଅପିଲା ହେଇ ଏଠି ବସ୍‌ଚ ପାଖରେ – ଯାଅ ପଛକାନିରେ। ଦାଦାଗିରି କରି ବସିଚନ୍! ଆମେ, ଡର ତ, ଉଠି କରି ପଛ୍‌କାନିରେ ପଳାଇଲୁ।

ମୁଖ୍ୟମନ୍ତ୍ରୀ ଆସିଲା ଚାହିଁ କହିଲା – "ଏ, ମୋର୍ ଆଡ୍‌ଭାଇଜର୍‌ମାନେ କଅଣ ପଛ୍‌କାନିରେ! ମୋ ଆଗରେ ଆଣ। କଲେକ୍ଟରମାନେ ବଲ୍‌ବଲ୍ କରି ଦେଖିଲେ। 'ଯାଅ ପଛକାନିରେ' ବୋଲି ତାଙ୍କେ କହିଥିଲେ। କହିଲେ, "ମା ମାନେ, ଆଗକୁ ଆସ"। ବସ୍‌ଲା ବେଳକୁ ସେଠି ଏକା କହିଲା ଯେ, "ବହୁତ କଥା ଅଛି। ଏ ଆଠ୍‌ଜଣ ମୋର ଆଡ୍‌ଭାଇଜର୍। ଯାଙ୍କମାନଙ୍କ କଥା ଜିଲ୍ଲାପାଳ ଯଦି ନ ମାନିବ ତାକୁ ସସ୍‌ପେଣ୍ଡ୍ କରାଯିବ। ଏସ୍‌ପି ହଉ, ଜିଲ୍ଲାପାଳ ହଉ – ସମସ୍ତେ ସପୋଟ୍ କର୍‌ବ। ମୁଁ ୟାଂକୁ ଏସ୍‌ପି ପାଓ୍ୱାର ଦେବି।" ମୁଇଁ ସେଇଠି କହିଲି ଯେ "କାହିଁକି ଆମ୍‌କେ ଏସ୍‌ପି ପାଓ୍ୱାର ଦେବୁ? ଆପଣ ମୁଖ୍ୟମନ୍ତ୍ରୀ ହେଲାକେ ଆସିଲୁ। ଆସି କଥାପଦେ ହେଲାକେ, ଆମ୍‌କୁ ଆଡ୍‌ଭାଇଜର୍ କଲୁ। ମନେ ନାଇଁ? ଆମକୁ ପୁଲିସ୍ ପାଓ୍ୱାର ଦେବୁ। ଆମେ ଝିଅ ପିଲା, ମଦହାଣ୍ଡି ଭାଙ୍ଗ୍‌ବା ପାଇଁ ଯିବୁ। ଗୁଟିଏ ଘରେ ଜଣେ ମଦ ରାନ୍ଧୁନାଇ – ଗଉଡ଼ ରାନ୍ଧୁଚି, ଶୁଂଢ଼ୀ ରାନ୍ଧୁଚି, ଝୋଡ଼ିଆ ରାନ୍ଧୁଚି। କୋଉ ଝିଲାରେ, ଗଛ ମୂଳରେ ଠେଙ୍ଗାବାଡ଼ି ଧରିକରି ଆମକୁ ମାରିଦେଲେ, ଏଭଳିଆ ଲୋକକୁ ବାହାରକରି ପାର୍‌ବୁ କି? ଆମ ଘରର ପରିବାରକୁ ଏଇ ଭଳିଆ ଲୋକକୁ ବାହାରକରି ପାର୍‌ବୁ କି? ଆମେ କେବେ ହେଲେ ରାଜି ହେବୁ ନାଇଁ। ଓଡ଼ିଶାରେ ପୁଲିସ୍, ଡି.ଜି. କାହିଁକି ଅଛି? ବ୍ଲକ୍‌ରେ ଥାନା କାହିଁକି ଅଛି? ଜିଲ୍ଲାରେ ଜିଲ୍ଲାଦାର କାହିଁକି ଅଛି? ସେଇମାନେ ମଦ ବିଷୟରେ କାହିଁକି ଆନ୍ଦୋଳନ କରିବେ ନାଇଁ? ଆମେ କାହିଁକି କରିଯିବୁ? ଆମକୁ ଦରକାର ନାଇଁ। ଆମେ ମଦ ଆନ୍ଦୋଳନ କରିବାକୁ ଯିବୁ ନାଇଁ ବୋଲି କେତେ ମନାକଲୁ। "ନାଇଁ, ନାଇଁ, ମୁଁ ବିଲ୍‌କୁଲ ଛାଡ଼ିବି ନାଇଁ। ତୁମକୁ ଗୁଟେ ଗୁଟେ ଲେଖାଁ ଡେରେସ୍ ଦିଆଯିବ, ଆଉ ଗୁଟେ ଲେଖା ଟରଚ୍ ଦିଆଯିବ। ତୁମେ ମଦ ହାଣ୍ଡି ଭାଙ୍ଗ୍‌ବା ପାଇଁ ସୁବିଧା ହେବ। ତମକୁ ସରପଞ୍ଚ ସାହାଯ୍ୟ କରବ, ଜିଲ୍ଲାପାଳ ସାହାଯ୍ୟ କର୍‌ବ, ପୁଲିସ୍ ସାହାଯ୍ୟ କର୍‌ବ, ସମସ୍ତେ ସାହଯ୍ୟ କର୍‌ବ"। ଆମେ କହିଲୁ, ନାଇଁ, ସେ ପୁଲିସ୍ ଯାଇକରି ହାଣ୍ଡି ଭାଙ୍ଗୁ। ମନାକଲାରୁ ମନା ହେଲା ନାଇଁ। ପୁଲିସ୍ ଅଡ଼ର୍ ଦେଇଦେଲା। ମୁଁ କହିଲି, "ଏତେ ପାଓ୍ୱାର ଦେଉଚୁ ଆମ୍‌କେ। ଆମର୍ କଥା ମାନ୍‌ବୁ କି ନାଇଁ? ଆମର କାଶୀପୁରକୁ ଆସୁଚୁ, ସେଠି ମେଡ଼ିକାଲ ଗୁଟେ ବାନ୍ଧୁ ନାହିଁ? ମତେ ଡାକି ଡାକି ଏତେ କଥା – ମୋର କଥା ତୁଇ ମାନୁନାହିଁ, ତୋର କଥା ମୁଇଁ ମାନୁଚି। ମେଡ଼ିକାଲ୍ ଗୁଟେ ବାନ୍ଧ୍"। 'ହଁ' ବୋଇଲା।

'ତତେ ଗୁଟେ ଗାଡ଼ି ଦେବି' ବୋଇଲା। "ମୋର ଗାଡ଼ି ଗୋଟେ କି ଦର୍‌କାର୍। ଚପଲ୍ ନ ଥିଲା ଗୋଡ଼ରେ ମୁଇଁ ଚାଲ୍‌ବି - ମୁଇଁ ଆଦିବାସୀ, ଅଣ-ଆଦିବାସୀ ନୁହେଁ, ଡଂଗର ଚଢ଼ିଯିବା ଲୋକ, ନଦୀରେ ଭାସିଯିବା ଲୋକ, ମତେ ଗାଡ଼ି କାହିଁକି ଦରକାର ? ଆମ କାଶୀପୁରରେ କୁଡ଼ିଏଟା ପଞ୍ଚାୟତ୍ ଅଛି। ଗୁଟେ ଗୁଟେ ପଞ୍ଚାୟତ୍ କୁଡ଼ିଏ କିଲୋମିଟର୍, ଚାଳିଶ୍ କିଲୋମିଟର୍। ଦେ ମେଡ଼ିକାଲକୁ ଗାଡ଼ି। ରୋଗୀ ହେଲେ ଯିବେ। ମତେ ଦେଇ କ'ଣ ହବ ?" ବୋଲି କହିଲି। "ନାଇଁ, ତତେ ଦେବି"। "ନାଇଁ, ମତେ ଦେ ନାଇଁ। ଦେଇଦେ ଗୁଟେ ମେଡ଼ିକାଲ୍‌କୁ" ବୋଇଲାରୁ, ଗୁଟେ ଗାଡ଼ି ମେଡ଼ିକାଲ୍‌କୁ ଦେଇଦେଲା। ତିନିମାସ ପରେ ମୁଇଁ ଦେଉଚି ବୋଇଲା।

ସେମ୍‌ତି କରି ମଦ ପାଇଁ ବହୁତ ଆନ୍ଦୋଳନ୍ କରିଥିଲୁ ଆମେ। କେତେ ଗାଁ ଧରି ସବୁ ଏରିଆର ମା ମାନଙ୍କର ଗୁଟେ ମିଟିଂ ଆମେ କଲୁ। ଅନ୍ୟ ବହୁତ ଜାଗାରେ ମଦ ବନ୍ଦ୍ ହେଲାଣି, ଡଙ୍ଗାସିଲିରେ ମଦ୍ ରନ୍ଧା ଚାଲ୍‌ଚି। ସେଠି ମଦହାଣ୍ଡି ଭାଙ୍ଗ୍‌ବା ବୋଲି କଥା ହେଲା। ସେ ଗାଁରେ ପହଞ୍ଚିଲାରୁ, "ମାମାନେ, ଏଡ଼େ କେଣେ ଆସିଚ, କେଣେ ଆସିଚ" ବୋଲି ପଚରା ହେଲାରୁ ଆମେ, "ନାଇଁ, ହଲ୍‌ଦୀ କିଣ୍‌ବା ପାଇଁ, ମଛି କିଣ୍‌ବା ପାଇଁ" ବୋଲି କହି, ଗୁଟେ ଗଛତଳେ ମିଟିଂ କଲୁ। ଆଗ ଗଲୁ ସେଠି ମେନ୍ ଲୋକକୁ ଧର୍‌ଲୁ। "ଆଗିଆଁ, ଆମକୁ ଟିକେ ସାହାଯ୍ୟ କର, ଆମେ ମଦ ହାଣ୍ଡି ଭାଙ୍ଗିବା ପାଇଁ ଆସିଚୁ, ଯେଉଁଠେ ମଦ୍ ଅଛ, ସେଠି ଆମେ ହାଣ୍ଡି ଭାଙ୍ଗ୍‌ବୁ।" "ଏ ମା, ମଦ ଗୁଟେ ଗିଲାସ୍ ବାହାରିଲେ ମୁଇଁ ହାରିଯିବି। ମଦ ଏଠି ବିଲ୍‌କୁଲ୍ ନାଇଁ। ମୁଁ ତମ ସପୋଟ୍ କରି ଆଇବି ନାଇଁ। ଏ ଏରିଆରେ ମଦ ଗୁଟେ ଗିଲାସ୍ ଥିଲେ ମୁଁ ହାରିଯିବି। ମୋ ଏରିଆରେ ବିଲ୍‌କୁଲ୍ ମଦ ନାହିଁ। ମୁଁ କାହିଁକି ଅଛି ?" ବୋଲି କହିଲା।

"ମଦ୍ ଥାଉ କି ନ ଥାଉ, ଡେରେସ୍ ପିନ୍ଧି ଏତେ କଥା, ଦାଦାଗିରି ହେଉଚୁ" ବୋଲି କହିଲାରୁ, "ତୁ ଅଣ୍ଡାରୀ କି ?" ବୋଲି କହିଲା। "ଆମେ ମଣିଷ, ମୁଇଁ ସୁମନୀ ଝୋଡ଼ିଆ ମଣିଷ, ଆମେ ଏତେ ଗୁଡ଼େ ମଣିଷ ଆସିଚୁ, ଅଣ୍ଡାରୀ ମୁଣ୍ଡ କ'ଣ ଅଛି ? ଏତେ ଗୁଟେ ମୁଣ୍ଡ ସାନ ହେଲା, ଅଣ୍ଡାରୀ ମୁଣ୍ଡ ବଡ଼ ହେଲାକି" ବୋଇଲୁ। ଆମର ଗୋମତୀ, "ଆଣ୍ ବା, ଡେରେସ୍ ତା ଲଗେଇବା" କହିଲାକେ ସେ ପୁଲିସ୍ ହେଡ୍ ଉଠିକରି ଯାଇ ତା'ର ଡେରେସ୍ ପିନ୍ଧିଲା। "ନାଇଁ ମା, ନାଇଁ ମା, ବାହାରିବି କେନ୍‌ତେ ବାହାରିବି ନାଇଁ", ବୋଲି କହି ଇଆଡ଼େ ସାଇକେଲ ପଠାଉଚି, ସିଆଡ଼େ ସାଇକେଲ୍ ପଠାଉଚି, ମଦ ଲୁକେଇବା ପାଇଁ। ଗୁଟେ ଘରେ ଗଲୁ। ସାଇକଲ ଦେଖ, ସେ ହେଡ୍ କାହିଁକି ସାଇକଲ ପଠାଉଚି। ମଦ ଲୁକେଇବା ପାଇଁ। ଆମେ ଗୁଟେ ଆଇଡ଼ିଆ କଲୁ। ଗୁଟେ ଘରେ ପଶ୍‌ଲାକୁ, ଦେବତା ଘରେ ପଶ ନାଇଁ, ମଦ ନାଇଁ ବୋଲି କହିଲେ।

ହଉ, କହିଲୁ। କନେଷ୍ଟବଲ୍ ଗୁଟେ, ସେ ଘରୁ ବାହାରିଲା। "ଗୁଡି ମାଗି ଆସିଥିଲ କି, ମାଣ୍ଡିଆ ନେଇ ଆସିଥିଲ, କି ଧାନକାଟି ଯାଇଥିଲ ? ମକା ନେବ, କି ମାଣ୍ଡିଆ ନେବ, କି ଧାନ ନେବ ?" - ସେମ୍ତି କହିଲା। "ତମର ଚାକ୍ରୀ ପଳେଇବ, ଆମେ ବିନା ଅଡ଼ର୍‌ରେ ଆସି ନାହୁଁ, ଆମର୍ ମୁଖ୍ୟମନ୍ତ୍ରୀ ଅଡ଼ରରେ ଆସିଚୁ। ଆଗରେ ଆମେ ଆସିଥିଲୁ କି ? ତୋର ପେଟ ପୋଷ୍, ନାଇଁ ଦୋଷ୍ ହେଉଥିଲୁ, ଏବେ ତୋର୍ ଚାକିରି ଯିବ" ବୋଲି କହିଲୁ। "ତୁମେ ମତେ ଏତେକଥା କହିବାର କିଏ" ବୋଲି କହିଲା।

ଆମେ ମଦହାଣ୍ଡି ଭାଙ୍ଗ୍‌ବା ପାଇଁ ଖୋଜ୍‌ବା ପାଇଁ ଗଲୁ। ସେ ସାଇକଲିଆ କଲୋନୀ ସାଇ ଗଲାକେ ଆମେ କଲୋନୀ ସାଇ ଧାଇଁ ଧାଇଁ ପଳେଇଲୁ। ସେଠି ଗଲାବେଳକୁ, ଯୁଠି ମଦ ଅଛି, ସେଠି ଗାଈ ଚାମଡ଼ା ଦାବି ଦେଲେ। କାଲି କି ପଅର ଦିନର ଗାଈ ଚାମଡ଼ା - ବାସ୍‌ନା ହେଉଥେ - ଦାବି ଦେଲାରୁ ଆମେ ପଶିଲୁ ନାଇଁ। ଗୁଟେ ଘରେ ପଚା ହାଣ୍ଡି ହେବା, ଭିତରେ ଗାତ ମାରି, ଏଡ଼େ ଏଡ଼େ ଗୁନ୍‌ହା, ଦଶ୍ ମାଣ୍ ପନ୍ଦର ମାଣ୍ ଧର୍‌ବା ଗୁନ୍‌ହା, ତାର ଉପରେ ପଟା ଦାବି ଦେଇଚନ୍। ସେପଟ ଆଗା ବୋଲି ଭାବୁଚୁ। ମଦର କିଛି ଚିହ୍ନ ନାଇଁ। ତାର ଉପରେ ଦାଦ୍‌ରା ବାନ୍ଧି ଦେଇକରି କାଗଜକୁ ତା ଉପରେ ପଟା ଦାବି ଦେଇଚନ୍। ଆର୍ କେନେ ବାସ୍‌ନା କର୍‌ବ ? ସେଠି ଡେଇଁ ଡେଇଁ ଏକା ବୁଲ୍‌ଲୁ। କେମ୍ତି କରି କିଏ ଗୁଟେ ମେଁରେ ମାଡ଼ିଦେଲା, ଦିଶିଗଲା। ଦିଶିଗଲାକୁ, ହଁ, ତାକୁ ଠେଙ୍ଗା ଆଣିକରି ଛେଚିଦେଲୁ ସବୁ। ବଡ଼୍ ବଡ଼୍ ପତର ଆଣି ସେ ଠେଙ୍ଗାରେ ବାନ୍ଧି ହାଣ୍ଡିରେ ଖୁନ୍ଦି ଦେଲୁ। ହାଣ୍ଡି ସବୁ ଭାଙ୍ଗିଦେଲୁ। ଇଆଡ଼େ ହରିଜନ ବସ୍ତି ଭିତ୍‌ରେ ଦଙ୍ଗା ସବ୍ ଲୁକାଇ ଦେଇଚନ୍। ଗୁମତୀ ଧରଦେଲା। ଗୁଟାଏ ଜାର୍‌କେନ୍ (ଜେରିକ୍ୟାନ୍) ଗୁଟାଏ ହାଣ୍ଡିରେ ମଦ ଧରିକରି ରାସ୍‌ତାରେ ରଖିଲେ। ଆଉ ଯୋଉ ଘରୁ ମଦ ଧରାହେଲା ସେ ଘରର ଗୁଟାଏ ଝିଅକୁ ଧରି ଗୁମତୀ କୋଡ଼ିଏ ଜଣ ରାସ୍ତା ଉପରେ "ଡଙ୍ଗାସିଲି ଗାଁ ଜିତିଗଲା, କାଶୀପୁର ମହିଳା ମଣ୍ଡଳ ହାରିଗଲା" ବୋଲି ସୋଲ୍‌ଗାନ୍ ଦେଲା। ଆମେ ସେ ବାଟେ ଆସ୍‌ଲୁ, ସେ ମଦ ହାଣ୍ଡି ମୁଣ୍ଡ୍‌ରେ ବୋହିକରି।

ଆମେ ମାଣ୍ଡିବିଶି ଯାଇଥିଲୁ ଆମ ସଂଗଠନ ପାଇଁ। କୁଡ଼ିଏ କି ପଚିଶଟା ମିଟିଂ କରି ମାଣ୍ଡିବିଶି ଏରିଆର ମା ଆଉ ଆମ ଏରିଆର ଆଠ-ଦଶ ମା ସବୁ ମିଶି ମିଟିଂ କରି ଆମେ ଆସୁଥିଲୁ। ଆମେ ମଦୁଆକୁ ବାଟରେ ଦେଖି ଲୁଚିଗଲୁ। ସେ ମଦୁଆ ଗଲାରୁ ଆମେ ଚାଲିଲୁ। କିନ୍ତୁ ସେ ମଦୁଆ ଆମକୁ ଦେଖି ଲୁଚିଗଲା। ମାଣ୍ଡିବିଶିରେ ଗୁଟେ ଦୁକାନ୍ ଅଛି, ସେଇ ଦୁକାନ୍‌ରେ ଲୁଚିଥିଲା। ଆମେ ମୁଢ଼ିଲିଆ କିଣି ଖାଇ ଖାଇ ଆସୁଥିଲୁ, ଅଇଲା ବେଳକୁ ମାଣ୍ଡିବିଶିର ନାରଣ ବାହ୍‌ମୁଣ କହିଲା ଯେ ତମେ ଆସିଥିଲେ ନାନୀ, ମୁଇଁ ତ ହାଣ୍ଡି ଭାଙ୍ଗି ଥାଇତୁ, ମାଣ୍ଡିବିଶିର ଯୁବକ୍ ସଂଘ, ମାଣ୍ଡିବିଶିର ମହିଳା ମଣ୍ଡଲ୍

ସବୁ ମିଶି ହାଣ୍ଡି ଭାଙ୍ଗି ଦେଲୁ। ବୋଇଲାକୁ, ମୁଁ କହିଲି, ଆରେ ଭାଇ, ଆମେ ଦିନ୍‌କ ଆସ୍‌ବୁ, ସବୁଦିନେ ଆସି ପାର୍‌ବୁ ନାଇଁ। ନିଜ କଥା ନିଜେ, ନିଜେ ହାଣ୍ଡି ଭାଙ୍ଗିଲେ ଭଲ୍। ତୁମେ ତ ଅଛ ଆମ ସଂଗଠନ୍ ଆସ୍‌କରି କିସ୍ କର୍‌ବାଟା, ବୋଲି ମୁଇଁ କହିଲି। କହିଲା ପରେ, "ହଇ ନାନୀ, ଦୁଇଦଳ ମିଶିଥିଲେ ଭଲ ହୋଇଯାଇ ଥାନ୍" ବୋଲି ସେ ମାଣ୍ଡିବିଶି ପିଲା କହିଲା। କହିଲା ପରେ, ଆମେ ଅଭୁଲା ବେଳକୁ ଗୁଟେ ମଦୁଆ - ତା ଗାଁ ପିପଲପଦର, ତାର ନାଆଁ ହେଲା ମିଞ୍ଜୁ ମାଝି - ସେ ଆମକୁ କେରେ ଆଣିକରି ମାରିବାକୁ ଚେଷ୍ଟା କଲା। "ତତେକୁ ଶଳା କଲେକ୍ଟର ଅଡ଼ର୍ ଦେଇଚି, କୁ ଶଳା ମୁଖ୍ୟମନ୍ତ୍ରୀ ଅଡ଼ର୍ ଦେଇଚି, ମଦ ହାଣ୍ଡି ଭାଗ୍‌ବା ପାଇଁ, ମଦ ବନ୍ଦ୍ କର୍‌ବା ପାଇଁ, ଶଳାକୁ ଆଜି ମାଡ଼ ମାରି ଦେବି, ମୁଁ ପେଟେ ଖାଇଚି, ଗେଂଜେ ଧରିଚି। ମୁଁ କହିଲି, "ଆରେ ଭାଇ, ପେଟେ ଖା, ଗେଂଜେ ଧର୍, ତତେ କିଏ ମନା କରୁଚି କି, ଆମେକିଛି ରାମକୃଷ୍ଟ କହିନାଇଁ, ଆମ ସାଙ୍ଗ୍‌ରେ କିଆଁ ଲାଗୁଚୁ"- ଯେତେ ବୁଝେଇଲାକୁ ସେ ବୁଝିଲାକୁ ସେ ବୁଝିଲା ନାଇଁ, ଆମ୍‌କୁ ମାର୍‌ବାକୁ ଆସ୍‌ଲା । ଆଜି ତତେ ନିଶ୍ଚେ ମାର୍‌ଦେବି, ବୋଇଲା। ମତେ ଜୀବନ୍‌ରେ କେମ୍‌ତି ମାର୍‌ବୁ ମାର୍‌ତ ଦେଖିବା ବୋଲି ତାକୁ ଧରି କରି, ତାକୁ ମାରିଲୁ ନାଇଁ; ତାକୁ ଜୁଡ଼ାଇ କରି ଏକା ପେଟେ ମାଡ଼ି ଦେଲୁ, ପେଟରୁ ଏତେ ମଦ ବାନ୍ତି କଲା। ଛଡ଼ାଇ ଦେଇକରି ଗୁଟେ ଜଲ୍‌ହାରେ ପକାଇ ଦେଲୁ, ଆମେ ପଳେଇ ଆସ୍‌ଲୁ। ଆମେ ପଳାଇ ଆସ୍‌ଲାରୁ କିସ୍ କଲା ସେ, ଏତେ ଖନ୍ କୁସୁନା ଚାଉଳ ମାଗି କରି, ଗୁଟେ ବୁଟି ଟାଙ୍ଗିଆ ଧରିକରି ମତେ ହାଣ୍‌ବା ପାଇଁ ଚେଷ୍ଟା କଲା। ହାଣ୍‌ବା ପାଇଁ ଚେଷ୍ଟା କଲାକେ ଆମେ ସବୁ ମାକେଲା ଲୋକ, କେତେବେଳେ ମାରିଦେବ, ବୋଲି ଲୁକିଦେଲୁ। ଲୁକିଦେଲାରୁ ତାଙ୍କ ଗାଁର ଲୋକ ଆସିକରି ଟାଣିକରି ତାକୁ ନେଇଗଲେ। ନେଇଗଲାରୁ, "ନାଇଁ, କାଲେ କେତେବେଳେ ଭଲ୍, କେତେବେଳେ ଖରାପ୍, ଆଉଥରେ ଆସ୍‌ରେ ଗଣ୍ଡଗୋଳ କର୍‌ବ। ଆକୁ ସିଧା ନ କଲେ ହବନାଇଁ" ବୋଲି ଆସି କାଶୀପୁର ଥାନାରେ ଆମେ କେସ୍ ଦେଇଦେଲୁ। ଥାନାବାବୁ ଯାଇକରି ତାକୁ ଚାରି-ପାଞ୍ଚ ଦିନ ଆଣିକରି କେସ୍ କଲା। କେସ୍ କଲାକୁ ତାକୁ ବାନ୍ଧି ନେଲେ। ଥରେ ମୁଇଁ ତାକେ ବୁଝେଇଲି - "ଭାଇ, ମୁଇଁ କେସ୍ କଲି, କିସ୍ ହେଲା ଯେ, ଅପରାଧୀ ହେଇଯିବା" ବୋଲି ବୁଝେଇଲାରୁ ମାନ୍‌ଲା ନାଇଁ, ସେ ଜେଲ୍‌ରେ ଗଲା। ଜେଲ୍‌ରେ ଗଲାକୁ ମାଣ୍ଡିବିଶିର କାନୁ ମାଝି ତାକୁ ଜାମିନ୍‌ରେ ଆଣ୍‌ଲା। ଆଣ୍ଲାପରେ ତାକୁ ଡେଟ୍ ଥିଲା, ସେ ଡେଟ୍‌କୁ ନଗଲାରୁ ଆଉଗୁଟେ ଉଆରେଣ୍ଟ୍ ହେଲା। ତା ପରେ ଆମ୍‌କୁ ରାୟଗଡ଼ା କୋର୍ଟରେ ଦାଖଲ କଲେ। ସେଠାରେ ମାଣ୍ଡିବିଶିର ଗୁଂଜଲି ନାଇକ, ଆମ ସିରିଗୁଡ଼ା କନ୍‌ଦନ୍, କଲାକାନୀର ଗୋମତୀ ୟାଙ୍କୁ ସେଠି ସାଖୀ କରିଥିଲେ। ଏଟା କାର ଭୁଲ୍, ସୁମନୀର ବୋଲି କହିଲାରୁ, ନାଇଁ, ମିଂଜୁ ମାଝିର ଭୁଲ୍ ବୋଲି ସମସ୍ତେ କହିଲାରୁ ତାକୁ କେତେ

କଷ୍ଟରେ ଜାମ୍‌ନୀ ମିଲ୍‌ଲା । ଏମ୍‌ଡ଼ି ଥିଲା, ସିଏ ମରିଗଲା । ସେଟା ଗୁଟେ ଆମକୁ ମଦ ବିରୋଧୀ ।

ଆଉ ଗୁଟେ ମଦ ବିରୋଧୀ - ଚାରଯୋଡ଼ି ଗାଁରେ, ଗୁଟେ ଆମର ଆଦିବାସୀ ଲୋକ । ତତେ କିଏ ବଡ଼ କଲା, ତତେ କିଏ ନେତା କଲା - ସେଟା ଗୁଟେ ମଦ ଖାଇକରି ମତେ ଗଣ୍ଡଗଲ କଲା, ସେଟା ଗୁଟେ ମଦରେ ଆମକୁ ବହୁତ ବିରୋଧ ଆସିଚି । ଆସିଲାରୁ ବି ଆମେ ନମାନି କରି ମଦ ଆନ୍ଦୋଳନ କରିଚୁ । ଆମ ସଂଗଠନ୍ ଦ୍ୱାରା ଆମେ ସବୁ ଏରିଆରେ ବୁଲିବୁ ଭଲ୍‌କାମ କଲେ ବି ଲୋକେ ଆମ୍‌କୁ ଖରାପ୍ ଭାବିକରି ଏ ଭଳିଆ ଗଣ୍ଡଗୋଲ୍ କରୁଚନ୍ତି । ତେବେ ଆମେ ଡରୁ ନାହିଁ - ଆମେ କାହିଁକି ଡର୍‌ବୁ ? ଗୁଟେ ସଂଘ ଗଢ଼ିଚୁ, ସଂଘରୁ ଡର୍‌ଲେ ତ ହବ ନାହିଁ । ଯାହା ଗଣ୍ଡଗୋଳ ଆସୁ, କୋଉଟାକେ ସଂଗ ଭଲ୍ ଭାବ୍‌ବ, ସହିକରି ଯିବ, ଇଟା ଭଲ୍‌ରେ କହିଲେ, ଆମେ ସେଇଟାକୁ ଖରାପ୍ କର୍‌ବା ନାଇଁ ବୋଲି । ଅଧିକ ଜିତିଗଲା ଖରାପ୍ କଥା କହିଲେ ସଂଘ ତାକ୍‌ମାନ୍‌କୁ ଲଢ଼ାଇ କର୍‌ବ । ଏଇ ସଂଗଠନ ଦ୍ୱାରା ଆମର ବହୁତ ଲାଭ ହେଇଚି ।

ସେତେବେଳେ ମଦ ପ୍ରାୟ ପୁରା ବନ୍ଦ ହେଇଥିଲା । ଆମ ଗାଁରେ ଆଗେ ମଦ ନ ଥିଲା, ଏବେବି ନାଇଁ । ପିଲା ଜନମ୍ ହେଲେ, ବାହାଘର ହେଲେ, ପରବ୍ ହେଲେ, ମଣିଷ ମଲେ ଯାଇ ଆର ଗାଁରୁ ଟିଣେ ଦିଟିଣ୍ ମଦ ଆଣି କାମ ଚଳେଇ ନଉଚନ୍ । ଅନ୍ୟ ଗାଁମାନକୁ ଅଛି । ସଂସ୍ଥା କଲେବି ଲୋକେ ମାନୁ ନାହାନ୍ତି । ସରପଞ୍ଚମାନେ ଆମ ଗାଁରେ ଭାଟି ହଉ ବୋଲି କହିଦେଲେ, ହଉଚି । ଭାଟି ତ ଯାହା ଚାଲୁଚି, ନିଜ ଘରେ ବି ଚାଲୁଚି ।

ମୋ ପୁଅ କଲେଜକୁ ଯାଉଚି । ସିମ୍‌ତି ଆଉ ପିଲା ଗଲେ ଅବା ମଦ ବନ୍ଦ ହେବ । ଆଗେ ଛଅ ସାତ୍ କିଲୋମିଟର୍ ଯାଇ ଧାଙ୍ଗ୍‌ଡ଼ା ଘରେ ଯାଇ ମଦ ପିଇ ଗୀତ ଗାଉଥିଲେ । ଏବେ ଆଉ ସେସବୁ ନାଇଁ । ମୋ ଝିଅମାନେ ଧାଙ୍ଗ୍‌ଡ଼ୀ ବାସାରେ ରାତିରେ ଶୋଇବାକୁ ଯାଉଥିଲେ । ମାତ୍‌ର, ଗୀତ ଗାଇ ନାଚିବାକୁ ଆର୍ ଗାଁକୁ ଯାଉ ନ ଥିଲେ । ଏବେ ତ ପୁଅମାନେ ଇସ୍କୁଲ କଲେଜ ଗଲେଣି । ଧାଙ୍ଗଡ଼ା ଧାଙ୍ଗଡ଼ୀ ବାସା; ନାଚ ଗୀତ କମିଗଲାଣି ।

ଆମେ ଆମ ସଂଗଠନ କାହିଁକି ଗଢ଼୍‌ଲୁ ? ଆମେ ବହୁତ ତଳେ ପଡ଼ି ଯାଇଥିଲୁ । ବହୁତ ଆମ୍‌କୁ କଷ୍ଟ ପଡ଼ିଚି ଯେ ଆମ ସଂଗଠନ ତିଆରି କଲାକେ । ଅଗ୍ରଗାମୀ ଆମକୁ ଶିଖିଆ ସିନା ଦେଲା, ଚେତନା ସିନା ଦିଲା, ଯୁ ଲୋକ ଅନ୍ଧ ଅଛି ତାକୁ ବାଡ଼ି

ଧର, ଯୁ ଲୋକ ଛୋଟା ଅଛି ତାକୁ ବାଡ଼ି ଧର ବୋଲି ଆମ୍‌କୁ ଶିଖିଆ ଦେଲା। ତା ପରେ ଆମ ସଂଗଠନ ଦ୍ୱାରା ଗାଁ ଗାଁ ବୁଲି ବୁଲି ମା ମାନଙ୍କୁ – ଆମେ କେତେ ତଳେ ପଡ଼ିଥିବା, ଆମେ ନିଜ ଗୋଡ଼ରେ ଆମେ ନିଜେ ଛିଡ଼ା ହୋଇ ପାର୍‌ବା କେ ନାଇଁ, ଆମର ନିଜର ଅଧିକାର ଆମେ ନିଜେ ଆଣି ପାର୍‌ବା କେ ନାଇଁ, ଆମ ହାତରେ ସବୁ ଜିନିଷ୍ ଅଛି, ଲୋକ କୁଆଡ଼େ ନେଇ ଯାଉଚନ୍, ଆମେ କୋଉଟା ଭଲ ବୋଲି ଜାଣି ପାର୍‌ବା ନାଇଁ, ପାରୁଚୁ ନାଇଁ, ଆମର୍ ସରପଞ୍ଚ ବୋଲି ପଞ୍ଚାୟତ ବୋଲି ପାଦ ମାଡ଼ୁ ନାହିଁ। ତେଣୁ ଆମ ସଂଗଠନ ଗୁଟେ ତିଆରି କର୍‌ବା। ଆମକୁ ବହୁତ କଷ୍ଟ ହେଉଚି। କାହିଁକି କଷ୍ଟ ? ଆଗରେ ଗାଁ ଗାଁ ବୁଲୁଲୁ। କୁ ଗାଁରେ ମହିଲା ମଣ୍ଡଳ। କୁ ଗାଁ ପାଣ୍ଠି। ନିଜ ଗାଁ ଶିରିଗୁଡ଼ାର ମହିଲା ମଣ୍ଡଳ, ଚନ୍ଦର୍‌ଗିରି, ଢଂଗାଶିର୍, ସୁଂଗେର୍, କେର୍‌ପାଇ, ମାଂଡ଼ିବିଶି, ଧୋବାସିଲ୍, ସଂକର୍‌ତା, ଟିକ୍‌ରି, ବଂଡ଼ାଇମାଝି, ସକାଇମାଝି, ଉଜର୍‌ଦେଇ ମାଝି, ଗାଲ୍‌ମିଡ଼ି, ମୁକ୍‌ଚାକରିଆ, ଲଖମୀଜରିଆ, ପାରଜରିଆ, ଖୁଂଟାରୀ – ଏସବୁ ଗାଁର ମାମାନେ ସାଙ୍ଗରେ ଗାଁ ଗାଁ ବୁଲି ବୁଲି ମହିଲା ମଣ୍ଡଳ ଆରମ୍ଭ କଲୁ। ଗାଁର ମହିଲା ମଣ୍ଡଳ ଗୁଟେ ସଂଘ ଗଢ଼୍‌ବା ପାଇଁ ଚେଷ୍ଟା କଲୁ। କେତେ କଷ୍ଟରେ ମାମାନଙ୍କୁ ଟଙ୍କା ବାନ୍ଧବ, କି, ସେ ମା ଆମ ସଂଗଠନରେ ସଂଗ ହେବ ବୋଲି। ମାଣ୍ଡବିଶି ଗାଁ – ସେ ଗାଁର ମାମାନେ ଆଗ୍‌ରେ ମହିଲା ମଣ୍ଡଳ ତିଆରି କଲେ। ତାପରେ ସେଟାକୁ ଧରିକରି ଆମେ ଗୁଟେ ଝାଡ଼ୁ ଆନ୍ଦୋଳନ ଚଳେଇଲୁ। ଝାଡ଼ୁକୁ ଧରିକରି ଏକା ଆମେ ଆମ ସଂଗଠନ ତିଆରି କଲୁ।

ଆମ ସଂଗଠନ ଆମେ ଆରମ୍ଭ କଲୁ। ସରକାରକୁ ଆପ୍ଲାଇ କଲେ ଆମକୁ କାମ ଦିଅ ବୋଲି। ଗୁଟାଏ ଟେର୍‌ନିଂ କରିବୁ ବୋଲି ସେମାନେ କହିଲାରୁ, ଦରିବୁଣା ଟେର୍‌ନିଂ ଆସ୍‌ଲା ସରକାର ତରଫରୁ। ଆଠ୍ ଖଣ୍ଡ ଗାଁର ଚାଲିଶ୍ ଜଣ ମା ଟେର୍‌ନିଂ କରୁଥିଲେ, ମାସକୁ ପାଁଶହ ଟଙ୍କା ପାଉଥିଲେ। ତିନିଶହ ନେଉଥିଲେ, ଦିଶହ ରଖୁଥିଲେ। ରଖିଲାରୁ, ଚାଲିଶ୍ ଜଣ ମାର ମୋଟ୍ ହେଲା ଚଉଦ ହଜାର ଚାରିଶହ ପଚାଶ ଟଙ୍କା। ସେ ଏରିଆରେ ଜଙ୍ଗଲ ବହୁତ, ଝାଡ଼ୁ ବହୁତ ଅଛି। ସେ ଝାଡ଼ୁ ବାହାରିଲେ ଟିଡ଼ିସିସି ନଉଥିଲା। ହେଲେ, ନିଜେ ଟିଡ଼ିସିସି କିଣୁନାହିଁ, ଦଲାଲମାନଙ୍କୁ ଧରିଥିଲା, ଟାଉଟରିଆ ମାନଙ୍କୁ। ସରକାର ରେଟ୍ ସେତେବେଳେ ଦିଟଙ୍କା ଥିଲେ, ଗାଁ ଗହଳିରେ ଟଙ୍କେ ପଚାଶ ପଇସାରେ କିଣୁଥିଲେ। ଓଜନ କରୁଥିଲେ – ଦଶ୍ କେଜି ହେଲା ବେଳ୍‌କେ, ନାଇଁ ସାତ୍ କେଜି ହେଲା, ଆଠ୍ କେଜି ହେଲା, ବୋଲି କହୁଥିଲେ। ଆମ୍‌କୁ ତ କିଛି ଜଣା ନାଇଁ। ସେତେବେଳକୁ ଯେତେହେଲେ ମିଶା ସେତେ ହଁ କରି ମାନିଯାଉଥିଲୁ।

ମାଂଡ଼ବିଶି ମହିଳା ମଣ୍ଡଳ ପାଖରେ ଚଉଦ ହଜାର ଚାରିଶହ ପଚାଶ ଟଙ୍କା ଥିଲାରୁ ସେମାନେ କହିଲେ ଯେ, ଆମେ ଝାଡୁ କିଣିବା, ଆମର ଜଙ୍ଗଲ୍। ଆମେ କିଣି, ଆମେ ଝାଡୁ ବାନ୍ଧି ବିକିବା ବଲ୍‌ଲାରୁ- ନାଇଁ ନାଇଁ, ଆମେ କଲେ ହବ ନାଇଁ, ଆମର ଜିଲ୍ଲାପାଳକୁ ଜଣେଇବାକୁ ଗଲୁ। "ଆଗିଆଁ, ଆମେ ଝାଡୁ କିଣୁଚୁ ଆମ ପାଣ୍ଠି ଟଙ୍କାରୁ, ଆଉ ତୁମ ଟିଡ଼ିସିସି କିଣିବ ନାହିଁ।" ଜିଲ୍ଲାପାଳ କହିଲା, "ନାଇଁ ମାମାନେ କିଣ, ମୁଇଁ ସାହାଯ୍ୟ କରିବି, ଲକ୍ଷେ ଟଙ୍କା ଦେବି, ତୁମେ କିଣିବ, ଟିଡ଼ିସିସିକୁ ଦେବ। ଦେଲା ପରେ ତୁମେ ଦୁଇ ଟଙ୍କା ସୁଧ ଦେବ" ବୋଲି କହିଲାକେ, "ନାଇଁ ଆଗିଆଁ, ଦୁଇ ଟଙ୍କା ସୁଧ ଦେଲେ ଆମକୁ ହବ କି । ଆମେ ବୁଲି ବୁଲି ଆଣବୁ, ନିଜେ କିଣିବୁ, ନିଜେ ବାନ୍ଧବୁ, ନିଜେ ବିକ୍‌ବୁ" ବୋଲି କହିଲାରୁ, "ନାଇଁ, ମାମାନେ, ହେବ ନାଇଁ" ବୋଲି ସେ କହିଲାରୁ, ଆମେ କିଣିବୁ ବୋଲି କହି, ଆମେ କିଣିଲୁ। ସେ, ଯାଅ, କିଣ ବୋଲିଲାରୁ ଆମେ ଆସିକରି କିଣିଲୁ। ଚଉଦ ହଜାର ଆଠ୍ ଶହ ପଚାଶ ଟଙ୍କାରୁ ଝାଡୁ କିଣ୍‌ଲୁ। ତା ପରକୁ କୋଉ ମହିଳା ମଣ୍ଡଳ ସାତ୍ ହଜାର, କୋଉ ମଣ୍ଡଳ ଦଶ ହଜାର - ସେମ୍‌ତି କରି ଚାନ୍ଦା ଉଠାଇଲୁ। ଏସବୁ ଟଙ୍କାରୁ ଝାଡୁ କିଣ୍‌ଲୁ। ସବୁ କିଣିଲା ପରେ ଫୁଲଝାଡୁ ବାନ୍ଧିବା ପାଇଁ ଟେର୍‌ନିଂ ପାଇଥିବାର୍ କିଏ ଅଛି କି ବୋଲି ଖବର ସଂଗ୍ରହ କଲୁ। କାଶୀପୁର ପାଖ ଏକ ଗାଁର ମା ଦିଟା ଟିଡ଼ିସିସିରେ ଟେର୍‌ନିଂ ନେଇଥିଲେ, ସେ ମା ଦିଜଣଙ୍କୁ ଡାକି ନେଇ ଆମେ ଟେର୍‌ନିଂର ବ୍ୟବସ୍ଥା କଲୁ। ଟିଡ଼ିସିସି ବାଲେ କହିଲେ, ଏ ମାମାନେ କିମ୍‌ତି ଝାଡୁ ବାଂଧୁଚନ୍ ଦେଖିକରି ଆସ୍‌ବା ବୋଇଲାକେ ଜଣେ ମଟରସାଇକେଲ୍ ବାଲା ଦେଖିବାକେ ଅଇଲା। ସେ ଫେରି ଟିଡ଼ିସିସି, ତହସିଲ୍‌ଦାର, ପୁଲିସ୍‌କୁ କହିଲା। କହିଲାରୁ କାଶୀପୁରର ଜଣେ ପଠାଣ ତହସିଲ୍‌ଦାର ମାଂଡ଼ବିଶି ମହିଳା ମଣ୍ଡଳର ଷ୍ଟୋର ଘରର ଚାବି ଭାଙ୍ଗି, ମାମାନଙ୍କୁ ବାଡ଼େଇ ପିଟି ପଚସ୍ତରି ହଜାର ଟଙ୍କାର ଝାଡୁ ନେଇ ଆସିଲା କାଶୀପୁରର ଟିଡ଼ିସିସି ଅଫିସ୍‌କୁ । ଆଉ ଆମ ନାଁରେ ପୁଲିସ୍‌ରେ କେସ୍ କଲା - ମାମାନେ ତାକୁ ବାଡ଼େଇଲେ ବୋଲି। ଆମେ ଯାଇ ଆମର ଝାଡୁ ସିଏ ନେଇଗଲେ ବୋଲି ଆମେ କେସ୍ କଲୁ। ସେମ୍‌ତି କେସ୍ ହେଲାରୁ ବହୁତ ଲଢ଼େଇ ହେଲା। ସେତେବେଳକୁ ବେହେରା ଆର୍.ଡି.ସି. ଥିଲା। ଆର୍.ଡି.ସି. କାଶୀପୁର ଆସିଲେ। ଆମକୁ ଡାକିଲେ ରାୟଗଡ଼ା। କେସ୍‌ରେ ଆମକୁ ବହୁତ ହଇରାଣ କଲେ। ସେତେବେଳେ ମୁଁ ନଥିଲି। ବିଲାସ୍‌ପୁର ଯାଇଥିଲି। ମାଂଡ଼ବିଶି ମହିଳା ମଣ୍ଡଳ କାଶୀପୁରରେ ଗୁଟେ ମିଟିଂ କଲେ। କଲେକ୍ଟର ଆସିଥିଲା, ଆର୍.ଡି.ସି. ଆସିଥିଲା, ଡି.ଏଫ୍.ଓ. ଆସିଥିଲା। ମନ୍ତ୍ରୀ ଆସିକରି, ତୁମେ ଗୁଟେ ମହିଳା ମଣ୍ଡଳ ଗୁଟେ ଗାଁରେ ଥିଲେ ତାକୁ ଲିଜ୍ ମିଳିବ ନାଇଁ, କାଶୀପୁର ବଲ୍‌କ୍‌ର ସବୁ ଗାଁ ମିଶି ଗୁଟେ ମଣ୍ଡଳ କଲେ

ତାକୁ ଲିଜ୍ ମିଳିବ ବୋଲି କହିଲା। ଆମେ ହଁ କରି ମାନିଗଲୁ। ସବୁ ଏରିଆର ବାରଟା ମହିଳା ମଣ୍ଡଳ ରେଜିଷ୍ଟରୀ ହୋଇଥିଲା। ଆଉ ସବୁକୁ ରେଜିଷ୍ଟରୀ କରି ଆମେ କାଶୀପୁର ପାଇଁ ଏକ ସଂଗଠନ ପାଇଁ ଆପ୍‌ଲାଇ କଲୁ। ସେଥିପାଇଁ ବହୁତ ମିଟିଂ ହେଲା – କିଏ ସଭାପତି ହେବ, କିଏ ସେକ୍ରେଟେରୀ, କିଏ କୋଷାଧ୍ୟକ୍ଷ, ବହୁତ ମିଟିଂରେ ପାଶ୍ ହେଲା। ମତେ ସେଠି ସଭାପତି ରଖିଲେ। ମୁଇଁ କେତେ ମନା କଲି ମୁଇଁ ସଭାପତି ହେବି ନାଇଁ, ମୁଁ ବୁଲିପାରିବି ନାଇଁ କି କାମ କରି ପାରିବି ନାଇଁ, ବୋଲି କେତେ ମନା କଲି। ନାଇଁ ନାଇଁ, ତୁଇ ହେଲେ ହବ। ଆମେ ତ ଅଫିସର୍ ମାନଙ୍କୁ ଚିନିନାଉ, ତୋତେ ଅଫିସର୍‌ମାନେ ମାନୁଚନ୍, ତୁଇ ଏକା ସଭାପତ ହୋ, ବୋଇଲାକେ ମୁଇଁ ଏବେ ସଭାପତି ଅଛି। ଉପସଭାପତି ଅଛି ମାଂଡ଼ିବିଶିର ଶୁକୁରୀ ମାଝୀ। ତାପରେ ସେକ୍ରେଟେରୀ ଥିଲା ଉଜଲ୍ ଦେଇ ମାଝୀ। ଏବେ ସେ ଚେଆର୍‌ମାନ୍ ହେଲା। ଏବେ ସୁଶୀଳା ମାଝୀ ସେକ୍ରେଟେରୀ ଅଛି। କୋଷାଧ୍ୟକ୍ଷ ମୁକ୍ତା ଝୋଡ଼ିଆ ଅଛି। ଅନ୍ଧାରୀ ଉପସେକ୍ରେଟେରୀ ଅଛି । ଗଭର୍ଣ୍ଣିଂବଡ଼ିର ମେମ୍ବର ସାତ୍ ଜଣ, ଜେନେରାଲ ବଡ଼ିର ମେମ୍ବର ତିରିଶ ଜଣ। ସାତ-ଜଣିଆ କମିଟି ମିଟିଂ ତିନି ମାସ୍‌କୁ ତିରିଶ ଜଣିଆ ମିଟିଂ ଛଅ ମାସ୍‌କୁ ଥରେ। ସମସ୍ତଙ୍କ ଜେନେରାଲ ବଡ଼ି ମିଟିଂ ବରଷ୍‌କୁ ଥରେ। ସେଠାରେ ଆୟ, ବ୍ୟୟ ସବୁର ହିସାବ, କିଣା ବିକାର ମାମାନଙ୍କୁ ଜଣେଇବା ପାଇଁ ବରଷ୍‌କୁ ଥରେ। ସେ ଭଳିଆ ମିଟିଂ ହେବ ବୋଲି ଆମେ କଲେକ୍ଟରକୁ ଲେଖିକରି ଦେଲୁ। ଆମ ସଂଗଠନକୁ ରେଜିଷ୍ଟରୀ ଦିଆଯାଉ ବୋଲି ଲେଖିଲାରୁ, ଆମକୁ ଲିଜ୍ ସାଟିଫିକେଟ୍ ମିଳିଲା। ଆମେ ଆଗେ ଆମ ସଂଗଠନରେ ଥିଲୁ ଦେଢ଼ଶ ମା। ଆସ୍ତେ, ଆସ୍ତେ ବଢ଼ି ଏବେ ହଜାର ମହିଳା ହେଇଗଲଣି। ଏଗାର ଟଙ୍କା ଦେଲେ ଗୁଟେ ଲୋକ ମେମ୍ବର ହେବ। ଯିଏ ଏଗାରଟଙ୍କା ବରଷକୁ ଦେଲା ସିଏ ମେମ୍ବର ହେଲା, ଝାଡୁପାଇଁ ଏକା ଆମ ସଂଗଠନ ତିଆରି ହେଲା। ସେଠି ସବୁ ଆମକୁ ଠକି ଦେଉଥିଲେ।

ହେଲେ ଆମ ସଂଗଠନ ଖାଲି ଝାଡୁ କାମ ଦେଖେନି। ଆମେ ବଲ୍‌କ୍‌ରେ ଯାଇ ବିଡ଼ିଓକୁ ପଚାରୁଚୁ, କାଇଁ କୋଉ ଇସ୍‌କୁଲରେ ମାଷ୍ଟର ନାଇଁ ବୋଲି ବୁଝିବାକୁ ଯାଉଥିଲୁ। ଆଇସିଡ଼ିଏସ୍‌ରେ ପିଲାମାନଙ୍କୁ କେତେ ଶହ-ଗରାମ୍ ତେଲ, କେତେ ଶହ-ଗରାମ ଡାଲି, କେତେ ଶହ-ଗରାମ ଗହମ ଦିଆ ହେଉଚି, କେତେଟା ପିଲାକୁ ଖାଦ୍ୟ ମିଳୁଚି କି ନାଇଁ ବୋଲି ବୁଝୁଚୁ। ସିମିତି ଟୀକା। ଟୀକା ଦେବାଟା ତ ବିଲ୍‌କୁଲ୍ ନାଇଁ। ଜର ବେମାର ହେଲେ ତ ଚେରିମୂଳୀ ହେର୍‌କା କରୁଥିଲୁ, ଅନ୍ଧବିଶ୍ୱାସ ଥିଲା। ଏବେ ପିଲାମାନଙ୍କୁ କି କି ରୋଗ୍ ଅଛି, ସେମାନଙ୍କୁ ତିନି ମାସ୍‌ରେ, ଛ ମାସ୍‌ରେ ଟୀକା ଦବାଟା ଗାଁ ଗାଁ କୁ ଯାଇ ମାମାନଙ୍କୁ ବୁଝେଇବା, ଏଣେ ଦିଦି ମାନଙ୍କୁ ଯାଇ କହିବା –

ତମେ କାହିଁକି ଗାଁ ଗହଳିରେ ଯାଉନା, ତମର କେତେ ଦିନ ଡେଟ୍ ଅଛି, ହେଟ୍‌ରେ କାହିଁକି ତମେ ବୁଲୁନ ବୋଲି କହିବା – ଏମିତି ବହୁତ କାମ ଆମ ସଂଗଠନ କାଶୀପୁର ବଲ୍‌କ୍‌ରେ କରିଚି।

ଆମ ସଂଗଠନ ଏବେ ଡାଲି, ହଳଦୀ, ସୋରିଷ – ସେ ଭଳିଆ କରି ଏବେ କାମ ଚାଲିଚି। ଆମ ଆଇସିଡ଼ିଏସ୍‌ରେ ଶତାଅସୀ କୁଇନ୍‌ଟାଲ ଡାଲି ଦିଆହୋଇଚି। ଆମେ ରାୟଗଡ଼ା ଯାଇ ଡିଏସ୍‌ଡବ୍ଲୁ ଅଫିସ୍‌ରେ ମିଶିକରି, କଲେକ୍ଟରର ଅର୍‌ଡ଼ର୍ ଆଣି କାଶୀପୁର ବଲ୍‌କ୍‌ରେ ଆମକୁ ଦିଆ ହେଉଚି। ଆୟ.ସି.ଡ଼ି.ସି.ର ବଡ଼ ଅଫିସର୍ ଭୁବନେଶ୍ୱର। ତାକୁ ଜଣାଇଲେ ଚାରି ଅର୍‌ଡ଼ର୍ ଆମକୁ ସାହାଯ୍ୟ କରୁଚି।

ଆମ ସଂଗଠନ ଗୁଟେ ମେନ୍ କାମ କରିବି। ଟିକ୍‌ରି ପଞ୍ଚାୟତର ଅନ୍ଧାରୀ ମାଝୀ ବୋଲି ଜଣେ ମା। ସେ ଗାଁର ଜଣେ ଲୋକ ପ୍ରତିଦିନ ମଦ ଖାଇ ଅନ୍ଧାରୀ ମାକୁ ଗଣ୍ଡଗୋଳ କର୍‌ବାର୍। ମାର୍‌ପିଟ୍ କର୍‌ବାର। ଦିନେ ଅନ୍ଧାରୀ ମା ଆଖିରେ ଲଙ୍କାଗୁଣ୍ଡ ପକାଇ ଦେଇଚି। ବିରାଟ ଗଣ୍ଡଗୋଳ ହେଲା। ସେ ଲୋକ୍ ଅନ୍ଧାରୀ ମାକୁ ମାର୍‌ଲା। ଅନ୍ଧାରୀ ମା ଯାଇ ଟିକରି ଥାନାରେ ତା ନାଆଁରେ କେସ୍ କଲା। କେସ୍ କଲାରେ, ପୁଲିସ୍ ତାର୍ କଥା କିଛି ଶୁଣିଲେନି, ଗ୍ରହଣ କଲେନି। ନ ଶୁଣିଲାରୁ ସେ ଆମ ସଂଗଠନକୁ ଚିଠି ଦେଲା – ଏ ଭଳିଆ ହଇରାଣ କରୁଚନ୍, ତମେ ମତେ ସାହାଯ୍ୟ କରୁଚନ୍ କି ବୋଲି। ବୈଶାଖ ମାସ୍, ଆମ୍ ହେଇଥିଲା। ସେତେବେଳକୁ ଆମେ ଚାରି ହଜାର ଖଣ୍ଡେ ମହିଳା ସରଗିଗୁଡ଼ା ଗାଁରେ ଏକଜୁଟ୍ ହେଲୁ। ନିଜ ପାଇଁ ନିଜ ମାଣ୍ଡିଆ ଚୁନା ଧରିକରି ଟିକରି ଥାନାରେ ପହଞ୍ଚିଲୁ। ଟିକରି ଥାନା ଥର୍‌ହରି ଗଲା। ଗାଁରୁ ଟିକ୍‌ରି ଥାନା ପର୍‌ଯନ୍ତ ଆମେ ଯାଇ ରାଲି ଭଳି କଲୁ। “କାହାର ଭୁଲ୍, କାହାର ଠିକ୍ କାହିଁକି ଜଣାପଡୁନି, ଝିଅପିଲା କାହିଁକି ଗଣ୍ଡଗୋଳ କର୍‌ବ ?” ଆମେ କହିଲୁ, “ଦେଖ, ସେ ଲୋକକୁ ଯଦି କେସ୍ ନ କରୁଚ, ଜେଲ୍ ନ କରୁଚ, ତେବେ ଟିକ୍‌ରି ଥାନା ରହିବ ନାଇଁ, ଭାଙ୍ଗି ଓପାଡ଼ି ପକାଇବୁ” ବୋଲି ଆମେ ସବୁ ମାମାନେ କହିଲୁ। ସେ ଲୋକ ଯାକ ଅନ୍ଧାରୀ ମାକୁ କିଛି କହିବାକୁ ଡରିଗଲେ। ଆମ ସଂଗଠନ ଏହିଭଳି ଭାବରେ ଯିଏ ମାମାନଙ୍କ ସାଙ୍ଗରେ ଗଣ୍ଡଗୋଳ କରିବ ତାକୁ ଯାଇ ବୁଝେଇବା ପାଇଁ, ଦାବି କର୍‌ବା ପାଇଁ କାମ କର୍‌ଚେ।

ଏବେ ବହୁତ ଏସ୍.ଏଚ୍.ଜି. ଗ୍ରୁପ୍ ହେଇଗଲାଣି। ଆଗେ ଆମ୍‌କୁ ବହୁତ ଗାଁକୁ ଯିବାକୁ ହଉଥିଲା। ଏବେ କମିଗଲାଣି। ଏବେ ପନ୍ଦର୍ କୁଡ଼ିଏ ଜଣରେ ଗୁଟେ ଲେଖାଁ ଏସ୍.ଏଚ୍.ଜି. ଗୁରୁପ୍ କରି ଏକାଠି ମିଟିଂ କରୁଚନ୍।

ଆମ ଗାଁରେ ତିନ୍‌ଟା ଏସ୍‌ଏଚ୍‌ଜି – ଚଉଦ, ଦଶ, ଦଶ। ଆଗେ ମହିଳା ମଣ୍ଡଳ କରିଥିଲୁ, ମାସ୍‌କୁ ଦୁଇ ଟଙ୍କା ଜମା କରୁଥିଲୁ। ମୋଟ୍ ଏକୋଇଶ୍ ହଜାରେ ଟଙ୍କା ବ୍ୟାଙ୍କରେ ଜମା ରଖିଥିଲୁ। ଫିକ୍ସ ଡିପୋଜିଟ୍‌ରେ ନୁହଁ – କାଢ଼ିଲା ବେଳକୁ ହଇରାଣ। ତେଣୁ ସେଭିଂରେ ରଖୁ। ଆଉ, କରଜ୍ ଦେଲେ ଶହେରେ ମାସ୍‌କୁ ତିନି ଟଙ୍କା ସୁଧ ଦେବାକୁ ପଡ଼େ। ସାଉକାର୍ ପାଞ୍ଚ, ଛଅ ଟଙ୍କା ନିଏ। କିଏ ଜମି କିଣିବ, କିଏ ହଳ କିଣିବ, ବେମାର ହେଲେ ମେଡ଼ିକାଲ୍ ଖରଚକୁ। ଜଣକୁ ଜମି କିଣିବା ପାଇଁ ଆଠ୍ ହଜାର୍ ଦେଇଚୁ।

ଆମେ ଡିଆର୍‌ଡ଼ିସି ତହସିଲ୍‌ଦାର ପଚାରିଲୁ, "ଆଗିଆଁ, ଆମ ଗାଁରେ ଗୁଟେ ମହିଳା ମଣ୍ଡଳ ଅଛି। ତା ପାଇଁ ଗୁଟେ ଗୁଟେ ଟେର୍‌ନିଂ ସେଣ୍ଟର୍‌ର ଘର ବାନ୍ଧି ଦେଉନାଇଁ ?" ତହସିଲ୍‌ଦାର୍ ବୋଇଲା, "ଗୁଟେ ପରିବାରକୁ ସବୁବେଳେ ଦେଲେ ତ ହବନାଇଁ। ପୁଅ ବଡ଼ ହେଲେ ଅଲଗା ହଉଚି। ତେବେ ତମ ମହିଳା ମଣ୍ଡଳ ଥାଉ। ଗୁଟେ ଗୁଟେ ଏସ୍‌ଏଚ୍‌ଜି ଗୁରୁପ୍ କର। ଆମେ ପୁଅମାନଙ୍କୁ ଋଣ ଦେଲେ, ବୁଡ଼ାଇ ଦେଉଚନ୍। ତୁମେ ଯାହା ଚାହିଁବ ତା ଦେଇ ପାରିବୁ। ତୁମେ ତିନି ହଜାର ଚାନ୍ଦା ଉଠାଇଲା ବଲ୍‌କେ ଦି ଗୁଣ୍ ଦେବୁ। ତୁମେ ଯାହା ପାର, କିଣିପାର। ମାଛଚାଷ କରିପାର, ଫଳଚାଷ କରିପାର, ପନିପରିବା କରିପାର୍‌ବ କି ବିଲ୍‌କୁଲ୍ ହାତ ପକାଇବୁ ନାହିଁ।

ଆମ ମହିଳା ମଣ୍ଡଳ ମାତ୍‌ର ଏସ୍‌ଏଚ୍‌ଜି ଗୁରୁପ୍ ହେଇପାର୍‌ବ ନାଇଁ, କହିଲା। ମୁଁ କେତେ କହିଲି, ମାତ୍‌ର, ତିରିଶ୍ ପଇଁତିରିଶ୍ ଜଣ ହେଲେ ଏସ୍‌ଏଚ୍‌ଜି ଗୁରୁପ୍ ହେଇପାର୍‌ବ ନାଇଁ କହିଲା। ନିୟମ୍ ନାହିଁ ବୋଲି କହିଲା।

ବହୁତ ଗାଁରେ ଏମ୍‌ତି ଗୁରୁପ ଗୁରୁପ୍ ହେଲାଣି।

ଗାଁରେ ଗାଁରେ ଠିକାଦାର ନାଇଁ।

ଆମେ ଆଗ କିଛି  ଜାଣୁ ନଥିଲୁ। ମାମାନଙ୍କ ପାଇଁ କିଛି ଲାଭ ମିଳୁ ନ ଥିଲା। ଗାଁର କାମ ଠିକାଦାର ନଉଥିଲା। ଅଳ୍ପ ସିମିଟ୍, ବେଶି ବାଲି ମିଶେଇ କାମ କରୁଥିଲା। ସଂଘ ଗଢ଼ି ତାଙ୍କ ଦ୍ୱାରା ଆମେ ନିଜଗୋଡ଼ରେ ନିଜେ ଛିଡ଼ା ହେଇ ନିଜ ଗାଁର ନିଜ କାମ ହେବ। ଆମେ ଲାଭ ବେଶି ଖାଇବା ଖାଇବା ନାଇଁ, ଆମ କାମ୍ ରାଇଟ୍ ହେଉ ବୋଲି ଯୁ ଯୁ ଗାଁମାନଙ୍କୁ ବୁଝିଚନ୍ ସେ ସେ ଗାଁ ମାନଙ୍କୁ କାମ ଆଣି କରୁଚେ।

ଆମର୍ ଗାଁରେ ଗାଁରେ ସବୁ କରିଚୁ। ଆମର୍ ଗାଁ କାମ କହିଲେ ବହୁତ ହେବ। ଆମେ ଆଗେ ଗୁଟେ କାମ ଆଣ୍‌ଲୁ। ଚଉଦ, ପନ୍ଦର ବର୍‌ଷ ହେଇଗଲାଣି। କାମ ଗୁଟେ

ଆଣିଥିଲୁ – କଜ୍ ୱେ। ସେତେବେଳେ ଆମେ ଡିଲର୍ କଥା ଜାଣି ନ ଥିଲୁ। ଆମର ଗାଁ ଶିରିଗୁଡ଼ାର ଡିଲର୍ କାମ ଆଣିଲୁ। କିରାସିନି, ଚିନି, ଚାଉଳ ଆମ ମହିଳା ମଣ୍ଡଳ ନାଁରେ ଆଣୁଥିଲୁ। ସେତେବେଳେ ଆମ୍‌କେ ଦେଉଥିଲେ ଅଲ୍‌ପ କୁଇଣ୍ଟାଲ ଚାଉଳ। ସେତେବେଳକୁ ଜଣକୁ ଦଶ୍ କେଜି ହିସାବରେ ମିଳୁଥିଲା। ଦଶ୍‌କେଜି ନିଅଣ୍ଟ ହେଉଥିଲା। ଆମେ ତିନି ଖଣ୍ଡର ଗାଁର ଲୋକ ବିଡ଼ିଓକୁ ଗୁଟେ ଦରଖାସ୍ତ କଲୁ – ଆମକୁ ତେର କେଜି ଦିଆହେବ ବୋଲି କାଗଜ୍‌ରେ ଲେଖା ଅଛି, ହେଲେ ଦଶ୍ କେଜି ମିଳୁ ନାଇଁ। ଆମକୁ କମ୍ କିଆଁ ଦିଆ ହେଉଚି ବୋଲି ଲେଖି ଗୁଟେ ଦରଖାସ୍ତ ନେଇଗଲୁ। ଆଉ ଦି’ ଗାଁର କେହି ଅଇଲେ ନାଇଁ। ଆମେ ଶିରିଗୁଡ଼ାର ଦଶଟା ମାଆ ଗଲୁ । ଦରଖାସ୍ତ ଦେଲୁ ବିଡ଼ିଓକୁ। “ଆଗିଆଁ, ଚାଉଳ କାହିଁକି ଅଲ୍‌ପ ଦେଉଚୁ, କାର୍‌ଡ୍‌ରେ ଲେଖା ଅଛି ତେର କେଜି ଚାଉଳ, ଦୁଇ ଲିଟର୍ ତେଲ୍। ଆମେ ତ ତେର କେଜି ଚାଉଳ ପାଉନୁ। ଦଶ୍ କେଜି ବି ହଉ ନାଇଁ, ସାତ୍ କେଜି ଆଠ୍ କେଜି କାର୍‌ଡକୁ ହଉଚି ଆମେ ହିସାବ କଲେ। ଆଉ ବାକି ଚାଉଳ କୁଆଡ଼େ ଗଲା ? କଅଣ ଖାଇବୁ ?” – ବୋଲି ବିଡ଼ିଓ ପାଖରେ ଗଲୁ। ସେ କହିଲାକେ, “ମା, ସରକାର ତ ଦେଉ ନାଇଁ, କେଣେ ଚାଉଳ ତମ୍ କାର୍‌ଡ ରେଟରେ ସମାନ କରିଦେବି ? ତମେ ଗୁଟେ କାମ ନିଆ କାମକରି ସେ ଟଙ୍କାରୁ ଚାଉଳ କିଣି ଖାଆ” “ନାଇଁ ଆଗିଆଁ, ଆମେ ମା ମାନେ ପାରିବୁ ନାଇଁ, ସିର୍‌ମିଟ୍ କାମ ଆମେ କରିପାରିବୁ ନାଇଁ ବୋଲିଲୁ। “କାହିଁକି କରି ପାର୍‌ବ ନାଇଁ ? ମୁଁ ପର୍‌ମିଟ୍ ଦେବି, ବାଲି ଆଣ୍‌ବ, ପଥର୍ କମାଇବ। ଆଉ ଗୁଟେ କଜ୍‌ୱେ ବାନ୍ଧିବ। ସେ ତୁମର ଜିଲ୍ଲା ଅଛି।” “ହଉ, ଆମେ ଗାଁରେ ଯିବୁ, ମିଟିଂ କର୍‌ବୁ। ମା ମାନେ କାମ୍ କରବାଟା ସହଜ ନାଇଁ।” ଆମେ ଆସି ସନ୍ଧ୍ୟାରେ ଗାଁରେ ମିଟିଂ କଲୁ। “ହଉ, ଯାଇକରି ଆଣ୍, ଗୁଟେ ମା’ର ନାଆଁକେ” ବୋଲିଲାକେ କମଳିନୀ ଝୋଡ଼ିଆ ନାଆଁରେ ଯାଇକରି କୋଡ଼ିଏ ହଜାର ଟଙ୍କାର କାମ ଆଣିଲୁ। କାମ୍ ଆଣ୍‌ଲା ବେଳକୁ ଆମ୍‌କୁ କିସ୍ କଲେ, କୁଡ଼ିଏ ହଜାର ଟଙ୍କାର କାମକୁ ଆମକୁ ଦଶ୍ ହଜାର୍ ବିଲ୍ କରିଦେଲେ। ଇମ୍‌ତି କର୍‌ବା, ତେବେ ସେମାନେ ଗାଁ କମିଟି ଜରିଆରେ କାମ ନେବେ ନାହିଁ। ହାନି ହେଇଗଲେ ସେମାନେ ଏମ୍‌ତି ଏକା ହେଇଯିବ, ଆମ ହାତ ହେଇଯିବ, ବନ୍ଦ କରିଦେବେ, ବୋଲି ଆମ୍‌କୁ ସେମ୍‌ତି କରିଦେଲେ।

*(ମୁଇଁ ସୁମନୀ କହୁଚେ, ପୃଷ୍ଠା ୪୪- ୫୮)*

* * *

## ଲେଖିକା

# ଅପର୍ଣ୍ଣା ଦେବୀ

## (୧୮୯୮-୧୯୬୩)

ଅପର୍ଣ୍ଣା ଦେବୀ ପୁରୀର ବୀରଭଦ୍ରପୁରଠାରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ସେ ପାଞ୍ଚ ବର୍ଷ ବୟସରେ ପିତା ବୈଦ୍ୟନାଥ ଦୀକ୍ଷିତଙ୍କୁ ହରାଇଥିଲେ। ତାଙ୍କୁ ସାତ ବର୍ଷ ପୂରିବା ଆଗରୁ ଜଣେ ସତର ବର୍ଷର ବ୍ରାହ୍ମଣ ବାଳକ ସହିତ ବିଭା ଦିଆଯାଇଥିଲା, ଯାହାଙ୍କର କେବଳ ଛୋଟ ଡିହ ଖଣ୍ଡେରେ ଜରାଜୀର୍ଣ୍ଣ ଘର ଏବଂ ବିଧବା ମାଆ ଥିଲେ। ଚଉଦ ବର୍ଷ ବୟସରେ ଅପର୍ଣ୍ଣାଙ୍କୁ ତାଙ୍କ ଶାଶୁ ଘରକୁ ପଠାଯାଇଥିଲା। ସେତେବେଳକୁ ତାଙ୍କ ସ୍ୱାମୀ ପୁରୀର ଏକ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ରୂପେ କାର୍ଯ୍ୟ ଆରମ୍ଭ କରିଥିଲେ। ସେମାନେ ପୁରୀରେ ଏକ ଭଡ଼ା ଘରେ ରହୁଥିଲେ। ବିବାହର ଆଠ ବର୍ଷ ପରେ ଅପର୍ଣ୍ଣା ଏକ ଶିଶୁକନ୍ୟା ଜନ୍ମ ଦେଇଥିଲେ, ଯିଏ ଜନ୍ମର ପାଞ୍ଚ ଦିନ ପରେ ଦୁଃଖଦ ଭାବରେ ମୃତ୍ୟୁ ବରଣ କରିଥିଲା। ପରେ ତାଙ୍କର ଦୁଇ ପୁଅ ଏବଂ ଗୋଟିଏ ଝିଅ ହୋଇଥିଲା।

ପରିବାର ସଦସ୍ୟଙ୍କ ତୀବ୍ର ବିରୋଧର ସମ୍ମୁଖୀନ ହେବା ସତ୍ତ୍ୱେ ଅପର୍ଣ୍ଣା ଦେବୀ ତାଙ୍କ ଗାଁର ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଯାଇ ପଢୁଥିଲେ। ସେହି ବିଦ୍ୟାଳୟର ଶିକ୍ଷକଙ୍କ ଦ୍ୱାରା ଉତ୍ସାହିତ ହୋଇ ସେ ସ୍କୁଲ ଯିବା ଜାରି ରଖିଥିଲେ। ଘରେ ରହୁଥିବାବେଳେ ଅପର୍ଣ୍ଣା ପୋଥି ଏବଂ ଶାସ୍ତ୍ର ପଢ଼ିବା ଏବଂ ଶାସ୍ତ୍ରର ପାଠ ଶୁଣିବାର କୌଣସି ସୁଯୋଗ ହାତଛଡ଼ା କରୁନଥିଲେ। ପିଲାଟି ବେଳୁଁ ସେ ଯେକୌଣସି ବହି ପଢ଼ିବା ପାଇଁ ଆଗ୍ରହ କରୁଥିଲେ। ସେ ଏକ ପ୍ରାଥମିକ ସାହାଯ୍ୟରେ ବଙ୍ଗଳା ଅକ୍ଷର ଶିକ୍ଷା କରିଥିଲେ ଏବଂ

ଅନେକ ବଙ୍ଗଳା ପୁସ୍ତକ ପଢ଼ିପାରୁଥିଲେ । ବଙ୍ଗଳା ଉପନ୍ୟାସ "ରାଜଲକ୍ଷ୍ମୀ"ର କାହାଣୀ ଦ୍ୱାରା ପ୍ରଭାବିତ ହୋଇ ସେ ଏହାକୁ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ, କିନ୍ତୁ ପାଣ୍ଡୁଲିପିଟିକୁ ଉଇ ଖାଇଯାଇଥିଲେ । ସେ ଅନେକ ଲମ୍ବା କବିତା ଲେଖିଥିଲେ ଯେଉଁଥିରେ ବଳିଷ୍ଠ ନାରୀ ଚରିତ୍ର ମାଧ୍ୟମରେ ମନରେ ଉଚ୍ଚ ଭାବନା ଫୁଟାଇବାର ପ୍ରୟାସ ଲକ୍ଷ୍ୟ କରାଯାଏ । ତାଙ୍କର ପ୍ରଥମ କବିତା ପୁସ୍ତକ, "ଇନ୍ଦୁମତୀ"ର ଦ୍ୱିତୀୟ ସଂସ୍କରଣ କଟକ ପବ୍ଲିଶିଙ୍ଗ୍ ହାଉସ୍ ଦ୍ୱାରା ୧୯୩୦ରେ ପ୍ରକାଶିତ ହୋଇ ୧୯୮୬ ସୁଦ୍ଧା ଏହାର ଷଷ୍ଠ ସଂସ୍କରଣ ହୋଇଥିଲା ।

ତାଙ୍କର ଆଂଶିକ ଆତ୍ମଜୀବନୀ "ନାରୀକବି ଅପର୍ଣ୍ଣା ଦେବୀ" ଶୀର୍ଷକରେ ୧୯୬୩ ମସିହାରେ ଝଙ୍କାର ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହାକୁ ପ୍ରଫେସର ଦେବୀ ପ୍ରସନ୍ନ ପଟ୍ଟନାୟକ ପ୍ରକାଶିତ କରାଇଥିଲେ । ଏହା ଜୁନ୍ ୧୯୭୭ ମସିହାରେ ଓଡ଼ିଆ ମାସିକ ନାରୀ ପତ୍ରିକା "ସୁଚରିତା"ରେ ପୁନଃମୁଦ୍ରିତ ହୋଇଥିଲା । ଏଠାରେ ସେ ତାଙ୍କ ପିଲାଦିନ, ପଢ଼ିବାକୁ ତାଙ୍କର ଅଦମ୍ୟ ଇଚ୍ଛା ଏବଂ ଏଥିପାଇଁ ସେ ସାମ୍ନା କରିଥିବା ଅପ୍ରୀତିକର ପରିସ୍ଥିତି ବିଷୟରେ ବର୍ଣ୍ଣନା କରିଛନ୍ତି । ସେ ସଂକ୍ଷେପରେ ତାଙ୍କ ପାରିବାରିକ ଜୀବନ ବିଷୟରେ ମଧ୍ୟ ଲେଖିଛନ୍ତି । ନିମ୍ନୋଦ୍ଧୃତାଂଶରେ ସେ ପୁସ୍ତକ ପ୍ରକାଶ କରେଇବା ପାଇଁ ସାମ୍ନା କରିଥିବା ଅସୁବିଧାର ଏକ ଆକଳନ ଦେଇଛନ୍ତି । ଏହି ସ୍ମୃତିଚାରଣ ତାଙ୍କର ଜ୍ଞାନ ଅର୍ଜନ କରିବାର ଆଗ୍ରହ ବ୍ୟତୀତ କବିତା ମାଧ୍ୟମରେ ନିଜକୁ ପ୍ରକାଶ କରିବାର ଅଦମ୍ୟ ଇଚ୍ଛାକୁ ମଧ୍ୟ ଦର୍ଶାଏ ।

## ପଥର ସହିତ କପାଳ ଲଢ଼ାଇବା

ପୁରୀ ସଦର ଅନ୍ତର୍ଗତ ବୀର ବଳଭଦ୍ରପୁର ଗ୍ରାମରେ ସନ ୧୩୦୫ ସାଲ ମାଘ ମାସରେ ମୋର ଜନ୍ମ । ମୋର ପିତାମହଙ୍କ ନାମ ସୋମନାଥ ବ୍ରହ୍ମା ଓ ପିତାଙ୍କ ନାମ ବୈଦ୍ୟନାଥ ଦୀକ୍ଷିତ । ଏ ଦୁହେଁ ଯଜ୍ଞ କରି କୋରାପୁଟ ଜୟପୁର ରାଜାଙ୍କଠାରୁ ଏପରି ପଦବୀ ପାଇଥିଲେ ମାତ୍ର ବଂଶାନୁଗତ ସଂଜ୍ଞା ମିଶ୍ର । ଜୟପୁର ରାଜାଙ୍କଠାରୁ ଏପରି ପଦବୀ ପାଇବାର ଗୌରବାବହ କାହାଣୀ ଲେଖି ବସିଲେ ବହୁତ ଗୁଡ଼ିଏ ବିଷୟ ହେବ । ତେଣୁ ସେଥିରୁ କ୍ଷାନ୍ତ ହେଲି । ୮ଟି ଭାଇ ଭଉଣୀରେ ମୁଁ ସାନଝିଅ ଓ ମୋ ପରେ ଗୋଟିଏ ଭାଇ । ବୈମାତ୍ରେୟ ଭାଇଟି ବ୍ୟତୀତ ସବୁ ଭାଇ ଭଉଣୀଗୁଡ଼ିକ ଗତାୟୁ; କିନ୍ତୁ ସେମାନଙ୍କର ପୁଅ ନାତି ଓଗେର ଅଛନ୍ତି । ସାନ ଭାଇର ନାମ ଲକ୍ଷ୍ମଣ ମିଶ୍ର ।

ମଧ୍ୟବିତ୍ତ ପରିବାର । ଦାନ ଦୈବୀ ଓଗେରରେ ସେ ଅଞ୍ଚଳରେ ତାଙ୍କର ଖୁବ୍ ଖ୍ୟାତି । ବେଶ୍ ସ୍ୱଚ୍ଛନ୍ଦରେ ଚଳନ୍ତି । ମତେ ୫ବର୍ଷ ବୟସ ବେଳେ ବାପା ଚାଲିଗଲେ –

ବଡ଼ ଭାଇନା ମୁରବି – ତାଙ୍କ ବଡ଼ ଝିଅଟି ମୋଠୁ ତିନିବର୍ଷ ବଡ଼। ନାଁ ଫକିରୀ – ପିଉସୀ ଆଗ ବିଭା ନ କରି ଝିଆରୀ ଆଗ ବିଭା କରିବା ନୀତିବିରୁଦ୍ଧ ବୋଲି ମତେ ୬ ବର୍ଷ ନ ପୁରୁଣୁ ବିବାହ ଦେଲେ। ପରେ ଫକିରୀ କୃପାସିନ୍ଧୁ ମିଶ୍ରଙ୍କୁ ବିବାହ କଲା।

ମୋର ଶାଶୁଘରେ କେବଳ ବିଧବା ଶାଶୁ ଭିନ୍ନ ଆଉ କେହି ନଥିଲେ। ଘରଡିହ ୧୫ ହାତର ଗୋଟିଏ କଡ଼ରେ ୨/୩ଟି ଦରଭଙ୍ଗା ଘର। ବାକି ସବୁ ଖୋଲା ପଦା – ସେଥିଲାଗି ବିବାହ ପରେ ମୁଁ ଫେରିଯାଇ ଘରେ ଖୁସିରେ କହିଥିଲି – 'ତାଙ୍କ ଅଗଣାରେ ରାତିରେ କେତେ ବିଲୁଆ ବୋବାନ୍ତି।' ବୋଉ କାନ୍ଦିଥିଲା। ବିଧବା ମାଆ ହିଁ ସ୍ୱାମୀଙ୍କର ଏକମାତ୍ର ଅବଲମ୍ବନ କାରଣ ସେ ମଧ୍ୟ ୧ବର୍ଷ ବୟସରୁ ପିତୃଶୂନ୍ୟ। ବିବାହ ସମୟକୁ ତାଙ୍କୁ ୧୭ ବର୍ଷ ବୟସ ମାତ୍ର। ଯୋଗ୍ୟତା ଚାହାଳୀ ପାଠ। ଜମି ୨ଏକରରୁ କିଛି କମ୍ ଦୁଃଖେ କଷ୍ଟେ ଚଳନ୍ତି। କେବଳ କୁଳୀନ ଦେଖି କରିବା କଥା।

କନ୍ୟାଦାୟରୁ ନିଷ୍କୃତି ନେଇ ସମସ୍ତେ ନିଶ୍ଚିନ୍ତ; କିନ୍ତୁ ବୋଉ ସେଥିଲାଗି ବଡ଼ ଚିନ୍ତିତ। ବହୁତ କୁହାପୋଛା କରି ମୋ ଶାଶୁଙ୍କର ଶତ ଅନିଚ୍ଛା ସତ୍ତ୍ୱେ ସ୍ୱାମୀ ତାଙ୍କ ଗାଁ ଭର୍ଣ୍ଣାକୁଲ ସ୍କୁଲରେ (ବୀର ହରେକୃଷ୍ଣପୁର) ପଢ଼ିବା ଆରମ୍ଭ କଲେ ଏବଂ କିଛିଦିନ ପରେ ସତ୍ୟବାଦୀରେ ମି.ଇ. ପଢ଼ିବାକୁ ଗଲେ। ମି.ଇ. ପାଶ୍ ପରେ କଟକ ଟ୍ରେନିଂ ଗଲେ। ଟ୍ରେନିଂ ବୃତ୍ତି ଟ୬ ମାତ୍ର। ବୋଉ ସବୁ ରକମ ସାହାଯ୍ୟ କରେ ଓ ଶାଶୁ ବୁଢ଼ୀ ଦିନରେ କଷ୍ଟରେ ଚଳିଲେ କାଳେ ଅସନ୍ତୁଷ୍ଟ ହେବେ ବୋଲି ଯଥାଶକ୍ତି ସାହାଯ୍ୟ ସୁବିଧାରେ ତ୍ରୁଟି କରେ ନାହିଁ। ସେଇ ଗ୍ରାମରେ ମୋର ବଡ଼ ଭଉଣୀ ଘର। ସୁତରାଂ ସବୁକଥା ବୁଝିବାକୁ ବୋଉକୁ ଅସୁବିଧା ପଡ଼େ ନାହିଁ। ଦୁଃଖର କଥା ୩ୟ ବର୍ଷ ଟ୍ରେନିଂ ପରୀକ୍ଷାରେ ସ୍ୱାମୀ ଫେଲ ହେଲେ। ଆଉ ପଢ଼ିବାକୁ ମଙ୍ଗିଲେ ନାହିଁ। ୧୦ବର୍ଷ ପଠନ କାଳ ପରେ ପୁରୀ ମ୍ୟୁନିସିପାଲ୍‌ଟିର ଗୋଟିଏ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କଲେ। ବେତନ ଟ୭ ମାତ୍ର। ଏଇ କାମରେ ତାଙ୍କର କର୍ମକାଳ ସମାପ୍ତ। ଏବେ ୫ବର୍ଷ ହେଲା ଆଉ କାମ ନାହିଁ।

ମୋ ବିବାହର ୧୦ମାସ ପରେ ଫକିରୀ ବିଭା। ମିଶ୍ରେ ସେତେବେଳେ କଟକରେ ପଢୁଥାନ୍ତି। ସମସ୍ତ ସାହାଯ୍ୟ ଭାଇନା ଦିଅନ୍ତି। କିଛିଦିନ ପରେ ଫକିରୀକୁ ପଢ଼ାଇବା ସକାଶେ ମିଶ୍ରେ ଭାରି ଜିଦ୍ କଲେ। ତାକୁ ସେତେବେଳେ ୧୧ବର୍ଷ ମତେ ୮ବର୍ଷ। ସେତେବେଳେ ବାଳିକା ଶିକ୍ଷାର କିଛି ବ୍ୟବସ୍ଥା ନଥାଏ – ଗାଁର ମଧ୍ୟ ଭାଗରେ ଉ:ପ୍ରା ସ୍କୁଲଟିଏ। କେବଳ ବାଳକମାନେ ପଢ଼ନ୍ତି। ଭାଇନା ଗୋଟିଏ ଅବଧାନ ରଖି ଫକିରୀକି ପଢ଼ାଇବାର ବ୍ୟବସ୍ଥା କଲେ। ପାଖ ପଡ଼ିଶାର ଆଉ ୧୫/୨୦ଟି ପିଲା ମଧ୍ୟ ସେଥିରେ ପଢ଼ନ୍ତି।

ଫକିରୀ ସହିତ ମୋର ପିଉସୀ ଝିଆରୀ ସମ୍ପର୍କ ହେଲେ ମଧ୍ୟ ପରସ୍ପର ପ୍ରତିଦ୍ୱନ୍ଦ୍ୱିତା ଖୁବ୍ ଗାଢ଼ ଥାଏ। ସେ ବଡ଼ ପୁଅର ଅପତ୍ୟାଣୀ ଝିଅ - ସେଥିରେ ପୁଣି ବିବାହର ବର୍ଷ ନ ପୁରୁଣୁ ତା ବୋଉ ମରିଯିବାରୁ ଅତି ଆଦରରେ ଥାଏ। ବୟସରେ ମୋଠୁଁ ୩ବର୍ଷ ବଡ଼ ପୁଣି ବଳୁଆ। ମୁଁ ଛୋଟ ପୁଣି ଅଥରପୀ ତେଣୁ ଟିକିଏ କ'ଣ ଛିଦ୍ର ପାଇଲେ ମତେ ନିସ୍ତୁକ ଛେଚେ। ମୁଁ ପାରେନି - ରାମ୍ପୁଡ଼ି କାମୁଡ଼ି ଦିଏ। ଫେରାଦ ହେଲାବେଳକୁ ତା ଦେହଟାଯାକ ରାମ୍ପୁଡ଼ା କାମୁଡ଼ା ଚିହ୍ନ। ମୋ ଠି ମାଡ଼ର ଚିହ୍ନ ବର୍ଣ୍ଣ ନାହିଁ। ଖଜିତ ହୁଏ ଖୁନ୍ଦେ ବିଧେ ଖାଏ। ମୁଁ ଦିଅଙ୍କୁ ଜଣାଏ, 'ଫକିରୀର ବୋଉ ନ ଥିବାରୁ ତାକୁ ସମସ୍ତେ ଦେଖି ପାରୁଛନ୍ତି - ମୋ ବୋଉଟି ମରିଯାନ୍ତା।'

ମୋର ଏତେ ବଡ଼ ପ୍ରତିଦ୍ୱନ୍ଦ୍ୱିନୀ ପାଠ ପଢ଼ିବ - ମୁଁ କି ଆଉ ନ ପଢ଼ି ରହି ପାରେ ? ବାଦକୁ ଚାହାଳିକି ଗଲି। ଘରେ ସମସ୍ତେ କଟକଟ ହେଉଥାନ୍ତି - କିଛି ଶୁଣେନି। ବନା, ସତରଫଳା ଆରମ୍ଭର ଅଳ୍ପଦିନ ପରେ ନାହାକେ କହିଲେ 'ଖଡ଼ିଧୂଳି ଉଠାହେବ, ଆଜି ସୁନା ଜିନିଷ କିଛି ସେଥିରେ ପୋତିଥାଆ" ଆଉ କେହି ଥୋଇଲେ ନାହିଁ। ଫକିରୀ ଓ ମୁଁ ନାକ କାନରୁ ଗୁଣା ନୋଳି କାଢ଼ି ସେଥିରେ ପୋତିଲୁ। ଆରଦିନ ସକାଳୁ ଗଲାବେଳକୁ ଗୁରୁଜୀ ଚଲୋ। ସେତିକିରେ ଚାହାଳି ପାଠ ଶେଷ।

ସାନ ଭାଇନା ଫକିରୀକି ପଢ଼ାଇବାରେ ଲାଗିଥାନ୍ତି - ମୁଁ ଗଲେ ପାଖ ପୂରାନ୍ତି ନାହିଁ। ସମସ୍ତେ ଦୂରୁ ଦୂର୍ କରନ୍ତି; କିନ୍ତୁ ମୁଁ ନ ଛାଡ଼େ। ପାଖ ପଡ଼ିଶା ପୁଅ ପିଲାଙ୍କଠୁ ଦେଖି ଶିଖି ମୁଁ ମଧ୍ୟ ପଢ଼ିବାରେ ଲାଗିଥାଏ। ବର୍ଣ୍ଣଜ୍ଞାନ, ପଣକିଆ ଓଗେର ଜାଣିଗଲି- ଭଲ କରି ବହି ସବୁ ପଢ଼ି ପାରିଲି। ଭଲ ହେଉ ମନ୍ଦ ହେଉ ଯାହା ବହିପାଏ, ତାକୁ ଆମୂଳଚୂଳ ନ ପଢ଼ିବାଯାଏ ମୋର ଶାନ୍ତି ନଥାଏ। ଏବଂ ପ୍ରତ୍ୟେକ ଶବ୍ଦର ଅର୍ଥ ନ ବୁଝିବାଯାଏ ବାରଲୋକଙ୍କୁ ପଚାରି ନ ବୁଝିବାଯାଏ ଥୟ ରହେନି। ଏପରିକି ଅଶ୍ଲୀଳ ଶ୍ଲୀଳ ଜାଣି ନ ପାରି ପଚାରି ଦେବାରେ କେତେଥର ଲଜ୍ଜିତ ହୋଇଛି। ଆମ ଘରେ ଗୁଡ଼ିଏ ତାଳପତ୍ର ପୋଥି ଥାଏ। ରାମାୟଣ, ମହାଭାରତ, ନୃସିଂହପୁରାଣ ଓଗେର ନାନାଦି କିସମର ପୁରାଣ। ବୋଉ କହିବାମତେ ସେଗୁଡ଼ିକ ପ୍ରତିଦିନ ଦ୍ୱିପ୍ରହରରେ ଓ ସନ୍ଧ୍ୟାରେ ବୋଲେ। ଘରେ ସମସ୍ତେ ଶୁଣନ୍ତି।

ଫକିରୀ ପାଇଁ ମିଶ୍ରେ ନାନା ରକମର ଛୋଟ ଛୋଟ ବହି ପଠାନ୍ତି। ଚିଠି ଦିଅନ୍ତି ଫକିରୀ ଖୁବ୍ ସାବଧାନରେ ରଖେ - ମୁଁ ସେ ସବୁ ନ ଦେଖିବାକୁ ଭାରି ସତର୍କ ଥାଏ; କିନ୍ତୁ ମୁଁ ଉଣ୍ଡି ପାଣ୍ଡି ସେଗୁଡ଼ିକ ଲୁଚେଇ ପଢ଼ିବାକୁ ଛାଡ଼େନି। ଥରେ ଥରେ ଧରାପଡ଼ି ଫକିରୀଠୁ ଟାଙ୍କେ ଖାଏ। ତଥାପି ନିବୃତ୍ତ ରହେନି। ଏଥି ମଧ୍ୟରେ ମିଶ୍ରେ ଖଣ୍ଡେ ତ୍ରିଭାଷୀ ବହି କିଣି ଦେଇଥିଲେ। ସେ ତାକୁ ଦେଖି କ୍ରମେ ବଙ୍ଗଳା ପଢ଼ି ପାରିଲା। ମୁଁ କି ଆଉ

ଛାଡ଼େ ? ତାରି ତ୍ରିଭାଷୀଟା ଲୁଚେଇ ଲୁଚେଇ ପଢ଼ି ଠିକ୍ କରି ନେଲି। ହିନ୍ଦୀ ମଧ୍ୟ ପଢ଼ିଥିଲି କିନ୍ତୁ ଭାଷା ବୁଝି ନ ପାରିବାରୁ ଆଗ୍ରହ ରହିଲା ନାହିଁ। ଏଇପରି ୩ବର୍ଷ ଖଣ୍ଡେ ବିତିଯିବା ପରେ ମୋ ପଢ଼ାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା।

ମୋର ଗୋଟିଏ ଭଉଣୀ ଆମ ଗାଁର ୧ମ ଖଣ୍ଡିରେ ବିଭା କରିଥାଏ। ଆମ ଘରଟି ଗାଁର ଶେଷ ଭାଗରେ। ଗାଁଟା ଖୁବ୍ ଦୀର୍ଘ। ଗାଁର ମଧ୍ୟଭାଗଟା ଫାଙ୍କା। ଘରେ ଯେବେ ଯାହା ଭଲ ଖାଦ୍ୟ ହୁଏ, ମୁଁ ବା ଫକିରୀ ତା ଘରକୁ ନେଉ। ସେଠାରେ ନାନୀ ସଙ୍ଗାତର ଭଉଣୀ ସହିତ ମୋର ଖୁବ୍ ଦୋସ୍ତି। ଆମେ ଦୁହେଁ ବି ସଙ୍ଗାତ ଡକାଡକି ହେଉ। ଦିନେ ଏପରି ଯାଇଥିଲି। ସଙ୍ଗାତକୁ ଡାକିବାକୁ ଯାଇ ଦେଖିଲି ନାନୀ ଘରକୁ ୨/ ୩ ଘର ଛାଡ଼ି ସେ ପଢୁଚି। ନୀଳକଣ୍ଠ ମହାପାତ୍ର ନାମରେ ଜଣେ ବୃଦ୍ଧ ବ୍ରାହ୍ମଣ ତାଙ୍କ ପିଣ୍ଡାରେ ୧୪/୧୫ଟି ବାଳିକା ପିଲାଙ୍କୁ ପଢ଼ାଉଛନ୍ତି। ସେଇଟି ଗୋଟିଏ ନି:ପ୍ରା ବାଳିକା ସ୍କୁଲ। ଡି:ବୋର୍ଡ ମାସିକ ଟ.୩୧ ଦିଏ।

ମୁଁ ଯାଇ ଦେଖେ ତ ୫କୁ୫ରେ ଗୁଣିବାକୁ ଆପଣେ ସଙ୍ଗାତକୁ ଦେଇଛନ୍ତି। ସେ ଜମା କରି ପାରୁନି। ସେତକ କରିଦେଲେ ସେ ଛୁଟି ପାଇବ। ମୁଁ ଖେଳିବି – ମୁଁ ତ ପାଖ ପଡ଼ିଶା ପିଲାଙ୍କଠୁ ଦେଖି ଶିଖି ଟିକିଏ ଜାଣି ଯାଇଥାଏ – ସଙ୍ଗାତକୁ ଚୁପ୍ କରି କହିଲି ପଚିଶ। ଆପଣେଙ୍କୁ ଶୁଭିଗଲା – ସେ କହିଲେ 'ତୁ ପଢ଼ିଚୁକି ?' ଗର୍ବର ସହିତ 'ହଁ', କଲି। ସେ ପାଠର ପରିମାଣ ବୁଝିନେଲେ ଓ କହିଲେ – 'ଆଉ ପଢୁନୁ ?' 'ତେବେ ଆସିବି ?' 'ଆ'।

ଏଇଟା ସକାଳ ବେଳାର କଥା। ସେ ସମୟରେ ଦୁଇବେଳା ସ୍କୁଲ ହୁଏ। ଦି ପହରେ ୫/୭ ପିଲା ଏକାଠି ବସି ଅଙ୍କ, ହସ୍ତାକ୍ଷର, ଡ୍ରଇଂ ଓଗେର ଘରେ କରନ୍ତି। ଉ:ପ୍ରା:ର ହେଡ଼ ପଣ୍ଡିତ ବୈଦ୍ୟନାଥ ମହାପାତ୍ର ନି:ପ୍ରା:ର ସେକ୍ରେଟେରୀ। ଆମ 'ଖଡ଼ିଧୂଳି ଉଠା' ପୂର୍ବରୁ ଫକିରୀ ଓ ମୋ ପାଇଁ ୨ଟି ସ୍ଲେଟ୍ ଆସିଥିଲା। ଫକିରୀ ତା ସ୍ଲେଟଟି ଭାଙ୍ଗି ଦେଇଥିଲା। ମୋଟି ଥାଏ। କେତେଦିନ ପରେ ଆଉ ଜଣେ ଅବଧାନ ଆସିଲେ। ମୋ ଭାଇ ଲକ୍ଷ୍ମଣ ଓ ଫକିରୀ ଭାଇ ମାଗାକୁ ପଢ଼ାନ୍ତି ଏବଂ ଆମଘରେ ଗୁମାସ୍ତା କାମ କରନ୍ତି। ଲକ୍ଷ୍ମଣ ଖଡ଼ିରେ ପଢ଼େ, ମାଗା ସେଇ ସ୍ଲେଟରେ ପଢ଼େ। ସେଦିନ ଆପଣେ କହିବା ମାତ୍ରେ, ନାନୀଘରୁ ପଳାଇ ଆସିଲି ଏବଂ ଘରେ ଖାଇ ସାରିବା ମାତ୍ରେ ପଢ଼ି ଯିବାକୁ କହିଲି। ସମସ୍ତେ ଠେଙ୍ଗା ଧରି ମିଶିଲେ; କିନ୍ତୁ ମୁଁ ନ ଛାଡ଼େ। ଅନେକ ଦିନରୁ ମଝିଆଁ ଭାଉଜ ପାଖରେ ଦୁଇଟି ପଇସା ଜମା ରଖିଥିଲି। ସେତକ ଗୁରୁଦକ୍ଷିଣା ଧରି ଉପରବେଳା ପଢ଼ିବାକୁ ଗଲି, ମୋ ଭୂତପୂର୍ବ ସ୍ଲେଟଟି ନେଇ। ସେଦିନ ଫେରୁ ଫେରୁ ବେଳବୁଡ଼। ବାଟରେ ଗୁମାସ୍ତା ଦେଖିଲେ। 'କିଆଁ ମାଗାର ସ୍ଲେଟ୍ ନେଲୁ, ତା ପଢ଼ା ବନ୍ଦ ହେଲା'

ବୋଲି ବହେ କାନମୋଡ଼ା ଦେଲେ। ଘର ପାଖରେ ଫକିରୀ ଦେଖି ଟାଙ୍କେ ଛେଚିଲା – କାନ୍ଦି କାନ୍ଦି ଘରକୁ ଗଲାରୁ ବୋଉ ଆହୁରି ଖୁନ୍ଦା ବିଧା ଲଦି ଦେଲା।

ତଥାପି କ୍ଷାନ୍ତ ହେଲିନି। ଆରଦିନ ଭୋରୁ ଉଠି ସ୍କୁଲକୁ ଗଲି। ପ୍ରାୟ ନିତି ଦିନ ମାଡ଼ ଖାଏ। ଦିନେ ଦିନେ ଖାଇବାକୁ ଦିଅନ୍ତିନି। ଅଣ୍ଟିରେ ଚାଉଳ ମୁଠେ ଲୁଚାଇ ନେଇ ଅପର ଘରେ ସେଥିରୁ କିଛି ଲାଞ୍ଚ ଦେଇ ବାକିତକ କରେଇରେ ଟିକେ ଖରଡ଼ି କଞ୍ଚା ଦୋଷ ଛଡ଼ାଇ ସେଥିରୁ ମୁଠେ ଗିଳି ପକାଏ। ଭୋକ, ଶୋଷ, ମାନ, ଅପମାନ, ମାଡ଼, ଗାଳି ସବୁ ପିଠିରେ ପକାଇ ପଢ଼ିବାରେ ଝୁଙ୍କ ଲାଗିଥାଏ। ଗାଁ ମଝିରେ ତ ଉ:ପ୍ରା: ସ୍କୁଲ ଗଲାବେଳେ ସେଇ ଦୁଆର ପାଖରେ ଦଣ୍ଡେ ନାକେଇ ନି:ପ୍ରା:କୁ ଯାଏ ଓ ଆପଣଙ୍କୁ କହେ 'ଆମର ଏଇ ଅଙ୍କ ଡାକନ୍ତୁ।' ସେ ସେଇ ଅଙ୍କ ଡାକନ୍ତି। ମୁଁ ତ ଫଳଟି ଶୁଣି ଯାଇଥାଏ। ସାଥି ସାଥି ପ୍ରଶ୍ନଟି ଲେଖି ଏତିକି ବୋଲି ଫଳଟି ଲେଖିଦିଏ – ଧାରା ଫାରାକୁ କିଏ ପଚାରେ। ଆପଣେ ମହାଖୁସି – ଅନ୍ୟ ପିଲାମାନେ ବୋକା ପରି ରହନ୍ତି।

ସେତେବେଳେ 'ଅଙ୍କପୁସ୍ତକ' ବୋଲି ଖଣ୍ଡିଏ ଅଙ୍କ ବହି ଓ ବିଜ୍ଞାନ ପାଠ ନାମରେ ଖଣ୍ଡିଏ ସାହିତ୍ୟ ବହି ମାତ୍ର ପଢ଼ା ଯାଉଥାଏ ଓ ଗୋଟିଏ ଡ୍ରଇଂ ବହିଥାଏ। ଅଙ୍କ ପୁସ୍ତକର ଶେଷଭାଗରେ ଉତ୍ତରମାଳା। ସାହିତ୍ୟ ବହିରେ 'ସାହିତ୍ୟ' 'ଇତିହାସ', 'ପାନୀୟ ଜଳ', 'ରସାୟନ ବିଦ୍ୟା', 'ସ୍ୱାସ୍ଥ୍ୟ ରକ୍ଷା', ଗାର୍ହସ୍ଥ୍ୟ ବିଧାନ, ଓଗେର ହରେକ କିସମର ବିଷୟ ଥାଏ। ପିଲାମାନେ ତ ଦ୍ୱିପ୍ରହରରେ ଏକାଠି ବସି ନିଜ ନିଜ ପଢ଼ା, ଲେଖା, ଡ୍ରଇଂ ଓଗେର କରନ୍ତି – ତାଙ୍କର କେତେ ରକମର ଖାତାପତ୍ର। ସେ ସବୁ ଦେଖି ମୋ ମନ ମହା ହାଇଁପାଇଁ, କିନ୍ତୁ କାଳୀ, କାଗଜ ଓଗେର ଉପକରଣ ସକାଶେ ପଇସା ତ ଦରକାର। ପଇସା ଦେବ କିଏ ? ଘରେ ତ ସମସ୍ତେ ଖଡ୍‌ଗହସ୍ତ। ଆପଣେଙ୍କୁ କହିଲି ଆମର ଅଙ୍କ, ହସ୍ତାକ୍ଷର, ଡ୍ରଇଂ ଓଗେର ଖାତା କରି ଲେଖିଲେ ହୁଅନ୍ତା ନାହିଁ ? ଆର ସ୍କୁଲର ପିଲାମାନେ କେତେ ରକମର ଖାତା କରିଛନ୍ତି। ଆମର କିଛି ନାହିଁ। ଆପଣେ କହିଲେ – 'ଭଲକଥା, ତୁ ଯଦି କରି ପାରିବୁ କର।' ଏଥର ଝୁଙ୍କ ଲାଗିଲା ଘରୁ ଚାଉଳ ଚୋରାଇ ଯା ତା ଘରେ ମାଗଣାକୁ ମହରଗ ଭଳି ବିକି ଉପକରଣ ସଂଗ୍ରହ କରି କାମ ଚଳାଇଲି। ଅଙ୍କ ବହିର ପ୍ରଶ୍ନଟିମାନ ଲେଖି ଫଳ ଲେଖିଦିଏ। ୧୦/୧୫ଟା ଢେଗା ଢେଗା ଅକ୍ଷର ଲେଖି ହସ୍ତାକ୍ଷର ପୂରଣ କରେ – କେବଳ ଡ୍ରଇଂ କରିବାକୁ ଟିକିଏ ସମୟ ଲାଗେ। ପୁଅଙ୍କ ଅନୁକରଣରେ ଆଉ ଗୁଡ଼ାଏ ଇତି ସିତି ଖାତାପତ୍ର ମଧ୍ୟ କରି ପକାଇଥାଏ। ଦିବେଳା ସେଥିରୁ ବୋଝେ ଧରି ଯା ଆସ କରିବାକୁ ଆଦୌ ହାଲିଆ ଲାଗେନି। ବରଂ 'ମୋର ଏତେ ଖାତାପତ୍ର' ବୋଲି ଖୁସି ଲାଗେ; କିନ୍ତୁ ସେ ସବୁ ଘରକୁ ନିଏନି – କାଳେ ଫକିରୀ ଚିରି ଦେବ – କି ଲୁଚେଇ ଦେବ ଏଇ ଆଶଙ୍କାରେ।

ନିତି ଆପଣଙ୍କୁ ଖାତା ଦେଖାଏ - ସେ ସ୍ୱାକ୍ଷର କରି ଦିଅନ୍ତି - ଭଲ ମନ୍ଦ କିଛି କହନ୍ତିନି। ଦିନେ ଡ୍ରଇଂ ଦେଖି କିମିତି କରିଚୁ ବୋଲି ପଚାରିଲେ, ମୁଁ ସତ କଥା କହିଲି। ସେ କହିଲେ - 'ଆଲୋ ଓଲି, ଏତେ ପରିଶ୍ରମ କିଆଁ କରୁଚୁ? ହେଇଚି, ଇମିତି କରିବୁ ଯେ ପରିଶ୍ରମ ପଡ଼ିବନି - ଡ୍ରଇଂ ଭଲ ହେବ।' କପି ମାରିବା ସୂତ୍ରଟି ବତାଇ ଦେଲେ। ଆଉ ମତେ ପାଏ କିଏ? ଏକା ଦିନକେ ବଛା ବଛା ଡ୍ରଇଂ ୧୦/୧୨ଟା କରି ପକାଇଲି; କିନ୍ତୁ ତାକୁ 'କପି' ବୋଲି କହନ୍ତି ବା ସେ ବେନିୟମ କାମ ବୋଲି ମୁଁ ଜାଣେନି। ଅନ୍ୟ ପିଲାମାନେ ଯଥାରୀତିରେ ଡ୍ରଇଂ କରିବାର ଦେଖେ - କିନ୍ତୁ ମୁଁ ଜାଣିଥିବା ସହଜସୂତ୍ରଟି ତାଙ୍କୁ କହି ଦିଏନା କାଳେ ମୋଠୁଁ ଭଲ କରିଦେବେ ବୋଲି ମୋ ଯୋଗ୍ୟତାଟା ମୁଁ ପାରୁପର୍ଯ୍ୟନ୍ତ ଲୁଚାଇଥାଏ। ବୋଲିବା ବାହୁଲ୍ୟ ଏଗୁଡ଼ିକ ସବୁ ପୁଅ ପିଲା - ଉ:ପ୍ରା:ର ଛାତ୍ର।

ଏଥି ପୂର୍ବରୁ ମୋ ନାଁ ଲେଖିବାକୁ ଆପଣେ ଦିନେ ମତେ ନେଇ ସେକ୍ରେଟେରୀଙ୍କ ପାଖକୁ ଗଲେ। ସେ ନାଁ ପଚାରିଲେ - ମୁଁ କହିଲି 'ଅପା'। ସେ କହିଲେ - 'ଅପା ବୋଲି ନାଁ ନାହିଁ- 'ଅପ୍‌ସରା'। ସେୟା ଲେଖା ହେଲା; କିନ୍ତୁ ଏଡ଼େ ବଡ଼ ନାଁଆ ଘରର ବିବାହିତା ଝିଅଟା ସ୍କୁଲରେ ପଢ଼ିବା ନିନ୍ଦନୀୟ ବୋଲି, ମୋର ଜଣେ ଜ୍ଞାତିସମ୍ପର୍କୀୟ କକେଇଙ୍କୁ ଗାଡିୟନ କରି ଲେଖିଲେ। ଏକଥା କକେଇ ମଧ୍ୟ ଜାଣନ୍ତିନି - ଜାଣିଲେ ଆପତ୍ତି କରିବେ ବୋଲି ମୁଁ ସାଙ୍ଗ ସାଥୀ ପିଲାଙ୍କୁ ମନା କରି ଦେଇଥାଏ।

ପ୍ରାୟ ପ୍ରତିଦିନ ତ ଉ:ପ୍ରା: ସ୍କୁଲ ଦୁଆରେ ବହେ ନାକେଇ ରହି ସ୍କୁଲକୁ ଯାଏ। କାଖରେ ଗୋଛାଏ ଖାତାପତ୍ର, ପୁଅ ପିଲାଙ୍କ ସରିସା ହେବାକୁ ଗୁଡ଼ାଏ ଅଗଡ଼ ବଗଡ଼ କରି ସେଥିରେ ଲେଖିଥାଏ। ହଠାତ୍ ଦିନେ ସେକ୍ରେଟେରୀ ଦେଖି କହିଲେ - 'ତୁ ତ ପ୍ରତିଦିନ ଏଠି ବହେ ଠିଆ ହୋଇ ରହୁଚୁ, ଆଉ ସ୍କୁଲକୁ କେତେବେଳେ ଯାଉଚୁ? କ'ଣ ପଢୁଚୁ? ଖାତା ପତ୍ର ତ କେତେ କରିଚୁ - ଦେଖି କହି, ମୋ ବସ୍ତାନି ଫିଟେଇ ଖାତାପତ୍ର ସବୁ ଦେଖି ବସିଲେ। ଅଙ୍କର ପରିପାଟୀ, ହସ୍ତାକ୍ଷର ଢଙ୍ଗ ଦେଖି ଅବାକ୍। ସେ ସବୁ ପୁଣି ଆପଣେଙ୍କ ସ୍ୱାକ୍ଷରିତ। ରାଗରେ ନିଆଁ ଖଣ୍ଡ। ଡ୍ରଇଂ ଖାତାଟା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। କହିଲେ 'ତୁ ଯାକୁ କରିଚୁ' 'ହଁ'। ସାଥି ସାଥି ତାଙ୍କ କ୍ଲାସ ପିଲାଙ୍କୁ ଡାକି - 'କାଲିର ପିଲାଟା ଏଡ଼େ ସୁନ୍ଦର ଡ୍ରଇଂ କରୁଚି - ତମେ ଗଧଗୁଡ଼ା କ'ଣ କରୁଚ? କହି ପିଟିଲେ। ଆମରି ପାଖ ପଡ଼ିଶା ପିଲା ତ - ସବୁବେଳେ ମୁଁ ତାଙ୍କ ସାଥିରେ ଲେଖାପଢ଼ା କରେ। ମୋ ଲାଗି ସେମାନେ ମାଡ଼ ଖାଇବାରୁ ମୋତେ ଭାରି କଷ୍ଟ ଲାଗିଲା। ସେମାନଙ୍କର ରାଗଟା ମଧ୍ୟ ମୋଠି ରହିଲା। ସେଦିନ ଦାମୋଦରପୁରର ଜଣେ ଭଦ୍ର ଯୁବକ ସେଠାର ଥିଲେ। ସେ କହିଲେ, 'ଏଗୁଡ଼ାକ କପି ହୋଇଚି - ହାତ

ଡ୍ରଇଂ ନୁହେଁ।' 'ଯାକୁ କପି କହନ୍ତି, ଏହା ଖରାପ କାମ' ବୋଲି ଜାଣିପାରିଲି ଏବଂ 'କପି କରିନି' ବୋଲି ଯଥାସାଧ୍ୟ ସଫେଇ ଦେବାକୁ ଛାଡ଼ିଲିନି।

ଏ ଘଟଣାର ୪/୫ ଦିନ ପରେ ଦିନେ ଦ୍ୱିପହରେ ପିଲାଙ୍କ ମେଳରେ ବସି ଲେଖାପଢ଼ି କରୁଚି, ଫକିରୀ ଆସିଲା। ଗୋଟିଏ ପିଲା ଡ୍ରଇଂ କରୁଥାଏ। ଫକିରୀ କହିଲା – 'ତୁ କିଆଁ ଇମିତି ଡ୍ରଇଂ କରୁଛୁ କିରେ। ଆମ ଅପା ତ ଏମିତି ଡ୍ରଇଂ କରେ' କହି କପି ମାରିବା ପ୍ରଣାଳୀଟି କହିଦେଲା। ସମସ୍ତେ ହାଉ ହାଉ ହେଲେ – 'ହେଁ କପି କରି ଆମକୁ ଏତେ ମାଡ଼ ଖୋଇଲା ଆଜି ସାର୍‌ଙ୍କୁ କହିବା।' ଇତ୍ୟାଦି ଇତ୍ୟାଦି ମର୍କଟି ହେଲେ। ମୁଁ ମଧ୍ୟ ଫକିରୀ ସାଙ୍ଗରେ ବହେ କଳି କରି ଟାଙ୍କେ ଖାଇଲି।

ଆରଦିନ ମୁଁ ଉ:ପ୍ରା:ସ୍କୁଲ ଦୁଆରକୁ ନ ଯାଇ ଲୁଚି ଲୁଚି ଚାଲିଗଲାବେଳକୁ ଦୁଇଚାରିଟା ପିଲା ଘେରିଯାଇ 'ସାର୍ ଡାକୁଛନ୍ତି – ଆ' କହି ସ୍କୁଲକୁ ଭିଡ଼ି ନେଲେ। ସାର୍ କହିଲେ – 'କିଲୋ, ସେମିତି ଡ୍ରଇଂ କରିବାକୁ ତତେ କିଏ କହିଲା ?' 'ଆପଣେ କହିଲେ,' 'ଡାକ ଆପଣେଙ୍କୁ'। ସାଥି ସାଥି ପୁଞ୍ଜେ ପିଲା ଆପଣେଙ୍କୁ ଡାକିବାକୁ ଧାଇଁଗଲେ। ମୁଁ କାଠ ପରି ରହିଥାଏ।

ଆପଣେ ଅତି ଉଦାସ ପ୍ରକୃତିର ଲୋକ। ଶାନ୍ତ, ଶିଷ୍ଟ ମତେ ଖୁବ୍ ଭଲ ପାଆନ୍ତି ଏବଂ ସ୍ନେହରେ 'ଅପର୍ଣ୍ଣା' ବୋଲି ଡାକନ୍ତି। ତାଙ୍କ ସ୍ନେହରେ ମୁଁ ଭାସିଯାଏ। ଘରୁ ଯାହା ଯେତେବେଳେ ଭଲ ଦରବ କିଛି ପାଏ ଲୁଚେଇ ଚୋରେଇ ନେଇ ତାଙ୍କୁ ଦିଏ; କିନ୍ତୁ ସେ ପଢ଼ାଇବାରେ ମୁଁ ତୃପ୍ତ ହୋଇପାରେନି। ତାଙ୍କର କେବଳ ଅକ୍ଷର ପରିଚୟ ଓ ସାମାନ୍ୟ ପଣକିଆ ବ୍ୟତୀତ ଅଧିକ ଜ୍ଞାନ ନଥିଲା। ମୁଁ ତ ପୁଅଙ୍କ ସାଥିରେ ମିଶି, ସ୍କୁଲ ଦୁଆରେ ନାକେଇ ପଢ଼ାପଢ଼ିର ଗତଗାତଗୁଡ଼ିକ ଜାଣିଯାଇଥାଏ – ତାଙ୍କ ପଢ଼ା ମତେ ଆଦୌ ଭଲ ଲାଗେନି; କିନ୍ତୁ ଶ୍ରଦ୍ଧା ଭକ୍ତି ଠିକ୍ ରହିଥାଏ।

ସାର୍‌ଙ୍କ ଡାକରା ପାଇ ଆପଣେ ଆସିଲେ। ମୋ ଖାତାଗୁଡ଼ାକ ଦେଖାଇ ସାର୍ ତାଙ୍କୁ ବହୁତ ବକିଲେ। ଦ୍ୱିରୁକ୍ତି କରୁ ନ ଥାନ୍ତି ଖାଲି ଆଖି ଛଳ ଛଳ ହୋଇ ଯାଉଥାଏ। ମତେ ବଡ଼ କଷ୍ଟ ଲାଗୁଥାଏ। ବକାବକି ପରେ ସାର୍ କହିଲେ – 'ପିଲାଟି ଭଲ ପଢ଼ିବ ବୃତ୍ତି ପରୀକ୍ଷାକୁ ଯାଇପାରେ ତମେ ତାକୁ ପଢ଼ାଇ ପାରିବନି – ସେ ଏଇଠି ପଢୁ – ତମ ସ୍କୁଲରେ ତା ନାଁ ଥାଉ'। ଆପଣେଙ୍କ ଇଚ୍ଛା ନ ଥିଲେ ମଧ୍ୟ ଭୟରେ କିଛି କହିଲେ ନାହିଁ, ହଁ କଲେ। ପଢ଼ା ସୁବିଧା ପାଇ ମୋ ମନ ମହାଖୁସି; କିନ୍ତୁ ପୁଣି ବିପତ୍ତି ଆସିଲା

ସାର୍ ଭାରି ରାଗୀ – କିନ୍ତୁ ଖୁବ୍ ଭଲ ପଢ଼ାନ୍ତି। ପିଲାଙ୍କ ପଢ଼ାର ଅତି ଯତ୍ନ ନିଅନ୍ତି। ଏପରିକି ବିନା ଦରମାରେ ଟିଉସନ୍ କରି ପଢ଼ାନ୍ତି। ଆମ ଗାଁକୁ ଲାଗି ତାଙ୍କ ଗାଁ

ନୀଳାମ୍ବର ପୁର। ସେ ସନ୍ଧ୍ୟାବେଳକୁ ଖାଇସାରି ଆସି ଆମ ଗାଁରେ ସେ ପଣ୍ଡିତ ଗୋପୀନାଥ ମିଶ୍ରଙ୍କ ଘରେ ଆମକୁ ପଢ଼ାନ୍ତି ଏବଂ ରାତିରେ ସେଇଠି ଶୋଇ ପାହାନ୍ତାରୁ ପୁଣି ପଢ଼ାନ୍ତି। ପୁଅ ପିଲା ୩/୪ ଟି ପଢୁଥାନ୍ତି। ସେମାନେ ପାହାନ୍ତାରୁ ଡକାଡକି ହୋଇ ଆସି ମତେ ଡାକି ନିଅନ୍ତି। ପୁଅଙ୍କ ସ୍କୁଲରେ ପଢ଼ିବାରୁ ସାଙ୍ଗ ସାଥିଟିଏ ମୋ ପାଖ ମାଡ଼ନ୍ତି ନାହିଁ। 'ଅଣ୍ଡିରାଚଣ୍ଡୀ'ଟେ ବୋଲି ବାରକଥା ଚୁଗୁଲି କରନ୍ତି। ଘରେ ତ ଠୁଣେ କହୁଣୀଏ ଚାଲିଥାଏ। କ୍ରମେ କଥାଟା ଶାଶୁଘର ଶୁଣିଲେ। ମହା ଆପତ୍ତି ଉଠିଲା ସ୍କୁଲରୁ ନେଇଆସ ସ୍ୱାମୀଙ୍କର ଦି ଚାରିଜଣ ସାଙ୍ଗ ସ୍ୱାମୀଙ୍କ ନିର୍ଦ୍ଦେଶମତେ ବୋଉ ପାଖକୁ ଯାଇ ପ୍ରତିବାଦ କଲେ। ବୋଉର ଆକଟ ବେଳକୁ ବେଳ ତୀବ୍ର ହେଲା। ମୁଁ ନିୟମିତ ପଢ଼ିବାକୁ ଯାଇପାରିଲିନି। ସାର୍ ଜାଣିଲେ। ନିଜେ ଆମ ଘରକୁ ଯାଇ ବୋଉକୁ ମୋର ଭବିଷ୍ୟତ ଉନ୍ନତିର ଗୁଡ଼ିଏ ଆଶାର ବାଣୀ ଶୁଣାଇ ବୋଧ ଦେଲେ; କିନ୍ତୁ ଶାଶୁ ଘରର ଅଭିଯୋଗ 'ପାଠ ପଢ଼ିଲେ ସାଇବ ଘର ନେଇଯିବ'। ବୋଉ କହେ – 'ମୋ ଝିଅଟାକୁ ମୁଁ ନ ଛାଡ଼ିଲେ କୋଉ ସାଇବ ଘର ନେଇଯିବ – ଦେଖି ତ ଭଲା'। ଏଇପରି ବାଦ ବିବାଦରେ ମୋ ପଢ଼ା ବି ମନପୂରା ପାଇଲି। ମନଟା କୁଣ୍ଢେ ମୋଟ।

ଉ:ପ୍ରା:ରେ ପଢ଼େ। ନି:ପ୍ରା:ରେ ନାଁ ଥାଏ। ସବ୍-ଇନ୍ସପେକ୍ଟର ଓଗେର ଆସିଲେ ଲୁଚି କରି ନି:ପ୍ରା:କୁ ପଳାଏ। ଥରେ ଡି:ଆଇ ଜଗନ୍ନାଥ ବାବୁ ହଠାତ୍ ଆସି ପହଞ୍ଚି ଗଲେ। ସେ ଦୁଆରକୁ ଆସିଗଲେଣି। ଲୁଚି ପଳେଇବାକୁ ଉପାୟ ନାହିଁ, ପଛପଟ କାନ୍ଥରେ ଉଚ୍ଚକୁ ଛୋଟ କଳା କବାଟଟିଏ ଥାଏ। ତା ଆରପଟକୁ ଭୀଷଣ କିଆବଣ। ସାର୍ କହିଲେ – 'ଶୀଘ୍ର ଏଇବାଟେ ପଳେଇ ଯା।' ମୁଁ ତ ଅଥରପୀଟେ। ପାରିଲି ନାହିଁ। ସାର୍ ମୋ ଗୋଡ଼କୁ ଚାପିଚୁପି ଟେକି ଧରି ସେଇବାଟେ ଠେଲିଦେଲେ। ଲଥ୍‌କରି କିଆବୁଦାରେ ପଡ଼ିଗଲି। କିଆକଣ୍ଟାରେ ରକ୍ତସ୍ନାନ; କିନ୍ତୁ କାନ୍ଦିବାକୁ ତର କାହିଁ ? ଲସର ପସର ହୋଇ ନି:ପ୍ରା:କୁ ଧାଇଁଲି। 'ବାବୁ ଆସିଚନ୍ତି' ଶୁଣି ଆପଣେ ପିଲାଙ୍କୁ ଡକାହକା କରି ପ୍ରସ୍ତୁତ ହୋଇଗଲେ। ବାବୁ ଆସିଲେ। ପରୀକ୍ଷା କଲେ। କାହାରି ପଢ଼ାରେ ସନ୍ତୁଷ୍ଟ ହେଲେ ନାହିଁ; କିନ୍ତୁ ମତେ ପ୍ରଶଂସା କଲେ – ସୁତରାଂ ଆପଣେଙ୍କ ତ୍ରୁଟି ଜଣାପଡ଼ିଲା ନାହିଁ। ଭଲ ମନ୍ତବ୍ୟ ଦେଇ କିଛିଦିନ ପରେ ମତେ ଖଣ୍ଡେ ଛିଟ ଶାଢ଼ୀ ମିଳିଲା। 'ଅପା ଭଲ ପଢୁଚି – ବୃତ୍ତି ପରୀକ୍ଷାକୁ ଯିବ ବୋଲି ଚହଳ ପଡ଼ିଗଲା। ଆପଣେ ଚମକିଲେ। 'କାଳେ ଉ:ପ୍ରା:ର ଛାତ୍ରୀ ଭାବରେ ବୃତ୍ତି ପରୀକ୍ଷାକୁ ଯିବ' ଏଇ ଆଶଙ୍କା ତାଙ୍କୁ ଧଇଲା।

ସେ ଆସି ସାର୍‌ଙ୍କୁ କହିଲେ – 'ମୋ ପିଲାକୁ ଛାଡ଼ିଦିଅ ମୋ ସ୍କୁଲରେ ପଢ଼ିବ।' ସାର୍ ବୋଧବାଧ କରି ଫେରାଇ ଦେଲେ; କିନ୍ତୁ ସେ ନଛାଡ଼ନ୍ତି। ୩/୪ ଦିନ ଛାଡ଼ି ପୁଣି ଆସି ସେୟା କହନ୍ତି। ଗାଳି ଫଜିତଗୁଡ଼ାଏ ପାଆନ୍ତି। ଯାନ୍ତି। ଦିନେ ସାର୍ ରାଗିଯାଇ

ଧକ୍କାଟାଏ ମାରିଦେଲେ। ଆପଣେ ପଡ଼ିଯାଇ ଥାନ୍ତେ – ପିଲାଟେ ଧରି ପକାଇଲା। ମତେ କାନ୍ଦ କାନ୍ଦ ଭାବରେ କହିଲେ– 'ମା ଅପର୍ଣ୍ଣା, ତୁ ଚାହିଁ ରହିଚୁ, ସେ ମାହାନ୍ତିଟା ମତେ ମାଇଲା।' ବଡ଼ କରୁଣ ସେ ଦୃଶ୍ୟ। ଅଦ୍ୟାପି ମନେ ପଡ଼ିଲେ କାନ୍ଦ ମାଡ଼େ.– ବଡ଼ ବାଧିଲା ସାର୍ ତାଙ୍କୁ ସବୁବେଳେ ଧମକାନ୍ତି – 'ଅଭି ଇସ୍ତଫା ଦିଅ–' ତାଙ୍କର ଏକ ଉତ୍ତର 'ଅପର୍ଣ୍ଣାର ବୃତ୍ତି ପରୀକ୍ଷା ନ ସରିବାଯାଏ ମୁଁ ଇସ୍ତଫା ଦେବି ନାହିଁ, ଏଇପରି ଝୁଙ୍କାଝୁଙ୍କିରେ ଶେଷକୁ ଧକ୍କା ଖାଇବାଯାଏ ଗଲା। ମୁଁ ଆଉ ତାଙ୍କର ଅପମାନ ସହି ପାରିଲି ନାହିଁ। ସାର୍‌ଙ୍କୁ କହିଲି – ମୁଁ ଆଉ ପଢ଼ିବନି ମୋ ନାଁ କାଟି ଦିଅ।' ସାର୍ ତ ମହାରାଗୀ – ସାଥି ସାଥି ହାଜର। ବହି ଆଣି ନାଁ କାଟିଦେଲେ। ଏ ଆଖି ଲୁହ ସେ ଆଖିରେ ମାରି ଘରକୁ ଆସିଲି। ଘରେ ସମସ୍ତେ ଖୁସି।

'ଭଲ ହେଲା – ଏଡ଼େଟାଏ ହେଲାଣି, ଉଇଁ ଉଇଁ ଡିଆଁ ମାରିବ। ଘରକାମ ଶିଖୁ।' ସେତେବେଳକୁ ମତେ ପ୍ରାୟ ୧୨ ବର୍ଷ, କିନ୍ତୁ ୧୫/୧୬ ବର୍ଷ ଭଳି ଦେଖାଯାଏ। ଘରେ ୪/୫ ଦିନ ରହିବା ପରେ ଦିନେ ନାନୀ ଘରଆଡ଼କୁ ବୁଲିଗଲି। ଆପଣେ ପିଲାଙ୍କୁ ପଢ଼ାଉଥିଲେ। ମତେ ଡାକିଲେ, ମୁଁ ଗଲି କହିଲେ – ନାଁ କଟେଇ ଦେଲୁ' ଇତ୍ୟାଦି। ମୁଁ କହିଲି 'ତୁମେ ପର କଥାରେ ପଡ଼ି ତୁଚ୍ଛାକୁ ଜିଦ୍ କଲ' ଇତ୍ୟାଦି। ସେ ସେହି ବିଜ୍ଞାନପାଠ ବହିରୁ ସ୍ୱାସ୍ଥ୍ୟରକ୍ଷା ବିଷୟଟି ପଢ଼ାଉଥିଲେ। ମତେ କହିଲେ, 'ପଢ଼ାଇଲୁ' – ମୁଁ ଖୁସିରେ ପଢ଼ାଇ ବସିଲି। ପିଲାଙ୍କୁ ପଚାରିଲି, 'ନିଃଶ୍ୱାସ ପ୍ରଶ୍ୱାସ କାହାକୁ କହନ୍ତି?' ପିଲେ ଜଳକାପରି ରହିଲେ। ମୁଁ କହିଲି – ଆପଣେ ତାଙ୍କୁ ବୁଝାଇଦିଅ। ଆପଣେ ବୁଝାଇଲେ – 'ନିଃଶ୍ୱାସ ତ ଜାଣିଚ ପ୍ରଶ୍ୱାସ ବୁଝିପାରୁନ? କିଲୋ – ରାତି ଅଧରେ ଶୋଇଥିବ, ପରିସ୍ରା ଲାଗିଲେ ବାହାରକୁ ଯିବ – ତାକୁ କ'ଣ କହନ୍ତି? ମୁଁ କହିଲି, 'ନାହିଁମ ଆପଣେ– ନିଃଶ୍ୱାସ ଆମେ ଗ୍ରହଣ କରୁ ଓ ପ୍ରଶ୍ୱାସ ଛାଡୁ' ଇତ୍ୟାଦି। ତା ପରେ କାକର କିପରି ପଡ଼େ ବୋଲି ପିଲାଙ୍କୁ ପଚାରିଲି। କେହି ତ କହିପାରିଲେ ନାହିଁ, ଆପଣେଙ୍କୁ କହିବାରୁ ସେ ବୁଝାଇ ଦେଲେ – 'ଇନ୍ଦ୍ରଙ୍କ ହାତୀନାକରେ ସାତଟା ରନ୍ଧ୍ର ଅଛି – ସେ ତାକୁ ବୁଲାଇଦେଲେ କାକର ପଡ଼େ।' ପରେ ମୁଁ କାକର ପଡ଼ିବାର କାରଣ ବୁଝାଇଦେଲି। ପାଠ ସରିଲା। ଆପଣେଙ୍କୁ ଗୋଟିଏ ନିଛାଟିଆ ଜାଗାକୁ ଡାକି ତୁନି ତୁନି କାନ୍ଦ କାନ୍ଦ ହେଇ କହିଲି – 'ତମେ ତ ଇମିତି ପଢ଼େଇବ, ମୁଁ ବୃତ୍ତିକି ଯିବି କ'ଣ? ମୁଁ ତମ ରାଣ ପକାଇ କହୁଛି, ତୁମରି ସ୍କୁଲ ନାଁରେ ଯିବି – କଦାପି ତାଙ୍କ ସ୍କୁଲ ନାଁରେ ଯିବିନି। ଗଲେ ମଧ୍ୟ, ତମରି ଗାଁ ପିଲା ତ, ମୋ ନାଁ କିଆଁ କାଟିଦେଲ?' ଆପଣେ କାନ୍ଦି ପକାଇଲେ। କହିଲେ– 'ଆଉ ଜମା ଗୋଳମାଳ କରିବିନି, ତୁ ମା ସେଇଠି ପଢ଼। ମୁଁ ଆଜି ନାଁ ଲେଖିଦେବି' ବୋଲି ବୋଧ ଦେଇ ଛାଡ଼ି ଦେଲେ।

ଆରଦିନଠୁ ଉ:ପ୍ରା: ସ୍କୁଲକୁ ଗଲି ଏବଂ ନି:ପ୍ରା: ଛାତ୍ରୀ ସ୍ୱରୂପ ବୃତ୍ତି ପରୀକ୍ଷା ଦେଇ ବୃତ୍ତି ପାଇଲି। ବୃତ୍ତି ପାଇବାର ୩/୪ ମାସ ପରେ ୧୩ ବର୍ଷ ବୟସରୁ ଘରେ ରହିଲି। ପାଠ ଶେଷ। ପଢ଼ିବା ଝୁଙ୍କତ ବେଳରୁ ପ୍ରବଳ। ଯାହା ଯେଉଁଠୁ ପାଏ ଭଲ ହେଉ ମନ୍ଦ ହେଉ ପଢ଼େ। ତେବେ ଭଞ୍ଜୀୟ କାବ୍ୟ କବିତା ବ୍ୟତୀତ ସେତେବେଳେ ମଫସଲରେ ଅନ୍ୟ ବହି ବା କାହିଁ। ମିଶ୍ରେ ଫକିରୀ ପାଇଁ ଯାହା ପଠାନ୍ତି। ସଙ୍ଗୀତ ଚୌପଦୀ ମତେ ଭଲ ଲାଗେନି। ବୈଦେହୀଶ ବିଳାସ, ବିଦଗ୍ଧ ଚିନ୍ତାମଣି ଓଗେର ବହୁତ କାବ୍ୟ ପଢ଼ିଛି ଏବଂ ପ୍ରାୟ ପ୍ରତି ଶବ୍ଦର ଅର୍ଥ ବୁଝିବାକୁ ଚେଷ୍ଟା କରିଛି। ପୁରାଣପାଠ ତ ପ୍ରାୟ ଚାଲିଥାଏ। ତ୍ରିଭାଷୀ ଖଣ୍ଡିଏ ସଂଗ୍ରହ କରି ବଙ୍ଗଳା ଭଲ ପଢ଼ିପାରେ। ହିନ୍ଦୀ ବୁଝି ନ ପାରିବାରୁ ଛାଡ଼ି ଦେଲି।

ଠିକ୍ ୧୪ ବର୍ଷ ପୂରିବାରୁ ବଧୂ ଜୀବନ ଆରମ୍ଭ ହେଲା। ବୋଉ ସେତେବେଳକୁ ଶାଶୁଘର ପାଚେରିଟି ଘେରାଇ ଝାଟିମାଟିରେ ଘର ତିନୋଟି ତୋଳାଇ ଦେଇଥାଏ। ସ୍ୱାମୀ କଟକରେ ଟ୍ରେନିଂ ପଢୁଥାନ୍ତି। ମୂଲିଆ ମଜୁରିଆ କିଏ ବୁଝିବ? ତାଙ୍କ ପୁଅଙ୍କୁ ପାଖରୁ ଛାଡ଼ି ଥିବାରୁ ଶାଶୁଙ୍କର ମହା ଅସନ୍ତୋଷ। ସେଥିପାଇଁ ବୋଉ ତାଙ୍କ ଚଳିବାକୁ ସବୁ ସୁବିଧା ଯୋଗାଉଥାଏ। ଆମ ଗାଁରୁ ୭/୮ ଟା ଲେଖାଏ ମୁଲିଆ ଡାଲି, ଚାଉଳ, ପରିବା ଓଗେର ଧରି ଆସି ଏଠାରେ କାମ କରନ୍ତି। ସେତକ ସରିଗଲେ ଯାଆନ୍ତି। ପୁଣି ପୁଳାଏ ଧରି ଆସନ୍ତି। ଏହିପରି ଯା ଆସରେ ଘର ତୋଳା ସରିଲା। ମୁଁ ଶାଶୁଘର ଆସିଲି। ବଧୂଜୀବନର ଦୁଃଖ କହିଲେ ନ ସରେ। କହି କାର୍ଯ୍ୟ ନାହିଁ। ବହୁତ ହେବ। ବହୁ ଜନ୍ମର ଦୁଷ୍କୃତିର କଠୋର ପ୍ରାୟଶ୍ଚିତ ବ୍ୟତୀତ ତାକୁ ଆଉ କିଛି କୁହାଯାଇ ନ ପାରେ। ସେ ସ୍ମୃତି ଏବେ ମଧ୍ୟ ପ୍ରାଣକୁ ଥରାଇ ଦିଏ।

୭/୮ ବର୍ଷ ପରେ ଝିଅଟିଏ ହେଲା। ସେଥି ସକାଶେ ମୁଁ ଗାଁକୁ ଯାଇଥିଲି। ଝିଅଟି ୫ ଦିନ ରହି ମରିଗଲା। ଏହି ମରଣର କାରଣ ବଡ଼ ମର୍ମନ୍ତୁଦ କିନ୍ତୁ ଉଲ୍ଲେଖଯୋଗ୍ୟ ନୁହେଁ। ଝିଅଟି ମରିବାର ଠିକ୍ ୨୫ ଦିନ ପରେ ଶାଶୁ ହଠାତ୍ ମୂର୍ଚ୍ଛା ହୋଇ ସେ ଚାଲିଗଲେ। ଏହାର ୭/୮ ମାସ ପୂର୍ବରୁ ଶାଶୁ, ସ୍ୱାମୀ ଓ ମୁଁ ପୁରୀରେ ଗୋଟିଏ ଭଡ଼ାଘରେ ଥିଲୁ। ଶୁଦ୍ଧ କାର୍ଯ୍ୟ ସାରି ପୁରୀ ଆସିଲୁ। ଗୃହିଣୀ ଜୀବନର ଅୟମାରମ୍ଭ ହେଲା। ବଧୂ ଜୀବନଠାରୁ ଗୃହିଣୀ ଜୀବନର ବଳି ପଡ଼ିଲା। ଯାହା କି ଲେଖିବାର ନୁହେଁ। କେବଳ ଲେଖି ମୂଳ କଥାଟା କହି ଉପସଂହାର କରିବି। ଝିଅ ପରେ ଦୁଇଟି ପୁଅ। ବଡ଼ ଜଗନ୍ନାଥ, ସାନ ବ୍ରଜବନ୍ଧୁ। ବଡ଼ଟି ମାଟ୍ରିକ୍ ପରେ ବମ୍ବେରେ ରେଡ଼ିଓ ଇଞ୍ଜିନିୟରିଂ ଓ ଉଆରଲେସ୍ ଟେଲିଗ୍ରାଫି ପାସ୍ କରି ଆସି କଟକରେ ତାର କର୍ମ ଆରମ୍ଭ କଲା। ବର୍ତ୍ତମାନ ମଧ୍ୟ

ସେଇଠି ଅଛି । ବିବାହିତ – କିନ୍ତୁ ସନ୍ତାନ ହୋଇନାହିଁ । ସାନଟି ଏବେ ଦୁଇବର୍ଷ ହେଲା ଓକିଲାତି କରୁଛି । ବିଭା ହୋଇନି । ସାନ ଜନ୍ମର ୧୨ ବର୍ଷ ପରେ ଝିଅଟିଏ । ନା ମନୋରମା । ବି.ଏ. ପଢୁଛି ।

ସ୍ୱାମୀ ଚାକିରି ବାଦ୍ ଦୁଇବେଳା ଟିଉସନ୍ କରନ୍ତି । ଦୁଃଖେ ସୁଖେ ଚଳୁ । ଦ୍ୱିପ୍ରହରେ ଜଞ୍ଜାଳ ନ ଥାଏ । ବହି ପାଇଲେ ପଢ଼େ । 'ରାଜଲକ୍ଷ୍ମୀ' ବୋଲି ଗୋଟିଏ ବଙ୍ଗଳା ଉପନ୍ୟାସ ପଢ଼ି ମତେ ଭାରି ଭଲ ଲାଗିଲା । ପୁଳାଏ ବାଲି କାଗଜ ଖାତା କରି ଓଡ଼ିଆରେ ଅନୁବାଦ କଲି । ସେତେବେଳକୁ ସାନ ପୁଅଟି ୪ବର୍ଷର । ଦିସ୍ତେ ଖଣ୍ଡେ କାଗଜ ଲାଗିଲା; କିନ୍ତୁ ଛପା ଖର୍ଚ୍ଚ କାହିଁ । ପଡ଼ି ପଡ଼ି ସବୁ ଉଇ ଖାଇଲା । ମୋର ବଡ଼ ମଝିଆଁ ଭଉଣୀ ଘର ବୀରପ୍ରତାପପୁର । ତାର ବଡ଼ ପୁଅ ଗୋପୀନାଥ (ଏସ୍.ପି. ଲକ୍ଷ୍ମଣ ମିଶ୍ରଙ୍କ ପୁତୁରା) ଭାର୍ଗବୀ ମି.ଇ. ସ୍କୁଲରୁ (ବର୍ତ୍ତମାନ ହାଇସ୍କୁଲ) ପାସ୍ କରି ଆସି ମୋ ଘରେ ରହି ଜିଲ୍ଲା ସ୍କୁଲରେ ପଢ଼ିଲା ଏବଂ ପାସ୍ ପରେ ପୁରୀ କିଲଟରୀରେ କିରାନୀ କାମ କଲା । ସେ ମୋ ଘରେ ପ୍ରାୟ ୭/୮ ବର୍ଷ ଥିଲା । ସେତେବେଳେ ସେ 'ରଘୁ' ବୋଲି ଗୋଟିଏ ନାଟକ ଲେଖୁଥାଏ ।

ଅନେକ ଦିନ ପୂର୍ବେ ସୁଧନ୍ୱା ସଂହାର ବୋଲି ଖଣ୍ଡିଏ ଛୋଟ ନାଟକ ବହି ବଙ୍ଗଳା ୫୦ ପୃଷ୍ଠା ହେବ ଶତଛିନ୍ନ ଅବସ୍ଥାରେ ମୁଁ ଜଣକଠାରୁ ମାଗିଆଣି ପଢ଼ିଥିଲି । ସେଥିରେ ଇନ୍ଦୁମତୀର ନିଷ୍କାମ ପ୍ରେମଭାବଟା ମୋ ମନରେ ଗାର ପଡ଼ିଲା ପରି ଥାଏ । ଗୋପୀକି ସେ କଥା କହି ଖଣ୍ଡେ ନାଟକ ଲେଖିବାକୁ କହିଲି । 'ରଘୁ' ସରିଲେ ଲେଖିବ ବୋଲି ସେ ମତେ କହୁଥାଏ । 'ରଘୁ' ସରିଲା ଏବଂ ତାକୁ ଭଲକରି ଉତାରି ଦେବାକୁ ମତେ ଦେଲା । ମୁଁ ଉତାରିଲି ଏବଂ ଯାହା ଟିକିଏ ମତେ ଦିଶିଲା ସଂଶୋଧନ କଲି । ଗୋପୀ କହିଲା – "ତୁ ତ ଏସବୁ ଜାଣି ପାରୁଚୁ – ଇନ୍ଦୁମତୀ ଲେଖୁନାହୁଁ । ମତେ କାହିଁକି କହୁଚୁ ।" 'ମାଇପିଟାଏ କ'ଣ ଲେଖିବିରେ' ବୋଲି ବଡ଼ ସଙ୍କୋଚରେ କହିଲି । ସେ ଖୁବ୍ ଉତ୍ସାହ ଦେଇ ପ୍ରବର୍ତ୍ତାଇଲା । ମୁଁ କହିଲି, "ତୁ ଆଗ କିଛି ଲେଖି ଦେ, ପରେ ମୁଁ ଲେଖିବି ।" ଗୋପୀ ଆରମ୍ଭ କରିବାର ଦେଖି ମୁଁ ଆରମ୍ଭ କଲି । 'ସହସା ଶ୍ରବଣେ ପଶନ୍ତେ ରମଣୀ କରୁଣ କାତର ସ୍ୱନ'ଠାରୁ ଲେଖୁ ଲେଖୁ ୫ମ ସର୍ଗ ଯାଏ ଲେଖିଗଲି । ମୋ ଲେଖା ଦେଖି ଗୋପୀ ଯାହା ୧୦/୧୨ ପଦ ଲେଖିଥିଲା ସେତିକି, ଆଉ ଲେଖିଲା ନାହିଁ । ମୁଁ ମଧ୍ୟ କହିଲି ନାହିଁ । ୭/୮ ସର୍ଗ ପରେ ମୂଳର ଅବଶିଷ୍ଟାଂଶ ପୂରଣ କଲା । ଏଇ କପି ଯେତେବେଳେ ନାରାୟଣ ତ୍ରିପାଠୀ (ହେଡ଼ ମାଷ୍ଟର, କୋରାଇ ମି.ଇ. ସ୍କୁଲ)ଙ୍କ ହସ୍ତଗତ ହୁଏ, ସେ କହିଲେ 'ମୂଳର ୧୦/ ୧୨ଟି ପଦ ଏଥି ସହିତ ମିଶୁନାହିଁ । ଉଠାଇ ଦେଲେ ଭଲ ହେବ ।' ତାହା ଗୋପୀ ଲେଖା ବୋଲି ସେ ଅବଶ୍ୟ ଜାଣନ୍ତି

ନାହିଁ। ତାଙ୍କ କହିବାମତେ ସେଗୁଡ଼ିକ କଟିଗଲା। ତା ପରେ ତାଙ୍କର ଚେଷ୍ଟାରେ (‘ଇନ୍ଦୁମତୀ’ ବାରଦ୍ୱାର ଶୁଣ୍ଠିପିଣ୍ଡା ଉଠି ‘ସାହିତ୍ୟର ଅଯୋଗ୍ୟା’ ବୋଲି ଯେତେବେଳେ ଧ୍ୱଂସକୁ ଚାଲୁଥିଲା) କେନ୍ଦୁଝର ରାଣୀସାହେବାଙ୍କ ସୁଦୃଷ୍ଟିରେ ତାର ଦଶା ଲେଉଟିଲା। କେନ୍ଦୁଝରର ଡୋମେଷ୍ଟିକ ମ୍ୟାନେଜର ଶ୍ରୀଯୁକ୍ତ ମଧୁସୂଦନ ପଟ୍ଟନାୟକ ଏଥିର ମୂଳ କାରଣ। ‘ଇନ୍ଦୁମତୀ’ ଲେଖା ସରିବା ମାତ୍ରେ ‘ଚିନ୍ତା’ ‘କବିତାଞ୍ଜଳି’ ‘ଆର୍ଯ୍ୟଲଳନା’ ଓଗେର ଲେଖା ଚାଲିଥାଏ। ଯେତେବେଳେ ସ୍ୱର୍ଗୀୟ ନାରାୟଣ ତ୍ରିପାଠୀଙ୍କ କହିବାମତେ ‘ଇନ୍ଦୁମତୀ’ର ଉତ୍ସର୍ଗ କବିତା ସହ ପାଣ୍ଡୁଲିପିଟି ରାଣୀସାହେବାଙ୍କ ନିକଟକୁ ପଠାଇ କୃତକାର୍ଯ୍ୟର ଆଶା ପାଇଲି, ସାହସ ବଢ଼ିଗଲା। କ୍ରମେ ନରସିଂହପୁର ଓଗେର ଜାଗାମାନଙ୍କୁ ପଠାଇଲି ଏବଂ କୃତକାର୍ଯ୍ୟ ମଧ୍ୟ ହେଲି। ‘ଇନ୍ଦୁମତୀ’ ପ୍ରକାଶ ପରେ ବହୁତ ସମାଲୋଚନା ଚାଲିବାରୁ ଲେଖା ବନ୍ଦ କରିଦେଲି। ପୁଣି ମନକୁ ମନ ଭାବିଲି ମିଥ୍ୟା ଭୟରେ ସତ୍ୟକୁ ଛାଡ଼ିଲେ ଲୋକରଟନା ଅଧିକ ବଢ଼ିବ; କିନ୍ତୁ ସତ୍ୟକୁ ଧରିଲେ ସେ ନିଶ୍ଚୟ ଦିନେ ଜଣାପଡ଼ିବ। ପୁଣି ଲେଖା ଚାଲିଲା।

ନାରାୟଣ ବାବୁ କଟକ ଜିଲ୍ଲାର, ମଧୁବାବୁ ମଧ୍ୟ କେନ୍ଦୁଝରର। ମୁଁ ପୁରୀର ପରଦାସୀନା ଜଣେ। ‘ଆକାଶ କଇଁଆ ଚିଲିକା ମାଛ ଭଳି’ ତାଙ୍କର ସାହାଯ୍ୟ ସହାନୁଭୂତି ଓଗେର ଯେପରି ଆଶ୍ଚର୍ଯ୍ୟ ଭାବରେ ମିଳି ପାରିଛି ଏବଂ ତାଦ୍ୱାରା ମୋର ଯେପରି ଭାବରେ ଯେତେ ଯେତେ ଉପକାର ହୋଇଛି ତା ଲେଖିଲେ ବହୁତ ହେବ। ମୋର ବହିଗୁଡ଼ିକର ତାଲିକା ନିମ୍ନରେ ଦେଲି।

୧. ଇନ୍ଦୁମତୀ: ପ୍ରକାଶିକା, କେନ୍ଦୁଝର ରାଣୀ।

୨,୩. ଚିନ୍ତା, ଆର୍ଯ୍ୟଲଳନା: ପ୍ରକାଶିକା, ନରସିଂହପୁର ରାଣୀ।

୪,୫. ଦଶକୁମାର ଓ ଦଶକୁମାରୀ ଚରିତ (କାହାଣୀ) ପ୍ର. ଆଠମଲିକ ରାଜ ଦମ୍ପତି।

୬. କବିତାଞ୍ଜଳି: ପ୍ରକାଶିକା, ରାୟସାହେବ ଆନନ୍ଦଚନ୍ଦ୍ର ପତିଙ୍କ ସହଧର୍ମିଣୀ ଶ୍ରୀମତୀ ସୂର୍ଯ୍ୟମଣି ଦେବୀ।

୭. ଶତଦଳ: ପ୍ରକାଶିକା, ଚୌଧୁରୀ ଗଙ୍ଗାଧର ଦାଶ, ଜମିଦାର ଭିଙ୍ଗାରପୁର।

୮. ବନମାଳତୀ: ପ୍ରକାଶିକା, ଝରିଆ ଯୁବରାଣୀ।

୯. ଦେବୀରାଣୀ: ପ୍ରକାଶକ, ପବ୍ଲିଶିଂ ହାଉସ୍, କଟକ।

୧୦. ବାରମାସୀ: ପ୍ରକାଶକ, ଉତ୍କଳସାହିତ୍ୟ ପ୍ରେସ୍, କଟକ।

ଏହା ବ୍ୟତୀତ ଗୁଡ଼ିଏ ଅପ୍ରକାଶିତ କାବ୍ୟ, କବିତା, ଗଳ୍ପ ଓଗେର ରହିଛି। ବହି ପ୍ରକାଶରେ ନିଜର ନାଁ ରହିବା କଥା। 'ଅପ୍‌ସରା' ନାଁଟା ମତେ ଭଲ ଲାଗିଲା ନାହିଁ। ମୋର ସେହି ସ୍ନେହମୟ ଆପଣଙ୍କ ଆଦରର ଡାକ 'ଅପର୍ଣ୍ଣା' ନାଁଟି ପ୍ରକାଶ କଲି।

ଏଇ ମୋର ଜୀବନୀର ସଂକ୍ଷିପ୍ତ ବିବରଣୀ। ବର୍ତ୍ତମାନ ଏଇ କବିତ୍ୱ ଅପରାଧରୁ ବଡ଼ ବିପଦରେ ପଡ଼ିଚି। 'ଇନ୍ଦୁମତୀ' ପ୍ରକାଶଠାରୁ କେନ୍ଦୁଝର ରାଜା ରାଣୀଙ୍କଠାରୁ ମୁଁ ବହୁତ ରକମର ସାହାଯ୍ୟ ସହାନୁଭୂତି ପାଇ ଆସୁଥିଲି। ୧୮/୧୯ ବର୍ଷ ପୂର୍ବେ ସେ ମୋ ପାଇଁ ପୁରୀରେ ଖଣ୍ଡିଏ ଘର ତୋଳାଇ ଦେଇ 'ତେଲ ଗୁଡ଼ିଆ ବାରମାସରେ ତେର କୁଡ଼ିଆ' ଭଳି ମତେ ଭଡ଼ା ଘର ଦାଉରୁ ରକ୍ଷା କରିଥିଲେ। ରାଜ୍ୟ ସରକାରୀ ହେବାରୁ ତାଙ୍କର ମତିଗତି କ'ଣ ହେଲା କେଜାଣି, ସେ ଏବେ ମତେ ଏ ଘରୁ ଉଠାଇବାକୁ ମକଦ୍ଦମା ଚଳାଇଛନ୍ତି। ପଥର ସହିତ କପାଳ ଲଢ଼ାଇବା କଥା; କିନ୍ତୁ ବାଧ୍ୟ ତ?

*("ନାରୀକବି ଅପର୍ଣ୍ଣା ଦେବୀ", ଝଙ୍କାର, ପୃଷ୍ଠା ୧୦୧୧-୧୦୧୯)*

* * *

# ସୀତାଦେବୀ ଖାଡ଼ଙ୍ଗା

## (୧୯୦୪-୧୯୮୩)

ସୀତାଦେବୀ ଖାଡ଼ଙ୍ଗା ୧୯୦୪ ମସିହାରେ ଗଞ୍ଜାମର ଭଞ୍ଜନଗର ନିକଟବର୍ତ୍ତୀ ମନ୍ଦାର ଗ୍ରାମରେ ଏକ ଧନୀ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ହରିହର ପଣ୍ଡା ଆସ୍କାର ଖ୍ୟାତନାମା ଓକିଲ ତଥା ଜଣେ ଓଡ଼ିଆ ଜାତୀୟତାବାଦୀ ନେତା ଥିଲେ। ତାଙ୍କ ପିତାଙ୍କ ଖୁଡ଼ତା ପୁଅ ଭାଇ, ଶ୍ରୀବସ୍ତ ପଣ୍ଡା ଜଣେ ସମାଜ ସଂସ୍କାରକ ଥିଲେ, ଯିଏ ବାଲ୍ୟ ବିବାହ ପ୍ରଥାର ବିରୋଧ ଏବଂ ନାରୀଶିକ୍ଷାର ସମର୍ଥନ କରୁଥିଲେ। ସୀତାଦେବୀଙ୍କ ପିତା ଆସ୍କାରେ ଏକ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ, କିନ୍ତୁ ସେ ସୀତାଦେବୀଙ୍କୁ ବିଦ୍ୟାଳୟକୁ ପଠାଇ ନଥିଲେ। ପିଲାଦିନୁଁ ସେ ତାଙ୍କ ପିତା ଏବଂ ଦଦେଇଙ୍କ ବିପରୀତ ବ୍ୟକ୍ତିତ୍ୱକୁ ଲକ୍ଷ୍ୟ କରିଥିଲେ। ସେ ନିଜ ଭାଇଙ୍କୁ ପଢ଼େଇବାକୁ ତାଙ୍କ ଘରକୁ ଆସୁଥିବା ଘରୋଇ ଶିକ୍ଷକଙ୍କଠାରୁ ଲେଖିପଢ଼ି ଶିଖିଲେ। ସୀତାଦେବୀ ଦଶ ବର୍ଷ ବୟସରେ ବିଦ୍ୟାଳୟରେ ଶିକ୍ଷକ ଥିବା ବାଞ୍ଛାନିଧି ଖାଡ଼ଙ୍ଗାଙ୍କୁ ବିବାହ କରିଥିଲେ।

ସୀତାଦେବୀଙ୍କ ଖ୍ୟାତି ସେ ଲେଖିଥିବା ନାଟକଗୁଡ଼ିକ ଉପରେ ନିର୍ଭର କରେ; ତାଙ୍କର ପ୍ରସିଦ୍ଧ ନାଟକଗୁଡ଼ିକ ହେଲା – "ସହୋଦର", "ନାରୀ", "ପୋଷ୍ୟ ପୁତ୍ର", "ନାସ୍ତିକ", "ନିଷ୍ପତ୍ତି", "କ୍ଷୁଧାର ପିଡ଼ା" ଏବଂ "ମାତୃହୀନା"। ଏହି ନାଟକଗୁଡ଼ିକର ଭାବବସ୍ତୁ ତାଙ୍କ ସମୟର ସାମାଜିକ ସମସ୍ୟା ସହିତ ଜଡ଼ିତ।

ସୀତାଦେବୀଙ୍କ ଆତ୍ମଜୀବନୀ "ମୋର ଜୀବନସ୍ମୃତି" ୧୯୭୬ ମସିହାରେ ଶେଷ ହୋଇଥିଲା ଏବଂ ୧୯୭୮ ମସିହାରେ ପ୍ରକାଶିତ ହୋଇଥିଲା। ଯଦିଓ ସେ ତାଙ୍କ ଜୀବନରୁ ଏକ ସମନ୍ୱିତ କାହାଣୀ ବୁଣିବାର କ୍ଷମତା ବିଷୟରେ ଭୟଭୀତ, ତଥାପି ସେ ତାଙ୍କ ଜୀବନ ଏବଂ ସମୟର ଏକ ଜୀବନ୍ତ ଚିତ୍ର ପ୍ରଦାନ କରିବାରେ ସଫଳ ହୋଇଛନ୍ତି।

ତାଙ୍କର ଆତ୍ମଜୀବନୀକୁ ଓଡ଼ିଶାରେ ପ୍ରଚଳିତ କୁସଂସ୍କାର, ସାମାଜିକ ପ୍ରଥା ଏବଂ ଊନବିଂଶ ଶତାବ୍ଦୀ ତଥା ବିଂଶ ଶତାବ୍ଦୀର ପ୍ରାରମ୍ଭରେ ନାରୀମାନେ ସମ୍ମୁଖୀନ ହେଇଥିବା ପ୍ରତିବନ୍ଧକଗୁଡ଼ିକ ଉପରେ ଏକ ବିଶ୍ଳେଷଣ ରୂପେ ପଢ଼ାଯାଇପାରେ।

ଏଠାରେ ମନୋନୀତ ହୋଇଥିବା ଉଦ୍ଧୃତାଂଶରେ ସୀତାଦେବୀ ତାଙ୍କ ପିତାଙ୍କର ବିଧବା ଭଉଣୀଙ୍କ ପ୍ରତି ନିଷ୍ଠୁର ଆଚରଣ କିପରି ତାଙ୍କୁ ଗଭୀର ଆଘାତ ଦେଇଥିଲା ତାହା ବର୍ଣ୍ଣନା କରିଛନ୍ତି। ସେ ପାଠକମାନଙ୍କୁ ଜଣାଇଛନ୍ତି ଯେ ସାହିତ୍ୟ ପ୍ରତି ଭଲପାଇବା ତାଙ୍କୁ ଜୀବନର ଅନେକ ଦୁଃଖ ଓ ଜଞ୍ଜାଳରୁ ମୁକ୍ତ କରିଛି। ସେ ଜଣେ ନାଟ୍ୟକାର ଭାବରେ ତଥା ଏକ ନାଟକ ଦଳର ମାଲିକାଣୀ ଭାବରେ ମଧ୍ୟ ନିଜର ଅଭିଜ୍ଞତାକୁ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି। ଏସବୁ ଭିତରେ ସେ ଜୀବନର ଜଣେ ସ୍ୱତନ୍ତ୍ର ଓ କରୁଣାମୟୀ ପର୍ଯ୍ୟବେକ୍ଷକ ଭାବରେ ପ୍ରକଟିତ ହୁଅନ୍ତି।

## ମୋର ଜୀବନ ସ୍ମୃତି

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁଃ ଗୁରୁ ଦେବୋ ମହେଶ୍ୱରଃ
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରୁବେ ନମଃ ।

ମୋର ଶୈଶବଟା କିମିତି ସୁନ୍ଦର ହୋଇଥିବ କହିପାରୁନାହିଁ, କିନ୍ତୁ ବାଲ୍ୟକାଳର ଅନେକ କିଛି କଥା ସ୍ମରଣ ପଥରେ ରହିଛି। ସେ କାଳରେ ମୁଁ ଯାହା ଅନୁଭବ କରିଥିଲି, ସେ ଅନୁଭୂତି ନେଇ ଜୀବନୀ ଲେଖିବା ନିମନ୍ତେ ମୋର କୌଣସି ସମ୍ବଳ ନାହିଁ। ସେଇପରି ନାମହୀନ, ଜୀବନହୀନ ଭାବରେ ଜୀବନର ଦିନ ଶେଷ ହୋଇ ଯାଇଥାନ୍ତା; କିନ୍ତୁ କେତେବେଳେ ପବନରେ ଉଡ଼ିଆସି ଅଶ୍ୱତ୍ଥ ଗଛର ମଞ୍ଜିଟା ଘରର ଛାତ ସନ୍ଧିରେ ପଡ଼ି ଗଛ ହୋଇ ଦେଖାଦେଲା। ଘର ଛାତ ଝାଞ୍ଜରା ହୋଇ ଶହେ ଠାରେ ଫାଟିଫୁଟି ଗଲାଣି, ସେ ଗଛଟାର କିଛି କ୍ଷତି ହେବାକୁ ନାହିଁ। ସେ ପାଣି ପବନ ପାଇ ଧୀର ମନ୍ଥର ଗତିରେ ବଢ଼ିଚାଲିଛି। ଛାତରୁ କେତେ ରସ କିମିତି କରି ସେ ସଂଗ୍ରହ କରିପାରୁଛି, ତାକୁ ଯେ ସୃଷ୍ଟି କରିଛି, ସେ କଥା ସେ ହିଁ ଜାଣେ।

ସୃଷ୍ଟିକର୍ତ୍ତା କେଉଁଠୁ କିମିତି ସୁଯୋଗ ପାଇ ମୋ ହୃଦୟ ମରୁଭୂମିରେ ମୁଠାଏ ଜ୍ଞାନବୀଜ ଫିଙ୍ଗିଦେଲେ ସେକଥା କିଏ ଜାଣେ! ପଥର ଛାତ ଉପରେ ଗଛ ଦେଖି ମୁଁ ପ୍ରଥମେ ଅବାକ୍ ହୋଇ ବାକ୍ୟ ଗଢ଼ିଗଲି। ନିଜକଥା ଲେଖିବାକୁ ଗଲେ ଅନ୍ୟ ଅନେକଙ୍କ କଥା ସ୍ୱାଭାବିକ ଭାବରେ ସେ ଭିତରେ ଆସିଯିବା କଥା। ଯେଉଁମାନେ ଅତ୍ୟନ୍ତ ସାବଧାନ ସେମାନେ ଅନ୍ୟମାନଙ୍କଠାରୁ ଦୂରେଇ ଦୂରେଇ ଯାଇ ଆପଣା କଥା

ଲେଖିଦେଇ ପାରୁଛନ୍ତି । ସେଥିରେ ଲେଖକର ଶକ୍ତି, ସାହସ ଏବଂ ଶୌର୍ଯ୍ୟର ପ୍ରାଚୁର୍ଯ୍ୟ ଦେଖାଯାଇଥାଏ । କିନ୍ତୁ ମୁଁ ଯେ ମୋ କଥା ଲେଖିବାକୁ ଆରମ୍ଭ କରିଛି, କେବଳ ମୋର କର୍ମକୁଶଳତା ଦେଖାଇବାକୁ । କି କର୍ମ କରିଛି ଯେ କେଉଁ କୁଶଳତା ଦେଖାଇବି । ଆଧୁନିକ ଜୀବନୀ ଲେଖକମାନେ କି ସୁନ୍ଦର କୌଶଳରେ ଆପଣାକୁ ପ୍ରକାଶ କରୁଛନ୍ତି, ସେ ଲେଖା ପଢୁ ପଢୁ ମନ ଭିତରେ କେତେ କଳ୍ପନା କେତେ ରଚନା ସୃଷ୍ଟି ହୋଇଯାଉଛି । ସେଇ ସଙ୍ଗେ ସଙ୍ଗେ ଲୋଭ ହେଉଛି, ନିଜ ଜୀବନ କଳିକାଟିକୁ ଇମିତି ସରସ ସୁନ୍ଦର କରି ଫୁଟାଇ ପାରନ୍ତି କି; କିନ୍ତୁ ସେକଥା ସମ୍ଭବ ହେବ କିମିତି ? ଆମର ପିତୃପିତାମହ ଯେ ପୁଅମାନଙ୍କ କାନରେ ମନ୍ତ୍ର ଦେଇଯାଇଛନ୍ତି, ସେମାନେ ସୃଷ୍ଟି କାର୍ଯ୍ୟର ସାଧନାରେ ସିଦ୍ଧିଲାଭ କରିବେ । ଆମମାନଙ୍କୁ ଆମର ମାଆ, ମାଉସୀ, ଖୁଡ଼ୀ ଦେଠେଇ ଭାତ ରାନ୍ଧିବା ଶିକ୍ଷା ଦେଇଛନ୍ତି । ରାତି ପାହାନ୍ତିରୁ ଶଯ୍ୟା ଛାଡ଼ିବାଠୁ ପୁଣି ଶୋଇବା ପର୍ଯ୍ୟନ୍ତ, ରନ୍ଧାବଢ଼ା, ଆଚାର, ଆମ୍ବୁଲ ସାଇତି ଶୁଖେଇ ରଖିବା, ପୂଜା ପାର୍ବଣ ଦିନ ନିମନ୍ତେ ଘର ଅଗଣା ଦାଣ୍ଡ ଦୁଆରୁ ଗୋରୁଗୁହାଳ ପର୍ଯ୍ୟନ୍ତ ଲିପାପୋଛା କରୁ କରୁ ସମୟ କେଉଁଆଡ଼େ ଚାଲିଯାଉଛି । ଅବଶ୍ୟ ଏକଥା ମୋର ବାଲ୍ୟ କୈଶୋରର କଥା ।

ଏ ଯୁଗରେ ନାରୀମାନେ ସ୍କୁଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ ଆସି ଧନ ଉପାର୍ଜନ କଲେଣି; କିନ୍ତୁ ସୃଷ୍ଟି କାର୍ଯ୍ୟରେ ପୁରୁଷର ସମଯୋଗ୍ୟତା ଅର୍ଜନ କରିପାରି ନାହାନ୍ତି । ଏକାଥରକେ କେହି ଜଣେ ହେଲେ ପାରିନାହାନ୍ତି କହିହେବ ନାହିଁ, ତେବେ ସେମାନଙ୍କ ସଂଖ୍ୟା ମୁଷ୍ଟିମେୟ । କେହି କେଉଁଠି କରିଥିବେ ନିଶ୍ଚୟ । ମୁଁ କ'ଣ ସବୁଗୁଡ଼ିକ ପଢ଼ି ପାରିଛି ?

ମୁଁ ଜଣେ ସ୍ତ୍ରୀ ବ୍ୟକ୍ତି । ଭାରତ ଦେଶ ସ୍ୱାଧୀନ ହେବା ପୂର୍ବରୁ ମୋର ବାଲ୍ୟ, କୈଶୋର ଯାଇ ଯୌବନ କାଳ ମଧ୍ୟ ଅତୀତରେ ମିଶି ମିଶି ଆସୁଥିଲା ।

ମୋ ବାପା ହରିହର ପଣ୍ଡା ୧୮୬୬ ଖ୍ରୀଷ୍ଟାବ୍ଦରେ ଭଞ୍ଜନଗର ନିକଟବର୍ତ୍ତୀ ମନ୍ଦାର ଗ୍ରାମରେ ଜନ୍ମ ହୋଇଥିଲେ । ପିତାମହଙ୍କ ନାମ ବ୍ରଜସୁନ୍ଦର ପଣ୍ଡା । ସେମାନେ କକେଇ, ଦଦେଇ ପୁଅ ମିଶି ଛଅ ଭାଇ ହୋଇ ଏକାନ୍ନବର୍ତ୍ତୀ ପରିବାର ଭିତରେ ରହିଥିଲେ । ଧନ ଜନରେ ଘର ଭରିହୋଇ ରହିଥିଲା । ମୋ ବାପା ଥିଲେ ଗଞ୍ଜାମ ଜିଲ୍ଲାର ପ୍ରଥମ ଏବଂ ଜଣେ ପ୍ରତିଷ୍ଠିତ ଓକିଲ । ଗଞ୍ଜାମ ଜିଲ୍ଲାର ଘୁମୁସର ତାଲୁକାରେ ମନ୍ଦାର ବୋଲି ଗୋଟିଏ ଗ୍ରାମ ଥିଲା । ଏଇ ଶହେବର୍ଷ ଭିତରେ ମଧ୍ୟ ଜଣେ କେହି ସେ ଗାଁରୁ ବାହାରି ଇଂରାଜୀ ବିଦ୍ୟା ଅଧ୍ୟୟନ କରି ଓକିଲ କିମ୍ବା ମାଜିଷ୍ଟ୍ରେଟ୍ ହୋଇପାରି

ନାହାନ୍ତି। ସେଇ ଜଣେ ବ୍ୟକ୍ତିଙ୍କ ମନରେ କେଉଁଠାରୁ ଆସିଲା ଏ ଭାବନା, ସେ ସର୍ବଶକ୍ତିମାନ ହିଁ ଜାଣନ୍ତି। ବାଲ୍ୟକାଳରେ ସେ ଗାଁର ଚାଟଶାଳୀରେ କେତେଦୂର ପର୍ଯ୍ୟନ୍ତ ପଢ଼ିଥିଲେ ମୁଁ ଜାଣେ ନାହିଁ, ତେବେ ଏକଥା ଜାଣିଥିଲି ଯେ ଅଠର ବର୍ଷ ବୟସରେ ସେ ମନ୍ଦାର ଛାଡ଼ି ଆସିକାରେ କେତେବର୍ଷ ରହି ପଢ଼ିଥିଲେ।

ଆସିକା ପାଖରେ ନଳବଣ୍ଟା ଗାଁରେ ବାପାଙ୍କ ବଡ଼ ଭଉଣୀ ଥିଲେ, ସମ୍ଭବତଃ ସେ ସମୟକୁ ସ୍ୱାମୀଙ୍କ ସହିତ ଘର ସଂସାର କରୁଥିଲେ। ଭଞ୍ଜନଗର ମନ୍ଦାର ଆଉ ଆସିକା ନିକଟରେ ନଳବଣ୍ଟା। ସେ ସମୟର କଥା ସ୍ମରଣ କଲେ ବିସ୍ମୟ ବୋଧ ହେଉଛି। ତାଙ୍କ ସ୍ୱାମୀଙ୍କୁ ବତିଶ ବର୍ଷ ବୟସ ହୋଇଥିବା ସମୟରେ ସେ ମୃତ୍ୟୁମୁଖରେ ପଡ଼ିଗଲେ। ମୋ ପିଉସୀଙ୍କ ନାମ ହୀରା। ମୁଁ ଦେଖିବା ସମୟକୁ ବୈଧବ୍ୟ ବେଶରେ ମଧ୍ୟ ସେ ସୁନ୍ଦର ଦିଶୁଥାନ୍ତି। ଯୌବନ କାଳରେ ଆହୁରି ସୁନ୍ଦରୀ ହୋଇଥିବେ। ଗରିବ ଅବସ୍ଥାରେ ତାଙ୍କ ସ୍ୱାମୀ ଧାନ ବିକାକିଣା ବ୍ୟବସାୟ କରି ପରିବାର ପୋଷୁଥିଲେ। ଆସିକା ଅଞ୍ଚଳରୁ ଧାନ ଦୁଇଗାଡ଼ି (ବଳଦ ଶଗଡ଼ରେ) କିଣି ନେଇ ବ୍ରହ୍ମପୁରେ ବିକ୍ରି କରନ୍ତି, ଶଗଡ଼ ଗୋଟାକରେ ପାଞ୍ଚ, ସାତ ଟଙ୍କା ଲାଭ ହେଉଥିବ। ସେ ସମୟରେ ଯେଉଁଠି ସେଇଠି କଲେରାର ଭୟଙ୍କର ରୂପ ପ୍ରକାଶ ପାଉଥାଏ। ହୀରା ପିଉସୀଙ୍କ ସ୍ୱାମୀ ନଳବଣ୍ଟାରୁ ଧାନ ଧରି ବାହାରନ୍ତି ସନ୍ଧ୍ୟା ସମୟକୁ। ପର ସନ୍ଧ୍ୟାରେ ବ୍ରହ୍ମପୁରରେ ପହଞ୍ଚିବା କଥା। ରାସ୍ତାରେ ବ୍ରହ୍ମପୁର ପାଖାପାଖି କୌଣସି ଗଛମୂଳେ ଶଗଡ଼ ରଖି ପାଖର ପୋଖରୀରୁ ପାଣି ଆଣି ରୋଷେଇ କରନ୍ତି। ବଳଦ ହଳକୁ କୁଣ୍ଡା ପାଣି ଖୁଆନ୍ତି। ସେଇଠାରେ ହିଁ ଦାସଙ୍କୁ କଲେରା ଆକ୍ରମଣ କଲା। ଶଗଡ଼ିଆମାନେ ସେଇ ଧାନ ଶଗଡ଼ ଉପରେ ଶୁଆଇ ଦେଇ ଆଣି ଶବଟିକୁ ନଳବଣ୍ଟାରେ ତାଙ୍କ ନିଜ ଘରେ ରଖିଦେଇଗଲେ।

ଏହିଠାରେ ତାଙ୍କ ଜୀବନ ଇତିହାସ ଶେଷ। ସେଇ ପିଉସୀଙ୍କର ଦୁଇଟି ପୁଅ ଥିଲେ। ଦେଖିବାକୁ ଦୁଇଟାଯାକ ପୁଅ ଖୁବ୍ ସୁନ୍ଦର। ମୋର ବୟସ ପାଞ୍ଚ ଛଅବର୍ଷ ସମୟରେ ପିଉସୀଙ୍କର ସାନ ପୁଅ ବସ୍ତ କଲେରାରେ ମରିଗଲା। ବଡ଼ପୁଅ ଆକୁଳ, ଲମ୍ବା ପାତଳ, ଲମ୍ବା ଗଠନ ମୁହଁ। ମୁହଁ ଶୁଭ୍ର, ପ୍ରଶସ୍ତ ଲଲାଟ, ଡାଳିମ୍ବ ବୀଜ ଦନ୍ତପଙ୍‌କ୍ତି, ଭ୍ରମରକୃଷ୍ଣ ଆଖି। ମୋ ପିଉସୀ କହେ, "ତୋ ପିଉସା ମୋର ଆକୁଳଠୁ ଆହୁରି ସୁନ୍ଦର।"

ମନ୍ଦାର ପଣ୍ଡା ଘର ବୋଲି କହିଲେ ଧନ ଜନ ପ୍ରଭାବ ଇତ୍ୟାଦିରେ ସେ ଅଞ୍ଚଳରେ ଖ୍ୟାତି ଅର୍ଜିଥିଲେ। ଶ୍ରାଦ୍ଧ, ବ୍ରତ ଓ ବିବାହରେ ହଜାର ହଜାର ବ୍ରାହ୍ମଣଙ୍କୁ ଡାକି

ଭୋଜନ ଦେଉଥିଲେ। ଏଇପରି ଯଶ ସ୍ଥାପନ ପାଇଁ ଅର୍ଥ କରିବାକୁ ମୋର ପିତାମହ ତଥା ପ୍ରପିତାମହ ଅକୁଣ୍ଠିତ ଥିଲେ ବୋଲି ମୋର ସେଇ ହୀରା ପିଉସୀନାନୀଙ୍କଠାରୁ ହିଁ ଶୁଣିଛି। ମୋ ବାପାଙ୍କର ବାପା ବ୍ରଜସୁନ୍ଦର ପଣ୍ଡା, ଧର୍ମ ପଣ୍ଡା, ବାସୁଦେବ ପଣ୍ଡା ପ୍ରଭୃତି ଛଅ ଭାଇ ହୋଇଥିଲେ। ସମସ୍ତଙ୍କର ନାମ ସ୍ମରଣ କରି ହେଉନାହିଁ। ଏ ଛଅ ଭାଇ ତିନି ବାପାଙ୍କର ଦୁଇ ଦୁଇଟି ପୁଅ ହୋଇଥିଲେ। ଏମାନଙ୍କ ଭିତରୁ ବାପାଙ୍କ ବାପା ଭଞ୍ଜ ରାଜବଂଶର କୌଣସି ରାଜାଙ୍କର ଜଣେ ପାରିଷଦ ଥିବା ମଧ୍ୟ ଶୁଣିଛି। ତାଙ୍କ ସହୋଦର ବାସୁଦେବ ପଣ୍ଡା ନିରନ୍ତର ମାମଲା ମକଦ୍ଦମାରେ ଆସିକା, ବ୍ରହ୍ମପୁର କୋର୍ଟ କଚେରୀ କରିବାରେ ଲାଗିଥାନ୍ତି। ଅସମୟରେ ଗରିବ କୃଷକ, ମୂଲିଆଙ୍କୁ ଟଙ୍କା, ଧାନ ଧାର ଉଧାର ଦେଇ ଚଢ଼ା ସୁଧରେ ସେମାନଙ୍କର ଜମି ଖଣ୍ଡିକ ଓକିଲ ସାହାଯ୍ୟରେ ଆତ୍ମସାତ୍ କରିନିଅନ୍ତି।

ବାସୁଦେବ ପଣ୍ଡା ଆସିକା, ବ୍ରହ୍ମପୁର ଓକିଲମାନଙ୍କର ପ୍ରଭାବ ପ୍ରତିପତ୍ତି ଦେଖି ତାଙ୍କର ଆପଣା ଘରୁ ଓକିଲ ହେଲେ କେତେ ଧନ, କେତେ ଯଶ, ପ୍ରଭାବ ବଢ଼ିଯାଆନ୍ତା, ଏଇ ଆଶା ଏବଂ ଉତ୍ସାହରେ ମୋ ବାପାଙ୍କୁ ଓକିଲାତି ପଢ଼ାଇବା ଉଦ୍ଦେଶ୍ୟରେ ଇଂରାଜୀ ପଢ଼ିବାକୁ ପଠାଇଥିଲେ।

'ମୁଁ କାହିଁକି ମୋର ଜୀବନ କଥା ଲେଖୁଛି' ବୋଲି କଥାଟା ଆରମ୍ଭକରି ପ୍ରଥମେ ବାପାଙ୍କ କଥା ଲେଖିବା ଆବଶ୍ୟକ ମନେକଲି। ବାପାଙ୍କ କଥା ମୁଁ ବା କିମିତି ଜାଣିଲି। ସେ ଜାଣିବା ବିଷୟ ପ୍ରକାଶ କରିବା ନିମନ୍ତେ ଆସିକା ହୀରା ପିଉସୀଙ୍କ କଥା, ତା ପରେ ଆସିଲେ ବାସୁଦେବ ପଣ୍ଡା।

କିନ୍ତୁ ମୋର ସେ ହୀରା ପିଉସୀ କେତେ ରୂପ ଧରି ହସି କାନ୍ଦି କଥା କହିଯାଉଛି। ଷାଠିଏ ବର୍ଷ ତଳର କଥା, ଆଜି ପୁଣି ନବୀନ ଭାଷାରେ ରୂପ ଧରି ମୋ ହୃଦୟକୁ ଆଲୋଡ଼ିତ କରୁଛି। ସେଇ ଗୋଟିଏ ବ୍ୟକ୍ତି ହୀରା ପିଉସୀ, କୋଟିଏ ରୂପ ଧରି ମୋ ଦେହମନର ଚାରିଆଡ଼େ ବ୍ୟାପିଯାଇଛି। ଏତେଦିନ ପରେ ତାକୁ ମୁଁ ଶ୍ମଶାନ ପ୍ରାନ୍ତରୁ ଖୋଜି ଆଣିବାକୁ ବସିଛି। କେଡ଼େ ଧନୀ ପିତାର କନ୍ୟା ସେ। ତାଲୁକ୍ ମୁଲକର ଅଧିପତି ହୋଇ ଝିଅଟାକୁ ଭରଣେ ଜମି କି ଟଙ୍କା ଶହେଟା କେବେ ଦେଇନଥିଲେ। ଘରେ ଯାଆ ଆଉ ସ୍ୱାମୀଙ୍କ ବଡ଼ ଭାଇ। ସେ ମଧ୍ୟ ସେଇ ଧାନ, ମୁଗ, ବିରି କରି ପରିବାର ପୋଷନ୍ତି। ତାଙ୍କରି ପାଖରେ ହୀରାନାନୀ ଛଅ ମାସ ରହିଲେ, ବର୍ଷେ ଦୁଇ ବର୍ଷ ମନ୍ଦାରରେ ରହେ।

ହୀରା ପିଉସୀ ତା ନିଜ ଜୀବନ କାହାଣୀ କହିବା ସହିତ ପିତୃ, ପିତାମହ,

କକେଇ, ଦଦେଇ, ଖୁଡ଼ୀ, ଦେଠେଇ, ମାଉସୀ ସମସ୍ତଙ୍କ ଇତିହାସ କହିଯାଏ। ମୋ ଗୋସେଇଁ ବାପାଙ୍କ ବାପାଙ୍କର ଚାରି ଛଅଟା ଝିଅ ଥିଲେ। ବାପା ମାଆ ସେମାନଙ୍କୁ ଅତି ଦରିଦ୍ର ପରିବାରରେ ବିବାହ ଦେଇଥିଲେ। ସେମାନଙ୍କର ସ୍ୱାମୀମାନେ ଆସି ଶ୍ୱଶୁରଙ୍କ ପାଖରେ ରାନ୍ଧୁଣିଆଁ ହୋଇ ରହୁଥିଲେ। ଭୂମି ଚାଷରେ ସାହାଯ୍ୟ କରୁଥିଲେ। ନିଜ ଗାଁ ଛଡ଼ା ଅନ୍ୟ ଗାଁମାନଙ୍କରେ ଚାଷକାର୍ଯ୍ୟ ଦେଖିବାକୁ ବାପାଙ୍କ ଗୋସେଇଁ ବାପ ଯାଇଥାନ୍ତି। ଜୋଇଁ ରାନ୍ଧିବାଢ଼ି ଖୁଆନ୍ତି। ଶ୍ୱଶୁର ଚାଉଳ ମାପକରି ଦେବେ ଜୋଇଁଙ୍କୁ ରାନ୍ଧିବା ନିମନ୍ତେ। କଟା ମାଛ ଖଣ୍ଡ ଖଣ୍ଡ କରି ଗଣତିକରି ଦେଇଥିବେ। ଖାଇବା ସମୟରେ, କହିବେ "କିହେ ! ରଥ ପୁଅ, (ଜୋଇଁଙ୍କ ସଂଜ୍ଞା ରଥ) ଆହୁରି ତ ଚାରି ଖଣ୍ଡ ମାଛ ଥିବ। ଆଉ ଦି ଖଣ୍ଡ ଆଣ।" ଜୋଇଁ କ୍ରୋଧ ଅଭିମାନରେ ଦୁମ୍ ଦୁମ୍ ଚାଲିଯାଇ ସବୁତକ ତରକାରୀ ତାଙ୍କ ଥାଳିରେ ଅଜାଡ଼ିଦେଇ ଚାଲିଆସିବେ।

ଏଇସବୁ କଥା ହୀରା ପିଉସୀ କହେ। କି ଗଭୀର ଧ୍ୟାନ ଦେଇ ଶୀତଦିନେ ନିଆଁ ଉହ୍ମେଇ ପାଖରେ ବସି ମୁଁ ଶୁଣୁଥାଏ। ହୀରା ନାନୀଙ୍କର ଦେହକୁ ଲାଗି ବସିଥାଏ, ମୋ ମାଆ ସମୟେ ସମୟେ ମୋର ଗଳ୍ପ ଶୁଣାରେ ବାଧା ସୃଷ୍ଟି କରେ। "ଆମେ ବସିଥିବୁ ନିଆଁ ଉହ୍ମେଇଁ ଧରି, ରାନ୍ଧୁଣିଆ ପିଲାଟା କେତେ କାମ କରିବ।" ମାଆର ଅକାରଣ ବିରକ୍ତି ଦେଖି ମୁଁ ଶୋଇପଡ଼େ। ନାନୀ ଟିକିଏ ସଂକୋଚରେ ରାନ୍ଧୁଣିଆ ଟୋକାକୁ ପଚାରେ "କ'ଣ କଟାବଟା କରିଦେବି କିରେ ? ଦେ ପରିବାଟା କାଟିଦେବି।"

ଚଉଦ ପନ୍ଦର ବର୍ଷ ବୟସର ପିଲା ରାନ୍ଧୁଣିଆଁ ପରିହାସ ମିଶାଇ କହେ, "ଆଉ କାଟିବାକୁ କିଛି ନାହିଁ । ବାବୁଙ୍କର ସନ୍ତୁଳା ପାଇଁ ଦିଟା ବାଇଗଣ, ଆଳୁ ଗୋଟେ କାଟି ଦେଇଛି। ଡାଲି ତ ମଧ୍ୟ ଏତିକି ପୁଞ୍ଜିଏ ମାଆ ଦେଇଥିଲେ, କିଏ କ'ଣ ଖାଇବେ କେଜାଣି ।"

ମୁଁ ସେଇ ନିଆଁ ଉହ୍ମେଇଁ ପାଖକୁ ବସି କୁଙ୍କିରି କାଙ୍କିରି ହୋଇ କଥା ଶୁଣୁଥାଏ। ମନରେ ଦୁଃଖ ହୁଏ, ଗରିବ ହେଲେ କେତେ ଦୁଃଖ, କେତେ ସନ୍ତାପ ଭୋଗ କରିବାକୁ ହୁଏ। ଏମାନଙ୍କର ମାଆ ବାପା ସନ୍ତାନ ବୋଲି ଜନ୍ମଦେଇ ଝିଅ ହେଲେ, ତାକୁ ତାର ତିନି ବର୍ଷ ବୟସରୁ ଉପଦେଶ ନିର୍ଦ୍ଦେଶ ଦେଇଚାଲିଥାନ୍ତି, ସେ କିମିତି ଶୀଘ୍ର ବିବାହ କରି ଯିବ ବୋଲି। ବର ଗୋଟିଏ ସବାରିରେ ବସି ଆସିବ, ଭେରୀ, ତୂରୀ, କାହାଳୀ, ଦମଦମ, ଚୁଡୁଚୁଡୁ ଶବ୍ଦରେ ଚମଡ଼ା ବାଦ୍ୟ ବାଜିବ। ସେ ଯାଇ ସେ ସ୍ୱାମୀର ଘରେ ଘର କରିବ। ଜନ୍ମସ୍ଥାନରୁ ନେବେ ଖଦି ଗାମୁଛା ଦି ଖଣ୍ଡ। ଗଣ୍ଡେ ହଳଦୀ, କେତେ ହାଣ୍ଡି ଗୁଡ଼ ଉଖୁଡ଼ା। ଏଇସବୁ ଭାର ସମ୍ଭାର ନେଇ ଝିଅ ଯାଉଥିଲା ଶାଶୁ ଘରକୁ। ବଳଦ

ଶଗଡ଼ରେ ବସି ବାହାରିଲା ବେଳକୁ ସାଥିରେ କେହିହେଲେ ଜଣେ ପିଉସୀ ପୁଅ ଭାଇ ଯିବ।

ଷାଠିଏ ବର୍ଷ ବୟସରେ ତାର ଯେଉଁ ରୂପ ମୁଁ ଦେଖିଥିଲି, ଚଉଦ ପନ୍ଦର ବର୍ଷ ସମୟରେ ସେ କିମିତି ଦିଶୁଥିବ, ସେକଥା କେବଳ ମୁଁ କଳ୍ପନା କରେ। ଏଇ ପିଉସୀଟି ସମ୍ବନ୍ଧରେ ଏତେ ବିସ୍ତୃତ ବର୍ଣ୍ଣନା କାହିଁକି କରୁଛି। ତାର କାରଣ ଏ ଯେ କଥାଟିର ଆରମ୍ଭ କେବଳ ତାହାରି ମୁହଁରୁ ଶୁଣିବା କଥା। ଏ ଭିତରେ ଥିବା ପିତୃବଂଶର କଥା ସମ୍ପୂର୍ଣ୍ଣ ସତ୍ୟ ଏବଂ ପ୍ରତ୍ୟକ୍ଷ ଆଖ୍ୟାୟିକା।

ପ୍ରଥମେ ବାପାଙ୍କର ଜୀବନ ଆରମ୍ଭର କଥା ଲେଖିବା ଆବଶ୍ୟକ, ତା ପରେ ଅନ୍ୟ ଅନାବଶ୍ୟକ କେତେକ ବିଷୟ ମଧ୍ୟ ସେଥି ସହିତ ଆସିଯାଇ ପାରେ।

ମୋର ବଡ଼ ପିଉସୀ ବାପାଙ୍କଠାରୁ ବୟସରେ ଦଶବର୍ଷ ବଡ଼ ହୋଇଥିବ। ତାର ଠିକ୍ ବୟସ କେତେ ମୁଁ ଜାଣି ନଥିଲି। ହୀରା ପିଉସୀଙ୍କ ପରେ ଦଦେଇ। ତାଙ୍କ ପରେ ଆଉ ଚାରି ଭଉଣୀ । ଏଇ ବଡ଼ ଭଉଣୀଟି ଦେଖିବାକୁ ଯିମିତି ପ୍ରିୟଦର୍ଶିନୀ, ତାର କଥାଗୁଡ଼ିକ ମଧ୍ୟ ସିମିତି କରୁଣା ମଧୁର। ତା ମୁହଁ ଚାହିଁଲେ ମନେହୁଏ ଆଖିରୁ ତାର ଅଶ୍ରୁ ଝରିପଡୁଛି। ଶୋକ ଗଦ୍‌ଗଦ କଣ୍ଠରେ କ'ଣ ଗୋଟାଏ କହିଯାଉଛି।

ଇମିତି ଯେଉଁ ସତୀ ସାଧ୍ୱୀ ବୈଧବ୍ୟଦୁଃଖ ପୀଡ଼ିତ ଜ୍ୟେଷ୍ଠା ଭଗ୍ନୀ, ମୋ ବାପା ତା ସହିତ ପଦେ କେବେ କଥା ହେବା ମୁଁ ଶୁଣିନାହିଁ। ଭାତ ମୁଠାଏ ଖାଇବା ଆଶାରେ ମାସେ ଦୁଇମାସ ସବୁ ସହ୍ୟ କରି ଭାଇ ଘର ବୋଲି ପଡ଼ିରହେ। ସେ ସମୟରେ ଚାଉଳ ସେର ଚାରି ପଇସା। ମୁଁ ଜାଣିବାରେ ଘିଅ ସେର ଟଙ୍କାଏ। ତେଲ ଚାରି ଅଣା। ବାଇଗଣ ବିଶାକର ମୂଲ୍ୟ କେବେ ପାଞ୍ଚ ପଇସା, କେବେ ଛଅ ପଇସା ଇମିତି ଅବସ୍ଥାରେ ମଧ୍ୟ ଅଧିକା ଜଣଙ୍କୁ ଖାଇବାକୁ ଦେବାପାଇଁ କେତେ ବିରକ୍ତି। ମନ୍ଦାର ଗାଁରୁ ଚାଉଳ, ମୁଗ, ହରଡ଼, ବିରି, ସୋରିଷ, ଆମ୍ବ ଦିନରେ ଆମ୍ବ ଏତେ ଆସେ। ଅଥଚ ପୈତୃକ ପଦାର୍ଥରେ ଝିଅର ତିଳେ ହେଲେ ଅଧିକାର ନ ଥାଏ।

ହୀରା ପିଉସୀଙ୍କର ପୁଅ ଆକୁଳ ପ୍ରତିଦିନ ଗାଁରୁ ଚାଉଳ ଧରି ଋଷିକୂଲ୍ୟା ନଦୀ ସେ ପାଖର ଶ୍ମଶାନ ତୋଟା ପାରହୋଇ ଆସିବା ସମୟକୁ ପିଉସୀ ନାନୀ ମତେ ସାଥିରେ ଧରି ଯାଇ ନଦୀପାଖ ଉପରେ ଠିଆହୋଇ ସେଇ ଆଡ଼କୁ ଚାହିଁରହିଥାଏ। ଏବେ ମୋର ମନେପଡୁଛି, ସେ କେଡ଼େ ଆବେଗରେ ମତେ ଦୂରରୁ ଦେଖେଇ ଦିଏ 'ହେଇଟିଲୋ ବୈଦେଈ (ତା ଶାଶୁ ନାଁ ସୀତା ବୋଲି ମତେ ସେ ବଇଦେଈ ବୋଲି ଡାକେ) ମୋର ଛୋଟା ଅସରଳା ଆସୁଛି।' ସେ ସମୟକୁ ବୟସ ତାର ତିରିଶି

ଭିତରେ। ଦେଖିବାକୁ ଏଡ଼େ ସୁନ୍ଦର ଯେ ନଦୀବାଲି ଉପରେ ଚାଲି ଆସିବା ସମୟରେ ତାର ସୁନ୍ଦର ମୁଖରେଖା, ଲମ୍ବା ଶୀର୍ଣ୍ଣ ସୁଗଠିତ ଦେହଟି ମନେ ରହିଯାଇଛି। ଶୀତ କାଳର ଅସ୍ତସୂର୍ଯ୍ୟର କିରଣରେ ସେ ଗୋଟିଏ ସୁନାରେ ତିଆରି ମନୁଷ୍ୟପରି ଦିଶୁଥାଏ।

ଚାଉଳ ବସ୍ତାଟି ମୁଣ୍ଡରେ ଧରି ସେଇଆଡୁ ସେ ଆସିକା ବଜାର ଦେଇ ଦାଣ୍ଡ ବାଟରେ ଆମ ଘରକୁ ଆସେ। ମୋ ମାଆ ଭଣଜା ସାଙ୍ଗରେ କଥାବାର୍ତ୍ତା କରେ, କିନ୍ତୁ ଖାଇବା ସମୟ ଆସିଗଲେ ଆସେ ସବୁ ଝଞ୍ଜଟ। ପିଉସୀ ନାନୀ ଏଣେ ରନ୍ଧାଘର ଦୁଆର ପାଖକୁ ଯାଇ ରାନ୍ଧୁଣିଆ ଟୋକାକୁ ଅନୁନୟ ବିନୟ କରୁଥାଏ - ଉଷୁନା ଚାଉଳଟା, ଡାଲିଟା ଆଗ ବସେଇ ଦେରେ। ପିଲାଟା ଆସିଚି ମୁଠେ ଖାଇଦେଇ ଯିବ।

ଆମର ରନ୍ଧାଘରର ବଡ଼ ଝରକା ଆଉ କବାଟ ଏପାଖ ବାରଣ୍ଡା ଆଡ଼କୁ ଥାଏ। ଦକ୍ଷିଣ ପାଖକୁ ଆଉ ଗୋଟିଏ ଛୋଟ ବଖରା। ସେଟା ସ୍ତ୍ରୀ ଅତିଥିମାନଙ୍କର ଭୋଜନ କକ୍ଷ। ସେଇ ଘରେ ବାସନ କୁସନ, ଶାଗସବ୍‌ଜି, ଗରମ ଦିନରେ ଆମ୍ବୁଲ ଆଚାର। ସେ ଘରଟାରେ ରଙ୍ଗମାଟି ଲିପାହୁଏ। ଆମେ ସମସ୍ତେ ଖାଇ ସାରିଲେ ଲିପାପୋଛା ହେବାପରେ ଦଉଡ଼ି ମଶିଣା ଉପରେ କନ୍ଥା ବିଛେଇ ମୁଁ ସେ ଘରେ ଶୁଏ। ମୋର ମନେ ଅଛି, ତକିଆ ଗୋଟାଏ ନ ହେଲେ ମୋର ଚଳେନାହିଁ। ତକିଆଟି କିମିତି କେଉଁ ସୂତ୍ରରେ ମୋର ହୋଇପାରିଥିଲା କହିହେବ ନାହିଁ। ହୀରା ପିଉସୀ ଓ ଆଉ ପିଉସୀମାନେ ଆସିଲେ ସେଇ ଘରେ ଖାଆନ୍ତି, ସେଇ ଘରେ ଶୁଅନ୍ତି। ସେ ଯୁଗରେ ସ୍ତ୍ରୀମାନେ ଯେଉଁ ଅବସ୍ଥାରେ ଥିଲେ, ବର୍ତ୍ତମାନ ବଡ଼ ବଡ଼ ଧନୀ ସମ୍ଭ୍ରାନ୍ତ ଘରମାନଙ୍କରେ ଜର୍ସି, ହରିୟାନା ଗାଈମାନଙ୍କୁ ସେମାନଙ୍କଠାରୁ ଅଧିକ ଯତ୍ନ, ସେବା ଶୁଶ୍ରୂଷା ଇତ୍ୟାଦି କରାଯାଉଛି। ମୋର ଚାରି ପିଉସୀ ହୀରା, ମୁକ୍ତା, ରତନ, ଜେମା। ମତେ ସାତ ଆଠବର୍ଷ ବୟସ ହୋଇଥିବା ସମୟରେ ଶେଷ ପିଉସୀ ଜେମା ମଧ୍ୟ ବିଧବା ହେଲେ।

ଆଜି ଏମାନଙ୍କର ସ୍ମୃତି ମୋର ଏ ଶେଷ ସମୟରେ ଆସି ମୋତେ ସଜାଗ କରିଦେଉଛି। ହୀରା ନାନୀର ଆଖିରୁ ଧାର ଧାର ଲୁହ ବହିଯାଉଛି। ଏଡ଼େ ବଡ଼ ବିଦ୍ୱାନ୍ ଧନୀ ଭାଇ ବଡ଼ ଭଉଣୀ ଆଡ଼କୁ ମୁହଁକରି କଥା କହି ନ ଥିଲେ। ପୁରାଣ କଥାର ଯେକୌଣସି ମହୀୟସୀ ମହିଳାଠାରୁ ଆପଣା ଜୀବନ ଚରିତ ଗଠନରେ, ସନ୍ତାନ ପାଳନ କରିବାରେ କୌଣସିମତେ ହୀରାପିଉସୀ ନ୍ୟୂନ ନ ଥିଲେ। ଏମାନଙ୍କର ପିତାମାତା ଯଦି ଏମାନଙ୍କ ପ୍ରତି ସଦୟ ହୋଇ ଶିକ୍ଷା ଦୀକ୍ଷା ଦେଇ ଉପଯୁକ୍ତ ପାତ୍ରରେ ଅର୍ପଣ କରିଥାନ୍ତେ, ସେମାନଙ୍କର ଜୀବନଯାତ୍ରା କି ସୁନ୍ଦର ହୋଇ ନଥାନ୍ତା। କେବଳ ନାମ ରଖିଥିଲେ ହୀରା, ମୁକ୍ତା। ବାସ୍ତବରେ ମାଟି ଟେଳାଠାରୁ ଆହୁରି ତୁଚ୍ଛ ପ୍ରାୟ ସେଗୁଡ଼ିକ ବଞ୍ଚି ରହିଥିଲେ।

# ଆପଣା ରଙ୍ଗମଞ୍ଚ

ମନୁଷ୍ୟ କବି ହେବାର ସାଧନା କାହିଁକି କରେ ! ସେ କେବେ ମରିବ ନାହିଁ ବୋଲି ? ଭାବିଚିନ୍ତି ସେ କରେ କି ? ତାହା ନୁହେଁ, ମନୁଷ୍ୟର ମନ ଭାବାବେଶ ବା ରସାବେଶ ହୋଇଉଠିଲେ ସେ ନିରନ୍ତର ମଣିହରା ଫଣିପରି ଦୁଃଖ-ବିଷରେ ଆତ୍ମହରା ହୋଇ ମଣିଟି ଖୋଜେ। ଆପଣାର ଅଜ୍ଞତା କଥା ଭୁଲିଯାଇ ସେ ଲେଖନୀ ଚାଳନା କରେ। ସେତେବେଳେ ଅଘଟଣ ଘଟଣ ପଟୀୟସୀ ମାୟାଦ୍ୱାରା ସବୁକାର୍ଯ୍ୟ ସମ୍ପାଦିତ ହୋଇଯାଏ। ଏଇ ମାୟା ମୋହର ଦୃଢ଼ହସ୍ତ ଆମକୁ କେଉଁଠାରୁ କେଉଁଠାକୁ ଟାଣି ନେଇଯାଉଛି। କ୍ଷତ ଏବଂ କ୍ଷତି ଆଡ଼ରୁ ସେତେବେଳେ ଦୃଷ୍ଟି ପଡୁନାହିଁ। ସେ ମାୟା ମୋହର ଇମିତି ଦୁର୍ଦ୍ଦାନ୍ତ ଶକ୍ତି ଯେ ଆମକୁ ସେ କଣ୍ଟାବଣରେ ପକାଇ ଘୋଷାଡ଼ି ନେଲାବେଳେ ଦୁଃଖ ବିଷାଦଆଡ଼କୁ ଆମର ଆଉ ଦୃଷ୍ଟି ପଡ଼େନାହିଁ। ପରେ ଜ୍ଞାନ ଦେବତା ଆସି ତର୍ଜନୀ ସଙ୍କେତକରି ସେ ଦୁଃଖ ଦେଖାଇ ଦେବା ସମୟରେ ଆମେ ଧୈର୍ଯ୍ୟ ହରାଇ ମାଟିରେ ମିଶିଯାଉ। ଅନୁତାପଟି ଯେତେ ନିବିଡ଼ ଭାବରେ ବୋଧହୁଏ, ସେତିକି ସେତିକି ଦୁଃଖର ଦାରୁଣ ଦାଉରୁ ମୁକ୍ତି ମିଳେ। କେତେ କବି, କେତେ ଲେଖକ, କେତେ ଭବିଷ୍ୟତ ବକ୍ତା, ହୃଦୟ ମନ୍ଦିରରେ ଆସି ବସିକରି ରହନ୍ତି। ନିଦ୍ରାବିହୀନ ରାତିରେ ସେଇମାନେ ଆସି ମୋ ମଥା ପାଖରେ ଜଣକ ପରେ ଜଣେ ବସିଯାଆନ୍ତି। ସେ ଭିତରୁ କେତେକଙ୍କୁ ଜୀବନରେ କେବେ ଥରେ ଦେଖିନାହିଁ। ସେମାନଙ୍କର ଗ୍ରନ୍ଥର ପ୍ରଚ୍ଛଦପଟରେ ଥିବା ପ୍ରତିକୃତିଟି ହିଁ ମୋର ସେ କବିଙ୍କୁ ସାକ୍ଷାତ ଦର୍ଶନ କରିବା ଏକମାତ୍ର ଉପାୟ। ଯେଉଁ ସମୟରେ ଯେଉଁ କବିଙ୍କୁ ଆଖି ଆଗରେ ରଖି ତାହାଙ୍କର ଲିଖିତ କବିତା ମୁଖସ୍ଥ କରେ ପ୍ରତ୍ୟକ୍ଷ ଭାବରେ ହିଁ ସେ କବିଙ୍କୁ ମୁଁ ହୃଦୟ ପଦ୍ମାସନରେ ବସାଇ ତାଙ୍କର ଚରଣ ବନ୍ଦନା କରେ। ଦିନ ଦିନକର ବିନିଦ୍ର ରାତି ମୋର ଦୁଃଖଦାୟକ ନ ହୋଇ ଆନନ୍ଦଦାୟକ ହୋଇଥାଏ।

ଗୋଟିଏ କଥା କହିବାକୁ ଭୁଲିଯାଇଛି । ୧୯୪୨ ଠାରୁ ୧୯୪୫ ପର୍ଯ୍ୟନ୍ତ ମୁଁ ଗୋଟାଏ ଅସାଧ୍ୟ କାର୍ଯ୍ୟରେ ହାତ ଦେଇଥିଲି। ଏ ତିନି ଚାରିବର୍ଷ ପୁଅ ଝିଅ ଦୁହେଁ ଦୂର ପ୍ରବାସରେ ରହି ଅଧ୍ୟୟନରତ ଥିଲେ। ଶ୍ରୀ ଦେବରାଜ ପାଠୀଙ୍କ ସହିତ ସେ ସମୟକୁ ମୋର ସାକ୍ଷାତ ଘଟିନଥିଲା । ଏକାକିନୀ ବସି ବସି ନାଟକ ଲେଖିଲି। 'ସହୋଦର' ମୋର ନିଜ ଜୀବନର ଛାପ ସେଥିରେ ରହିଥିଲା। ପିତା ମାତାଙ୍କ କଥା। ମଧ୍ୟବିତ୍ତ ପରିବାରର ସନ୍ତାନ ଓ ସ୍ୱାମୀଙ୍କ ବିଷୟ। ତା ପରେ ଲେଖିଲି 'ନାରୀ'। ନାଟକର ଅଭିନୟ ଦେଖି ଶ୍ରୀ ହରେକୃଷ୍ଣ ମହତାବ ଉଚ୍ଚ ପ୍ରଶଂସା କରିଥିଲେ। 'ପୋଷ୍ୟପୁତ୍ର',

'ନୈଷ୍ଠିକ', 'ନିଷ୍ପତ୍ତି', 'ପ୍ରାଚୀନପନ୍ଥୀ', 'କ୍ଷୁଧାର ପୀଡ଼ା', 'ମାତୃହୀନା' ଏସବୁ ଏକାଥରକେ ଲେଖି ନ ଥିଲି। ନାଟକ ଅଭିନୀତ ହେବାପରେ ଦିନକୁ ଦିନ ଇମିତି ଉତ୍ସାହ ବଢ଼ି ଚାଲିଲା ଯେ ଗୋଟାଏ ରାତିରେ ନାଟକ ଗୋଟାଏ ଲେଖିବା ଶକ୍ତି ଆସିଯାଇଥିଲା। ସକାଳ ହେଲେ ତାକୁ ଆଉଥରେ ଦେଖିନେଉଥିଲି। ସାରା ରାତି ଅନିଦ୍ରାରେ କଟାଇ ମଧ୍ୟ କ୍ଳାନ୍ତି ବୋଧ ହେଉନଥିଲା।

ସେ ସମୟର ସେ ପ୍ରବଳ ଆବେଗମୟ ମୁହୂର୍ତ୍ତର ରଚନା ମୋର ପରମ ଆନନ୍ଦ ଅନୁଭୂତିପୂର୍ଣ୍ଣ ହୃଦୟ ଭିତରେ ଶରତକାଳର ନଦୀସ୍ରୋତ ପରି ଛଳ ଛଳ କଳ କଳ ଧ୍ୱନିକରି ବହିଯାଉଥିଲା ପରି ମନେହେଉଛି।

ନାଟକ ଅଭିନୟର ଉଦ୍ୟମ, ଆୟୋଜନ, କର୍ମ ସମ୍ପାଦନ ମୋ ଭଳି ଜଣେ ଘର କୋଣର ମୂଷିକା ପକ୍ଷରେ କି ଦୁଃସାଧ୍ୟ ବ୍ୟାପାର ତାହା ଲେଖି ବସିଲେ ଗୋଟାଏ ବିଶାଳ ଗ୍ରନ୍ଥ ହୋଇଯିବ। ଏଣେ ଅର୍ଥର ପ୍ରାଚୁର୍ଯ୍ୟ ନ ଥିଲା। ଦାରିଦ୍ର୍ୟର ଆଶଙ୍କା ମଧ୍ୟ ମତେ ଥରେ ଥରେ ବିଚଳିତ କରିଦିଏ। ତଥାପି ମୁଁ ସେ ନାଟକ ଅଭିନୟ କରାଇବା ଲୋଭ ସମ୍ବରଣ କରିପାରେ ନାହିଁ। ଛଅ ସାତ ଖଣ୍ଡ ସାମାଜିକ ନାଟକ ଲେଖି ଆସିକାରେ ମୋର ଆପଣା ରଙ୍ଗମଞ୍ଚରେ ଅଭିନୀତ କରାଇଥିଲି। ସେତିକିରେ ତୃପ୍ତ, ଶାନ୍ତ ନ ହୋଇ ସେ ଦଳକୁ ବ୍ରହ୍ମପୁର ପର୍ଯ୍ୟନ୍ତ ଧରି ଯାଇଥିଲି। ବ୍ରହ୍ମପୁରରେ ଦର୍ଶକମଣ୍ଡଳୀ ଏଥିପ୍ରତି ଆକୃଷ୍ଟ ହେବା ପରି ମୁଁ ଅନୁଭବ କରିପାରିଲି ନାହିଁ। ତା ପରେ ଟିକିଏ ହତାଶ ବୋଧକରିଥିଲି, କିନ୍ତୁ ଘରକୁ ଫେରିଯାଇ ସ୍ୱାମୀଙ୍କଠାରୁ ଉତ୍ସାହ ପାଇ ପୁଣି ନବୀନ ତେଜରେ ସଜାଗ ହୋଇ ବସିଲି। ଏହାପରେ ରସୁଲକୋଣ୍ଡା (ବର୍ତ୍ତମାନର ଭଞ୍ଜନଗର) ଗଲି। ସେଠାରେ ମୋର ନାଟକ ସୁନାମ ଅର୍ଜନ କରିଥିଲା। ପ୍ରାୟ ଛଅଟି ନାଟକ ଅଭିନୀତ ହେଲା। ଶେଷଦିନ ସେଠାର ବିଦ୍ୱାନ ବ୍ୟକ୍ତିବୃନ୍ଦ ସଭା କରି ମୋତେ ଗୋଟିଏ ଅଭିନନ୍ଦନ ପତ୍ର ଦେଇଥିଲେ। ଏଡ଼େ ସୁନ୍ଦର କରି ସହଜ ହୃଦୟସ୍ପର୍ଶୀ ଭାଷାରେ ସେ ମାନପତ୍ର ଲେଖା ହୋଇଥିଲା, ତାକୁ ଛପାଯାଇ ବନ୍ଧେଇ କରାଯାଇଥିଲା। ସେ ଅଭିନନ୍ଦନର ଉତ୍ତର ଦେବା ସମୟରେ ଆବେଗ ଉଲ୍ଲାସର ସୀମା ନ ଥିଲା। ଭଞ୍ଜନଗର ପରେ ସୋରଡ଼ା ଯାଇଥିଲି। ସେଠାରେ ମଧ୍ୟ ନାଟକ ସୁଖ୍ୟାତି ଅର୍ଜନ କରି ଫେରି ଆସିଥିଲା। ଭଞ୍ଜନଗରରୁ ଫେରିବା ବାଟରେ ଗାଡ଼ି ବନ୍ଦ ହୋଇଗଲା। ଡିସେମ୍ବର ମାସର ଶୀତରାତି। ବସ୍ ଗୋଟାକରେ ନାଟକୀୟ ଲୋକ ଭର୍ତ୍ତିହୋଇ ବସିଥିଲେ। ସେ ଦିନ ଭାଇନା ମଧ୍ୟ ଯାଇଥିଲେ। ସେ ଦିନର ଶୀତ ରାତିରେ ମୋ ଭାଇ ମୋ ପାଖରେ ବସି ଯେଉଁ କଷ୍ଟଭୋଗ କରିଥିଲେ, କ୍ଷଣକର ସ୍ୱପ୍ନପରି ସେକଥା କେଉଁଆଡ଼େ ଉଡ଼ି ଗଲାଣି କାଳ ଶିଳାବେଳ ଦାଗଟିଏ ମାତ୍ର ରଖିଦେଇ।

ମୋର ନାଟକ ସହିତ ଯେଉଁମାନେ ସମ୍ପୃକ୍ତ ଥିଲେ, ସେମାନେ ସେଥିରେ ଅଭାବ ଅସୁବିଧା କଥା ବୁଝି ପାରୁଥିଲେ; କିନ୍ତୁ ବାହାରର କେତେକ ବ୍ୟକ୍ତି ନାଟକରୁ ମୁଁ ପଇସା ସଂଗ୍ରହ କରୁଥିବି ଆଲୋଚନା କରୁଥିଲେ; କିନ୍ତୁ ସେକଥା ଆଡ଼କୁ ମୁଁ ଆଦୌ କାନ ଦେଉନଥିଲି।

ଦିନକୁ ଦିନ ଆର୍ଥିକ ଅବସ୍ଥା ଶୋଚନୀୟ ହେବା ଦେଖି ଅଭିନେତାମାନେ ନାଟକ ଭାଙ୍ଗିଦେବା ପାଇଁ ପ୍ରସ୍ତାବ କଲେ। ମୁଁ ସେଆଡ଼କୁ ମନ ନ ଦେଇ ସୋରଡ଼ାକୁ ଶେଷ ଅଭିଯାନ ଚଳାଇଲି। ସେ ସ୍ଥାନଟି ବ୍ୟବସାୟୀମାନଙ୍କର ବସତି। ମୁଁ ସେଇ ସୋରଡ଼ା ନିକଟବର୍ତ୍ତୀ ଗୋପାଳପୁର ଶାସନର ବୋହୂ। ଯେଉଁ ବୋହୂର ଗତିପଥର ଛାୟାଟି ମଧ୍ୟ କେହି ଦେଖି ନ ଥିଲେ, ସେଠି ରୋଷେଇ ଘରଠାରୁ ଶୋଇବା ଘର ପର୍ଯ୍ୟନ୍ତ ମୋର ଚଳପ୍ରଚଳ। ନାଟକ ଲେଖି, ଦଳେ ଅଭିନେତାଙ୍କୁ ଧରି ନିର୍ଦ୍ଦେଶନା ଦେବା ସେମାନଙ୍କ ଦୃଷ୍ଟିରେ ଅଦ୍ଭୁତ କାର୍ଯ୍ୟ। ଏକଥା ସେଠାରେ ସେ ଭିତରେ ବନ୍ଧୁମାନେ ପ୍ରକାଶ କରି କହି ପକାଉଥିଲେ। ଜଣେ ଦୁଇଜଣ ଯେ ସାହିତ୍ୟ ରସାନୁଭବୀ ବ୍ୟକ୍ତି ନ ଥିଲେ ତାହା ନୁହେଁ। ସେହିପରି କେତେକ ମହତ୍ ହୃଦୟର ବ୍ୟକ୍ତି ମୋ ପାଖକୁ ଆସି ମୋର ନାଟକ ଅଭିନୟ କାର୍ଯ୍ୟରେ ସହାୟତା କରିବାକୁ ସ୍ୱୀକୃତି ଦେଲେ।

ସେ ସମୟକୁ ସେମାନଙ୍କ ରଙ୍ଗମଞ୍ଚ ନିର୍ମାଣ କାର୍ଯ୍ୟ ଶେଷ ହୋଇଥାଏ। ନାଟକ ଘର ମିଳିଗଲା। ଭଡ଼ା କେତେ ଦେବାକୁ ପଡ଼ିଥିଲା ସ୍ମରଣ ହେଉନାହିଁ। ସେ ସମୟର ସେ ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ମୋର ନାଟକ ପ୍ରତି ଯଥେଷ୍ଟ ସାହାଯ୍ୟ ଏବଂ ସହାନୁଭୂତି ପ୍ରକାଶ କରିଥିଲେ। ନାଟକ ବେଶ୍ ସମାରୋହର ସହିତ ଅଭିନୀତ ହୋଇଥିଲା। ସେଠାରେ 'ନାରୀ', 'ନିଷ୍ପତ୍ତି', 'ପୋଷ୍ୟପୁତ୍ର' ପ୍ରଭୃତି ଛଅଟି ନାଟକ ଅଭିନୟ କରାଯାଇଥିଲା। ସେଥିରେ ସମସ୍ତ ବ୍ୟୟ ବାଦେ ସାତଶହ ଟଙ୍କା ଅବଶିଷ୍ଟ ରହିଥିଲା। ସ୍ୱାମୀ କହିଲେ, ସେ ଟଙ୍କାଟା ସ୍ଥାନୀୟ ଉଚ୍ଚବିଦ୍ୟାଳୟକୁ ଦେଇଦିଅ। ସେ ଧନ ବ୍ୟାଙ୍କରେ ଗଚ୍ଛିତ ରହିବ, ଯେଉଁ ଛାତ୍ର ସର୍ବଶ୍ରେଷ୍ଠ ନମ୍ବର ରଖିବ, ସେ ସେଥିର ସୁଧଟା ନେବ। ମୋର ଇଚ୍ଛା ନ ଥିଲା। ଅଭାବର ତାଡ଼ନା ଭିତରେ ସେ ସମୟକୁ ନାଟକ ଦୁଇବର୍ଷ ଚଳିଆସିଥିଲା, ମୋର କଳ୍ପନା ଥିଲା ସେ ଟଙ୍କାରେ ଅଭିନେତାମାନଙ୍କୁ ପରିଧେୟ ଖଣ୍ଡେ ଖଣ୍ଡେ ଦେବି। ଏକଥା ମୁଁ ମନ ଖୋଲି ତାଙ୍କୁ କହିପାରି ନ ଥିଲି। ସେ ଟଙ୍କା ସ୍କୁଲକୁ ଦେଲେ; କିନ୍ତୁ ତାହା କିମିତି କାହାକୁ ଦେଉଛନ୍ତି ମୁଁ ଆଜି ପର୍ଯ୍ୟନ୍ତ ଜାଣିପାରିନାହିଁ। ଏକଥା ବୁଝିବା ନିମନ୍ତେ ଥରେ ଦେଢ଼ଶୁରଙ୍କ ପୁଅ ପୁତୁରାଙ୍କୁ କହିଥିଲି। ସେ ତ କାହିଁ କିଛି ଜବାବ ଦେଲେନାହିଁ। ଦୁଇ ପୁତୁରା ମଧ୍ୟରୁ ବଡ଼ ପୁତୁରା ଗାଁରେ ସରପଞ୍ଚ ହୋଇଛନ୍ତି। ଜମି ବାଡ଼ି ଚାଷକରି ସମ୍ଭ୍ରାନ୍ତ ଭାବରେ ଚଳନ୍ତି। ରାଜନୀତି

କରି ଆଉ ଟିକିଏ ଉଚ୍ଚ କ୍ଷମତା ହାତରେ ରଖିବା ବୋଧେ ଇଚ୍ଛା। ପଲିଟିକ୍ସରେ ଯୁଦ୍ଧ ଚାଲିଛି। ଯାହାର ବାହୁବଳ ବେଶି ସେ ଜିଣୁଚି। ନାଟକ କେଉଁ କାଳରୁ ଶେଷ ହେଲାଣି କିନ୍ତୁ ନାଟକର ଆୟୋଜନ ଆଖି ଆଗରେ ଓ ହୃଦୟ ଭିତରେ ଯିମିତି ସିମିତି ଉଜ୍ଜ୍ୱଳହୋଇ ରହିଛି। ସୋରଡ଼ା ହାଇସ୍କୁଲକୁ ଦେଇ ନ ଥିଲେ ଅନ୍ତତଃ ଆଉ ଗୋଟାଏ ମାସ ନାଟକ କାର୍ଯ୍ୟ ସୁବିଧାରେ ଚଳିଥାନ୍ତା। ସ୍ୱାମୀଙ୍କର ଇମିତି ଗୋଟାଏ ମହତ୍ ଇଚ୍ଛାରେ ମୁଁ ବାଧା ଦେଇ ପାରିନଥିଲି। ଟଙ୍କା ସାତଶହର ସୁଧ ବର୍ଷକୁ କେତେ ଇମିତି ହୋଇଯିବ ଯେ ସେଥିରୁ ଜଣେ କିମ୍ବା ଦୁଇଜଣ ଛାତ୍ର ନିଜ ନିଜର ପାଣ୍ଡିତ୍ୟର ପୁରସ୍କାର ନେଇଥାନ୍ତେ। ତଥାପି ତାଙ୍କର ଇଚ୍ଛା ବିରୁଦ୍ଧରେ ପଦେ ହେଲେ କହିବାକୁ ଇଚ୍ଛା ହେଲାନାହିଁ। ସୋରଡ଼ା ହାଇସ୍କୁଲ ସ୍କଲାରସିପ୍ ପାଣ୍ଠିରେ ମୋର ଅଭିନେତାମାନଙ୍କ ଦ୍ୱାରା ଉପାର୍ଜିତ ସାତଶହ ଟଙ୍କା ରହିଗଲା। ନାଟକ ସମ୍ବନ୍ଧୀୟ ବ୍ୟୟ ଅର୍ଥାତ୍ ଆସିକାଠାରୁ ସୋରଡ଼ା ଯିବା ଆସିବା; ରଙ୍ଗମଞ୍ଚର ଭଡ଼ା ଇତ୍ୟାଦି ଚଳାଇବା ମୋ ପକ୍ଷେ କଷ୍ଟକର ହୋଇପଡ଼ିଲା। ସୋରଡ଼ା ଯାତ୍ରା ପୂର୍ବରୁ (ରସୁଲକୋଣ୍ଡା) ଭଞ୍ଜନଗର ନାଟକ ଦଳ ନେଇ ଯାଇଥିଲି। ଓଡ଼ିଆ କ୍ଲବ୍ ପକ୍ଷରୁ ସେଠାର ଗୋଟିଏ ରଙ୍ଗମଞ୍ଚ ତିଆରି କରିଦିଆଯାଇଥିଲା। ସେଥିପାଇଁ ଭଡ଼ା ଦେବାକୁ ପଡ଼ିଥିଲା କି ନାହିଁ ସ୍ମରଣ ହେଉନାହିଁ। କିନ୍ତୁ ସେଠାର କେତେକ ସାହିତ୍ୟପ୍ରେମୀ ନାଟକ ଅଭିନୟ ସମୟରେ ଆନ୍ତରିକ ଶ୍ରଦ୍ଧା ସହାନୁଭୂତିର ସହିତ ସାହାଯ୍ୟ କରିଥିଲେ। ଛଅଗୋଟି ନାଟକ ସେଠାରେ ଅଭିନୀତ ହୋଇଥିବା ମୋର ମନେ ପଡୁଛି। ସେଦିନର ସେ ଆନନ୍ଦ ଅନୁଭୂତି ମନେପଡ଼ିଲେ ଆଖି ମୋର ସଜଳ ହୋଇଯାଉଛି। ନାଟକ ଅଭିନୟର ଶେଷଦିନ ଭଞ୍ଜନଗରର ସାହିତ୍ୟିକ ବୃନ୍ଦ ମୁଁ ଜଣେ 'କବି' ବୋଲି ମୋତେ ବଡ଼ ସୁନ୍ଦର ସମ୍ବର୍ଦ୍ଧନା ସହିତ ଗୋଟିଏ ବନ୍ଧାଇ ଅଭିନନ୍ଦନ ପତ୍ର ଦେଇଥିଲେ। ସେ ସମ୍ବର୍ଦ୍ଧନାର ଉତ୍ତରରେ ମୁଁ ଯାହା କହିଥିଲି ମନେପଡୁନାହିଁ, କିନ୍ତୁ ସେଦିନ ରାତିର ସେ ସମ୍ବର୍ଦ୍ଧନା ସଭା ମନେପଡ଼ିଲେ ସ୍ୱର୍ଗ ରାଜ୍ୟର ସଭାରେ ଦିନକ ନିମନ୍ତେ ହେଉପଛେ ବସିଲାପରି ମନେ ହେଉଛି। ଭଞ୍ଜନଗର ସାହିତ୍ୟିକମାନଙ୍କ ସମ୍ମୁଖରେ ନମ୍ର ହୃଦୟରେ ଅଶ୍ରୁପୂର୍ଣ୍ଣ ଆଖି ଖୋଲି ଚାହିଁ ରହିଥିଲା ପରି ମନେହେଉଛି।

ସେଦିନ ସନ୍ଧ୍ୟାରେ ମୋର ଜଣେ ମାମୁପୁଅ ଭାଇ ଯାହାଙ୍କ ଅନୁଗ୍ରହରୁ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମ ଦେବ' ନାଟକ ପଢ଼ିଥିଲି ଏବଂ ଯାହାଙ୍କ ଯୋଗୁଁ ମୋ ହୃଦୟରେ ନାଟକ ପଢ଼ାର ଗଭୀର ରେଖାପାତ ହୋଇଥିଲା, ସେଇ ରାଧାମୋହନ ଦାସ ବଡ଼ ଗୋଟାଏ ଥାଳିରେ ନାନାପ୍ରକାର ମିଷ୍ଟାନ୍ନ ଧରି ଆସି ମୋର ଅଭିନେତାମାନଙ୍କୁ ଖୁଆଇଥିଲେ। ବର୍ତ୍ତମାନ ରାଧାମୋହନ ଭାଇନା କେଉଁଠି କେମିତି

ଅଛନ୍ତି ଜାଣେ ନାହିଁ। ଦେଶ ଛାଡ଼ି ପ୍ରବାସରେ ବାସକରି ରହିବା ବଡ଼ ଦୁଃଖ। ଏଥିପାଇଁ ଉତ୍କଳମଣି ଗୋପବନ୍ଧୁ ଦାସ କହିଛନ୍ତି, "ଅବନ୍ଧୁ ଜୀବନ ଅସୁର୍ଯ୍ୟାମହି, ଦେହ ଧରି କିଏ ପାରିବ ସହି।" କବି ସିନା ଆବେଗ ଅଧୀର ହୋଇ ଏକଥା କହିଛନ୍ତି, ବାସ୍ତବରେ ମନୁଷ୍ୟ ଦେହ ଧରି ଅନେକ ଅସହନୀୟ ଦୁଃଖ, ବେଦନା ସହ୍ୟ କରେ। ନିରାସକ୍ତ ଭାବରେ ଯେଉଁ ବ୍ୟକ୍ତି ଜୀବନ ଯାତ୍ରା ନିର୍ବାହ କରେ ତା ପକ୍ଷରେ ସବୁ ଦୁଃଖ ପରମ ଆନନ୍ଦରେ ପରିଣତ ହୋଇଯାଏ। କବିମାନଙ୍କର କାବ୍ୟ ପଢ଼ିଲେ, ମନରେ ସ୍ୱତଃ ଆନନ୍ଦ ସଞ୍ଚାର ହୁଏ, ମନେହୁଏ ସତେ ଯେମିତି ମୋହରି ହୃଦୟର ଆବେଗମୟୀ ଭାଷା ଇମିତି କାବ୍ୟ, କବିତା ଗଦ୍ୟ ସାହିତ୍ୟର ରୂପ ଧରି ଲେଖିହୋଇ ଯାଇଛି।

ସାହିତ୍ୟ ସମ୍ବନ୍ଧରେ ମନରେ ଆଲୋଡ଼ନ ବିଲୋଡ଼ନ ସୃଷ୍ଟି ହେବାଠାରୁ ଅନ୍ୟମାନଙ୍କର ଭଲ ମନ୍ଦ ସ୍ୱଭାବ ଚରିତ୍ର ନେଇ ମନ ଭିତରେ ଆଲୋଚନା କରିବା ସମୟରେ ଗୁରୁଜନମାନଙ୍କ ସମ୍ବନ୍ଧରେ ମଧ୍ୟ ଭାବିଥାଏ। ଆପଣାର ଅପରାଧ ସମ୍ବନ୍ଧରେ ଯେ ଯେତେଦୂର ପାରେ ସଚେତ ହୋଇ ଆଖିରୁ ଧାର ଧାର ଅଶ୍ରୁ ଝରାଇ ଦିଏ। ବାଲ୍ୟ ବୟସରେ ଅନ୍ୟମାନଙ୍କଠାରୁ ନିନ୍ଦା ଦୁଃଖର ଆଘାତରେ ହୃଦୟ ଭରିଯାଏ। ଇମିତି ଦୁଃଖ, କ୍ଷୋଭ, ଭଲ ଭାବନା ଭିତର ଦେଇ ମୋର ବୟସ ଚାଳିଶି ଉପରେ ହୋଇଗଲା। ଠିକ୍ ତିଥି, ବାର, ମାସ, ବର୍ଷ ଲେଖି ପାରୁନାହିଁ। କେଉଁ ସମୟରେ 'ହରିହର ନାଟ୍ୟ ମନ୍ଦିର' ଗଢ଼ିବାରେ ଲାଗିଥିଲି, ପରେ ଈଶ୍ୱରଙ୍କ ଇଚ୍ଛାରେ ନାଟ୍ୟକାର ମାନେ ଆପଣା ଆପଣା ବୃତ୍ତିରେ ଲାଗିଲେ। ସେମାନଙ୍କ ସହିତ ଯେଉଁ ସ୍ନେହ ଶ୍ରଦ୍ଧାର ସମ୍ବନ୍ଧ ଥିଲା, ଅନେକ ଦିନ ପର୍ଯ୍ୟନ୍ତ ମୋ କାନ ପାଖରେ ସେମାନଙ୍କର ସେକଥା ଗୁଣୁ ଗୁଣୁ ଧ୍ୱନି କରି ବାଜି ଉଠୁଥାଏ। କେତେ ଉତ୍ସାହରେ ନାଟକ ଲେଖା ଚାଲିଥିଲା ! ରାତି ପାହାନ୍ତି ପର୍ଯ୍ୟନ୍ତ ନାଟକ ଶେଷ କରିବାରେ ଲାଗିଥାଏ। ଅଭିନେତାମାନେ ସେ ଲେଖାକୁ ପଢ଼ି କେଉଁଠି କ'ଣ କର୍ତ୍ତନ ବର୍ଦ୍ଧନ କରିବାକୁ ଥିଲେ ଆଲୋଚନା କରାହୁଏ। ପର ଦିନକୁ ପୁଣି ନୂତନ ଖାତାରେ ନବୀନ ଭାବ ଭାଷା ଦେଇ ଦୁଇ ତିନି ଦିନ ଭିତରେ ଗୋଟାଏ ଗୋଟାଏ ନାଟକ ନବୀନ ଆକାରରେ ଗଢ଼ିଦିଏ। ନିଜର ସୃଷ୍ଟିରେ ନିଜେ ଏତେ ଆନନ୍ଦ ଅନୁଭବ କରେ ଯେ ସେ ଭାବ ଅନିର୍ବଚନୀୟ ହୋଇ ଉଠେ। ପରମ ପିତା ପରମେଶ୍ୱରଙ୍କ ପଦତଳେ ଲୋଟିଯାଏ। ଲେଖିବାକୁ ପ୍ରୟାସ କରୁ କରୁ ମନ ପ୍ରାଣ ପୁଲକି ଉଠେ। ଆଜି ସେ ଦୂର ଅତୀତର କଥା ସ୍ମରଣ କରି ମନ ଉଲ୍ଲାସରେ ନାଚି ଉଠୁନାହିଁ। ଶାନ୍ତ ଉଦାସ ଭାବରେ ହାତ ଯୋଡ଼ିହୋଇ ଯାଉଅଛି, ସ୍ୱତଃ ପରମ ପିତା ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ।

ମୋ ସ୍ୱାମୀ ମତେ ଉତ୍ସାହ ଦିଅନ୍ତି। ନାଟକ ଭାଙ୍ଗିଗଲା ବୋଲି ଲେଖିବା ଛାଡ଼ି

ଦେଲେତ ହେବନି । ନାଟକ ବରଂ ତୁମ ଲେଖାର ଭିତ୍ତି ପକେଇ ଦେଇଛି ତାରି ଉପରେ ଠିଆହୋଇ ନୂଆ ନୂଆ ଲେଖା ଲେଖିଯିବ। ସ୍ୱାମୀଙ୍କର ଉତ୍ସାହ ମତେ ସାହସ ଦେଇ ମୋ ହାତରେ କଲମ ଧରାଇ ଦିଏ। ଲେଖିବସେ, ସବୁ ଭୁଲି ନିର୍ଲିପ୍ତ ନିର୍ବିକାର ଭାବରେ ଗଳ୍ପର ଗୋଟାଏ ବିଷୟ ଶେଷକରି ଅନ୍ୟ ବିଷୟ କ୍ରମଶଃ ଗତିକରେ । ଦିନେ ଦିନେ କେବଳ କଲମ ଖଣ୍ଡିକ ହାତରେ ଖୋଲି କାଗଜଟିକୁ ଚାହିଁ ରହିଥାଏ। ଯେଉଁ କେତେ ଜଣଙ୍କୁ ନେଇ ନାଟକ ଅଭିନୀତ କରାଇଥିଲି, ସେମାନଙ୍କର କଥା ଶୁଭିଯାଏ। ରିହାର୍ସଲର ଦୃଶ୍ୟ ଦିଶିଯାଏ। ଦିନେ ଦିନେ ଅପରାହ୍ନରେ ଦେବରାଜ ଆସି ବସନ୍ତି। ବଡ଼ ଧୀରସ୍ଥିର କଥାବାର୍ତ୍ତା ତାଙ୍କର। ସାହିତ୍ୟ ସମ୍ବନ୍ଧରେ, ଭାଷା ସମ୍ବନ୍ଧରେ କଥା ହେଉ। ସେଥି ସହିତ ଘରକଥା ଆପଣା ଆପଣା ଅବସ୍ଥାର କଥା ଆଲୋଚନା କରୁ। ସେ ସମୟକୁ ଦେବରାଜଙ୍କ ବୟସ କୋଡ଼ିଏରୁ ବେଶି ହେବ ନାହିଁ। ଏତେ ଅଳ୍ପ ବୟସର ବାଳକ ଗୋଟିଏ ସାଥିରେ ବସି ଜ୍ଞାନ ଚର୍ଚ୍ଚା କରେ। ସାମାଜିକ ଜ୍ଞାନ, ଭାଷା ଜ୍ଞାନ, ଜୀବନର ଦର୍ଶନ ଜ୍ଞାନ, ମନୁଷ୍ୟ ସହିତ ମନୁଷ୍ୟର ସ୍ନେହ, ସମ୍ବନ୍ଧ, ପୁଣି ସେଇ ମନୁଷ୍ୟ ଭିତରେ ବ୍ୟବଧାନ ସୃଷ୍ଟିହୋଇ ମନୁଷ୍ୟ ହୃଦୟ ଭିତରେ ଶୋକ, ବିଷାଦ, ବିଚ୍ଛେଦ ଭରି ଦେଉଛି। ସେ ଚିନ୍ତା କରିବା ମାତ୍ରେ ଆଖିରୁ ଅଶ୍ରୁ ବହିଯାଉଛି। ପରସ୍ପର ପ୍ରତି ତିଳେ ମାତ୍ର ବିଶ୍ୱାସ, ସ୍ନେହ ଶ୍ରଦ୍ଧା ରହିପାରୁନାହିଁ।

*("ମୋର ଜୀବନ ସ୍ମୃତି", ପୃଷ୍ଠା ୭-୧୩, ପୃଷ୍ଠା ୮୨-୮୪)*

* * *

# ପୀତାମ୍ବରୀ ଦେବୀ

## (୧୯୦୫-୧୯୮୯)

ପୀତାମ୍ବରୀ ଦେବୀ ୧୯୦୫ ମସିହାରେ ବିଶ୍ୱନାଥପୁରର ନୂଆଗାଁରେ ଜନ୍ମଗ୍ରହଣ କରିଥିଲେ। ସେ ଜଣେ ବାଲ୍ୟବିଧବା ଥିଲେ, କିନ୍ତୁ ନିଜ ଭିଣୋଇ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସହ ରହୁଥିଲେ, ଯିଏ ଓଡ଼ିଶାର ଜଣେ ପ୍ରସିଦ୍ଧ ଓକିଲ ଓ ଲେଖକ ଥିଲେ। ପୀତାମ୍ବରୀଙ୍କ ଜୀବନ ଅନେକ ଦୃଷ୍ଟିରୁ ଅଦ୍ଭୁତ – "ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର" ଉକ୍ତିକୁ ପ୍ରତିପାଦିତ କରୁଥିବା ଏକ କାହାଣୀ। ୧୯୪୫ ମସିହାରେ ଯେତେବେଳେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ମୃତଦେହ ତାଙ୍କ କଟକ ଘରୁ ମିଳିଥିଲା, ସେତେବେଳେ ପୀତାମ୍ବରୀଙ୍କୁ ତାଙ୍କ ହତ୍ୟା ଅଭିଯୋଗରେ ଗିରଫ କରାଯାଇଥିଲା। ପରବର୍ତ୍ତୀ ସମୟରେ ସେ ନିର୍ଦ୍ଦୋଷରେ ଖଲାସ ହେବା ପରେ ତାଙ୍କର ଅନ୍ତିମଦିନ ଗୁଡ଼ିକ ଅତିଶୟ ଦାରିଦ୍ର୍ୟତା ମଧ୍ୟରେ କଟିଥିଲା।

"କାନ୍ତରାବାବୁ" ନାମକ ଏକ ଉପନ୍ୟାସ ଲେଖିବା ବ୍ୟତୀତ ପୀତାମ୍ବରୀ ଦେବୀ ଗୋପାଳ ଚନ୍ଦ୍ର ପ୍ରହାରାଜଙ୍କୁ ସାତ ଖଣ୍ଡ ବିଶିଷ୍ଟ ଅଭିଧାନ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ" ରଚନା କରିବାରେ ସାହାଯ୍ୟ କରିଥିଲେ। ତାଙ୍କର ଆଂଶିକ ସ୍ମୃତି "ଦୁଃଖ କହିବି ନା ସୁଖ କହିବି" ୧୯୮୩ ମସିହାରୁ "ଇସ୍ତାହାର"ରେ ଅନିୟମିତ ରୂପେ କ୍ରମିକ ହୋଇଥିଲା। ଏଥିରେ ସେ ତାଙ୍କ ଭିଣୋଇ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସହ ତାଙ୍କ ଜୀବନ ବିଷୟରେ ଲେଖିଛନ୍ତି ଏବଂ ତାଙ୍କୁ ଜଣେ ସୁବର୍ଣ୍ଣ ହୃଦୟ ମଣିଷ ଭାବେ ଚିତ୍ରିତ କରିଛନ୍ତି। ସର୍ବୋପରି ସେ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ" ତିଆରି ବିଷୟରେ ଅନେକ ସୂଚନା ପ୍ରଦାନ କରିଛନ୍ତି।

## ଦୁଃଖ କହିବି କି ସୁଖ କହିବି ?

ଗୁରୁଜୀଙ୍କ ନନାଙ୍କୁ କି ବୋଉଙ୍କୁ ମୁଁ ଦେଖିନାହିଁ, ଭିକାନା ଗୁରୁଜୀଙ୍କର ଅତି ବିଶ୍ୱାସୀ ସାଙ୍ଗ ତାଙ୍କୁ ଦେଖିଛି।

ଗୁରୁଜୀ ଯାହା କହିଯାଇଥିଲେ ସେଦିନ କଟକରୁ ପୁରୀ ଲୋକନାଥଙ୍କ ଘରକୁ ଗଲେ, ପୁରୀ ସଂସ୍କୃତ କଲେଜ ମିଟିଂରେ ଯୋଗଦେଇ ଆମ ଘରକୁ ପାଞ୍ଚଟା ବେଳକୁ ଆସି ତହିଁ ଆରଦିନ ସନ୍ଧରେ ଦୁଇଦିନ ରହି, ପଣସ ଆମ୍ବ ଧାନ ନଡ଼ିଆ ଚାରିହଜାର - ବିକ୍ରି ହୋଇଥିଲା ସେ ଟଙ୍କା ମତେ ଆଣିଦେଲେ, ଆମ ଘରେ ଖାଇ ମୋ ସାଙ୍ଗଙ୍କୁ ପଚାରିଲେ, "ବୋଉ ପୀତାମ୍ବରୀ ସେପରି କାନ୍ଦୁଛନ୍ତି ?" "ସେ କହିଲେ ହଁ ହଁ।"

ବହିରୁ ପଦନେଇ ଚିହ୍ନ ଦଉଥାନ୍ତି, ମୁଁ ସେ ଘରେ ତାଙ୍କ ପାଇଁ ପାନ ଭାଙ୍ଗୁଚି ଏବେଳେ ଗୁରୁଜୀ ମତେ କହିଲେ, ବୋଉ ଓ ତୋ ମନ ପରିବର୍ତ୍ତନ କରିବା ପାଇଁ ଚାରିଧାମ ତୁମ ଦୁହିଁଙ୍କୁ ବୁଲାଇ ଆଣିବି। ମୁଁ ବର୍ତ୍ତମାନ କଟକ ଯାଉଚି। ଆଉ ପାଞ୍ଚ ଦିନେ ଆସି ତୁମ ଦୁହିଁଙ୍କୁ ଏଠାରୁ ନେବି। ଏକଥା ନନା ବୋଉଙ୍କୁ କହିବୁ। ଗୁରୁଜୀ ଏବେଳେ ମୋ ନନା ବୋଉଙ୍କୁ ପ୍ରଣାମ କରି କଟକ ଗଲେ। ମୁଁ ମଧ୍ୟ ସେତେବେଳେ ତାଙ୍କ ଚରଣ ତଳେ ପଡ଼ି ଆଶୀର୍ବାଦ ଭିକ୍ଷା ମାଗିଥିଲି। ମୋ ନନାତ ଗୁରୁଜୀଙ୍କ ସଙ୍ଗେ ଷ୍ଟେସନକୁ ଗଲେ।

ମୋ ବୋଉ ତ ଧର୍ମ ପୁଣ୍ୟ ତୀର୍ଥବ୍ରତ କରିବା ପାଇଁ ସର୍ବଦା ଚାହାନ୍ତି।

"ମଲୁ ଲୋଡୁଥିଲା କାକର ପାଣି
ବୈଦ୍ୟ ବୋଇଲା ଦେ ତୋରାଣି।"

ଗୁରୁଜୀ ମୋ ନନାଙ୍କ ଆଗେ ବୋଉ ମୁଁ ତୀର୍ଥକରି ଯିବା କଥା ବାଟରେ କହିଛନ୍ତି। ନନା ଷ୍ଟେସନରୁ ଫେରିଆସି ବୋଉଙ୍କୁ କହିଲେ।

ବୋଉ ତାଙ୍କ ବାକ୍ସରେ ତାଙ୍କ ମାଳି କଳାକାଛେଣି, ସିନ୍ଦୂର ଅଳତା, ଲୁଗାପଟା, ଦାନ୍ତକାଠି ରଖୁଥାଆନ୍ତି। ମୁଁ ମୋ କଥାରେ ଲାଗିଥାଏ। ଏପରି ଚାହୁଁ ଚାହୁଁ ୫ଦିନ ହୋଇଗଲା, ଗୁରୁଜୀ ଆମ ଘରକୁ ଆସିଲେ।

ତାଙ୍କ ସାଙ୍ଗରେ ତୀର୍ଥ ଯିବାପାଇଁ ପୂଜାରୀ ଚାକର ଆସିଥାଆନ୍ତି। ମୁଁ ଆଉ ବୋଉ ମିଶି ପାଞ୍ଚଜଣ ହେଲୁ। ଆଗରୁ ରେଳ ରିଜର୍ଭ ହୋଇଛି, ସେଇ ସନ୍ଧ୍ୟାକୁ ଗାଡ଼ିକୁ ଯିବୁ। ମୁଁ ଗାଡ଼ିକୁ ବାହାରିବା ସମୟେ ଆମ ସାଇର ଜଣେ ସଦେଇ ମିଶ୍ର ନାମକ ନବେ ବର୍ଷର ବୁଢ଼ା ମତେ କହିଲେ, ସାବିତ୍ରୀଙ୍କୁ ନାରଦ ଆଗତୁରା କହିଲା ପରି, "ମା, ତୁମେ ତ ଏତେ କମ୍ ବୟସରେ ତୀର୍ଥ ଧାମ ଯାଉଛ। ହୁସିଆର ଥିବ ବୃନ୍ଦାବନରେ ଭୂତ ଅଛନ୍ତି।" ବହୁ ଲୋକ ଆମ ସାଙ୍ଗରେ ଷ୍ଟେସନ ଯାକେ ଯାଇଥିଲେ। ମୋ ପାଖ ଚଷାଘରର ଝିଅଟି କାନ୍ଦୁଥାଏ। ତାକୁ ନେଇଥାନ୍ତି ଯେ, ଛଅ ଜଣିଆ ହୋଇ ଘରୁ

ବାହାରନ୍ତି ନାହିଁ, ସମସ୍ତେ ବାରଣ କଲେ। ତାକୁ ବୁଝାଇଦେଲି "ତୋ ପାଇଁ ଅଳଙ୍କାର କାଚଶାଢ଼ୀ ଆଣିବି। ନନାଙ୍କ ପାଖେ ମୋର ସେଠାକାର ଗୋଟିଏ ନାନୀ ରହିଲେ, ତୁ ତାଙ୍କ ପାଖରେ ଥିବୁ। ମୁଁ ଅଳ୍ପଦିନେ ଫେରି ଆସିବି।" ମୋ ନାନୀଙ୍କୁ ବାରମ୍ବାର କହିଥାଏ। ତାକୁ ତିନିଟଙ୍କା ଦେଲି ଓ କହିଲି - "ରଖ, କ'ଣ କିଣି ଖାଇବୁ।" ଗୁରୁଜୀ ଦୁଇଟଙ୍କା ଦେଲେ। ଆମେ ପାଞ୍ଚ ଜଣ କଲିକତା ଗଲୁ। ସେମାନେ ଷ୍ଟେସନରୁ ଆମ ଗାଆଁକୁ ଫେରିଗଲେ।

ଆମେ ତହିଁ ଆରଦିନ ସକାଳେ କଲିକତା ଷ୍ଟେସନରେ ଓହ୍ଲାଇଲୁ। ଗୁରୁଜୀ କାହାକୁ କହି ଭଡ଼ାଘର ରଖିଥିଲେ। ସେ ଘରେ ଯାଇ ରହିଲୁ। ଏଡ଼ତାଳ ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର କଲିକତା ଜାହାଜ କମ୍ପାନୀ କଣ୍ଟ୍ରାକ୍ଟର। ଗୁରୁଜୀଙ୍କୁ ଆଗରୁ ଚିହ୍ନା ଅଛିତ, ସେ ଖବର ପାଇ ଆସିଲେ। ଗୁରୁଜୀଙ୍କର ଓ ତାଙ୍କର କିଛିକ୍ଷଣ କଥାବାର୍ତ୍ତା ହୋଇ ସେ ଗଲେ। ମୁଁ ଭାସ୍କର ବାବୁଙ୍କୁ ଦେଖା ଦେଇନାହିଁ।

ପୁଣି ସେହିଦିନ ୪ଟା ବେଳକୁ ଭାସ୍କରବାବୁ ତାଙ୍କ ସ୍ତ୍ରୀଙ୍କୁ ନେଇ ମଟରରେ ଆସିଲେ। ମୁଁ ବାଧ୍ୟ ହେଲି ତାଙ୍କ ସ୍ତ୍ରୀଙ୍କ ସଙ୍ଗେ କଥା ହବାକୁ। ତାଙ୍କ ସ୍ତ୍ରୀ ମତେ କହିଲେ - "ଆଗରୁ ଆମକୁ କହିଲେ ନାହିଁ, ଆମର ଏତେ ଘର ଥାଉଁ ଥାଉଁ ଭଡ଼ାଘର ଆପଣମାନେ କାହିଁକି କଲେ? ଯାହାହେଉ ମୁଁ ଓ ବାବୁ କାଲି ସକାଳୁ ଆସିବୁ। ଆପଣମାନେ ସମସ୍ତେ ଆମ ଘରକୁ ଯିବେ ଓ ସାଙ୍ଗହୋଇ ସେଠାରେ ଖିଆ ପିଆ କରିବା।" ଭାସ୍କରବାବୁ ମଧ୍ୟ ଗୁରୁଜୀଙ୍କୁ ଡକରା କରି ସେ ଦୁହେଁ ବିଦାୟ ନେଲେ।

ବୋଉ ମୁଁ ଅଛୁ। ଗୁରୁଜୀ ମୋ ବୋଉଙ୍କୁ କହିଲେ "ମୁଁ ସିଦ୍ଧେଶ୍ୱରପୁର ଯାଇଥିଲି। ଆପଣଙ୍କ ଝିଅଙ୍କୁ ଯେତେ ପ୍ରକାର କହିଲି, ତୀର୍ଥ କରି ଯିବା ଆସ, ବୋଉ ଓ ପୀତାମ୍ବରୀ ଯାଉଛନ୍ତି। ସେ ମନାକରି କହିଲେ ମୁଁ ଗଲେ ମୋ ଏଠାକଥା ଦିନେ ଚଳିବ ନାହିଁ। ମୋ ଘର ଛାଡ଼ି ମୁଁ କୁଆଡ଼େ ଯିବି।"

ଭାସ୍କରବାବୁ ତହିଁ ଆରଦିନ ମଟର ଆଣି ଆଇଲେ; ଆମ ସମସ୍ତଙ୍କୁ ସାଙ୍ଗରେ ନେଇ ତାଙ୍କ ଘରକୁ ଗଲେ।

ତାଙ୍କ ସ୍ତ୍ରୀ ମହାପ୍ରସାଦ ମୋ ପାଟିରେ ଦେଇ ମୋ ସଙ୍ଗେ ଧର୍ମନଣନ୍ଦ ହେଲେ। ଖିଆପିଆ ସରିଲା। ସବୁରି ପାଇଁ ଲୁଗା କରିଥିଲେ। ସେଠାରୁ ସମସ୍ତେ ତାଙ୍କ ମଟରରେ କଲିକତା କାଳୀ, ଚିଡ଼ିଆଖାନା, ଏପରି ବହୁଆଡ଼ ବୁଲିଗଲୁ। ମୁଁ ଆମ ବସାକୁ ଆସିଲାବେଳେ ତାଙ୍କ ସ୍ତ୍ରୀ ମତେ ବାଟ ଖରଚ ପାଇଁ ଟଙ୍କା ହଜାର ଦେଲେ। ମୁଁ ନଉନଥିଲି, ବହୁ ବାଧ୍ୟରେ ଟଙ୍କା ଧଇଲି।

ଯାହାହେଉ, ଆମର ଆଗେ ରାମେଶ୍ୱର (ବୋଧହୁଏ ଅଯୋଧ୍ୟା ସ୍ଥାନରେ ଭୁଲ୍‌କ୍ରମେ ରାମେଶ୍ୱର ଲେଖାଯାଇଛି) ଯିବାର କଥା। ସେ ରାତି ଗାଡ଼ିରେ ଅଯୋଧ୍ୟା ଗଲୁ। ରାମନାଥଙ୍କୁ ଦେଖି ସେଠାରେ ୩ଦିନ ରହି ସେଠାରୁ ହରିଦ୍ୱାର ଗଲୁ।

ସେଠାରେ ୩/୪ ଦିନ ରହି ବଦ୍ରିକା ଯିବୁ, ଅଗ୍ନାଅଗ୍ନି ବାଟ। ସେ ବାଟ କିଏ ଚାଲିବ ଆଖି ପାଇଲା ନାହିଁ। ପୂଜାରୀ ଚାକରଟିକୁ ଗୁରୁଜୀ ହରିଦ୍ୱାରରେ ରଖାଇ ଦେଇ, ବୋଉ, ଗୁରୁଜୀ, ମୁଁ ଆମେ ତିନିଜଣ ଭାଗରେ ଗଲୁ।

ତେଣେ ରୁଟି ଖାଇବାଟା ବଡ଼କରି ଚିହ୍ନନ୍ତି। ଆମର ଅଭ୍ୟାସ ନ ଥିଲେ ବି ରୁଟି ଖାଇବାକୁ ହୁଏ। ବଦ୍ରିନାଥଙ୍କୁ ଦେଖିଲୁ। ସ୍ତ୍ରୀ ଲୋକମାନେ କେତେ ମାନସିକ କରୁଥାଆନ୍ତି । ଆମେ ଯିବାକୁ ୪ଦିନ। ସେଠାକୁ ଆସିବାକୁ ୫ଦିନ ବାଟରେ ଲାଗିଲା, ସେଠାରୁ ଏହ୍ଲାବାଦ ଆସିଲୁ। ଏହ୍ଲାବାଦ ସହର ବୁଲି ଆସୁ ଆସୁ ରେଳ ଫେଲ। ସେ ଷ୍ଟେସନ୍‌ରେ ୫ଟା ବେଳ ପର୍ଯ୍ୟନ୍ତ ଆମକୁ ରହିବାକୁ ହେଲା। ସେଠା ଷ୍ଟେସନ ମାଷ୍ଟର ମତେ ଦେଖି ଆଉ ମୋ ପାଖ ନ ଛାଡ଼ନ୍ତି। ସେଠାରେ ଲହର ପହର ହେଉଥାଆନ୍ତି। ଗୁରୁଜୀ ସେ ଦୃଶ୍ୟ ଦେଖୁଥାଆନ୍ତି।

ଷ୍ଟେସନ ମାଷ୍ଟର ଗୁରୁଜୀଙ୍କୁ ପାଖକୁ ଡାକି ଏକାନ୍ତରେ ତାଙ୍କୁ ପଚାରିଲେ ଏ କିଏ (ଅର୍ଥାତ୍ ମୁଁ କିଏ)। ଗୁରୁଜୀ କହିଲେ, ମୁଁ ତାଙ୍କ ପାଖେ ଚାକିରିରେ। ଏ ଭାରି ଦୁଷ୍ଟଲୋକ, ମାସିକ ବେତନ ଦିଅନ୍ତି ନାହିଁ। କହିଲେ ଭଲା ମୋ ପିଲାପିଲି କିପରି ଚଳିବେ ?

ଷ୍ଟେସନ ମାଷ୍ଟର କହିଲେ, "ଏହାଙ୍କୁ ମତେ ବିକିଦେଇ ପାରିବ ?" ଗୁରୁଜୀ କହିଲେ, "ହଁ, ହଁ, ...ବିକି ଦେଇ ଆମେ ପଳେଇବା।" ଷ୍ଟେସନ ମାଷ୍ଟର କହିଲେ, "ତେବେ କେତେ ଟଙ୍କା ନବ ?" ଗୁରୁଜୀ କହିଲେ "ହଜାରେ ଟା ଟଙ୍କା ପାଇଲେ ଏହାଙ୍କୁ ଆପଣଙ୍କ ଜିମାକରି ଆମେ ପଳେଇବୁ। ଏହାଙ୍କର କେହି ନାହିଁ।" ଷ୍ଟେସନ ମାଷ୍ଟର କହିଲେ "ତେବେ ବର୍ତ୍ତମାନ ଟ୫୦୦ ଦଉଛି, ଆଉ ପରେ ଦେବି।" ଗୁରୁଜୀ କହିଲେ "ହେଉ ଆଗେ ପାଞ୍ଚଶହ ଟଙ୍କା ଦିଅନ୍ତୁ।" ଷ୍ଟେସନ ମାଷ୍ଟର ଟ୫୦୦ ଆଣି ଗୁରୁଜୀଙ୍କୁ ଦେଲେ, ସେ ବୋଉଙ୍କୁ ମତେ ଆଣି ଦେଖେଇଲେ।

ମୁଁ ସତ ବିଚାରି କାନ୍ଦୁଛି, ଗୁରୁଜୀ ମତେ ବୁଝାଉଛନ୍ତି। ଷ୍ଟେସନ ମାଷ୍ଟର ମୋ କାନ୍ଦ ଦେଖି ଗୁରୁଜୀଙ୍କୁ ପଚାରିଲେ ସେ କାହିଁକି କାନ୍ଦୁଛନ୍ତି ? ଗୁରୁଜୀ ଉତ୍ତର ଦେଲେ "ମୁଁ ତାଙ୍କୁ ଆପଣଙ୍କ ପାଖେ ଛାଡ଼ିକରି ଚାଲିଯିବି ବୋଲି କାନ୍ଦୁଛନ୍ତି।"

ଷ୍ଟେସନ ମାଷ୍ଟର କହିଲେ "ଶୀଘ୍ର ତାଙ୍କୁ ମୋ ପାଖରେ ଛାଡ଼ି ଯାଅ।" ଗୁରୁଜୀ କହିଲେ "ମୁଁ ତାଙ୍କ ଚାକର ନୁହେଁ, ମୁଁ ଜଣେ ଗଭର୍ଣ୍ଣମେଣ୍ଟ ପ୍ଲିଡ଼ର। ସେ ମୋ sister-in law ହୁଅନ୍ତି। ଏହା ଯଦି ଆପଣଙ୍କ ଉପର ହାକିମଙ୍କୁ ଜଣାଏ ବା ଏ ଟଙ୍କା ଦେଖାଏ, ଆପଣ ସାମାନ୍ୟ ଷ୍ଟେସନ ମାଷ୍ଟରଟିଏ, କେତେ ରୋଜଗାର ଯେ ଏପରି ଲୋକଙ୍କୁ ମନ କରୁଛନ୍ତି ? ଯାହାହେଉ, ଆପଣଙ୍କ ଦାନା ମୁଁ ମାରିବି ନାହିଁ। ଏ ଟଙ୍କା ନିଅନ୍ତୁ।" ଷ୍ଟେସନ୍ ମାଷ୍ଟର ଗୁରୁଜୀଙ୍କ ଗୋଡ଼ ଧରି କ୍ଷମା ପ୍ରାର୍ଥନା ମାଗିଲେ।

ଇତି ମଧ୍ୟରେ ଆମର ଗାଡ଼ିବେଳ ହୋଇ ଯାଇଥିଲା। ପ୍ରୟାଗ ଗଲୁ। ତେଣୁ ୩/୪ ଦିନେ ମଥୁରା, ମଥୁରାରୁ ବୃନ୍ଦାବନ ଗଲୁ। ଗୁରୁଜୀ କାହା ପାଖକୁ ଆଗରୁ ଚିଠି ଲେଖିଥିଲେ ଯେ, ବୃନ୍ଦାବନରେ ମାଲିକ ଆମେ ଯିବା ବେଳେ ସେ ଘରେ ନଥାନ୍ତି। ତାଙ୍କ ଲୋକ ଷ୍ଟେସନକୁ ଆସି ଆମକୁ ନେଇଗଲେ। ଇନ୍ଦ୍ର ଭୁବନ ପରି ଘର। ମସ୍ତବଡ଼ ହତା, ଚାରିପଟ ଫୁଲ ବାଗାନ। କେହି ହେଲେ ଜଣେ ଘରହତା ଚାରିପଟେ ନାହିଁ। ଖାଲି ଛୋଟ ଛୋଟ ପାହାଡ଼ ଗୁଡ଼ାଏ।

ଆମେ ରହିବାର ସେଠାରେ ଆଠ ଦିନ ହୋଇଗଲାଣି। ଦିନେ ଆମ ପାଖ ଲୋକ ମତେ ଆସି କହିଲା, ଏ ଅଗଣାରେ ଯେଉଁ ମହୁଲ ଗଛ ଅଛି ତା ମୂଳେ ନିର୍ଜନ ରାତିରେ ଜଣେ ଠିଆ ହବାର ଆମେ ଦେଖିଲୁଣି। ଆପଣ ରାତିରେ ଏକାହୋଇ ସେଠାକୁ ଯିବେନାହିଁ। ମୁଁ ଶୁଣି ମିଛ ମଣିଲି।

ରାତିରେ ଦିନେ ଶୋଇଛୁ ତାଙ୍କ ଭିତିରି ଦୁଆରେ ହେଲା ମାଡ଼। ତାଙ୍କ ସେ ଘରେ ନିତି ମାଳିଟିଏ ଶୁଏ। ଆମେ ଗଲା ଦିନୁ ସେ ଆମ ରନ୍ଧାରେ ଖାଏ। ଗୁରୁଜୀ ମୁଁ ଡରିବି ବୋଲି କହିଲେ, ସେ ଘୋଡ଼ାଟାପୁ ଶବ୍ଦ। ମୁଁ କହିଲି "ଏ ହତା ଆଖ ପାଖେ ତ କେହି କୁଆଡ଼େ ନାହାନ୍ତି, ଘୋଡ଼ା କାହୁଁ ଆସିବ ?"

ତହିଁ ଆରଦିନ ମଧ୍ୟ ରାତିର ନିର୍ଜନ ପହରରେ ତାଙ୍କ ସେହି ଭିତିରି ଦୁଆର ବାଡ଼ିଆ ହେଲା। ମୁଁ ଆମ ଗାଆଁ ସଦେଇ ମିଶ୍ରଙ୍କ କଥା ମନେ ପକେଇଲି। ମତେ ସେହି ରାତିରୁ ଜ୍ୱର। ଗୁରୁଜୀ ମୋ ଜ୍ୱର ଦେଖି ଛାନିଆଁ ହୋଇ ସେ ରାତି ପାହିଲାରୁ ବୃନ୍ଦାବନ ଛାଡ଼ି ମଥୁରା ଗଲୁ।

ସେଠାରେ ୫ଦିନ ରହିଲୁ। ଆମେ ଘରୁ ଗଲାଦିନୁ ଗୁରୁଜୀ ତୀର୍ଥ ସ୍ଥାନରେ ରହିବା ଘରେ ଦୁଇଓଳା ଘଣ୍ଟାଏ ଲେଖାଏଁ ପଢ଼ାଉଥାନ୍ତି ଓ ଠାଆ ପ୍ରତି ରହି ରାତି ୮ଟା ଯାକେ ବହିରୁ ପଦ ନେଇ ଚିହ୍ନ ଦଉଥାଆନ୍ତି। ମଥୁରାରେ କେତେଜଣଙ୍କୁ ଖାଇବାକୁ ଦେଲୁ। ଏଠାରୁ ବନାରସ ଗଲୁ। ରେଳରେ ଗଲାବେଳେ ତାରମାନଙ୍କରେ

ଭଦଭଦଳିଆ ଚଢ଼େଇ ବହୁତ ବସିଥିବାର ଗୁରୁଜୀ ମତେ କି ସ୍ନେହରେ ଦେଖାଉଥାଆନ୍ତି।

ଭାସ୍କରବାବୁଙ୍କ ସ୍ତ୍ରୀଙ୍କ ପାଇଁ, ସିଦ୍ଧେଶ୍ୱରପୁର ନାନୀ ଆଉ ମୋ ନାନୀ ପାଇଁ, ବନାରସ ପାଟଶାଢ଼ୀ ଓ ନନାଙ୍କ ପାଇଁ ଲୁଗା କେତେଖଣ୍ଡ କିଣିଲି। ମୁଁ ଗୁଡ଼ାଏ ଜିନିଷ କିଣି କରି ଧଇଲିଣି, ମୁଁ ଯାହା ଯେତେବେଳେ ବଜାରରୁ ନବାକୁ ଚାହୁଁଛି ଗୁରୁଜୀ ସବୁ କିଣାଇ ଦଉଛନ୍ତି।

ଆମେ କଲିକତାକୁ ଫାଷ୍ଟକ୍ଲାସ୍‌ରେ ଚଉକି ୩ଟା ରିଜର୍ଭ କରିଥିଲୁ। ଲୋକ ଦୁହେଁ ଥାଡ଼୍‌କ୍ଲାସରେ ଥାନ୍ତି।

ବନାରସରୁ ଆସୁ ଆସୁ ସେ ରେଳ ଡବାରେ ଗୁରୁଜୀ, ବୋଉ ଓ ମୁଁ ତିନି ଜଣ ତ ଥାଉ, ଗୋଟାଏ ଷ୍ଟେସନରେ ଗୋରା ସାହେବ ୪ଜଣ ଆସି ଆମ ଡବାରେ ବସିଲେ। ତାଙ୍କୁ ଦେଖି ଗୁରୁଜୀଙ୍କର ମୋ ପ୍ରତି ଡର। ସେଠାରେ ଗୁରୁଜୀଙ୍କର ଦ୍ୱିତୀୟ ଅଭିନୟ। ତାଙ୍କ ମନକୁ କ'ଣ ପାଇଲା କେଜାଣି କେଉଁ ଶାସ୍ତ୍ରରୁ ଏ ପଦକ ଦୁଇ ତିନିଥର ବୋଲିଲେ "ବୋଲିବେ ଯତି ସଙ୍ଗେ ଏକ ରମଣୀ।" ଏହା ବୋଲି ବୋଲି ତାଙ୍କ ବାକ୍ସରୁ ଖଣ୍ଡେ ଫୁଲଖଡ଼ି ଆଣି ତାକୁ ପାଣିରେ ଘୋରି ମୋ ମୁଣ୍ଡ ଗୋଟାକ ବୋଳିଲେ, ଯେପରି ସେ ସାହେବମାନେ ଭାବିବେ ମୁଁ ବୁଢ଼ୀ। ରାମଚନ୍ଦ୍ର ସୀତାଙ୍କୁ ଡରି ବନସ୍ତରେ ଏଇ ଲାଖ ଦେଉଥାଆନ୍ତି।

ସେଠାରେ ସାହେବମାନେ କିଛି କହି ନାହାନ୍ତି। ନିର୍ଭୟରେ କଲିକତାରେ ଓହ୍ଲାଇ ଭାସ୍କର ଚନ୍ଦ୍ର ମହାପାତ୍ରଙ୍କ ଘରେ ଦୁଇଦିନ ରହି ତାଙ୍କ ଉଭୟଙ୍କୁ ନାନାଦି ଜିନିଷ ଦେଇ ଦକ୍ଷିଣକୁ ଗଲୁ। ତେଣେ ଦଣ୍ଡକାରଣ୍ୟ, ପଞ୍ଚବଟୀ, ତ୍ରିପତି, ବାଣପୁର ଭଗବତୀ ବୁଲି ବୁଲି ପୁରୀ ଆସିଲୁ। ପୁରୀରେ ବ୍ରାହ୍ମଣ କେତୋଟିଙ୍କୁ ଖାଇବାକୁ ଦେଇ ଜଗନ୍ନାଥ ଦର୍ଶନ କରି ଆମ ଗାଆଁକୁ ଆସିଲୁ।

ପ୍ରହରାଜେ ତହିଁ ଆରଦିନ କଟକ ଗଲେ। ମୁଁ ୮ଦିନେ ମୋ ନନାଙ୍କ ସାଙ୍ଗରେ ସିଦ୍ଧେଶ୍ୱରପୁର ଯାଇ ନାନୀଙ୍କ ପାଇଁ ଖାଦ୍ୟ ଜିନିଷ ସହ ଆଉ ଯାହା ସବୁ ଆଣିଥିଲି ନାନୀଙ୍କୁ ଦେଇ ତାଙ୍କ ପାଖରେ ୫ଦିନ ରହି ମୋ ନନା ଓ ମୁଁ ଆମ ଗାଁକୁ ଫେରିଆସିଲୁ। ତୀର୍ଥରୁ ଆମେ ଫେରିବା ୪ମାସ ଲାଗିଥିଲା। ଟ୨୫୦୦୦ଙ୍କା ଉପରେ ଖର୍ଚ୍ଚ ହୋଇଥିଲା।

ଆମେ ତେଣୁ ଫେରି ଆସିବାରୁ ଗୁଣ୍ଡିଚାଦାଣ୍ଡର ଆମ ଘରେ ମଣିଷ। ମୋ ପୂନି

ଆସି ଓଳିକି ହେଲା। ତା ପାଇଁ ରୂପାଖଡ଼ୁ, କାଚ, ଶାଢ଼ୀ, ଭରିକରେ ଗୋଟିଏ ସୁନା ହାର ଆଣିଥିଲି, ତାକୁ ଦେଲି।

ଏପରି ମୁଁ ଆସି ଗାଆଁରେ ରହିବା ମାସକ ପରେ ଗୁରୁଜୀ ଲେଖିଲେ, "ମୋ ଭାଷାକୋଷ ଶୁଭ ଦିଆଯିବ। ତତେ ଆଉ ବୋଉଙ୍କୁ କଟକ ଆସିବାକୁ ହେବ। ମୁଁ ୩/୪ ଦିନେ ତମ ଗାଁକୁ ଯାଉଛି, ଆସିବାକୁ ପ୍ରସ୍ତୁତ ଥିବ। ତୋ ନାନୀଙ୍କୁ ଆଣିବାକୁ ଆମ ଗାଆଁକୁ ଯାଇଥିଲି, ସେ ଆସିଲେ ନାହିଁ।

ସେ କହିଲେ, "ମୋ ସୁବିଧାରେ ମୁଁ ସେ ସରିକି ଯାଇପାରେ ହେଲେ ମୁଁ ଗଲା ପରି ଲାଗୁନାହିଁ।"

ଯାହାହେଉ ୩/୪ ଦିନେ ଗୁରୁଜୀ ଆମ ଘରକୁ ଆସିଲେ। ତାଙ୍କ ସଙ୍ଗେ ବୋଉ, ମୁଁ ଓ ପୂନି କଟକ ଗଲୁ। ଭାଷାକୋଷ ଶୁଭ ଦିଆ ହେବାକୁ ଦୁଇଦିନ ଥାଏ। ଯେଉଁ ଘରେ ଭାଷାକୋଷ ଲେଖା ହବ ସେହି ଅଫିସ୍ ଘର ଧୁଆ ଧୋଇ କରି ମୋ ବୋଉ ଓ ମୁଁ ଚିତା ମୁରୁଜ ଦେଲୁ। ସେଦିନ ଅଫିସ୍ ଘର କମ୍ପି ଉଠୁଥାଏ। ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ସରସ୍ୱତୀ, ଗଣେଶ, ମହାଦେବ, ପାର୍ବତୀଙ୍କ ଫଟୋ ସବୁ ଆସିରହିଲା। ଗୁରୁଜୀ ତାଙ୍କ ନନା, ବୋଉଙ୍କ ଫଟୋ ଆଣି ରଖିଲେ। ଜଣେ ବ୍ରାହ୍ମଣ ଆସି ତାଙ୍କୁ ଦୀପ, ଝୁଣାଧୂଆଁ, ଫୁଲ ଚନ୍ଦନ ଦେଇ ସେବା ପୂଜା କଲେ। କଳାହାଣ୍ଡି ମହାରାଜା, ଆଠମଲ୍ଲିକ ରାଜା ସେଦିନ ଆସିଥିଲେ। ଗୁରୁଜୀ ହୋମ କଲେ। ପଣ୍ଡିତ ୩ଜଣ ଆସିଥିଲେ। ଗୁରୁଜୀ ଲେଖିଥିବା ଭାଷା କୋଷ ୫ ପୃଷ୍ଠା ଥୁଆହୋଇ ଗୁରୁଜୀ ଓ ମୁଁ ଫୁଲ ଆଞ୍ଜୁଳି ଦେଲୁ। ସେ ବେଳେ ମୁଁ ହୁଳହୁଳି ଦେଇଥିଲି। ମଧୁସୂଦନ ରାଓ ଓ ଆଉ କେତେ ଭଦ୍ରଲୋକ ଆସିଥିଲେ। ମନ୍ତ୍ରପାଠକରି ସମସ୍ତେ ଗଲେ।

ମଧୁସୂଦନ ରାଓଙ୍କର ପ୍ରହରାଜ ଧର୍ମପୁଅ। ସେ ଦିନେ ପ୍ରହରାଜଙ୍କୁ ନ ଦେଖିଲେ ପାଗଳ। ମଧୁବାବୁ ବେଳେ ବେଳେ ଆସି ଗୁରୁଜୀଙ୍କୁ ଆଶୀର୍ବାଦ ଦେଇ ଗୁରୁଜୀଙ୍କ ମୁଣ୍ଡରେ ହାତ ବୁଲାଇ କହନ୍ତି – "ଗୋପାଳ, ତୁ ଏ ସଂସାରକୁ ଆସିଛୁ ଜଣେ ପୁଅ ପରି ପୁଅ।"

ଆଗରୁ ତ କେହି ରାଜା ରାଜୁଡ଼ା ଭାଷାକୋଷ ପାଇଁ ଟଙ୍କା ଦେଇନଥିଲେ। ଗୁରୁଜୀ ଘର ବନ୍ଧା ଦେଇଥିଲେ।

ତଥାପି କିଛି ଅଣ୍ଟେ ନାହିଁ। ୨ଟି ପଣ୍ଡିତ ଥାଆନ୍ତି। ଆଉ ପଣ୍ଡିତ ରଖିଲେ ଦରମା କାହୁଁ ଦେବେ ? କାଗଜ କିଣା, ଘର ଖର୍ଚ୍ଚ। ନିତି କଚେରୀକୁ ଓକିଲାତିରେ ଯାଆନ୍ତି।

ନିତି ରାତି ୧୨ଟା ବା ଗୋଟେ ବେଳୁ ଉଠି ଗୁରୁଜୀ ଭାଷାକୋଷ ଲେଖନ୍ତି।

ବଡ଼ି ସକାଳୁ ସେ ଲେଖା କାଗଜ ୪/୫ ପୃଷ୍ଠା ଆଣି ସାପିକରେ। ମୋର ପୁଣି ସକାଳ ଓ ଦିନ ୩ଟାରେ ଦୁଇଜଣ ମାଷ୍ଟ୍ରାଣୀ ମତେ ପଢ଼ାଇବା ପାଇଁ ଆସିବେ। ସକାଳ ୧୦ଟାରେ ପଣ୍ଡିତ ଦୁଇଜଣ ଆସନ୍ତି, ତାଙ୍କୁ ବେତନ ଦିଆଯାଏ। ମୋ ନାନୀ ଆଉ ପୁଅଙ୍କୁ ସିଦ୍ଧେଶ୍ୱରପୁରରେ ଗୁରୁଜୀ ଏତେ ଟଙ୍କା ଦେଇ ଗୁରୁଜୀଙ୍କ ପାଇଁ ଚାଉଳ ୫କିଲ ବା ଘିଅ ୫୦ ମଧ୍ୟ ଆସିବ ନାହିଁ। ଗୁରୁଜୀଙ୍କଠାରୁ ୩ମାସରେ ନିଅନ୍ତି ଟ୩୦୦୦। ଗୁରୁଜୀଙ୍କ ପାଖରେ ଗୋଟିଏ ମାତ୍ର ଚାକର ଥାଏ। ତାଙ୍କର ଦୁଃଖ ଦେଖି ମୋ ମନରେ ଅତି ଦୁଃଖ ଆସିଲା। ସେ ଗୁଣମଣି ମୋଠାରୁ ଗୋଟିଏ ଟଙ୍କା ନିଅନ୍ତି ନାହିଁ; ଟ'୧୨୦୦୦ ତାଙ୍କ ଗୋଡ଼ତଳେ ନେଇ ଥୋଇ ଦେଇ ସନ୍ଥ କର୍ମଚାରୀଙ୍କ ପାଖକୁ ଚଠି ଲେଖିଲି। ସରୁ ଚାଉଳ ୧୦ ବସ୍ତା, ନଡ଼ିଆ, ଘିଅ, ମୁଗ ଇତ୍ୟାଦି ଇତ୍ୟାଦି ଶୀଘ୍ର ଦବାକୁ ଚେଷ୍ଟାକର। ସେ ୮ ଦିନେ ପଠାଇଦେଲେ।

ଆଉ ଜଣେ ଚାକର ରଖିଲି। ପୁଣି ଆଉ ପଣ୍ଡିତ ଦୁଇଜଣ ରଖିଲି ଓ ଗୁରୁଜୀଙ୍କୁ କଚେରୀ ବନ୍ଦ କଲି। କହିଲି, ଆପଣ ଯଦି ନିତି କଚେରୀକୁ ଯିବେ ଭାଷାକୋଷ ଲେଖା ହୋଇ ପାରିବ ନାହିଁ। ଏବେଳେ ପ୍ରଥମ ଖଣ୍ଡି ଭାଷା କୋଷ ଛାପା ସରିଗଲାଣି, ଦ୍ୱିତୀୟ ଖଣ୍ଡ ହବ। ଏବେଳେ ଗୁରୁଜୀଙ୍କୁ ରାଜାମାନଙ୍କ ଘରକୁ ଯିବାକୁ ହେଲା। ଆଉ ଅନ୍ୟାନ୍ୟ ଲୋକଙ୍କୁ ଅନୁସରଣ କରିବାକୁ ପଡ଼ିଲା। କେତେଥର ମୁଁ ଶୁଣିଛି ଆମ ପଣ୍ଡିତଙ୍କ ଆଗେ ଗୁରୁଜୀ କହନ୍ତି –

କବି ଯାକରେ ମୂର୍ଖକୁ ସ୍ତୁତି
ଏଥିରୁ ବଳି ନାହିଁ ବିପତ୍ତି
ଏଥିକି ପ୍ରତି ଛାତିରେ କାତି
ମାରି ମରିବା ଭଲ ହେ।

ମୁଁ ଗୁରୁଜୀଙ୍କ ଠାରୁ ଏହା ଶୁଣି ମୋ ମନରେ ଅତି କଷ୍ଟ ଆସେ, ହେଲେ କ'ଣ କରିବି? ଗୁରୁଜୀଙ୍କ ଦୀର୍ଘ ସାଧନାର ବ୍ରତ ତାଙ୍କ ଜୀବନରେ ୭ଖଣ୍ଡ ଭାଷାକୋଷ କରିବାକୁ ଜମାରୁ ଆଶା ନଥାଏ। ସେ ଦିନେ ଦିନେ ପ୍ରଭୁଙ୍କୁ ଡାକନ୍ତି – ହେ ପରାତ୍ପର, ମୁଁ ଏ ସାତସମୁଦ୍ର ବନ୍ଧାଇବାକୁ ବଡ଼ ଇଚ୍ଛା କରୁଛି, ଆପଣଙ୍କ ଦୟା। ଗୁରୁଜୀଙ୍କ ଦୈନିକ ନୀତି, ରାତି ୮ଟା ବେଳକୁ ଅଧସେର କ୍ଷୀର ପିଇ ଶୋଇବେ। ସକାଳ ହୋଇ ଗଲାରୁ ୭ଟାକୁ ପାଏ କ୍ଷୀର, ଦି ପ୍ରହରକୁ ୫୦୦ ଚାଉଳ ରନ୍ଧାଭାତ, ଗୁଆ ଘିଅ ଖୁବ୍ ବହୁତ ପରିମାଣର ସେ ଭାତ ଗଣ୍ଡାକରେ ପଖଳା ହେଲାଭଳି। ଦିନସାରା ଗଲା। ରାତିକୁ କ୍ଷୀର। ମୁଁ କଟକ ଆସିଲା ଦିନୁ ତାଙ୍କୁ ବେଦାନା ରସ କପଟିଏ ଦିଏ।

ସ୍ୱର୍ଗତ ବିଚିତ୍ରାନନ୍ଦ ସ୍ୱାମୀ ବେଳେବେଳେ ଆସି ମତେ କହନ୍ତି, ଆଈମା, ମୁଁ ଅଜାଗୁରୁଙ୍କୁ ଥରେ ଥରେ ପଚାରେ ଏ କଠୋର ବ୍ରତ ଆପଣଙ୍କ ଚେହେରା କ'ଣ ବେଳୁ ବେଳ ତେଜ ହେଉଛି ? ସେ କହନ୍ତି, ତମ ଆଈମାଙ୍କ କରୁଣା। ଏ ସାଧନାରେ ମଧ୍ୟ ନିତି ପ୍ରତି ଏହା କରୁଥାଆନ୍ତି। ସେବେଳେ ସାହେବ ଅମଳ ତ। କେଉଁ ପିଲା କେତୋଟିଙ୍କୁ ନେଇ ସାହେବ ପାଖୁ ଚାକିରି ଦେବେ, କାହାର ବହି ସଂଶୋଧନ କରିବେ, ଭାଷାକୋଷ ପୃଫ୍ ନିଜେ ଦେଖିବେ। ରାତିକୁ ନିତି କ୍ଷୀର ପିଇ ଶୋଇବେ। ସେ ମହାତ୍ମାଙ୍କର କଥା କହିଲେ ସେକଥା ସରି ପାରିବ ନାହିଁ। ଦିନେ ଦିନେ ସଭାକୁ ଯାଇ ସଭାପତି ହେବା ଡକରା। ଟି ପାର୍ଟି ଥାଏ ମଧ୍ୟ।

ଭାଷାକୋଷ ସାଫି କରିବା ପଣ୍ଡିତମାନଙ୍କୁ ଗୁରୁଜୀ କହି ଥାଆନ୍ତି ମୋ ବିନା ଅନୁମତିରେ ଏଥିରୁ ଧାଡ଼ିଏ କାଟିପାରିବ ନାହିଁ। ମୁଁ ଦେଖିବି। ସାଧୁ ସନ୍ନ୍ୟାସୀଙ୍କୁ ଅତି ଭକ୍ତି କରନ୍ତି। ବେଳେବେଳେ ସେମାନେ କିଏ ହରିଦ୍ୱାରରୁ କିଏ ହିମାଳୟରୁ ଆସି ପହଞ୍ଚନ୍ତି। ସେମାନଙ୍କୁ ଭାଷାକୋଷ ଆଶ୍ରମରେ ଦଶବାର ଦିନ କାହାକୁ ବା ଦି ଚାରିଦିନ ରଖି ଚର୍ଚ୍ଚା କରି ବିଦାୟ ଦିଅନ୍ତି। ମୁନିଋଷିମାନଙ୍କର ଗୋଟାଏ ଆଡ଼େ ଧ୍ୟାନ। ଗୁରୁଜୀଙ୍କର କିନ୍ତୁ ହଜାରେ ଆଡ଼େ ଧ୍ୟାନ। ଦିନ ମଧ୍ୟରେ କେତେ କୁଆଡୁ ଚିଠିପତ୍ର ଆସିବ - ସଙ୍ଗେ ସଙ୍ଗେ ସେମାନଙ୍କ ପାଖକୁ ଉତ୍ତର ଲେଖା ହେବ। ଯେଉଁଆଡ଼େ ଯିବାକୁ ଯେଉଁଦିନ ଥାଏ ସେହିଦିନ ଯିବାକୁ ହେବ। ଯାହାକୁ ଯାହା ଜବାବ ଦେଇଥିବେ ପ୍ରଭୁ କହିଲେ ମଧ୍ୟ କଥା ନଟଳେ।

ଦ୍ୱିତୀୟ ଖଣ୍ଡ ଭାଷାକୋଷ ଛାପା ସରିଲା। ଆଗରୁ ଦିଲ୍ଲୀ ବଡ଼ଲାଟଙ୍କ ପାଖକୁ ଗୁରୁଜୀ କ'ଣ ଲେଖିଥିଲେ ସେ ଦିଲ୍ଲୀରେ ଦେଖା କରିବା ପାଇଁ ଲେଖିଲେ। ମୁଁ କହିଲି ମୁଁ ଦିଲ୍ଲୀ ଦେଖିନାହିଁ। ଆପଣଙ୍କ ସଙ୍ଗେ ଯିବି ଓ ବଡ଼ଲାଟଙ୍କୁ ଦେଖିବି।

ଗୁରୁଜୀ କହିଲେ ତୁ କ'ଣ ବଡ଼ଲାଟ ଓ ତାଙ୍କ ମେମ୍‌ଙ୍କ ସଙ୍ଗେ ହାତ ମିଳାଇବୁ ? ମୁଁ କହିଲି ନିଶ୍ଚୟ।

ଦୁଇଦିନ ଛାଡ଼ି ଦିଲ୍ଲୀ ଗଲୁ। ସେଠାରେ ଘର ଭଡ଼ାରେ ରହି ଗୁରୁଜୀ ଓ ମୁଁ ବଡ଼ଲାଟଙ୍କୁ ଦେଖା କଲୁ। ବଡ଼ଲାଟ ଓ ତାଙ୍କ ମେମ୍‌ଙ୍କ ସଙ୍ଗେ ମୁଁ ଆଗ ହାତ ମିଳାଇଥିଲି। ଗୁରୁଜୀ ମଧ୍ୟ ହାତ ମିଳାଇଲେ। ତାଙ୍କର ସବୁ କହିବାର କଥା ଥିଲା କହିଲେ। ଦୁଇଖଣ୍ଡ ଭାଷାକୋଷ ନେଇଥିଲେ ତାଙ୍କୁ ଦେଖାଇଲେ।

ବଡ଼ଲାଟଙ୍କ ମେମ୍ ମତେ ତାଙ୍କ କୋଳକୁ ନେଇ ମୋ ମୁହଁରେ ସ୍ନେହ ଚୁମା ଦେଇ ଗୁରୁଜୀଙ୍କୁ ବହୁ ବିନୟରେ କହିଲେ, 'ମୋର ଝିଅ ନାହିଁ । ଏଇଟିକି ମତେ ଦେଇ ଯାଆନ୍ତୁ।'

ଗୁରୁଜୀ କହିଲେ, "ତାଙ୍କୁ ପଚାର।"

ସେ ମୋତେ ହିନ୍ଦିରେ ଯାହା ପଚାରିଲେ ମୁଁ ନ ବୁଝିଲେ ମଧ୍ୟ ଜାଣିପାରିଲି ଓ ମୁଣ୍ଡ ହଲାଇ ରହିବାକୁ ମନା କଲି।

ଗୁରୁଜୀ ମୁଁ ଆମ ବସାକୁ ଫେରି ଆସିଲୁ। ସେଠାରେ ଆଉ ଦୁଇ ତିନି ଦିନ ରହି ବୁଲାବୁଲି କରି 'ଦିଲ୍ଲୀକା ଲଡୁ' ଆଣି କଟକ ଆସିଲୁ।

ଦିଲ୍ଲୀରେ ମଧ୍ୟ ଗୁରୁଜୀ ବହିରେ ଚିହ୍ନ ଦେଉଥାଆନ୍ତି ଏବଂ ମତେ ଦୁଇଘଣ୍ଟା ପଢ଼ାନ୍ତି। ଏତେ କାର୍ଯ୍ୟରେ ସେ ମଣିଷର କାହାଠାରେ ରାଗ ବା ହିଂସା ନାହିଁ। ସବୁବେଳେ ହସ ହସ। ଦିନେ ହେଲେ ତାଙ୍କ ଦେହ ବ୍ୟସ୍ତ ହେବା ମୁଁ ଦେଖିନାହିଁ।

ଦିନେ ଗୁରୁଜୀ କୁଆଡ଼େ ଯାଉ ଯାଉ କିଛି ବାଟ ଚାଲିବାକୁ ପଡ଼ିଲା। ତେଣୁ ଆସି ମତେ କହିଲେ ମୋ ପାଦ ଦରଜ ଲାଗୁଚି। ମୁଁ ସନ୍ଧ୍ୟା ସମୟେ ସୋରିଷ ତେଲ ଗରମ କରି ତେଲ ଗିନାଟି ଧରି ଅଫିସ୍ ଘରକୁ ଗଲି। ସେ ଖବର କାଗଜ ପଢୁଥାଆନ୍ତି। ତେଲ ଗିନାଟି ଦେଖି ହସିଲେ ଓ କହିଲେ - 'ମୋ ଦେହରେ ଆଜିଯାଏ କେହି ହାତ ଦେଇନାହିଁ। ତୁ ଫେରିଗଲେ ଦୁଃଖ କରିବୁ। ଅଳ୍ପ ଲଗାଇ ଦେ।' ମୋ ମନ ଥିଲା କିଛି ବେଳ ତେଲ ମାଲିସ୍ କରିବା ପାଇଁ - ସେ ମନା କଲେ।

ଆମ ଗାଆଁକୁ ସଡ଼କ ନଥିଲା। ଗୁରୁଜୀ ଉପରକୁ ଲେଖା ଲେଖି କରି ସଡ଼କ ହେବାକୁ ମଂଜୁର କରାଇଦେଲେ। ଆମ ଗାଆଁବାଲା ଗୁରୁଜୀଙ୍କୁ କହିଲେ, ସଡ଼କ ହବା ଦିନ ଆପଣ ଏଠାରେ ଶୁଭ ଦେବେ। ସଡ଼କ ହେବାଦିନ ଗୁରୁଜୀଙ୍କୁ ଦେଲେ ଗୋଟିଏ ଟୋକେଇରେ ଗଣ୍ଡିଏ ମାଟି ସଡ଼କ ହେବା ଜାଗାରେ ପକାଇବାକୁ।

ଗୁରୁଜୀ କହିଲେ "ଏ ଗଣ୍ଡିକ ମାଟି କ'ଣ? ଏ ଟୋକେଇକି ଭର୍ତ୍ତି କରିଦିଅ।" ଏହା କହି ଆପେ ମୁଣ୍ଡରେ ଠେକା ବାନ୍ଧି କହିଲେ "ମୋ ମୁଣ୍ଡକୁ ଏ ଟୋକେଇଟି ଦିଅ।" ସେତେ ବଡ଼ ଟୋକେଇ ନ ହେଲେ ସୁଦ୍ଧା ଆମ ଗାଁ ଯୁବକମାନେ ହସୁଥାନ୍ତି। ସେଦିନ ସେଠାରେ ୪୦୦ ଭଳି ଲୋକ ହୋଇଥିଲେ। କାହାର ସାହସ ହେଲାନାହିଁ ଗୁରୁଜୀଙ୍କ ମୁଣ୍ଡକୁ ମାଟି ଟୋକେଇଟି ଉଠାଇ ଦେବାକୁ। କିଛି ସମୟ ପରେ ଆମ ଗାଆଁର ଜଣେ ବୁଢ଼ାବାବା ଆସି ତାଙ୍କ ମୁଣ୍ଡକୁ ମାଟି ଟୋକେଇଟି ଟେକି ଦେଲେ। ହରିବୋଲ ପଡୁଥାଏ। ସମସ୍ତେ ଗୁରୁଜୀଙ୍କ ମୁଣ୍ଡ ଆଉଁଷିଲେ। ଆମେ ୩/୪ ଜଣ ସ୍ତ୍ରୀଲୋକ ଠିଆହୋଇ ସେ ଦୃଶ୍ୟ ଦେଖୁଥାଉ।

*("ଇସ୍ତାହାର", ଜୁନ୍ ୧୯୯୬, ପୃଷ୍ଠା ୪୩-୫୪)*

* * *

# ଗୀତା ହୋତା

## (୧୯୩୬-୨୦୨୨)

ଗୀତା ହୋତା ୧୯୩୬ ମସିହାରେ ମୟୂରଭଞ୍ଜର ଜଗନ୍ନାଥଖୁଣ୍ଟାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିଲାଦିନ ମେଦିନୀପୁରରେ ଅତିବାହିତ ହୋଇଥିଲା ଯେଉଁଠାରେ ବ୍ୟାପ୍ତ ସ୍ୱାଧୀନତା ଆନ୍ଦୋଳନ ଦ୍ୱାରା ସେ ଅନୁପ୍ରାଣିତ ହୋଇଥିଲେ। ସେ ଭାରତୀୟ ରେଳ ସେବା ଅଧିକାରୀ ତଥା ଲେଖକ ସାତକଡ଼ି ହୋତାଙ୍କୁ ବିବାହ କରିଥିଲେ। ସେ ତିନୋଟି କ୍ଷୁଦ୍ରଗଳ୍ପ ସଂଗ୍ରହ, ଗୋଟିଏ ଉପନ୍ୟାସ ଏବଂ ପିଲାମାନଙ୍କ ପାଇଁ ତିନୋଟି ପୁସ୍ତକ ଲେଖିଛନ୍ତି। ସେ ଜଣାଶୁଣା ଓଡ଼ିଆ ସାହିତ୍ୟ ପତ୍ରିକା "ଅମୃତାୟନ"ର ପ୍ରତିଷ୍ଠାତା-ସମ୍ପାଦକ, ଯାହା ଜାନୁଆରୀ ୧୯୮୧ ମସିହାରେ ପ୍ରଥମେ ପ୍ରକାଶିତ ହୋଇଥିଲା।

୨୦୦୦ ମସିହାରେ ଏକ ପୁସ୍ତକ ଆକାରରେ ପ୍ରକାଶିତ ହେବା ପୂର୍ବରୁ ତାଙ୍କର ଆତ୍ମଲିପି "ସବୁ ସ୍ମୃତି ମଧୁର" ଦୈନିକ "ସମୟ"ରେ ଧାରାବାହିକ ଭାବେ ବାହାରୁଥିଲା। ଏଠାରେ ଅନ୍ତର୍ଭୁକ୍ତ ଉଦ୍ଧୃତାଂଶ ୧୯୭୦ ଦଶକରେ ଓଡ଼ିଶାରେ ପତ୍ରିକା ପ୍ରକାଶନ ଶିଳ୍ପର ଏକ ସ୍ପଷ୍ଟ ଚିତ୍ର ଉପସ୍ଥାପନ କରିଥାଏ। ଏହା ତାଙ୍କ ସମ୍ବେଦନଶୀଳତା ଏବଂ "ଅମୃତାୟନ"ର ପ୍ରକାଶକ ତଥା ସମ୍ପାଦକ ଭାବରେ ତାଙ୍କର ପ୍ରାରମ୍ଭିକ ସମୟକୁ ବର୍ଣ୍ଣନା କରେ।

## ଆବେଗ ଓ ଅନୁରାଗରୁ ଜନ୍ମ - 'ଅମୃତାୟନ'

ଭୁବନେଶ୍ୱରକୁ ସାତକଡ଼ି ବାବୁ ବଦଳି ହୋଇ ଆସିବା ପରେ ୧୯୭୯ ଡିସେମ୍ବର ଶେଷରେ ପ୍ରଥମେ ଆମେ ଛଅନମ୍ବର ହସ୍ପିଟାଲ ପାଖ କ୍ୱାର୍ଟରରେ ରହିଲୁ। କିନ୍ତୁ କେତେ ସପ୍ତାହ ପରେ ଫରେଷ୍ଟ ପାର୍କର ସାତନମ୍ବର ବଙ୍ଗଳାକୁ ଉଠି ଆସିଲୁ। ହସ୍ପିଟାଲ ପାଖ କ୍ୱାର୍ଟରଟି ଜଳାତଙ୍କ ରୋଗୀଙ୍କ ୱାର୍ଡ଼ ସାମ୍ନାରେ। ମଝିରେ ମଝିରେ ଜଳାତଙ୍କ ରୋଗୀ

ବା ସେହିପରି ଆଉ କେହି ଆସିଲେ ଭିଡ଼ ଜମେ, ରୋଗୀର କରୁଣ ଚିତ୍କାର ପାଖଆଖର ପରିବେଶକୁ ଆହୁରି କରୁଣ କରିଦିଏ। ଆମେ ସେଇ କ୍ୱାର୍ଟରକୁ ଆସିଲୁ ଡିସେମ୍ବର ଶେଷରେ। ଅଳ୍ପଦିନ ରହିବା ପରେ ଘର ଆଗରେ ଓ ଚାରିପଟେ ଥିବା କୃଷ୍ଣଚୂଡ଼ା ଗଛରେ ଫୁଲ ଫୁଟିବାରୁ ଚାରିଦିଗ ଚହଟି ଉଠିଲା। କୃଷ୍ଣଚୂଡ଼ାର ଲାଲ ଫୁଲ ଦେଖି ମଣିଷ ସେଇ ଗଛ ସହିତ ଏକାତ୍ମତା ଅନୁଭବ କରେ। କାରଣ ତା ଦେହରେ ମଧ୍ୟ ଲାଲ ରକ୍ତ ପ୍ରବାହିତ ହୁଏ। ମାର୍କ୍ସବାଦୀ କମ୍ୟୁନିଷ୍ଟମାନଙ୍କର ରକ୍ତ ପରି ଲାଲ ପତାକା। ଏ ଲାଲ ପତାକା ଦୁନିଆର ସର୍ବତ୍ର ସର୍ବହରାମାନଙ୍କର ପତାକା। ଦକ୍ଷିଣ ଆଫ୍ରିକା, ଏସିଆ, ୟୁରୋପ, ଦକ୍ଷିଣ ଆମେରିକା ସର୍ବତ୍ର ଶ୍ରମିକ ଓ ଖଟିଖିଆମାନେ ସଲାମ କରନ୍ତି ଏଇ ଲାଲ ପତାକାକୁ।

ଲାଲରଙ୍ଗ ଦେଖି ପୂର୍ବ କଥା ମନେ ପଡ଼ିଗଲା। ସେତେବେଳେ ମୁଁ ମେଦିନୀପୁର ଜିଲ୍ଲାର ନୟାବସାଣ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଛାତ୍ରୀ। ବନ୍ଦେ ମାତରମ୍ ଦଳ ପକ୍ଷରୁ ସଶସ୍ତ୍ର ବିପ୍ଲବ କରିବା ପାଇଁ ଡାକରା ଦେଇଥାନ୍ତି ଦେଶଭକ୍ତମାନେ। ସେମାନେ ବିଶ୍ୱାସ କରୁଥିଲେ ଯେ ଇଂରେଜମାନେ ଆପେ ଆପେ ଗାନ୍ଧିଜୀଙ୍କ ଅହିଂସା ସତ୍ୟାଗ୍ରହ ଆଗରେ ମୁଣ୍ଡ ନୁଆଁଇ ଦେଶ ଛାଡ଼ି ଚାଲିଯିବେନି। ସେମାନଙ୍କୁ ସଶସ୍ତ୍ର ସଂଗ୍ରାମ ଦ୍ୱାରା ତଡ଼ିଦେବାକୁ ପଡ଼ିବ। ମୁଁ ସେତେବେଳେ ପ୍ରାଥମିକ ଶ୍ରେଣୀର ଛାତ୍ରୀ। ସେମାନେ ଆମକୁ ଶିଖାଇଥିବା ବିପ୍ଲବ ସଂଗୀତ ବୋଲି ବେଳେ ବେଳେ ବାରଣ୍ଡା ଦାଣ୍ଡରେ ମାର୍ଚ୍ଚ କରିବା ଥିଲା ଆମ କାମ। ସେଇ ସବୁ ବିପ୍ଲବୀ ସଂଗୀତ ଗୁଣୁ ଗୁଣୁ କରି ଗାଇ ଗାଇ ମୋର ବି ଅଭିଳାଷ ହୋଇଥିଲା ଗୀତ ଲେଖିବା ପାଇଁ। ଉପର ଶ୍ରେଣୀକୁ ଯିବା ପରେ ଗୀତ ବୋଲୁ ବୋଲୁ କବିତା ପଦେ ଅଧେ ଲେଖି ପକାଉଥିଲି। ଆହୁରି ବୟସ ବଢ଼ିବାରୁ କବିତା ଲେଖିବାର ଅନୁରାଗ ଆହୁରି ପ୍ରବଳ ହେଲା। ନୟାବସାଣରେ ଥିବାବେଳେ ବାପା ଥିଲେ ହେଡ଼ ପଣ୍ଡିତ। ସଂସ୍କୃତ ପଢ଼ାଉଥିଲେ। ବିପ୍ଲବୀମାନେ ଲୁଚିଛପି ବେଳେବେଳେ ଆମ ଘରେ ଦିନେ ଦି ଦିନ ରହି ଯାଉଥିଲେ। ସେତିକିବେଳୁ ଲାଲରଙ୍ଗ ଦେଖିଲେ ମୋ ମନର ଚାରିଦିଗ ଖୋଲିଯାଏ, କିଛି ଗୋଟେ ଭାବନା ଛଟପଟ ହୁଏ ମନ ଭିତରେ ବାହାରକୁ ଆସିବା ପାଇଁ। କବିତା ଗୋଟେ ଲେଖିଦେଲେ କିମ୍ବା ବିପ୍ଲବୀମାନଙ୍କଠାରୁ ଶିଖିଥିବା ଗୀତ କେଇପଦ ଗାଇଦେଲେ ମୁଁ ଉଶ୍ୱାସ ଅନୁଭବ କରୁଥିଲି। ଶରତ ଋତୁରେ ପୋଖରୀରେ କଇଁଫୁଲ ଫୁଟିବା ପରି ମୋ ମନରେ ଶହ ଶହ କଇଁଫୁଲ ଫୁଟୁଥିଲା।

ସେଇଦିନୁ ସାହିତ୍ୟ ପ୍ରତି ମୋର ଅନୁରାଗ। ସାତକଡ଼ି ବାବୁଙ୍କ ଘରକୁ ଆସିବା ପରେ ମୋର ସାହିତ୍ୟ ପ୍ରୀତି କମିନଥିଲା। ମୁଁ ଏକା ଏକା ବସିଥିବା ବେଳେ ଯଦି କେତେବେଳେ କିଛି ଭାବ ଅଥୟ କରୁଥିଲା ମନକୁ ତାହା ଲେଖି ପକାଉଥିଲି କାଗଜରେ।

କଲିକତାରେ ଆମେ ଥିବାବେଳେ ମୋତେ ଏକୋଇଶ-ବାଇଶ ହୋଇଥିବ। ମୋ ବଡ଼ଝିଅ ସେତେବେଳକୁ ଜନ୍ମ ହେଇ ସାରିଥାଏ। ସେତେବେଳେ କିଛି କବିତା ଓ ଗଳ୍ପ ଲେଖିଥିଲି। କିନ୍ତୁ ପରବର୍ତ୍ତୀ ସମୟରେ ସଂସାର ଜଞ୍ଜାଳରେ ପେଷି ହୋଇଗଲି କି କ'ଣ ପଥର ତଳେ ଦୁବଘାସ ଚାପି ହୋଇଯିବା ପରି ମୋ ମନର ଉନ୍ମେଷଶୀଳତା ଚାପି ହୋଇଯାଇଥିଲା। କିନ୍ତୁ ନୂଆ କିଛି କରିବା ଓ ଲେଖିବାର ଆବେଗ ମରିନଥିଲା ମନରୁ। ସେଇ କାରଣରୁ ଶିଳ୍ପୀର ତୂଳୀ ଧରି କେତେବେଳେ ମନେ ମନେ ଛବି ଆଙ୍କୁଥିଲି ତ କେତେ ସାଙ୍ଗସାଥୀମାନଙ୍କୁ ନେଇ ନାଟକ ବା ନୃତ୍ୟ ଆୟୋଜନ କରୁଥିଲି। ଯେଉଁଠି ରହିଛି ସେଠାରେ ମୋ ଭିତରେ ଲୁଚି ରହିଥିବା କବି ବା ଶିଳ୍ପୀର ମନ ଅଥୟ କରିଛି ମୋତେ ନୂଆ କିଛି କରିବା ପାଇଁ। ବାଧାବନ୍ଧନଗୁଡ଼ାକୁ ମାଡ଼ିଦଳି ଆଗେଇଯିବା ପାଇଁ।

ହଁ, ଭୁବନେଶ୍ୱରକୁ ଆସିବା ପରେ ମନରେ ସେଇ ଭାବନା ପ୍ରବଳ ହେଲା ପୁଣି ଚତୁର୍ଦ୍ଦିଗରେ କୃଷ୍ଣଚୂଡ଼ାର ଟହଟହ ଲାଲଫୁଲ ଦେଖି। ଏଇ ଶୋଭା ଦେଖି ରବି ଠାକୁର ଲେଖିଥିଲେ, 'ଆଗୁନ ଲେଗେଛେ ଡାଲେ ଡାଲେ' ଅର୍ଥାତ୍ ଅଗ୍ନି ଲାଗିଛି ଶାଖା ପ୍ରଶାଖାରେ। ଦିନେ ଝରକା ପାଖରେ ବସି ଫୁଲମାନଙ୍କୁ ଦେଖୁଥିବା ବେଳେ କେତେଜଣ ପିଲା ପଶି ଆସିଲେ ମାଉସୀ ମାଉସୀ ଡାକି। ପୂର୍ଣ୍ଣେନ୍ଦୁ, ପ୍ରଦୀପ୍ତ, କୁମୁଦ ଓ ସୁଦୀପ୍ତ ମୋ ପାଖକୁ ଆସିଥିଲେ ଗୋଟେ ପ୍ରସ୍ତାବ ନେଇ। ପାଖ କ୍ୱାର୍ଟରରେ ରହୁଥିବା ଅଫିସରମାନଙ୍କର ପୁଅ ସେମାନେ। କଲେଜର ଛାତ୍ର। କିଛି ଗୋଟେ ନୂଆ କାମ କରିବା ପାଇଁ ସେମାନଙ୍କର ଆଗ୍ରହ ଦେଖି ମୁଁ କହିଲି ଗୋଟେ ପତ୍ରିକା ବାହାର କଲେ ଭଲ ହୁଅନ୍ତା। ସେମାନେ ଡେଇଁ ପଡ଼ିଲେ ମୋ କଥା ଶୁଣି। ସାହିତ୍ୟ ପତ୍ରିକା ବାହାର କରିବା ପାଇଁ ସମସ୍ତଙ୍କର ଉତ୍ସାହ ଏତେ ବଢ଼ିଗଲା ଯେ ଶେଷରେ ଗୋଟିଏ ପତ୍ରିକା ବାହାର କରିବା ପାଇଁ ନିଷ୍ପତ୍ତି ହେଲା।

କିଛିଦିନ ପରେ ଆମେ ହସ୍ପିଟାଲ ପାଖ କ୍ୱାର୍ଟର ଛାଡ଼ି ଫରେଷ୍ଟ ପାର୍କ ବଙ୍ଗଳାକୁ ଉଠିଗଲୁ। ସେଠାରେ ମଧ୍ୟ ସେଇ ସମାନ ଦୃଶ୍ୟ; ରାସ୍ତାରେ ଦୁଇ ଧାରରେ ସାରି ସାରି କୃଷ୍ଣଚୂଡ଼ା। ମୋ କଥା କିନ୍ତୁ ଭୁଲି ନ ଥିଲେ ପୁଅମାନେ। ଆସି ପହଞ୍ଚିଲେ ଏ ବିଷୟରେ ଶେଷ ନିଷ୍ପତ୍ତି କରିବା ପାଇଁ। ସ୍ଥିର ହେଲା ତ୍ରୈମାସିକ ସାହିତ୍ୟ ପତ୍ରିକାଟିଏ ବାହାର କରିବା ପାଇଁ। ସାତକଡ଼ି ବାବୁଙ୍କ ସହିତ ଆଲୋଚନା ହେଲା। ସେ ମଧ୍ୟ ଉତ୍ସାହ ଦେଲେ। କିନ୍ତୁ ଭଲ ନାମ ଗୋଟେ ମନେ ପଡୁନଥାଏ। ଏଇ ସଙ୍କଟ ଲାଗି ରହିଥିଲା ବେଳେ ମନେ ପଡ଼ିଗଲେ ମହାପ୍ରଭୁ ଚକାଡ଼ୋଳା। ଚାରିଦିଗରେ ତାଙ୍କର ଝରିପଡୁଥିବା ଅମୃତାୟନ ଦୃଷ୍ଟି। ସମାଧାନ ହୋଇଗଲା। ପତ୍ରିକାର ନାମ ରହିଲା 'ଅମୃତାୟନ'। କିନ୍ତୁ ପତ୍ରିକା ବାହାର କରିବି କହିଲେ ତ ବାହାର କରିହୁଏ ନାହିଁ। ସେଥିପାଇଁ ଆୟୋଜକ ଦରକାର।

ନାମ ରେଜେଷ୍ଟ୍ରି ହେଲା ଏ.ଡି.ଏମ୍. ଅଫିସ୍‌ରେ। ଜନସମ୍ପର୍କ ବିଭାଗକୁ ଜଣାଇ ଦିଆଗଲା। ଚାନ୍ଦା ଆଦାୟ ହେଲା। ଲେଖା ସଂଗ୍ରହ କରାଗଲା। କାଗଜ କିଣି ପ୍ରେସ୍‌କୁ ଦେଲୁ ଛାପିବା ପାଇଁ ଏବଂ ପ୍ରଥମ ସଂଖ୍ୟା ଜାନୁୟାରୀ ୨୬, ୧୯୮୧ ମସିହା ପବିତ୍ର ଗଣତନ୍ତ୍ର ଦିବସରେ ଉନ୍ମୋଚନ କରିବା ସକାଶେ କାର୍ଯ୍ୟ ନିର୍ଘଣ୍ଟ ପ୍ରସ୍ତୁତ ହେଲା। କଟକ ଯାଇ ବାବୁଜୀ 'ସମାଜ'ର ସମ୍ପାଦକ ରାଧାନାଥ ରଥଙ୍କୁ ଅନୁରୋଧ କରି ଆସିଲି ପ୍ରଥମ ସଂଖ୍ୟା ଉନ୍ମୋଚନ କରିବା ପାଇଁ। ସେ ରାଜି ହେଲେ। କବି ସୀତାକାନ୍ତ ମହାପାତ୍ର ଆମ ଅନୁରୋଧ ରକ୍ଷାକରି ରାଜି ହେଲେ ସମ୍ମାନିତ ଅତିଥି ଭାବେ ଯୋଗଦେବା ପାଇଁ। ନେହୁରୁ ଯୁବ ସଂଘର ଅଫିସ୍ ପ୍ରକୋଷ୍ଠରେ ଆୟୋଜନ କରାଗଲା ଉନ୍ମୋଚନ ଉତ୍ସବ। ଉଦ୍ୟୋକ୍ତାମାନଙ୍କୁ ଉତ୍ସାହିତ କରିବା ପାଇଁ ଆସିଥିଲେ ଅନେକ ତରୁଣ ଲେଖକ ଲେଖିକା ଓ ଶୁଭାକାଂକ୍ଷୀ। ବାବୁଜୀ 'ଅମୃତାୟନ'ର ପ୍ରଥମ ସଂଖ୍ୟା ଉନ୍ମୋଚନ କରି ସମର୍ପଣ କଲେ ପାଠକମାନଙ୍କୁ। ସାହିତ୍ୟ ମାଧ୍ୟମରେ ମଣିଷ କିପରି ଉତ୍ତମ ମାର୍ଗରେ ଚାଲିବା ପାଇଁ ଉତ୍ସାହ ପାଇଛି, ମଣିଷର ଜୀବନଦର୍ଶନକୁ ସାହିତ୍ୟ କିପରି ରଂଜିତ ଓ ପ୍ରଭାବିତ କରିଛି ତାହା କହିଥିଲେ ବାବୁଜୀ ଏବଂ 'ଅମୃତାୟନ'କୁ ଆଶୀର୍ବାଦ କରି ବଳିୟାରଭୁଜଙ୍କ ଅମୃତ ଦୃଷ୍ଟି ସବୁ ସମୟରେ ଏହା ଉପରେ ପଡୁଥାଉ ବୋଲି ପ୍ରାର୍ଥନା କରି ପାଞ୍ଚଶହ ଟଙ୍କା ଦାନ କରିଥିଲେ ଏଥିପାଇଁ। ସୀତାକାନ୍ତବାବୁ ତ କବି। ସେ ଓଡ଼ିଆ ସାହିତ୍ୟର ବିଭବ ସାର୍ବଜନୀନତା ଓ ସର୍ବକାଳୀନତା ସମ୍ବନ୍ଧରେ କେଇପଦ ମନଛୁଆଁ କଥାକହି ମୋହିତ କରିଥିଲେ ସମସ୍ତଙ୍କୁ। ଅପରାହ୍ନ ସୂର୍ଯ୍ୟ ସେତେବେଳେ ରାଜଧାନୀ ଉପରେ ଢାଳିଦେଇଥାଏ ଆଲୋକର ସହସ୍ରାଧାର। ରାଜପଥ, ଜନପଥ, ଉଦ୍ୟାନ ମାର୍ଗ ସର୍ବତ୍ର ଚହଟୁଥାଏ କୃଷ୍ଣଚୂଡ଼ା ଫୁଲ, ସଂସାରର ସମସ୍ତ ମଣିଷଙ୍କ ମଧ୍ୟରେ ଥିବା ସମତା ଘୋଷଣା କରି।

ମୁଁ ମାଆ ହୋଇ ସାରିଥିଲି ଏହା ପୂର୍ବରୁ। କିନ୍ତୁ ଦଶମାସର ଗର୍ଭବେଦନା ପରେ ଆଉ ଥରେ ମାଆ ହେବା ପରି ଲାଗିଲା ମୋତେ। ମୋ କୋଳରେ ନବଜାତ ଶିଶୁ 'ଅମୃତାୟନ'କୁ ଦେଖିବା ଓ ସଂଖୋଳିବା ପାଇଁ ଭିଡ଼ ଲାଗିଲା ଫରେଷ୍ଟ ପାର୍କ ବଙ୍ଗଳାରେ। ଓଡ଼ିଆ ଭାଷାରେ ପ୍ରକାଶ ପାଉଥିବା ମାସିକ ବା ତ୍ରୈମାସିକ ପତ୍ରିକାର ସଂଖ୍ୟା ସେତେବେଳେ ହାତରେ ଗଣି ହେଉଥିଲା। ଅଠରବର୍ଷ ପରେ ସେଇ ସଂଖ୍ୟା ଯେ ବିଶେଷ ବଢ଼ିନାହିଁ ଏହା ମଧ୍ୟ କୁହାଯାଇପାରେ । କିନ୍ତୁ ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ ସାହିତ୍ୟ ପ୍ରତି ମୋର ଅନୁରାଗ ମୋତେ ସମ୍ପାଦନା କରିବାପାଇଁ ସୁଯୋଗ ଆଣିଦେଲା। ଏ ପର୍ଯ୍ୟନ୍ତ ମୁଁ କେବଳ ବିଭିନ୍ନ ଲେଖକ ଓ ଲେଖିକାଙ୍କ ରଚନା ପଢ଼ି ଆସୁଥିଲି। କିନ୍ତୁ 'ଅମୃତାୟନ'ର ସମ୍ପାଦକ ଦାୟିତ୍ୱ ନେବା ପରେ ଅନେକ ଲେଖା ହାତକୁ ଆସିଲା।

ଲେଖା ବାଛିବା ପୂର୍ବରୁ ଥରେ ଦୁଇଥର ପଢୁଥିଲି ଏବଂ ମୋ ବିଚାରରେ ପ୍ରକାଶଯୋଗ୍ୟ ବିବେଚିତ ହେଉଥିବା ରଚନାଗୁଡ଼ିକୁ ପ୍ରକାଶ କରିବା ପାଇଁ ଦେଉଥିଲି ।

ପତ୍ରିକା ସମ୍ପାଦନା ଗୋଟିଏ ଦାୟିତ୍ୱପୂର୍ଣ୍ଣ କାମ । ମୁଁ ଚେଷ୍ଟା କରିଛି ସେଇ ଦାୟିତ୍ୱ ସମ୍ପାଦନ କରିବାପାଇଁ । ଅନେକ ନୂଆ ନୂଆ ଲେଖକ ଓ ଲେଖିକା ହାତରେ ଗଳ୍ପ ବା କବିତା ଧରି ଆସି ପହଞ୍ଚୁଥିଲେ ବଙ୍ଗଳାରେ, ସେମାନଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା ହେଉଥିଲା; କିନ୍ତୁ ଯିବାବେଳେ ପ୍ରାୟ ପ୍ରତ୍ୟେକ କହିଯାଉଥିଲେ ସେଇ ଗୋଟିଏ କଥା -- ମାଉସୀ, ଆସନ୍ତା ସଂଖ୍ୟାରେ ମୋ ଲେଖା ଛାପିବ... । ସେମାନେ କେତେ ଆଶା ନେଇ ଆସିଥାଆନ୍ତି ସଙ୍ଗେ ସଙ୍ଗେ ହଁ କି ନା କରିବା ସମ୍ଭବ ନୁହେଁ, ତଥାପି ମୁଁ ଯଥାସାଧ୍ୟ ଚେଷ୍ଟା କରୁଥିଲି ପୋଖତ ହାତର ଲେଖା ସହିତ ନୂତନ ହାତର ଲେଖାକୁ ମଧ୍ୟ ସ୍ଥାନ ଦେବା ପାଇଁ କୁମ୍ଭାର ଯେପରି କଞ୍ଚାମାଟିରୁ ନାନା ପ୍ରକାର ପାତ୍ର ତିଆରି କରେ ଠିକ୍ ସେହିପରି । ଯେତେବେଳେ ଲେଖା ପଢୁଥାଏ ସେତିକି ଭାବନାର ବର୍ଣ୍ଣାଢ଼୍ୟ ଜଗତରେ ବିଚରଣ କରିବା ପରି ଲାଗୁଥାଏ । ସମସ୍ତ ପ୍ରକାଶିତ ଲେଖା ସମାନ ନୁହେଁ, କିମ୍ବା ସମସ୍ତଙ୍କର ସୃଜନୀଶକ୍ତି ମଧ୍ୟ ସମାନ ନୁହେଁ । ନୂଆ ନୂଆ ଲେଖିଥିବା ପୁଅ ଓ ଝିଅମାନଙ୍କୁ ଉତ୍ସାହ ଦେବା ଥିଲା ମୋର କାମ । ଟିକେ ସଜାଡ଼ି ଦେଲେ ଯଦି ଲେଖାଟି ପ୍ରକାଶଯୋଗ୍ୟ ହୋଇଯାଏ ତେବେ ତାହା କରିବାପାଇଁ ମୁଁ ଦ୍ୱିଧାବୋଧ କରୁନଥିଲି । ତଥାପି ସମସ୍ତଙ୍କୁ ସବୁବେଳେ ସନ୍ତୁଷ୍ଟ କରିପାରୁ ନ ଥିଲି । ଯେଉଁମାନେ ପତ୍ରିକା ପ୍ରକାଶନ ଓ ଏହାର ପରିଚାଳନା ସହିତ ସଂପୃକ୍ତ ଥିଲେ ବା ବିଭିନ୍ନ ଭାବେ ଏହାର ପୃଷ୍ଠପୋଷକତା କରୁଥିଲେ ସେମାନଙ୍କୁ ଛାଡ଼ି ଏକା ଏକା ପତ୍ରିକା ଚଳାଇବା ସମ୍ଭବ ନୁହେଁ । ପତ୍ରିକା ପ୍ରକାଶ କରିବା ସହଜ ହୁଏ ନିଜର ଛାପାଖାନା ଥିଲେ ବା ବହି ଓ ପତ୍ରପ୍ରତିକା ବିକ୍ରି କରିବା ସଂସ୍ଥାଥିଲେ । ମୋ ପାଖରେ କିଛି ନ ଥିଲା । କେବଳ ଚାରିଜଣ ପୁତ୍ରୋପମ ଅଳ୍ପ ବୟସର ତରୁଣଙ୍କ ଉତ୍ସାହ ଓ ମୋର ସାହସକୁ ସମ୍ବଳକରି 'ଅମୃତାୟନ' ପ୍ରକାଶ କରିବା ଦୁଃସାହସ ନିଶ୍ଚୟ । 'ସ୍ମରଣିକା' ପ୍ରକାଶ କରିବା ସହଜ, କିନ୍ତୁ ତିନିମାସରେ ଥରେ ହେଲେ ମଧ୍ୟ 'ଢାଲ ନାହିଁ ତରଓ୍ୱାଲ୍ ନାହିଁ, ନିଧିରାମ ସର୍ଦ୍ଦାର' ପରି ପ୍ରେସ ନଥାଇ ପୁସ୍ତକ ବିକ୍ରି ସଂସ୍ଥା ବା ବ୍ୟବସାୟ ନଥାଇ କେବଳ କେତେଜଣଙ୍କର ସାହସ ଓ ଉତ୍ସାହକୁ ପୁଞ୍ଜିକରି ନିୟମିତ ପତ୍ରିକା ଚଳାଇବା କଷ୍ଟକର । ତଥାପି ପ୍ରଥମ ସଂଖ୍ୟା ପ୍ରକାଶ ପାଇବା ପରେ ଅନେକଙ୍କର ସାଧୁବାଦ ଶୁଣିବାର ସୌଭାଗ୍ୟ ହୋଇଥିଲା ମୋର । ଥରେ ପଦାକୁ ବାହାରି ପଡ଼ିଲେ ଆଉ ଯେ ପଛଘୁଞ୍ଚା ଦେଇହୁଏ ନାହିଁ ତାହା ବାରମ୍ବାର ମୋତେ ଚେତାଇ ଦେଇଥିଲା ସବୁ ବାଧାବିଘ୍ନ ଅତିକ୍ରମ କରି ଆଗକୁ ଯିବା ପାଇଁ । ଗୋଟିଏ ପୁରୁଣା ପ୍ରତିଷ୍ଠିତ ପତ୍ରିକା ମଧ୍ୟ ଯଥେଷ୍ଟ ବିଜ୍ଞାପନ ନ ଥିଲେ କ୍ଷତି ହୁଏ । ପତ୍ରିକା ବିକ୍ରୟରୁ ଖର୍ଚ୍ଚର

ପଚିଶ ଭାଗ ଆଦାୟ ହୁଏ ମାତ୍ର। ବିକ୍ରି କରୁଥିବା ଏଜେଣ୍ଟମାନେ ପଚିଶିରୁ ପଇଁତିରିଶ ପ୍ରତିଶତ କମିଶନ ନିଅନ୍ତି। ବନ୍ଧାବନ୍ଧି, ଡାକଖର୍ଚ୍ଚ ଇତ୍ୟାଦି ମଧ୍ୟ ଅଛି। ପ୍ରଥମ କେତୋଟି ସଂଖ୍ୟା ପ୍ରକାଶ କରିବା ପାଇଁ ବେଶ୍ ଗଳଦ୍‌ଘର୍ମ ହେବାକୁ ପଡ଼ିଥିଲା। ସାତକଡ଼ି ବାବୁ ବା ତାଙ୍କ ବନ୍ଧୁମାନଙ୍କୁ ବେଳେବେଳେ ବିଜ୍ଞାପନ ପାଇଁ ଅନୁରୋଧ କରିବାକୁ ବାଧ ହେଉଥିଲି। ସହସମ୍ପାଦକମାନଙ୍କୁ ସାଙ୍ଗରେ ଧରି କମ୍ପାନୀ ଓ କର୍ପୋରେସନ୍ ଅଫିସ୍‌କୁ ଯାଉଥିଲି। ବିଜ୍ଞାପନ ସଂଗ୍ରହ ପାଇଁ ଆଉ ତିନି ଚାରିଥର ଯିବାକୁ ହୁଏ। ବେଳେବେଳେ ବିଜ୍ଞାପନଦାତାମାନଙ୍କର ବା ଏଜେଣ୍ଟମାନଙ୍କର ଦେଖା ନ ପାଇ ମୁଣ୍ଡର ଝାଳ ତୁଣ୍ଡରେ ମାରି ଫେରିବାକୁ ହୁଏ। ମୁଁ ସନ୍ଧ୍ୟାବେଳେ ହାଲିଆ ହୋଇ ଘରକୁ ଫେରିଲା ବେଳେ ଲନ୍ ଉପରେ ବା ବାରନ୍ଦାରେ ବସି ନୀଳ ଆକାଶକୁ ଚାହିଁ ଜଗନ୍ନାଥଙ୍କୁ 'ଅମୃତାୟନ' ଉପରେ କୃପାଦୃଷ୍ଟି ପଡୁ ଏବଂ ସମସ୍ତ ପ୍ରତିକୂଳତା ଦୂର ହୋଇଯାଉ ବୋଲି ପ୍ରାର୍ଥନା କରେ। ସେ ଶୁଣନ୍ତି ନିଶ୍ଚୟ। ନଚେତ୍ ମୋ ପରି ଜଣେ ଗୃହବଧୂ ଆଗରେ ଥିବା ଅନେକ ଅନ୍ତରାୟ ଏପରି ଅପ୍ରତ୍ୟାଶିତ ଭାବରେ ଦୂର ହୋଇଯାଇ ନଥାନ୍ତା।

## ଶୁଭ ସଂକଳ୍ପରୁ ସଫଳତା ଆସେ

'ଅମୃତାୟନ'ର ପ୍ରଥମ ସଂଖ୍ୟା ପ୍ରକାଶ ପାଇବା ପରେ ଦାୟିତ୍ୱ ବଢ଼ିଗଲା ପରି ଲାଗିଲା। ପ୍ରଥମ ସଂଖ୍ୟାରେ ପ୍ରତି ତିନିମାସରେ ପତ୍ରିକା ପ୍ରକାଶ ହେବ ବୋଲି ଘୋଷଣା କରାଯାଇଥିଲା। କିନ୍ତୁ କହିବା ଓ କରିବା ମଧ୍ୟରେ ଯେ ଏତେ ତଫାତ୍ ତାହା ଧୀରେ ଧୀରେ ବୁଝିଲି। ପୂର୍ଣ୍ଣେନ୍ଦୁ, ପ୍ରଦୀପ୍ତ, ଗିରୀଶ ଓ ଅନ୍ୟାନ୍ୟ ଉତ୍ସାହୀ ପିଲାମାନେ ମୋ ଉପରେ ସମସ୍ତ ଦାୟିତ୍ୱ ଲଦି ଦେଇ କହିଲେ – ମାଉସୀ, ଆପଣ ନ ଲାଗିଲେ ହେବ ନାହିଁ। ଆମେ ସିନା କିଛି ଚାନ୍ଦାଭେଦା ଆଣିବୁ, କିନ୍ତୁ ସେଥିରେ ତ ପତ୍ରିକା ଚାଲିବ ନାହିଁ।' ସମ୍ପାଦିକା ହେବାର ଦାୟିତ୍ୱ ନେବାବେଳେ ମୁଁ ବିଭିନ୍ନ ଅସୁବିଧା କଥା ଭାବିନଥିଲି, ଭରସା ଥିଲା ସମସ୍ତଙ୍କ ସହଯୋଗରୁ ଭଲ କାମ ଯେପରି ହୋଇଯାଏ ଏ କାମ ବି ସେହିପରି ହୋଇଯିବ। କିନ୍ତୁ ଗୋଟିଏ ସଂଖ୍ୟା ବାହାର କରିବା ପାଇଁ କାଗଜ, ଖର୍ଚ୍ଚ, ଛାପା ଖର୍ଚ୍ଚ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ କେଉଁଠୁ ଆସିବ ତାହା ହିଁ ହେଲା ମୁଖ୍ୟ ସମସ୍ୟା। କିଛି ଚାନ୍ଦା ସେମାନେ ଆଣିଲେ ପ୍ରଥମ ସଂଖ୍ୟା ବିକ୍ରି କରି ଓ ବିଜ୍ଞାପନରୁ କିଛି ମିଳିଲା, ମୁଁ କିଛି ଦେଲି, ତଥାପି ଅକୁଳାଣ ହେଲା। ନଈ ଭିତରକୁ ପାଦ ପେଲିଦେବା ପରେ ଆଉ ଚାରା ନଥାଏ ପାରି ନ ହେବା ଯାଏ। ପିଲାମାନଙ୍କ ଉତ୍ସାହରେ କ୍ରମଶଃ ଭଟ୍ଟା ପଡ଼ିଆସିଲା। କିନ୍ତୁ ମୋ ଉତ୍ସାହ ଜିଦ୍‌ରେ ପରିଣତ ହେଲା। ବଡ଼ ବଡ଼ ଲୋକଙ୍କ ବାଣୀ ମନେପଡ଼ିଲା। ନେପୋଲିଅନ୍ କହିଥିଲେ ଯେ ଅସମ୍ଭବ ବୋଲି କୌଣସି ଶବ୍ଦ

ମୋ ଅଭିଧାନରେ ନାହିଁ। ସେହିପରି ଓଡ଼ିଆ କବିଙ୍କ କବିତା ମନେ ପଡ଼ିଯାଇଛି-

“ଜୀବନେ ଯେବେ ବାବୁ ଲଭିବ ଯଶ
କରମେ ଲାଗିପଡ଼ ତେଜି ଅଳସ।

ନିଶ୍ଚେ ଜିଣିବ କଲେ ଥରକୁ ଥର
ଧୀର ପାଣି ଯେସନେ କାଟେ ପଥର ।

ଏକା ଦିନକେ କେହି ହୁଏ କି ବଡ଼
ଏକା ହୋଇକି କିଏ ଜିଣିଛି ଗଡ଼ ।

କଥାରେ ଅଛି “ବୁଦ୍ଧି ଥିଲେ ବାଟ ଦିଶେ” । ଗୋଟିଏ ଭଲ କାମ ଅର୍ଥାଭାବରୁ ଅଟକିଯାଏ ନାହିଁ। ମୁଁ ସଂକଳ୍ପ କଲି ସବୁ ବାଧାବିଘ୍ନ ଅତିକ୍ରମ କରି ‘ଅମୃତାୟନ’ର ପଞ୍ଜିକରଣ କରିବା ପାଇଁ। ଏ.ଡି.ଏମ୍.ଭୁବନେଶ୍ୱରଙ୍କ ଠାରେ ଦରଖାସ୍ତ କଲି। ପୂର୍ବରୁ ସମାଜସେବା କରିବା ଉଦ୍ଦେଶ୍ୟରେ ଅମୃତାୟନ ସୋସାଇଟି ଗଠିତ ହୋଇଥିଲା। ସେହି ସୋସାଇଟି ପକ୍ଷରୁ ଅମୃତାୟନ ପ୍ରକାଶନ ବିଧିବଦ୍ଧ ଭାବରେ କରିବା ପାଇଁ ନିଷ୍ପତ୍ତି ନେଲି। ପିଲାମାନେ ହତାଶ ହେଇ ଥକି ପଡୁଥିଲା ବେଳେ ଅମୃତାୟନ ନିୟମିତ ଭାବେ ପ୍ରକାଶ କରିବା ପାଇଁ ମୁଁ ଲମ୍ଫ ଦେଲି। ଶ୍ରୀମା କହିଛନ୍ତି ଯେ, “ସେହିମାନେ ହିଁ ଧନ୍ୟ ଯେଉଁମାନେ ଆଗକୁ ଲମ୍ଫ ଦିଅନ୍ତି।” ଶୁଭ ମୁହୂର୍ତ୍ତ ସବୁବେଳେ ଆସେ ନାହିଁ। ଯେତେବେଳେ ଆସେ ସେତେବେଳେ ତାର ଉପଯୋଗ କରିବା ଦ୍ୱାରା ସଫଳତା ମିଳେ। ଏ.ଡି.ଏମ୍. ଅମୃତାୟନକୁ ପଞ୍ଜିକୃତ କଲେ ଏବଂ ତା ପରେ ଏହାକୁ ସ୍ୱୀକୃତି ଦେବା ପାଇଁ ନିୟମ ଅନୁସାରେ ଭାରତ ସରକାରଙ୍କ ସମ୍ବାଦପତ୍ରର ରେଜିଷ୍ଟ୍ରାରଙ୍କ ନିକଟକୁ ଦରଖାସ୍ତ କଲି। ମୁଁ ସମ୍ପାଦିକା ଥିବାବେଳେ ପରିଚାଳନା ସମ୍ପାଦକ ଭାବେ ଗିରୀଶ ଚନ୍ଦ୍ର ଦାସ, ଉପଦେଷ୍ଟା ଭାବରେ ସାତକଡ଼ି ହୋତା ରହିଲେ। କିନ୍ତୁ ଯେତେ ଶୀଘ୍ର ଆର୍.ଏନ୍.ଆଇ. ଅଫିସର ସ୍ୱୀକୃତି ମିଳିବା କଥା ସେତେ ଶୀଘ୍ର ମିଳିଲା ନାହିଁ। ଭାଗ୍ୟକୁ ଏହି ନାମରେ ପୂର୍ବରୁ ଆଉ କେବେ କୌଣସିଠାରେ ‘ଅମୃତାୟନ’ ନାମରେ ପତ୍ରିକା ପଞ୍ଜିକୃତ ହୋଇନଥିଲା। ଏଣୁ ଦିଲ୍ଲୀକୁ ବାରମ୍ବାର ଦଉଡ଼ା ଦଉଡ଼ି କରି ସଂପୃକ୍ତ ଅଫିସରମାନଙ୍କୁ ବାରମ୍ବାର ଅନୁରୋଧ କରିବା ପରେ ଶେଷରେ ୧୯୮୨ ମସିହାରେ ଆର୍.ଏନ୍.ଆଇ ନମ୍ବର ମିଳିଲା। କିନ୍ତୁ ଏଥି ମଧ୍ୟରେ ପତ୍ରିକା ପ୍ରକାଶନ ନିୟମିତ ଭାବେ ହେଉଥାଏ। ପ୍ରଥମେ ଭୁବନେଶ୍ୱରର ଶାନ୍ତା ପ୍ରେସ୍‌ରେ ଏହା ଛପାଯାଉଥିଲା। କିନ୍ତୁ ପରେ କଟକ ରାଧାନାଥ କୋ-ଅପରେଟିଭ୍ ପ୍ରେସ୍‌ରେ ଛାପା ହେଲା। ‘ଅମୃତାୟନ’ ଅତି ଅଳ୍ପ ସମୟ ମଧ୍ୟରେ ଲେଖକମାନଙ୍କର ଯେପରି ସହଯୋଗ ଓ ସ୍ନେହ ଶ୍ରଦ୍ଧା ପାଇଲା, ସେହିପରି

ପାଠକମାନେ ମଧ୍ୟ ପତ୍ରିକା ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କଲେ। ତେଣୁ କେବଳ କଟକ, ଭୁବନେଶ୍ୱର ଓ ପୁରୀ ମଧ୍ୟରେ ସୀମାବଦ୍ଧ ନ ରହି ପତ୍ରିକା ସାରା ଓଡ଼ିଶାର ବିଭିନ୍ନ ସ୍ଥାନରେ ଏବଂ ଓଡ଼ିଶା ବାହାରେ ପ୍ରସାରିତ ହେଲା। ଗ୍ରାହକ ସଂଖ୍ୟା ବଢ଼ିଲା। ପତ୍ରିକାର ପ୍ରସାର ଓ ଲୋକପ୍ରିୟତା ବଢୁଥିବା ବେଳେ ସାତକଡ଼ି ବାବୁ ବଦଳି ହୋଇ କେନ୍ଦ୍ର ସରକାରଙ୍କ ଅଧୀନକୁ ଚାଲିଗଲେ।

ସେ କଲିକତାରେ ମୁଖ୍ୟ ବାଣିଜ୍ୟ ଅଧ୍ୟକ୍ଷ ଭାବେ ୧୯୮୫ ଏପ୍ରିଲ୍ ମାସ ୧୯ ତାରିଖ ଦିନ ଯୋଗଦେଲେ। ଅଳ୍ପଦିନ ପରେ ତାଙ୍କୁ ସେଠାରେ ଗୋଟିଏ ସରକାରୀ ବଙ୍ଗଳା ମିଳିଗଲା। କିନ୍ତୁ ମୁଁ 'ଅମୃତାୟନ'କୁ ବଞ୍ଚାଇ ରଖିବାପାଇଁ ଭୁବନେଶ୍ୱରରେ ରହିଗଲି। ୪ମାସ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ କ୍ୱାର୍ଟରରେ ରହିବା ପରେ ବି.ଜେ.ବି. କଲେଜ ହଷ୍ଟେଲ ପାଖରେ ଛୋଟଘର ଭଡ଼ାନେଇ 'ଅମୃତାୟନ' କାର୍ଯ୍ୟାଳୟ ସେଠାକୁ ସ୍ଥାନାନ୍ତର କଲି। ସେହିଠାରେ ମୁଁ ମଧ୍ୟ ରହିଲି। ଛୋଟ ଘର, ଟେଲିଫୋନ୍ ନ ଥାଏ। ଚାକର ବାକର ନ ଥାଏ – କିନ୍ତୁ ମୁଁ 'ଅମୃତାୟନ' ପତ୍ରିକା ଚଳାଇବା ପାଇଁ ସେଠାରେ ବସା ବାନ୍ଧିଲି। ଗିରୀଶ ସଦାବେଳେ ମୋ ପାଖେ ପାଖେ ଥାଏ ଏବଂ ଆମେ ମାଉସୀ ପୁତୁରା ଝାଳନାଳ ହୋଇ କଟକ ଯାଇ ଅମୃତାୟନ ଛାପିବା କାର୍ଯ୍ୟ ତଦାରଖ କରୁ। ଏମିତି ବେଳ ଯାଇଛି ଯେତେବେଳେ କି କପେ ଚା ବା ଗିଲାସେ ପାଣି ପିଇ କଟକରେ ରାଧାନାଥ କୋ-ଅପରେଟିଭ୍ ପ୍ରେସ୍‌ରେ ସମୟ କଟାଇବାକୁ ହୋଇଛି। ବିଜ୍ଞାପନଟିଏ ପାଇବା ପାଇଁ ବିଭିନ୍ନ ଅଫିସ୍ ବୁଲିଛି। କିନ୍ତୁ ଏଠାରେ ଉଲ୍ଲେଖ କରିବା ଉଚିତ ମନେ କରୁଛି ଯେ କେତେବେଳେ ହେଲେ ଭାଙ୍ଗିପଡ଼ି ନାହିଁ। ଯେତେବେଳେ ସବୁ ଦ୍ୱାର ବନ୍ଦ ହୋଇଯାଇଛି ସେତିକି ବେଳେ ଅଜଣା ଦିଗରୁ ସାହାଯ୍ୟ ଆସିଛି। ଏହା ଯେ ସେହି ମହାପ୍ରଭୁ ବଳିଆର ଭୁଜ ଜଗନ୍ନାଥଙ୍କର ଅପାର କରୁଣାର ଫଳ ସେତେବେଳେ ମୁଁ ଏହା ଅନୁଭବ କରି ପୁଲକିତ ହୋଇଚି। ଗିରୀଶ ଘର କାମ ଛାଡ଼ି ମୋ ସହିତ ଅମୃତାୟନ ପାଇଁ ନିଃସ୍ୱାର୍ଥପର ଭାବେ କାମ କରିଛି। ଏବଂ ଏହାରି ଉପାର୍ଜନରୁ ମୁଁ ମାସକୁ ହଜାରେ ଟଙ୍କା ଘରଭଡ଼ା ଦେଇ ବିଜେବି ନଗରରେ ଦୁଇବର୍ଷ ଧରି ଭଡ଼ା ଘରଟିଏ ରଖି ପାରିଥିଲି। କିନ୍ତୁ ଯେପରି ଲେଖକମାନଙ୍କୁ କୌଣସି ପାରିଶ୍ରମିକ ଦେଇପାରି ନାହିଁ, ସେହିପରି ମୁଁ ବା ପରିଚାଳନା ସମ୍ପାଦକ ଗିରୀଶ ଦାସ ଘରୁ ଖାଇ 'ଅମୃତାୟନ' କାମ କରୁ ସିନା ଏଥିରୁ ପାରିଶ୍ରମିକ ନେଇ ନାହୁଁ। ସେହି ସମୟର ଦୁଃଖକଷ୍ଟ ମନେ ପଡ଼ିଲେ ଆଖିରେ ଲୁହ ଜକେଇ ଆସେ। କିନ୍ତୁ ତା ସହିତ ତାଙ୍କର 'ଅମୃତାୟନ' ଦୃଷ୍ଟିର ପ୍ରଲେପ ପାଇ ଶାନ୍ତି ଓ ସାହସରେ ଅନ୍ତର ମଧ୍ୟ ଭରିଯାଏ।

ସାତକଡ଼ିବାବୁ ଏକା କଲିକତାରେ ରହିବା ଯୋଗୁଁ ନାନାଦି ଅସୁବିଧା ହେବାରୁ

ମୁଁ ମଝିରେ ମଝିରେ ଯାଇ ସେଠାରେ ରହିଲି। କିନ୍ତୁ ଏହି କାଳରୁ 'ଅମୃତାୟନ' ପ୍ରକାଶନରେ ବାଧା ସୃଷ୍ଟି ହେବାରୁ ଅସ୍ଥାୟୀ ଭାବରେ ଏହାର ଛପାକାର୍ଯ୍ୟ କଲିକତାକୁ ସ୍ଥାନାନ୍ତରିତ କଲି। କଲିକତା ପ୍ରେମଚାନ୍ଦ ଷ୍ଟ୍ରିଟ୍‌ରେ ଥିବା ଶାଶ୍ୱତୀ ମୁଦ୍ରଣ ପ୍ରେସ୍‌ରେ ଏହା ଛପା ହେଲା। ପ୍ରେସ୍‌ର ମାଲିକ ନୃସିଂହବାବୁ ନିଜେ ଜଣେ ଦକ୍ଷ ଲୋକ ଏବଂ ଅତି ଆଗ୍ରହ ସହିତ ପ୍ରୁଫ୍ ଦେଖନ୍ତି ଏବଂ ବନାନ୍ ଭୁଲ ସଂଶୋଧନ କରନ୍ତି। 'ଅମୃତାୟନ' କଲିକତାରୁ ପ୍ରକାଶ ପାଇଲା ବେଳେ 'ପ୍ରତିବେଶୀ' ସାହିତ୍ୟ ପତ୍ରିକା ମଧ୍ୟ ଉତ୍କଳ ଶିକ୍ଷା ସଂସଦ ପକ୍ଷରୁ ପ୍ରକାଶିତ ହେଉଥାଏ। ସେତେବେଳେ ସାତକଡ଼ିବାବୁ ଥିଲେ 'ପ୍ରତିବେଶୀ'ର ସମ୍ପାଦକ। କଲିକତାରେ ଅମୃତାୟନର ପ୍ରସାର ବଢ଼ିଲା ଏବଂ ୧୯୮୬ ମସିହା ବେଳକୁ ଓଡ଼ିଶାର ପ୍ରାୟ ସବୁ ସହର ଓ ଓଡ଼ିଶା ବାହାରର ଉପାନ୍ତ ଅଞ୍ଚଳରେ ଥିବା ଖଡ଼ଗ୍‌ପୁର, ଜାମ୍‌ସେଦ୍‌ପୁର, ରାୟପୁର, ବିଶାଖାପାଟଣା, ଭିଲାଇ, ରାଞ୍ଚି, ଶାନ୍ତିନିକେତନ ପ୍ରଭୃତି ସହରରେ ଅମୃତାୟନର ଯଥେଷ୍ଟ ପ୍ରସାର ହୋଇଥିଲା, ଏପରିକି ୧୯୮୬-୮୭ ମସିହା ବେଳକୁ ଏହାର ପ୍ରସାର ସଂଖ୍ୟା ଦୁଇ ହଜାରରୁ ଅଧିକ ହୋଇ ଚାରି ପାଞ୍ଚ ହଜାର ହୋଇଥିଲା। ସେହି କଲିକତାରେ ଥିଲାବେଳେ ମୋର ଧାରଣା ହେଲା ଯେ, ଓଡ଼ିଆ ପତ୍ରପତ୍ରିକାର ପଢ଼ିବା ଆଗ୍ରହ କ୍ରମଶଃ ବଢୁଛି। କିନ୍ତୁ ଏଥିପାଇଁ ପ୍ରକାଶକ ଓ ବହି ବିକ୍ରେତାମାନେ ବହି ଓ ପତ୍ରପତ୍ରିକା ବଣ୍ଟନରେ ଯଦି ସୁବ୍ୟବସ୍ଥା କରନ୍ତି, ତେବେ ପାଠକମାନେ ସହଜରେ ତାହା ପାଇପାରିବେ। ଓଡ଼ିଶାରେ ପତ୍ରପତ୍ରିକା ବଣ୍ଟନ କରିବା ପାଇଁ କୌଣସି ପ୍ରତିଷ୍ଠିତ ଏଜେନ୍ସି କାର୍ଯ୍ୟ କରେ ନାହିଁ। ତେଣୁ ପତ୍ରିକାଟି ପ୍ରେସ୍‌ରୁ ବାହାରିବା କ୍ଷଣି ସମ୍ପାଦକଙ୍କୁ ତାହା ପ୍ୟାକିଂ କରି ଏଜେଣ୍ଟମାନଙ୍କ ପାଖକୁ ବିଭିନ୍ନ ସ୍ଥାନକୁ ପଠାଇବାକୁ ହୋଇଥାଏ। ଭାରତବର୍ଷରେ ଓଡ଼ିଶା କେବଳ ଗୋଟିଏ ରାଜ୍ୟ ଯେଉଁଠାରେ ସମ୍ପାଦକଙ୍କୁ ଲେଖା ସଂଗ୍ରହ କରିବା, ବିଜ୍ଞାପନ ଆଣିବା, ପ୍ରେସ୍‌ରେ ମୁଦ୍ରଣ କରିବା, ବିଭିନ୍ନ ସ୍ଥାନରେ ଏଜେଣ୍ଟମାନଙ୍କ ପାଖକୁ ପଠାଇବା, ଟଙ୍କା ଆଦାୟ କରିବା, କାଗଜ କିଣିବା ପ୍ରାୟ ସବୁକାର୍ଯ୍ୟ କରିବାକୁ ହୋଇଥାଏ ଏବଂ ଏଥିପାଇଁ ତାଙ୍କୁ କୌଣସି ପାରିଶ୍ରମିକ ମିଳେ ନାହିଁ। କେବଳ ଆତ୍ମସନ୍ତୋଷ ଏବଂ ଲେଖକ ଓ ପାଠକମାନଙ୍କ ଶୁଭେଚ୍ଛା ହିଁ ପ୍ରଧାନ ସମ୍ବଳ।

## ମା ଫଳେଷୁ କଦାଚନ

କର୍ମ କରିବାର ଅଧିକାର ମଣିଷର, କିନ୍ତୁ ଫଳରେ ନୁହେଁ। ନିଷ୍କାମ କର୍ମ କରିବା ମଧ୍ୟ ସହଜ ନୁହେଁ। କିନ୍ତୁ ଅନାସକ୍ତ କର୍ମ ହିଁ ଶ୍ରେଷ୍ଠ ମାର୍ଗ। କର୍ମ କରିବାର ଅଧିକାର ସାବ୍ୟସ୍ତ କରି ମୁଁ ଦଶବର୍ଷ ଧରି ତ୍ରୈମାସିକ ପତ୍ରିକା ରୂପେ ପ୍ରକାଶ ପାଉଥିବା 'ଅମୃତାୟନ'

ପତ୍ରିକାକୁ ମାସିକ କରିବା ପାଇଁ ନିଷ୍ପତ୍ତି ନବା ଏହାର ପାଠକମାନଙ୍କ ପାଇଁ ଗୋଟିଏ ଶୁଭ ଖବର ହେଇପାରେ, କିନ୍ତୁ ଗୋଟିଏ ମାସିକ ପତ୍ରିକାର ପରିଚାଳନା, ସମ୍ପାଦନା ପ୍ରକାଶନ ଯେ ସହଜ ନୁହେଁ ଏହା ପତ୍ରିକା ପ୍ରକାଶନ ସହିତ ସମ୍ପୃକ୍ତ ସମସ୍ତେ ଜାଣନ୍ତି। ସେଇ କାରଣରୁ ଭାଷାଭିତ୍ତିରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଭାବେ ୧୯୩୬ ମସିହା ଏପ୍ରିଲ ପହିଲା ଦିନ ଜନ୍ମ ହୋଇ ମଧ୍ୟ ଏଇ ତେଷଠି ବର୍ଷରେ ଓଡ଼ିଆ ଲେଖିପଢ଼ି ଜାଣୁଥିବା ସାକ୍ଷରଙ୍କ ସଂଖ୍ୟା ୫୦ ପ୍ରତିଶତ ମଧ୍ୟରେ ରହିଛି। ସାମାଜିକ ଗତିଶୀଳତା ଓ ଶିକ୍ଷା ବିସ୍ତାରରେ ମନ୍ଥରତା, ରକ୍ଷଣଶୀଳତାରୁ ମୁକୁଳିବା ପାଇଁ ଉଦ୍ୟମର ଅଭାବ ଓ ଅର୍ଥନୈତିକ ଅସ୍ୱଚ୍ଛଳତାରୁ ପଢ଼ିବାର ଆଗ୍ରହ ଓଡ଼ିଶାରେ କମ୍। ଏବେ ମଧ୍ୟ ନିୟମିତ ଭାବେ ପାଞ୍ଚଟି ମାସିକ ସାହିତ୍ୟ ପତ୍ରିକା ଓଡ଼ିଶାରେ ପ୍ରକାଶ ପାଉନାହିଁ। ୧୯୯୦ରେ ତାର ସଂଖ୍ୟା ଥିଲା ତିନି। ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ସବୁଠାରୁ ପୁରୁଣା ସାହିତ୍ୟ ପତ୍ରିକା 'ଝଙ୍କାର' ଯଦି ବଞ୍ଚି ରହିଥାଏ ତାର ଏକମାତ୍ର କାରଣ ଏହି ଯେ, ଏହା ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ପ୍ରକାଶ ପାଏ ଏବଂ କ୍ରମାଗତ ପଚାଶ ବର୍ଷ ଧରି କ୍ଷତିରେ ଚାଲୁଥିଲେ ମଧ୍ୟ ଏହା ଚଳାଇବାର ଶକ୍ତି ଅନୁଷ୍ଠାନର ଅଛି। ଗୋଟିଏ ପତ୍ରିକା ବା ସମ୍ବାଦପତ୍ର ବିକ୍ରୟଲବ୍ଧ ଅର୍ଥରୁ ଚଳିପାରେ ନାହିଁ । ବରଂ ଏହା ସମସ୍ତେ ଜାଣିବା ଉଚିତ ଯେ, ମାତ୍ର ପଚିଶ ପ୍ରତିଶତ ଖର୍ଚ୍ଚ ପତ୍ରିକା ବିକ୍ରୟରୁ ମିଳିଥାଏ। ତେଣୁ ମାସକ ପତ୍ରିକା ପ୍ରକାଶ କରିବା ମୋ ପରି ଜଣେ ସାଧାରଣ ବ୍ୟକ୍ତି ପକ୍ଷରେ ଯେ ଏକ ଦୁଃସାହସିକ ନିଷ୍ପତ୍ତି ଏହା ଉଲ୍ଲେଖ କରିବାରେ ଦ୍ୱିଧା ନାହିଁ। ପ୍ରସଙ୍ଗ ଆଲୋଚନା ହେବାବେଳେ ସାତକଡ଼ି ବାବୁ ଦିନେ କହିଲେ, 'ଏପରି ନିଷ୍ପତ୍ତି ଦୁଃସାହସିକ ନିଶ୍ଚୟ, କିନ୍ତୁ ପ୍ରଥମ ଏଭରେଷ୍ଟ ଶୃଙ୍ଗ ଆରୋହଣ କରିବା ପାଇଁ ଯେଉଁମାନେ ଯାଇଥିଲେ ସେମାନଙ୍କର ନିଷ୍ପତ୍ତି ମଧ୍ୟ ଥିଲା ଦୁଃସାହସିକ। ଦୁଃସାହସ ନ ଥାଇ କୌଣସି ଭଲ କାର୍ଯ୍ୟ କରିହୁଏ ନାହିଁ। ଆମର ପାଞ୍ଚ ସନ୍ତାନଙ୍କୁ ମଣିଷ କରିବା ପାଇଁ ଆମେ ଯେପରି ଯତ୍ନ ଓ ତ୍ୟାଗ କରିଛୁ 'ଅମୃତାୟନ' ପାଇଁ ମଧ୍ୟ ସେହିପରି କରିବାକୁ ହେବ ଏବଂ ଯଦି ଦୁର୍ଭାଗ୍ୟକୁ କାହାରି ସନ୍ତାନ ଅମଣିଷ ହୋଇଯାଏ, ତେବେ ସେଇ ବାପା ମାଆଙ୍କ ଅବସ୍ଥା ଯେପରି ହୁଏ 'ଅମୃତାୟନ' ଯଦି ନିଜ ପାଦରେ ଛିଡ଼ା ହୋଇନପାରେ ଆମର ତାଦୃଶ ଅବସ୍ଥା ହେବ।' ଥରେ ମନସ୍ଥିର କଲେ ମୁଁ ଆଉ ପଛକୁ ଚାହେଁ ନାହିଁ। ଯେଉଁ ଚକାଆଖିର କରୁଣାରୁ ମୁଁ ଏଯାଏ ଆଗେଇ ଆସିଛି ତାଙ୍କରି କୃପାରୁ ଏଇ ଦୁଃସାହସିକ କାର୍ଯ୍ୟ ସଫଳ ହେବ ବୋଲି ମୋର ହୃଦବୋଧ ହେବାରୁ 'ଅମୃତାୟନ' ନୂତନ କଳେବର ନେଇ ୧୯୯୦ – ଜାନୁୟାରୀ ସଂଖ୍ୟାରୁ ମାସିକ ପତ୍ରିକା ରୂପେ ଆତ୍ମପ୍ରକାଶ କଲା।

ମାସିକ 'ଅମୃତାୟନ'ର ପ୍ରଥମ ସମ୍ପାଦକୀୟରେ ମୁଁ ଲେଖିଥିଲି – କାଗଜର

ମୂଲ୍ୟ, ଛାପି ଓ ଆନୁଷଙ୍ଗିକ ଖର୍ଚ୍ଚ ବଢୁଥିବା ବେଳେ ଏବଂ ନିୟମିତ ଭାବରେ ଯଥେଷ୍ଟ ବିଜ୍ଞାପନ ପାଇବା ସମ୍ଭବ ହେଉ ନ ଥିବା ଓ ପତ୍ରିକାର ପ୍ରସାର ସତ୍ତ୍ୱେ ଆମର ଯଥାର୍ଥ ପ୍ରାପ୍ୟ ଆମ ପାଖରେ ପହଞ୍ଚୁ ନ ଥିବା ସମୟରେ ଏକ ତ୍ରୈମାସିକ ପତ୍ରିକାକୁ ମାସିକରେ ପରିଣତ କରିବାର ସଂକଳ୍ପ ଉଚ୍ଚାକାଂକ୍ଷା ଓ ଦୁଃସାହସିକ ନିଷ୍ପତ୍ତି । କିନ୍ତୁ ଏଇ ଉଚ୍ଚାକାଂକ୍ଷା ଓ ଦୁଃସାହସରୁ ଜନ୍ମନିଏ ନୂତନ ଓ ଅଭିନବ; ଏଇଥିରୁ ସୃଷ୍ଟି ହୁଏ ଅପ୍ରତିହତ ପ୍ରତ୍ୟୟ ସହିତ କର୍ମପ୍ରବଣତା ଓ ଅବିଚଳିତ ବିଶ୍ୱାସ। ଏହା ହିଁ ଆଗାମୀ ସିଦ୍ଧିର ଭିତ୍ତିଭୂମି। 'ଅମୃତାୟନ' ମୋ ଜୀବିକାର୍ଜନର ମାଧ୍ୟମ ନୁହେଁ। କିନ୍ତୁ ମୋର ଉତ୍ତରଣ ଓ ସାରସ୍ୱତ ସାଧନାର ମାର୍ଗ। ଆରମ୍ଭରେ ମୋ ସହିତ ଥିବା ପିଲାମାନଙ୍କ ମଧ୍ୟରୁ ପୂର୍ଣ୍ଣେନ୍ଦୁ ମିଶ୍ର ଅସମୟରେ ଚାଲିଗଲା ଅନ୍ୟପୁରକୁ। ଆରମ୍ଭର ଟିକେ ପରେ ଅନ୍ୟମାନେ ଯେ ଯାହାର ବାଟରେ ଚାଲିଗଲେ, କିନ୍ତୁ ଗିରୀଶ ଦାସ ଏବେ ବି ଅଛି ମାଆ ପାଖେ। ସେ ଏବେ ପରିଚାଳନା ସମ୍ପାଦକ। ପ୍ରବୀର ଓ ନିରଞ୍ଜନ ଏବେବି ନିଷ୍ଠାର ସହିତ କାର୍ଯ୍ୟ କରନ୍ତି, ସହସମ୍ପାଦକ ଭାବେ। ଦେବ, ସମୀର, ଶରତ ଓ ଅଭୟ ଅନ୍ୟ ମାର୍ଗ କିଛି ବାଛି ନେଇଛନ୍ତି। ଏ ସମସ୍ତେ କୁମ୍ଭାର ଚକରେ ଗଢ଼ା ମାଟିର ପାତ୍ର ପରି ମୋ ହାତରେ ଗଢ଼ା ଗୋଟିଏ ଗୋଟିଏ ସାଧନାର ଆଧାର। ମଝିରେ କନିଷ୍କ ଓ କବିତା ଆସିଥିଲେ, ଏବେ ସେମାନେ ସ୍ୱତନ୍ତ୍ର।

ଶ୍ରୀଅରବିନ୍ଦ କହିଥିଲେ ଯେ ଆମେ ଅତୀତର ଉଷାର ନୋହୁଁ, ଆମେ ଆଗାମୀ ମଧ୍ୟାହ୍ନର। ସେଇ ମଧ୍ୟାହ୍ନ ଆଡ଼କୁ ଅଗ୍ରଗତି କରିବା ପାଇଁ ନିଷ୍ପତ୍ତି ନେବା ହିଁ ସାହସିକତା। ଓଡ଼ିଆ ପତ୍ରିକା ବିକ୍ରୀ ହେଲେ ମଧ୍ୟ ଏଜେଣ୍ଟମାନଙ୍କଠାରୁ ପ୍ରାପ୍ୟ ମିଳେନାହିଁ ନିୟମିତ ଭାବେ ଏବଂ ବେଳେବେଳେ କେହି କେହି ତାହା ମଧ୍ୟ ଆତ୍ମସାତ୍ କରନ୍ତି । ବିଜ୍ଞାପନ ହିଁ ମାସିକ ପତ୍ରିକାର ପ୍ରଧାନ ସମ୍ବଳ। କିନ୍ତୁ ବିଜ୍ଞାପନ କେଉଁଠୁ ଆସିବ, କିଏ ଦେବ ? ଓଡ଼ିଶାରେ ବ୍ୟବସାୟ ବାଣିଜ୍ୟ ନାହିଁ କିମ୍ବା ଶିଳ୍ପ ବିକାଶ ଘଟିନାହିଁ। ତେଣୁ ଘରୋଇ ଅନୁଷ୍ଠାନରୁ ବିଜ୍ଞାପନ ଆଶା କରିବା ନିରର୍ଥକ । ସରକାରୀ ସଂସ୍ଥାମାନଙ୍କରୁ ବିଜ୍ଞାପନ ମଧ୍ୟେ ମଧ୍ୟେ ଯଦିବା ମିଳେ ଏତେ ଶ୍ରମସାଧ୍ୟ ଯେ କହିଲେ ନସରେ। ବିଜ୍ଞାପନ ଦେବା କର୍ତ୍ତୃପକ୍ଷଙ୍କ ମର୍ଜି ଉପରେ ନିର୍ଭର କରେ, ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ନୀତିନିୟମ ଅନୁସୃତ ହୁଏ ନାହିଁ। ଏବେ ବି ସେଇ ଅବସ୍ଥା। ଦୈନିକ ସମ୍ବାଦପତ୍ରକୁ ସରକାର ଭୟକରି ବିଜ୍ଞାପନ ଦିଅନ୍ତି, କିନ୍ତୁ ସାହିତ୍ୟ ପତ୍ରିକା କଥା ପଚାରେ କିଏ। ବରଂ ମନ୍ତ୍ରୀ, ପ୍ରଶାସକ ଓ ବଡ଼ ବଡ଼ ଲୋକ ମାଗଣାରେ ପତ୍ରିକାଟିଏ ପାଇବା ସକାଶେ ଆଶା କରନ୍ତି। ଦୁର୍ଭାଗ୍ୟର ବିଷୟ ଏହି ଯେ ସରକାରଙ୍କ ବାହାରେ ଯେଉଁ ଶିକ୍ଷିତ ସମ୍ପ୍ରଦାୟ ଅଛନ୍ତି ସେମାନଙ୍କର ରୁଚିବୋଧ ଓ ସାଂସ୍କୃତିକ ଚେତନା ମଧ୍ୟ ଏତେ କମ୍ ଯେ ସେମାନେ

ପତ୍ରିକା କିଣିବା ଦୂରେ ଥାଉ, ସେମାନେ ମଧ୍ୟ ମାଗଣାରେ ପତ୍ରିକା ମିଳୁ ବୋଲି ଆଶା କରନ୍ତି। କେବଳ ନିମ୍ନ ମଧ୍ୟବିତ୍ତ ପାଠକମାନଙ୍କ ଉପରେ ଭରସା କରି କୌଣସି ପତ୍ରିକା ଚାଲିପାରେ ନାହିଁ। ଗୋଟିଏ ବିଜ୍ଞାପନ ଆଣିବା ପାଇଁ ଅତିକମ୍‌ରେ ଚାରି ପାଞ୍ଚ ଥର ଯିବାକୁ ହୁଏ, ପୁଣି ଟଙ୍କା ଆଣିବା ପାଇଁ ଆଉ ଦୁଇ ତିନି ଥର। ଫଳରେ ହଜାର ଟଙ୍କା ମୂଲ୍ୟର ବିଜ୍ଞାପନରୁ ଆମେ ପ୍ରକୃତରେ ସାତଶହ ଟଙ୍କା ପାଇଥାଉ। ବୋଝ ଉପରେ ନଳିତା ବିଡ଼ା ପରି ଏହା ଉପରେ କେବେ କେମିତି କାର୍ଯ୍ୟ ସହିତ ସଂପୃକ୍ତ ଲୋକମାନଙ୍କୁ ମଧ୍ୟ ବିଭିନ୍ନ ପ୍ରକାରେ ସନ୍ତୁଷ୍ଟ କରିବାକୁ ହୁଏ। ସବୁଠାରୁ ବଡ଼ କଥା ହେଲା ଜାତୀୟ ସ୍ତରରେ ବିଜ୍ଞାପନ ବ୍ୟବସାୟ ସମ୍ମାନିତ କିନ୍ତୁ ଓଡ଼ିଶାରେ ତାହା ଅବଶିଷ୍ଟ ସମ୍ମାନବୋଧକୁ ମଧ୍ୟ ନଷ୍ଟ କରିଦିଏ।

'ଅମୃତାୟନ' ମାସିକ ହେବାର ବରଷେ ପୂରିବା ଆଗରୁ ଆମର ଗଣନା ଯେ ଠିକ୍ ନୁହେଁ ତାହା ପ୍ରମାଣ ହୋଇଗଲା। ଆଉ ପଛଘୁଞ୍ଚା ଦେବା ସମ୍ଭବ ନୁହେଁ କି ଅନ୍ୟ କିଛି କହିବା ସୁବିଧା ବା ସମ୍ମାନଜନକ ନୁହେଁ, ମନେକରି ଆୟ ବୃଦ୍ଧି କରିବା ପାଇଁ ବିକଳ୍ପ ଉପାୟ ଖୋଜୁଥିଲା ବେଳେ ଜଣେ ବନ୍ଧୁ କହିଲେ କମର୍ସିଆଲ ବିଜ୍ଞାପନ ପାଇଁ ଚେଷ୍ଟା କରନ୍ତୁ। କିନ୍ତୁ କମର୍ସିଆଲ ବିଜ୍ଞାପନ ପାଇବା ଉପାୟ ଜାଣିନଥିଲି। କଲିକତାରେ ଦୀର୍ଘ ସମୟ ରହି ମଧ୍ୟ ସାତକଡ଼ି ବାବୁ ଏ ବିଷୟ ଚିନ୍ତା କରିନଥିଲେ କି ମୁଁ ମଧ୍ୟ ଭାବି ପାରି ନ ଥିଲି । ବିଜ୍ଞାପନ ଦେବା ପାଇଁ ପେସାଦାର ଅନୁଷ୍ଠାନ ଅଛି। ଏ କ୍ଷେତ୍ରରେ ପ୍ରବଳ ପ୍ରତିଯୋଗିତା। ଟିଭି ଓ ଗଣମାଧ୍ୟମର ପ୍ରସାର ସହିତ ପେସାଦାର ବିଜ୍ଞାପନଦାତା ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକର ଗୁରୁତ୍ୱ ବଢ଼ିବାରେ ଲାଗିଛି। ଖାଉଟି ସାମଗ୍ରୀ ପାଇଁ ବଜାର ସୃଷ୍ଟି କରିବା ଓ ଉତ୍ପାଦନ ସାମଗ୍ରୀର ଗୁଣାତ୍ମକ ମାନ ସମ୍ପର୍କରେ ଖାଉଟିମାନଙ୍କୁ ଅବହିତ କରିବା ଓ ପ୍ରତିଯୋଗିତାରେ ଅନ୍ୟମାନଙ୍କଠାରୁ ଆଗେଇଯିବା ଲକ୍ଷ୍ୟ ନେଇ ବିଜ୍ଞାପନ ଦିଅନ୍ତି। ଏଇ ବିଜ୍ଞାପନ ପେସାଦାର ଏଜେନ୍ସି ଯଥା କ୍ଲରିଏନ୍ସ, ମୁଦ୍ରା, ରିଡ଼ିଫୁଜନ୍, କଣ୍ଟାକ୍ଟ ପ୍ରଭୃତି ମାଧ୍ୟମରେ ଦିଆଯାଏ। ସେମାନେ ବିଜ୍ଞାପନ ମୂଲ୍ୟର ପନ୍ଦର ପ୍ରତିଶତ କାଟି ରଖନ୍ତି ଏବଂ ବିଜ୍ଞାପନ ଯୋଗାଡ଼ କରୁଥିବା ଏଜେଣ୍ଟମାନେ ଆଉ ଦଶ ପ୍ରତିଶତ ନିଅନ୍ତି । ଫଳରେ ପଚିଶ ପ୍ରତିଶତ ଓ ଆନୁଷଙ୍ଗିକ ଖର୍ଚ୍ଚ ଆଉ ପାଞ୍ଚରୁ ଦଶ ପ୍ରତିଶତ ବାଦ୍ ଯିବାରେ ପଞ୍ଚଷଠି ପ୍ରତିଶତ ବା ତା ଠାରୁ କମ୍ ପତ୍ରିକା ବା ସମ୍ବାଦପତ୍ର ପାଆନ୍ତି। ପେସାଦାର ବିଜ୍ଞାପନ କମ୍ପାନୀଗୁଡ଼ିକ ବମ୍ବେ, ଦିଲ୍ଲୀ, କଲିକତା ପ୍ରଭୃତି ବଡ଼ବଡ଼ ସହରରେ ଅଫିସ୍ ଖୋଲି ବସିଛନ୍ତି। ହାଇଦ୍ରାବାଦ, ବାଙ୍ଗାଲୋର, ମାନ୍ଦ୍ରାଜ, ଅହମ୍ମଦାବାଦ ପ୍ରଭୃତିଠାରେ ମଧ୍ୟ ସେମାନଙ୍କର ଅଫିସ ଅଛି। ଓଡ଼ିଶାର ବଜାର କଲିକତା, ବମ୍ବେ ଓ ଦିଲ୍ଲୀ ଉପରେ ନିର୍ଭର କରୁଥିବାରୁ ଅତି କମ୍‌ରେ ଏଇ ତିନୋଟି ସହରରେ ପତ୍ରିକାର

ପ୍ରତିନିଧି ରହିବା ଆବଶ୍ୟକ। ଏହା କେବଳ ବ୍ୟୟବହୁଳ ନୁହେଁ, ଏଇ ପ୍ରକ୍ରିୟାରେ ସାମିଲ ହେବା ପାଇଁ ବେଶ୍ କେତେଲକ୍ଷ ମୂଳଧନ ବିନିଯୋଗ କରିବାକୁ ହୁଏ, ଯଦିବା ବିଜ୍ଞାପନରୁ କେତେ ଆୟ ହେବ ତାହା ଦୁଇ ତିନିବର୍ଷରେ ମଧ୍ୟ ସ୍ଥିର ହୋଇପାରେ ନାହିଁ। ମାସିକ ଅମୃତାୟନର ବ୍ୟବସାୟ ପ୍ରତିନିଧି ତିନିଟି ସହରରେ ଏବଂ ତା ଛଡ଼ା ବାଙ୍ଗାଲୋରରେ ରଖିବା ଦ୍ୱାରା ପ୍ରଥମେ ପ୍ରୋତ୍ସାହନମୂଳକ ପ୍ରଚାର ପାଇଁ ଏବଂ ତା ପରେ ସେ ଦିଗରେ କ୍ରମାଗତ ଉଦ୍ୟମ କରିବା ପାଇଁ ପ୍ରାୟ ପାଞ୍ଚଲକ୍ଷ ଟଙ୍କା ବିନିଯୋଗ କରିବା ଆବଶ୍ୟକ। ମୋର ସାମାନ୍ୟ ସଞ୍ଚୟ ତ ଏଥିପାଇଁ ବ୍ୟୟ କରିବାକୁ ପଡ଼ିଲା, ତା ଛଡ଼ା ସାତକଡ଼ି ବାବୁଙ୍କ ଅବସର ପରେ ପାଇଥିବା କଷ୍ଟୋର୍ପାଜିତ ସଞ୍ଚୟରୁ ଅତିକମ୍‌ରେ ଚାରିଲକ୍ଷ ଟଙ୍କା ବ୍ୟୟ ହୋଇଥିଲା। ଏହା ବାଦ୍ ବାଣିଜ୍ୟିକ ବିଜ୍ଞାପନ ପାଇବା ପାଇଁ ପତ୍ରିକାର ଚାକଚକ୍ୟ ବୃଦ୍ଧି କରିବା ଓ ବିଭିନ୍ନ ବିଭାଗ ଖୋଲିବା ଆବଶ୍ୟକ ହେଲା। କେବଳ ସାହିତ୍ୟ ପତ୍ରିକା ଭାବେ ଅମୃତାୟନ ପ୍ରକାଶ ପାଇ ଆସୁଥିଲା। ତେଣୁ ଏହିଠାରୁ ପତ୍ରିକା ଉପରେ ଜଣେ ମହିଳାଙ୍କ ଛବି ଓ ପତ୍ରିକାରେ ବିଭିନ୍ନ ବିଷୟ ଅନ୍ତର୍ଭୁକ୍ତ କରିବାକୁ ନିଷ୍ପତ୍ତି ନେବାକୁ ମଧ୍ୟ ହେଲି। କିନ୍ତୁ ଓଡ଼ିଶାର ମହିଳାମାନଙ୍କ ମଧ୍ୟରୁ ଫଟୋ ଦେବା ପାଇଁ ଆଗ୍ରହ ନ ଦେଖି ବମ୍ବେ ଓ କଲିକତାରୁ ଆଣିଲି। ତା ପରେ ମୋ କଥା ଶୁଣି ବିଖ୍ୟାତ ନୃତ୍ୟଶିଳ୍ପୀ ସଂଯୁକ୍ତା ପାଣିଗ୍ରାହୀ ପ୍ରଥମେ ତାଙ୍କ ଫଟୋ ଦେଲେ ଏବଂ ତା ପରେ ଆଉ ଜଣେ ବିଖ୍ୟାତ ନୃତ୍ୟଶିଳ୍ପୀ କୁଙ୍କୁମ ମହାନ୍ତି ଫଟୋ ଦେଲେ। ଏହା ପରେ ଆଉ ବାଧା ରହିଲା ନାହିଁ, ଫଟୋ ଦେବା ପାଇଁ ପ୍ରତିଯୋଗିତା ଲାଗିଲା। ବରଂ ଅମୃତାୟନ ପ୍ରଚ୍ଛଦ ଉପରେ ସୁନ୍ଦର ମୁହଁଟିଏ ଦେଖିବା ପାଇଁ ଅପେକ୍ଷା କରନ୍ତି ଅନେକ।

*("ସବୁ ସ୍ମୃତି ମଧୁର", ପୃଷ୍ଠା ୧୩୩ – ୧୪୫)*

* * *

# ପ୍ରତିଭା ରାୟ

## (ଜନ୍ମ: ୧୯୪୪)

ପ୍ରତିଭା ରାୟ ୨୧ ଜାନୁଆରୀ ୧୯୪୪ ମସିହାରେ ଓଡ଼ିଶାର ଜଗତସିଂହପୁର ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ। ସେ ରେଭେନ୍ସା ମହାବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନ ସମ୍ମାନରେ ସ୍ନାତକ ହାସଲ କରିଥିଲେ। ପ୍ରତିଭା ୧୯୬୭ ମସିହାରେ ଯନ୍ତ୍ରୀ ଅକ୍ଷୟ ଚନ୍ଦ୍ର ରାୟଙ୍କୁ ବିବାହ କରିଥିଲେ। ୧୯୬୮ ମସିହାରେ ସେ କପିଳାସର କନ୍ୟାଶ୍ରମରେ ଏହାର ପ୍ରଧାନ ଶିକ୍ଷୟିତ୍ରୀ ଭାବରେ ଯୋଗ ଦେଇଥିଲେ। ସେ ୧୯୭୪ରେ ଶିକ୍ଷାରେ ସ୍ନାତକୋତ୍ତର ଏବଂ ୧୯୮୨ ମସିହାରେ ଡକ୍ଟରେଟ୍ ଲାଭ କରିଥିଲେ। ସେ ୧୯୯୮ ମସିହାରେ ଓଡ଼ିଶା ଜନସେବା ଆୟୋଗରେ ସଦସ୍ୟ ହେବା ପୂର୍ବରୁ ଓଡ଼ିଶାର ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଶିକ୍ଷାଦାନ କରିଥିଲେ। ସେ ଦେଶର ବିଭିନ୍ନ ସାହିତ୍ୟ ଅନୁଷ୍ଠାନର ସଦସ୍ୟ ରହିଆସିଛନ୍ତି; ସେ ମଧ୍ୟ ଜ୍ଞାନପୀଠ ଚୟନ ବୋର୍ଡ଼ର ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିଛନ୍ତି।

ପ୍ରତିଭା ରାୟଙ୍କର ପ୍ରଥମ ଉପନ୍ୟାସ "ବର୍ଷା ବସନ୍ତ ବୈଶାଖ" ୧୯୭୪ ମସିହାରେ ପ୍ରକାଶିତ ହୋଇଥିଲା। ସେବେଠୁଁ ସେ ଷାଠିଏରୁ ଅଧିକ ପୁସ୍ତକ ଲେଖିଛନ୍ତି ଯେଉଁଥିରେ ଉପନ୍ୟାସ, କ୍ଷୁଦ୍ରଗଳ୍ପ ସଂଗ୍ରହ, ଭ୍ରମଣ କାହାଣୀ ଏବଂ ଶିଶୁ ସାହିତ୍ୟ ଅନ୍ତର୍ଭୁକ୍ତ। ଓଡ଼ିଶାର ଅନ୍ୟତମ ଲୋକପ୍ରିୟ ଲେଖକମାନଙ୍କ ମଧ୍ୟରୁ ଜଣେ, ସେ ୧୯୮୫ ମସିହାରେ ତାଙ୍କ ଉପନ୍ୟାସ "ଶୀଳାପଦ୍ମ" ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଗ୍ରହଣ କରିଛନ୍ତି। ସେ ୧୯୯୦ ମସିହାରେ ଶାରଳା ପୁରସ୍କାର ଏବଂ ୧୯୯୧ ମସିହାରେ ତାଙ୍କ ଉପନ୍ୟାସ "ଯାଜ୍ଞସେନୀ" ପାଇଁ ମୂର୍ତ୍ତିଦେବୀ ପୁରସ୍କାର ପ୍ରାପ୍ତ ହୋଇଛନ୍ତି। ତାଙ୍କୁ ୨୦୦୦ ମସିହାରେ "ଉଲଂଘନ" କ୍ଷୁଦ୍ରଗଳ୍ପ ସଂଗ୍ରହ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରଦାନ କରାଯାଇଛି। ୨୦୧୧ ମସିହାରେ ଭାରତୀୟ ସାହିତ୍ୟକୁ ଅବଦାନ

ପାଇଁ  ତାଙ୍କୁ ଜ୍ଞାନପୀଠ ପୁରସ୍କାର ପ୍ରଦାନ କରାଯାଇଛି। ସେ ୨୦୧୩ ମସିହାରେ ଓଡ଼ିଶା ଲିଭିଙ୍ଗ ଲିଜେଣ୍ଡ ପୁରସ୍କାର ମଧ୍ୟ ପାଇଛନ୍ତି। ଭାରତ ସରକାର ତାଙ୍କୁ ସାହିତ୍ୟରେ ଅବଦାନ ପାଇଁ ୨୦୦୭ ମସିହାରେ ପଦ୍ମଶ୍ରୀ ଏବଂ ୨୦୨୨ ମସିହାରେ ପଦ୍ମଭୂଷଣ ପ୍ରଦାନ କରିଛନ୍ତି।

ପ୍ରତିଭା ରାୟଙ୍କ ଆତ୍ମଜୀବନୀ "ପଦ୍ମ ପତ୍ରରେ ଜୀବନ" ବହି ରୂପେ ପ୍ରକାଶିତ ହେବା ପୂର୍ବରୁ ମାସିକ ପତ୍ରିକା "ଅମୃତାୟନ"ରେ "ଅମୃତ ଅନ୍ୱେଷା" ଶୀର୍ଷକ ରୂପେ କ୍ରମିକ ହୋଇଥିଲା। ଏଠାରେ ଅନ୍ତର୍ଭୁକ୍ତ ଉଦ୍ଧୃତାଂଶ ଦୁଇଟି ତାଙ୍କ ଜୀବନର ଦୁଇଟି ସ୍ମରଣୀୟ ଘଟଣାକୁ ଚିତ୍ରଣ କରିଥାଏ। ପ୍ରଥମ ଉଦ୍ଧୃତାଂଶରେ ୧୯୫୫ ମସିହାରେ ଯେତେବେଳେ ସେ ଜଣେ ଛାତ୍ରୀ ଥିଲେ, ପ୍ରଥମ ଥର ପାଇଁ ତାଙ୍କ କବିତାକୁ ମୁଦ୍ରଣରେ ଦେଖିବାର ଅନୁଭୂତିକୁ ମନେ ପକାଇଛନ୍ତି। ଏକ ଚମତ୍କାର ବିପରୀତଧର୍ମୀ ଲେଖା ରୂପେ ଦ୍ୱିତୀୟ ଉଦ୍ଧୃତାଂଶ ତାଙ୍କ ଚାକିରି  ଫଳରେ ଘରେ ଉପୁଜୁଥିବା ବିବାଦୀୟ ପରିସ୍ଥିତି ତଥା ତାକୁ ସମାଧାନ କରିବାକୁ ଚେଷ୍ଟା କରୁଥିବାବେଳେ ସେ ସମ୍ମୁଖୀନ ହୋଇଥିବା ଦ୍ୱନ୍ଦ୍ୱକୁ ଦର୍ଶାଏ। ଏଠାରେ ବିଭିନ୍ନ ଭୂମିକା ମଧ୍ୟରେ ଛନ୍ଦି ହେଇ ସେ କିପରି ସେସବୁକୁ ତୁଲାଇଛନ୍ତି ତାହା ଦେଖିବାକୁ ମିଳେ।

## ପହିଲି ପୁଲକ

କୋମଳ କବିତାର ବୀଜଟିଏ କେଜାଣି କେଉଁଠୁ ଆସି କେଉଁ ମୁହୂର୍ତ୍ତରେ ମନୋରାଜ୍ୟରେ ଭୂମିଷ୍ଠ ହୋଇଗଲା ଆଜି ମଧ ଜାଣେନା। ବୟସ ନଅ ବା ଦଶ। କବି ହେବାର ସ୍ୱପ୍ନ ନୁହେଁ। କବିତା ହୋଇ ଲେଖି ହୋଇଯିବାର ସ୍ୱପ୍ନରେ ପ୍ରାୟ ମଗ୍ନ ହୋଇଯାଇଥିଲି ସେତେବେଳେ। ରାତି ଅଧରେ କବିତା ହିଁ ନିଦ ଭାଙ୍ଗି ଦେଉଥିଲା। ଭୋଅର ନ ହେଉଣୁ କବିତା ହିଁ ମନ ଭିତରେ ଗୁଣୁ ଗୁଣୁ ହେଉଥିଲା। ପାଠରୁ ସାମୟିକ ହୁରୁଡ଼ିଯାଇ ଏଣୁତେଣୁ ଅନାବନା କବିତାର ପଂକ୍ତି ଗାରେଇବା ଯେ ସାଧାରଣ ଛାତ୍ରୀର କର୍ତ୍ତବ୍ୟର ସୀମା ଲଂଘନ କରୁଥିଲା ଏମିତି ଏକ ଗୋପନ କୁଣ୍ଠାରେ ଜଡ଼ସଡ଼ ହୋଇ ଗୋପନ ପ୍ରେମପତ୍ର ପରି ଲୁଚେଇ ଲୁଚେଇ କବିତା ଲେଖା ହେଉଥିଲା। ମାତ୍ର ସେଗୁଡ଼ିକ କବିତା କି ନୁହେଁ, ତାହା ଜାଣିବାର ଉପାୟ ନଥିଲା। କିନ୍ତୁ ତା ବୋଲି କବିତାଠାରୁ ତ୍ରାହି ନ ଥିଲା। ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ବେଶ୍ କିଛି ପୃଷ୍ଠା କବିତା ମନେକରି ଯତିପାତ କରିବାର ପ୍ରୟାସ କରି ପଂକ୍ତି ପରେ ପଂକ୍ତି ଲେଖି ଚାଲିଲି। ଏକ ସଂଗୀତ ସାହିତ୍ୟ ପରବେଶ ଭିତରେ ବାଲ୍ୟକାଳ କଟୁଥିଲା। କିନ୍ତୁ ତା ଭିତରେ କବିତା ଲେଖିବା ଯେ ଶୃଙ୍ଖଳାଭଙ୍ଗ ନୁହେଁ ଏଇ ପ୍ରତିଶ୍ରୁତି ଓ ଭରସା କାହାଠାରୁ ମିଳିବ ବୁଝି ନଥିବାରୁ କବିତା

ଓ କୁଣ୍ଠା ହାତ ଧରା ଧରି ହୋଇ ଗୋପନ ଅଭିସାର ରଚିଥିଲେ ମୋର ଏକ ସାନ କବିତା ଖାତାରେ। ମୋର ପଞ୍ଚମ ଶ୍ରେଣୀରେ ଆମ ସ୍କୁଲର ଇତିହାସ ଶିକ୍ଷକ ଶ୍ରୀ ଅଭିଳାଷ ନାୟକଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧାଭାବ ଭିତରେ ତାଙ୍କ ଉପରେ ଭରସା କରାଯାଇପାରିବ ବୋଲି ମନରେ ବିଶ୍ୱାସ ଜନ୍ମିଥିଲା। ଦୀର୍ଘ ଦେହ, ସୌମ୍ୟ ରୂପ ଜ୍ଞାନ ଓ ଶ୍ରଦ୍ଧାର ସମନ୍ୱୟରେ ତାଙ୍କର ବ୍ୟକ୍ତିତ୍ୱ ଥିଲା ନିଦା ଓ ଗମ୍ଭୀର, ଯାହା କବିପ୍ରାଣା ବାଳିକାକୁ ପ୍ରଭାବିତ କରିଥିଲା। ତାଙ୍କୁ ଦିନେ ଭରସା କରି କହିଲି "ସାର୍, ଯଦି ବାପାଙ୍କୁ ନ କହିବେ ତେବେ ଆପଣଙ୍କୁ ଗୋଟେ କଥା କହିବି।" "ତେବେ ଘଟଣାଟି କ'ଣ ଖୋଲି କହ। ଯେତେବଡ଼ ଅପ୍ରାଧ ହେଲେ ହେଁ ତାର ଉପାୟ କରିହେବ।"

"ସାର୍! କବିତା ଲେଖିବା କ'ଣ ଅପ୍ରାଧ? ମାନେ କେହି ଯଦି ପାଠ ପଢ଼ିବା ସମୟରେ କବିତା ଲେଖା ଲେଖି କରେ ତେବେ ଆପଣ ରାଗିବେ କି ?" ସାର୍‌ଙ୍କ ମୁଖ ପ୍ରସନ୍ନ ଦିଶିଲା। କହିଲେ "ଓହୋ, ତୁ ତେବେ ବାପାଙ୍କୁ ଲୁଚେଇ କବିତା ଲେଖିଛୁ, ଖୁବ୍ ଭଲ କଥା। କିନ୍ତୁ ସାର୍ ଶୁଣିଲେ ଭାରି ଖୁସି ହେବେ। ସେ ତ ନିଜେ ସାହିତ୍ୟ ରସିକ। ତୋ ଉପରେ ରାଗିବେ କାହିଁକି?" ଭରସା ପାଇ କହିଲି, "ମୁଁ ଅନେକ କବିତା ଲେଖିଛି: ସକାଳ ହେଲା ଫଗୁଣ ଆସିଲା, ସନ୍ଧ୍ୟାରାଣୀ, ନୀଳକଇଁ, ଝରଝର ବରଷା, ଅଳକା ନଈ, ମୋ ବୋଉ, ଗରିବର ଦିଅଁ, ଅଛୁଆଁ କିଆଁ, ଟିକି ଚଢ଼େଇ, ଦୋଳଯାତରା, ଆମ୍ବ ବଉଳ, କୁହୁକୁହୁ ଇତ୍ୟାଦି।" "ଇରେ ବାପା, ଏତେ କବିତା!" ସାର୍‌ଙ୍କ ମୁଖ ମଣ୍ଡଳରେ ଆଶ୍ଚର୍ଯ୍ୟର ଚିହ୍ନ। "ମାତ୍ର ସେଗୁଡ଼ିକ ଭଲ କବିତା ନୁହେଁ। ମୋ ମନକୁ ପାଉନି। ଯେଉଁଦିନ ମୁଁ ଭଲ କବିତା ଲେଖିପାରିବି ଆପଣ ସେଦିନ ବାପାଙ୍କୁ ମୋ କବିତା ଲେଖିବା କଥା ଜଣାଇଦେବେ। ସେହିଦିନ ମଧ୍ୟ ଆପଣ ମୋ କବିତା ଦେଖିବେ।" ଅଭିଳାଷ ସାର୍ ମୋ ପିଠି ଥାପୁଡ଼େଇ କହିଲେ – "ସାବାସ୍ ତୁ ସତକୁ ସତ ପ୍ରତିଭା। ତୋ ନିଜ ଭାଷାରେ ଯେମିତି ପାରୁଛୁ ସେମିତି ଲେଖ। ହଁ ତୋ କବିତା ଗୁଡ଼ାକ ଛପାଯିବା ମଧ୍ୟ ଦରକାର। ସେତେବେଳେ ସାର୍ ତୋର କବିତା ପଢ଼ି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଖୁସି ହେବେ। ତେଣୁ ଏ କଥାଟି ମୁଁ ଗୋପନ ରଖିଲି। ମାତ୍ର ମନେରଖ କବିତା ଲେଖିବା ଆଦୌ ଅପ୍ରାଧ ନୁହେଁ।"

ମାତ୍ର ମୋ କବିତା କେମିତି ଛପାଯିବ? ସେ କାଳର ଶିଶୁ ପତ୍ରିକା ଭିତରେ ଜାତୀୟ କବି ବୀରକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ 'ମୋ ଦେଶ' ପତ୍ରିକା ବାପାଙ୍କ ପାଖକୁ ଡାକ ଯୋଗେ ଆସୁଥିଲା ଓ ମୁଁ ପଢୁଥିଲି। ମାତ୍ର ସେ ପତ୍ରିକା ଡାକ ଗୋଳମାଳ ହେଉ ଅବା ଅନ୍ୟ କୌଣସି କାରଣରୁ ହେଉ ନିୟମିତ ଯାଉନଥିଲା। ସେଥିରେ ଏକ ବିଭାଗ ଥିଲା "ଶିଶୁ ପଲଟଣ" ବିଭାଗ। ଏହି ବିଭାଗରେ ଶିଶୁ କବି, ଲେଖକଙ୍କର

ଲେଖା ବାହାରୁଥିଲା । ମାତ୍ର କେଜାଣି କାହିଁକି ଏ ବିଭାଗଟି ମତେ ବିଶେଷଭାବେ ଆକର୍ଷଣ କରିପାରିନଥିଲା । 'ଶିଶୁ' ସହ 'ପଲଟଣ' ଶବ୍ଦଟି ସମ୍ଭବତଃ ଏହି ବିଭାଗ ବିଷୟରେ ଭୁଲ୍ ଧାରଣା ସୃଷ୍ଟି କରିଥିଲା । ଆଉ ଏକ ଶିଶୁ ମନୋଲୋଭା ସାହିତ୍ୟପତ୍ର ଥିଲା ଡଃ ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ର 'ପ୍ରଜାତନ୍ତ୍ର'ର ଗୁରୁବାର ଶିଶୁ ସାହିତ୍ୟ ବିଶେଷାଙ୍କ କ୍ରୋଡ଼ପତ୍ର 'ମୀନାବଜାର' । ମୀନାବଜାର ପୃଷ୍ଠାରେ ଜହ୍ନୁରୀ ଭାଇଙ୍କ ଚିଠି, ମୀନାବଜାର ମଣି ଓ ପତ୍ରବନ୍ଧୁ ବିଭାଗ ସେତେବେଳେ ମତେ ବିଶେଷ ଆକର୍ଷିତ କରୁଥିଲା । ସେତେବେଳେ ମୀନା ବଜାର ପୃଷ୍ଠା ଥିଲା ସାମ୍ପ୍ରତିକ ପିଢ଼ିର ପ୍ରାୟ ସବୁ କବି ଲେଖକଙ୍କର ଅଙ୍କୁରୋଦ୍‌ଗମର ଆଦିଭୂମି । ଏହି ମୀନାବଜାର ଥିଲା ମୋର ଅତ୍ୟନ୍ତ ପ୍ରିୟ । ଆମ ସ୍କୁଲକୁ ସେତେବେଳେ ବାପାଙ୍କ ନାମରେ ସମାଜ, ପ୍ରଜାତନ୍ତ୍ର ଓ ଅମୃତବଜାର ପତ୍ରିକା ଆସୁଥିଲା । ବାପା ପଢ଼ିସାରିବା ପରେ ଯାଇ ସ୍କୁଲ ପିଅନ୍‌କୁ ଖୋସାମତ କରି ମୁଁ କେବେ କେବେ ମୀନାବଜାର ହାସଲ କରୁଥିଲି । ସେତେବେଳେ ଆମ ସ୍କୁଲରେ ଶ୍ରେଣୀ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ଶ୍ରେଣୀ ଗୃହର ପରିଚ୍ଛନ୍ନତା ଓ ଶୋଭା ବୃଦ୍ଧି ନିମନ୍ତେ ଛାତ୍ରଛାତ୍ରୀମାନେ ଆନ୍ତରିକ ଉଦ୍ୟମ କରୁଥିଲେ । ଭାଗ୍ୟବଶତଃ ସେହି ବର୍ଷ ସ୍ଥିର ହେଲା ଯେ ପ୍ରତି ଶ୍ରେଣୀରେ ପିଲାଏ ଚାନ୍ଦା କରି କୌଣସି ସମ୍ବାଦ ପତ୍ର ମଗାଇବେ ଓ ପିଲାମାନେ ସମ୍ବାଦ ପଢ଼ିବେ । ସେ ସମୟରେ ଖୁବ୍ କମ୍ ଲୋକଙ୍କ ଘରକୁ ଖବରକାଗଜ ମଗା ହେଉଥିଲା । ଆମ ଶ୍ରେଣୀରେ 'ପ୍ରଜାତନ୍ତ୍ର' ମଗାଯାଉ ବୋଲି ମୁଁ ମତ ଦେବାରୁ ଆମ ଶ୍ରେଣୀ ଶିକ୍ଷକ ତଥା ସାହିତ୍ୟ ଶିକ୍ଷକ ଶ୍ରୀଯୁକ୍ତ କୁଳମଣି ସ୍ୱାଇଁ ଏହି ପ୍ରସ୍ତାବରେ ଏକମତ ହେଲେ ଏବଂ ଆମ ଶ୍ରେଣୀକୁ ପ୍ରଜାତନ୍ତ୍ର ମଗାହେଲା । ମାତ୍ର ମୋ ସମସ୍ୟାର ସମାଧାନ ହେଲାନାହିଁ । ଗୁରୁବାର ପ୍ରଜାତନ୍ତ୍ର ମୋ ହାତକୁ ସର୍ବପ୍ରଥମ ଆସିଲା ନାହିଁ, ଯାହା ମୋର ପ୍ରଜାତନ୍ତ୍ର ମଗାଇବାର ଏକମାତ୍ର ଲକ୍ଷ୍ୟ ଥିଲା । ମୁଁ ବ୍ୟକ୍ତିଗତ ଭାବେ ପ୍ରଜାତନ୍ତ୍ର ମଗାଇବାର ଉପାୟ ଚିନ୍ତା କରିବାକୁ ଲାଗିଲି । ମାସକର ପ୍ରଜାତନ୍ତ୍ର ପାଇଁ ଏତେ ପଇସା କେଉଁଠୁ ଆଣିବି ? ତେଣୁ କେବଳ ଗୁରୁବାର ପ୍ରଜାତନ୍ତ୍ରଟି ମଗାଇବା ପାଇଁ ମୋ ସାନଭାଇ ଗୁଲୁକୁ ହାତ କଲି । ମାମୁଁ ଘର ମାଆ ତାକୁ ବେଶ୍ ପଇସା ଦିଏ କାରଣ ସେ ନାତି । ତାକୁ ଟଙ୍କାଟାଏ ଦେଲେ ମତେ ଦିଏ ଅଣାଏ, ତାକୁ ଫୁସୁଲା ଫୁସୁଲି କରି ବର୍ଷକର ଗୁରୁବାର ପ୍ରଜାତନ୍ତ୍ର ମଗାଇବାର ପଇସା ହାତ ପଇଠ କଲି । ଦିନେ ଖରାଏ ଖରାଏ ଗୁଲୁ ଓ ମୁଁ ମାଛଗାଁ କେନାଲ୍‌ର ଦଦରା କାଠପୋଲ ପାରିହୋଇ ନାଳ ସେପାରି ପୋଷ୍ଟ ଅଫିସ୍‌ରେ ପହଞ୍ଚିଲୁ । ଟଙ୍କା ପଠାଇବା ପାଇଁ ମନିଅର୍ଡ଼ର ଫର୍ମ ପୂରଣ କରିବାକୁ ପଡ଼େ ବୋଲି ଜଣାନଥିବାରୁ ଦୁହେଁ ବଡ଼ ଅଡୁଆରେ ପଡ଼ିଲୁ । ମୋର ଷଷ୍ଠ ଶ୍ରେଣୀ ଓ ତାର ଚତୁର୍ଥ ଶ୍ରେଣୀ । ଫର୍ମ ପୂରଣ କରିବ କିଏ ? ଟଙ୍କା ପଠାଇବା ଆଉ ଦିନଟିଏ ମଧ୍ୟ ବିଳମ୍ବ ହେବାପାଇଁ ମୋର ଧୈର୍ଯ୍ୟ ନଥାଏ । ଗୁଲୁ ବି ଯେକୌଣସି ମୁହୂର୍ତ୍ତରେ ତା ପଇସା

ନେଇଯିବାର ଆଶଙ୍କା ଥାଏ। ଗୁଲୁକୁ ସେଠାରେ ଅପେକ୍ଷା କରିବାକୁ କହି ମୁଁ ମନିଅର୍ଡ଼ର ଫର୍ମ ଧରି ସ୍କୁଲ ଦିଗରେ ଦଉଡ଼ିବାକୁ ଲାଗିଲି। ନଚେତ୍ ବସ୍ ଚାଲିଗଲେ ସେଦିନର ଡାକରେ ଟଙ୍କା ଯାଇପାରିନଥାନ୍ତା। କାଠ ପୋଲ ରାସ୍ତା ଟିକେ ବୁଲାଣି। ପୋଷ୍ଟ ଅଫିସ ଠାରୁ ବିଲେ ବିଲେ ଦଉଡ଼ି ନାଳ ଭିତରେ ପଶି ପାରି ହୋଇଗଲେ ଖୁବ୍ କମ୍ ସମୟରେ ସ୍କୁଲ ଗେଟ୍ ସାମ୍ନାରେ ନାକ ସଳଖେ ପହଞ୍ଚିହେବ। ଖରାଦିନ କୋନାଲରେ ପାଣି ଖୁବ୍ କମ୍। ଲୋକେ କେନାଲ୍‌ରେ ପଶି ନାଳ ପାରି ହୋଇଯାନ୍ତି। ମୁଁ ମଧ୍ୟ ଫର୍ମଟି ଧରି ନାଳରେ ପଶିଲି। ପାଣି ଧୀରେ ଧୀରେ ମୋର ଅଣ୍ଟା ଓ ଛାତି ଟପିଲା। ବଡ଼ ଲୋକମାନଙ୍କୁ ଆଣ୍ଠୁଏ ପାଣି ଯେ ମୋର ବେକେ ପାଣି ହେବ ସେତିକି ଗଣିତ କବିତା ନିଶା ପାଖରେ ହାର ମାନିଥାଏ। କିନ୍ତୁ ଆଉ ଫେରିବାର ପ୍ରଶ୍ନ ମଧ୍ୟ ନ ଥାଏ। ଫର୍ମଟିକୁ ହାତରେ ଧରି ମୁଣ୍ଡ ଉପରକୁ ଟେକି ଧରି ବେକ ପର୍ଯ୍ୟନ୍ତ ପାଣିରେ ପଶି ଗୋଟାସୁଦ୍ଧା ତିନ୍ତି ବୁଡ଼ି ପହଞ୍ଚିଲି ସ୍କୁଲ ପରିସରରେ। ସକାଳୁଆ ସ୍କୁଲ ପରିସର ଶୂନ୍‌ଶାନ୍, କୁଳମଣି ସାର୍ ଅଫିସ୍‌କୁ ଲାଗି ଗୋଟିଏ ରୁମ୍‌ରେ ରହୁଥାନ୍ତି ଏକା ଏକା। ଭିତରୁ କବାଟ୍ ବନ୍ଦ ଥିଲା। ସାର୍‌ଙ୍କ ପ୍ରତି ଡରଭୟ ଭୁଲି କବାଟରେ ଅଧର୍ଯ୍ୟ କରାଘାତ କରିଚାଲିଲି। ସାର୍ ଧଡ଼ପଡ଼ ହୋଇ ନିଦ ମଳମଳ ଆଖିରେ କବାଟ ଖୋଲି ଓଦା ସରସର ମତେ ଦେଖି ତାଟକା ହୋଇଗଲେ। କ'ଣ ହେଲା ? ପାଣିରେ ପଡ଼ିଗଲୁ କେମିତି ? କେଉଁଠି ? କିଏ ପେଲିଦେଲା ? ଏସବୁ ପ୍ରଶ୍ନର ଉତ୍ତର ନଦେଇ ଆତୁରିଆ ସ୍ୱରରେ କହିଲି- "ସାର୍ ଡାକ ଚାଲିଯିବ। ଶୀଘ୍ର ଏ ଫର୍ମ ଟିକେ ପୂରଣ କରିଦିଅନ୍ତୁ। ମୁଁ ସବୁ କଥା ପରେ କହିବି। ନାଳରେ ପଶି ଆସିଛି କେବଳ ଆଜି ଡାକରେ ମୀନାବଜାରକୁ ଟଙ୍କା ପଠାଇବା ପାଇଁ।" ସାର୍ ମୋ ଉତ୍କଣ୍ଠା ବୁଝିପାରିଲେ। ତରତର ହୋଇ ଫର୍ମଟି ପୂରଣ କରିଦେଇ କ'ଣ ପଚାରିବାକୁ ଯାଉଛନ୍ତି ମୁଁ ତାଙ୍କ ହାତରୁ ଫର୍ମଟି ଚିଲପରି ଝିଙ୍କି ନେଇ ବୁଲିପଡ଼ି ଚିରାମାରି ଦଉଡ଼ିଲି ନାଳବନ୍ଧ ଦିଗରେ। ସାର୍ ପାଟିକରି କହୁଥିଲେ- "ହଉ କାଲି ସ୍କୁଲକୁ ଆ। ତୋ ଅବାଧ୍ୟ ପଣିଆ ଛଡ଼ାଉଛି। କିନ୍ତୁ ଆଉଥରେ ନାଳରେ ପଶିଯିବୁ ନାହିଁ। ଗୋଡ଼ ଖସିଗଲେ ମୂଳରୁ ଯିବୁ...।" ଏଣିକି ପ୍ରଜାତନ୍ତ୍ରକୁ ନିୟମିତ କବିତା ପଠାଇଲି ଓ ଗୁରୁବାର ପ୍ରଜାତନ୍ତ୍ର ଶୁକ୍ରବାର ଦିନ ନିୟମିତ ମୋ ହାତକୁ ଆସିଲା। ମାତ୍ର ମୋର କବିତା ଛପା ଅକ୍ଷରରେ ଦେଖିବାର ଭାଗ୍ୟ ଉଦୟ ହେଲାନାହିଁ। ଗୁରୁବାର ରାତିରେ ଆଖିରେ ନିଦ ନଥାଏ – ଯେତେବେଳେ ନିଦ ଆସେ ମୀନାବଜାର ପୃଷ୍ଠାରେ ନିଜ କବିତା ନିଜେ ପଢୁ ପଢୁ ସପନ ତୁଟେ – ସକାଳ ହୁଏ ଡାକ ଆସେ – ମୀନାବଜାର ହାତକୁ ଆସେ। ପରୀକ୍ଷା ଫଳ ଦେଖିବା ପରି ଦାଉଁ ଦାଉଁ ପଡୁଥିବା ଛାତି ଓ ଥର ଥର ହାତନେଇ କ୍ରୋଡ଼ପତ୍ର ଖୋଲି ଏ ମୁଣ୍ଡ ସେ ମୁଣ୍ଡ ଦେଖି ନିରାଶ ହୋଇଯାଏ। ଆମ ସାହିତ୍ୟ ବହିରେ ପଢ଼ାଯାଉଥିବା କବିତାରେ ଆମେ ନ ବୁଝି ପାରୁଥିବା କଷ୍ଟ ଶବ୍ଦ ପରି

କଷ୍ଟ ଶବ୍ଦ ରହି କବିତା ଲେଖିଲେ ମୀନାବଜାରରେ ଅଲବତ ବାହାରିବ ବୋଲି ମନେ ହେଲା। ଘରେ ଥିବା ଓଡ଼ିଆ ଅଭିଧାନଟିଏ ଧରିଲି। କବିତାରେ ମୁଁ ପ୍ରାୟ ବ୍ୟବହାର କରୁଥିବା ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ପୃଥ୍ୱୀ, ପବନ ଇତ୍ୟାଦି ଶବ୍ଦମାନଙ୍କର କେତେକ କଠିନ ପ୍ରତିଶବ୍ଦ ଯଥା ଅର୍କ, ସୁଧାଂଶୁ, ବ୍ୟୋମ, ମହା, ଦ୍ରୁମ, ବଲ୍ଲି ଇତ୍ୟାଦି ଅଭିଧାନ ଦେଖି ତାଲିକା କଲି। କବିତାଟି ଲେଖିବା ପୂର୍ବରୁ ଶୀର୍ଷକଟି ଦେଲି 'ଅଭିଶପ୍ତା'। କବିତାଟି ପଠାଇ ଦେଲି ମୀନାବଜାରକୁ। ସ୍ଥିର ନିଶ୍ଚିତ ଥିଲି ଯେ ଆସନ୍ତା ସଂଖ୍ୟାରେ କବିତାଟି ନିଶ୍ଚୟ ପ୍ରକାଶ ପାଇବ। ସେଭଳି ଏକ କଷ୍ଟ ଶବ୍ଦ ସମ୍ବଳିତ କବିତା ମୀନାବଜାର ପତ୍ରିକାରେ ନ ବାହାରିବାର କୌଣସି କାରଣ ନ ଥିଲା ବୋଲି ମୁଁ ଦୃଢ଼ବିଶ୍ୱାସ ରଖିଥିଲି। ଅଭିଲାଷ ସାର୍‌ଙ୍କୁ କହିଦେଇଥିଲି ଯେ ଆସନ୍ତା ଗୁରୁବାର ମୀନାବଜାରରେ 'ଅଭିଶପ୍ତା' କବିତାଟି ପ୍ରକାଶ ପାଇବ। କିନ୍ତୁ ସେହି ଗୁରୁବାରଟି ଥିଲା ମୋ ପାଇଁ ଅଭିଶପ୍ତ ଗୁରୁବାର। ଶ୍ରେଷ୍ଠ କବିତା ମନେ କରୁଥିବା 'ଅଭିଶପ୍ତା' କବିତାଟି ପ୍ରକାଶ ପାଇ ନ ଥିଲା। ନୈରାଶ୍ୟରେ ଭାଙ୍ଗିପଡ଼ି ଅଭିଲାଷ ସାର୍‌ଙ୍କୁ କହିଲି-

"ସାର୍ ମୋ ଲେଖାଗୁଡ଼ିକ କବିତା ନୁହେଁ। ସହଜ କବିତା ପ୍ରକାଶ ପାଇଲା ନାହିଁ ଓ ଓଡ଼ିଆ ଡିକ୍ସନାରୀ ଦେଖି କଷ୍ଟ ଶବ୍ଦ ସମ୍ବଳିତ କବିତା ଲେଖି ପଠାଇଲି, ତା ମଧ୍ୟ ପ୍ରକାଶ ପାଇଲା ନାହିଁ। ମୋ ଦ୍ୱାରା ଆଉ କବିତା ହେବ ନାହିଁ।" ସାର୍ ସ୍ନେହାର୍ଦ୍ର ସ୍ୱରରେ କହିଲେ- ତୁ ଶହେଟି କବିତା ଗଣି ଗଣି ମୀନାବଜାରକୁ ପଠା। ତା ପରେ ଯଦି କବିତା ପ୍ରକାଶ ନ ପାଇବ, ତେବେ କହିବୁ ଯେ ତୋ ଦ୍ୱାରା କବିତା ହେବନାହିଁ। ରାତାରାତି କେହି କବି ପାଲଟିଯାଏ ନାହିଁ। ହଁ ଡିକ୍ସନାରୀ ଦେଖି କବିତା ଲେଖାଯାଏନି। ମନ ଭିତରୁ ନିଜ ଭାଷାରେ ଯେଉଁ କବିତା ଲେଖାଯାଏ, ତାହାହିଁ ଭଲ କବିତା ଭାବରେ ସମସ୍ତଙ୍କ ମନକୁ ଛୁଏଁ, ତତେ କିଏ କହିଲା ଡିକ୍ସନାରୀ ଦେଖି କବିତା ଲେଖିବା ପାଇଁ। ମୋର ବିଶ୍ୱାସ ତୋ କବିତା ନିଶ୍ଚୟ ବାହାରିବ। ସେଥିପାଇଁ କିନ୍ତୁ ଧୈର୍ଯ୍ୟ ଓ ସାଧନା ଦରକାର।

ଅଭିଲାଷ ସାର୍‌ଙ୍କ କଥା ବେଦର ଗାର ପରି ମାନିନେଲି। ଏ ଭିତରେ କବିତା ଯୋଗରେ ପଞ୍ଚମ, ଷଷ୍ଠ ଶ୍ରେଣୀ ପାର ହୋଇଗଲାଣି। ୧୯୫୫ ମସିହା, ସପ୍ତମ ଶ୍ରେଣୀରେ ପଢୁଥାଏ, ଆମର ଶ୍ରେଣୀ ଶିକ୍ଷକ ଥାନ୍ତି ଶ୍ରୀ ନରୋତ୍ତମ ମହାନ୍ତି, ଆଜି ସ୍ୱର୍ଗପୁରରେ। ସାର୍ ବଡ଼ ସ୍ନେହୀ, ପୁଣି ବଡ଼ ନୀତି ନିୟମ, ଶୃଙ୍ଖଳାବଦ୍ଧ। ତେଣୁ ସାର୍‌ଙ୍କ ପ୍ରତି ଭକ୍ତି ଯେତିକି ଭୟ ତାଠୁ ବେଶି। ସେଦିନ ଶୁକ୍ରବାର ଡାକରେ ପ୍ରଜାତନ୍ତ୍ର ଆସି ପହଞ୍ଚିଲା ମୋ ନାମରେ। ସାର୍ ମୀନାବଜାର ପୃଷ୍ଠା ଖୋଲି ଦେଇ ଆଖି ପକାଇଲେ। ମୋର ଛାତି ଦାଉଁ ଦାଉଁ ପଢୁଥାଏ - ସତେବା ପରୀକ୍ଷା ଫଳ ମୁହୂର୍ତ୍ତକେ ଘୋଷିତ

ହୋଇଯିବ। ପାସ୍ ନଚେତ୍ ଫେଲ୍। ଅକସ୍ମାତ୍ ସାର୍ ମୋ ଆଡ଼କୁ ଚାହିଁ କହିଲେ– "ଏଇଟା କିଏରେ ? କୁମାରୀ ପ୍ରତିଭା ଦାସ, ବାଲିକୁଦ ହାଇସ୍କୁଲ! ମାନେ ତୁ ଏ କବିତା ଲେଖିଛୁ ?" ଏତିକି ଶୁଣିବା ମାତ୍ରେ ମୁଁ ଆନନ୍ଦରେ ଏପରି ବିହ୍ୱଳ ହୋଇପଡ଼ିଲି ଯେ ଭୁଲିଗଲି ଯେ ମୁଁ ଶ୍ରେଣୀ ଗୃହରେ ଅଛି। ପୁଣି ଭୁଲିଗଲି ଯେ କଠୋର ଅନୁଶାସନବ୍ରତୀ ଶିକ୍ଷକ ନରୋତ୍ତମ ସାର୍ କାଗଜଟିରୁ ମୋ କବିତା ପଢ଼ିବାକୁ ଆରମ୍ଭ କରିଛନ୍ତି। ସିଟ୍‌ରୁ ଉଠି ସାର୍‌ଙ୍କ ହାତରୁ ମୀନାବଜାର କାଗଜଟି ଝାମ୍ପି ନେଇ ଚିଲ ବେଗରେ କ୍ଲାସ୍ ଛାଡ଼ି ଦଉଡ଼ିଲି ସ୍କୁଲ ପୋଖରୀବନ୍ଧ ଉପରେ ପଡ଼ିଆ ଦେଇ ପ୍ରଧାନ ଶିକ୍ଷକ ବାପାଙ୍କ ଅଫିସ୍‌କୁ। ବାପା ଅଫିସ୍‌ରେ ଥିଲେ। ଆଉ କେତେଜଣ ସାର୍ ମଧ୍ୟ ବସିଥିଲେ। ମୁଁ ଅଫିସ୍‌ରେ ପଶିଯାଇ ଅଣନିଃଶ୍ୱାସୀ ହୋଇ ଗଦ୍‌ଗଦେଇ ଉଠିଲି, 'ବାପା! ଦେଖ ମୋର କବିତା ମୀନବଜାରରେ ବାହାରିଛି।' ବାପା କାଗଜଟି ମୋ ହାତରୁ ନେଇ ଚଷମାଦିଆ ବାମ ଆଖିକୁ ଅଳ୍ପ କୁଞ୍ଚେଇ କବିତାଟି ଏକା ନିଃଶ୍ୱାସକେ ପଢ଼ିଗଲେ ଏବଂ ଉଚ୍ଛ୍ୱସିତ କଣ୍ଠରେ ଘୋଷଣା କଲେ 'ପୂର୍ଣ୍ଣବାବୁ, ଭାସ୍କରବାବୁ, ବାସୁବାବୁ, କୁଳମଣି ଦେଖନ୍ତୁ ଆସି ଏ କାଗଜ। ମୋ ଝିଅ କବି ହୋଇଗଲା।'

ସେତିକି ବେଳେ ବାପାଙ୍କର ଅନ୍ତରଙ୍ଗ ବନ୍ଧୁ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ହରି ବିଶ୍ୱାଳ ଆସି ପହଞ୍ଚିଲେ – ବାପାଙ୍କର ସେଇ ଗୋଟିଏ ଉଦ୍‌ଘୋଷ। 'ହରିବାବୁ ଦେଖନ୍ତୁ ମୋ ଝିଅ କବି ହୋଇଗଲା।' ଯାହାକୁ ଦେଖିଲେ ବାପା କହି ଚାଲିଲେ ସେଇ ଗୋଟିଏ କଥା।

ମୀନାବଜାର ପୃଷ୍ଠାରେ ମୋ କବି ହେବାର ଲିଖିତ ସ୍ୱୀକୃତି ସହ ମୋ ବାପା, ଯାହାଙ୍କୁ ମୁଁ ସବୁଦିଗରୁ ଗୁରୁ ମଣି ଆସିଛି ତାଙ୍କର ଉଦାତ୍ତ ଉଦ୍‌ଘୋଷ ଓ ଅକୁଣ୍ଠିତ ସ୍ୱୀକୃତି ମତେ ସେହି ମୁହୂର୍ତ୍ତରେ କବିତ୍ୱର ଶ୍ରେଷ୍ଠ ସ୍ୱୀକୃତି ଓ ପୁରସ୍କାର ଦେଇଥିଲା। ତାହା ଥିଲା ମୋ ଲେଖକ ଜୀବନର ଶ୍ରେଷ୍ଠ ସାରସ୍ୱତ ଆନନ୍ଦ। ସୃଜନ ସ୍ୱୀକୃତିର ସେହି ପହିଲି ଆନନ୍ଦ ପରବର୍ତ୍ତୀ ଜୀବନର ଅନେକ ସାରସ୍ୱତ ସ୍ୱୀକୃତି ଆନନ୍ଦଠାରୁ ବହୁ ଊର୍ଦ୍ଧ୍ୱରେ ଥିଲା। ସେ ଆନନ୍ଦ ସହ ଆଉ କୌଣସି ଆନନ୍ଦ ତୁଳନୀୟ ନୁହେଁ। ମୋ ଲେଖିକା ହେବାର ଶ୍ରେୟ ଅନେକଙ୍କର ପ୍ରାପ୍ୟ ହେଲେ ମଧ୍ୟ ସର୍ବାଗ୍ରେ ରହିବେ ପୂଜ୍ୟବର ଡଃ ହରେକୃଷ୍ଣ ମହତାବ ଓ ମୋର ପ୍ରିୟତମ ମୀନାବଜାର।

## ଅଭୁଲା କ୍ଷତଚିହ୍ନ

ଦୁଇବର୍ଷ, ଏକବର୍ଷ ଏବଂ ମାସକର ତିନିଟି ପିଲାଙ୍କୁ ଧରି ମୁଁ କଟକରୁ କପିଳାସ କନ୍ୟାଶ୍ରମକୁ ଆସିଲି। କିନ୍ତୁ ମନରେ ଆଉ ପୂର୍ବ ଉତ୍ସାହ ନଥାଏ। ମନ ଭିତରେ

'ସର୍ପଭୟ' ଭୂତ ଭଳି ଡରାଉଥାଏ। ସାନ ପୁଅ ଜନ୍ମହେବା ପୂର୍ବରୁ ମୁଁ କପିଳାସରୁ କଟକ ଆସିବା ପାଇଁ ପ୍ରସ୍ତୁତ ହେଉଥାଏ। ଘଟଣାଟି ଘଟିଥିଲା। ମୋର ପ୍ରସବ ପୂର୍ବ ସମୟ। ଶରୀର ଅତ୍ୟନ୍ତ ଦୁର୍ବଳ। ଉଠିବସି ପାରୁ ନ ଥାଏ। ଶୋଇବା ଘର ଖଟ ଉପରେ ପିଲାମାନେ ଶୋଇଥାନ୍ତି। ମୋ ସାନଭଉଣୀ ଓ ମୁଁ ସେହି ଘରେ ତଳେ ଖାଇ ବସିଥାଉ। ମୋ ସାନ ଭଉଣୀ ଓ ବଡ଼ଅପାର ପାଞ୍ଚବର୍ଷର ପୁଅ ମୋ ପାଖକୁ ଯାଇଥାନ୍ତି। ପାଖ କୋଠରିର ଦ୍ୱାର ଖୋଲାଥାଏ। ଏତିକିବେଳେ ସେ କୋଠରିରୁ ଫଁ ଫଁ ଶବ୍ଦ ଶୁଭିଲା। ସେହି ଘରର ଏକ କୋଣରେ ପଡ଼ିଥିବା ଖଟ ଉପରେ କୁକୁଡ଼ାଟିଏ ଅଣ୍ଡା ଉଷୁମୋଉଥାଏ। ଶବ୍ଦଟା ପୂରା ଭୂଆ ବିରାଡ଼ିର ଗର୍ଜନ ଭଳି ଶୁଭୁଥାଏ। ସେତେବେଳେ ମୋଚିରାମର ସାନପୁଅ ମୋ ଘରେ ଥାଏ। ମୋ ପିଲାଙ୍କ ସହ ଖେଳେ ଓ ଖାଇପିଇ ବାପା ପାଖରେ ତା କ୍ୱାର୍ଟରରେ ଶୁଏ। ସେ ପିଲାଟି ସେହି କୋଠରିର ବାରଣ୍ଡାରେ ବସି ଖାଉଥିଲା। ମୋଚିରାମ ଅଗଣାରେ ବସିଥିଲା। ଶବ୍ଦ ଶୁଣି ଟର୍ଚ୍ଚ ମାରିଦେବାରୁ ଦେଖିଲା ବିରାଟ ଗୋଖର ଅଣ୍ଟାଏ ଉଚ୍ଚରେ ଠିଆ ହୋଇ କୁକୁଡ଼ା ପେଟିକୁ ଚୋଟ ମାରୁଛି। "ସାପ, ସାପ" ପାଟି କରି ସେ ଅଗଣାପଟ କବାଟ ବନ୍ଦ କରିଦେଲା। ମୋ ଶୋଇବା ଘରେ ପଶି ଭିତରପଟକୁ ଖୋଲାଥିବା କବାଟ ବି ବନ୍ଦ କରିଦେଲା। ମାତ୍ର କବାଟ ପଟା ଗୁଡ଼ିକ ଏପରି ଟୋଲକି ରହିଥାଏ ଯେ ନିର୍ଦ୍ୱନ୍ଦ୍ୱରେ ଲମ୍ବଜନ୍ତୁ ଆମ କୋଠରିକୁ ଆସିପାରନ୍ତା। ମୁଁ ବସିବା ସ୍ଥାନରୁ ଉଠିପାରୁ ନଥାଏ। ବଡ଼ କଷ୍ଟରେ ଭଉଣୀର ସହାୟତାରେ ଖଟ ଉପରକୁ ଉଠିଗଲି। ସେ ମଧ୍ୟ ଖଟ ଉପରକୁ ଉଠିଗଲା। ମଶାରି ଖୁଞ୍ଚିଦେଇ ଚନ୍ଦ୍ରଶେଖରଙ୍କୁ ଧ୍ୟାନ କଲୁ। ମୋଚିରାମ ପୁଅକୁ କାଖେଇ ବାହାରକୁ ପଳାଇଲା ଓ ଅନ୍ୟ ପିଅନମାନଙ୍କୁ ଡାକି ଆଣିଲା। ଠେଙ୍ଗା, ଶାବଳ ଆଦି ଧରି ସମସ୍ତେ ଆସିଗଲେ। ସେତେବେଳକୁ ଜନ୍ତୁଟି ଅଧା ପଶିଗଲାଣି ଭଙ୍ଗା ଚଟାଣର ଗାତରେ। ବହୁକଷ୍ଟରେ ଜନ୍ତୁଟି ମରାଗଲା ଓ ଗାତରୁ ଟାଣି ବାହାର କରାଗଲା। ଏତେ ବିଶାଳ ସର୍ପ ମୁଁ ଏଯାବତ୍ ଦେଖି ନାହିଁ। ତା ପରଦିନ ମୁଁ ଛୁଆଙ୍କୁ ନେଇ ମ୍ୟାଟରନିଟି ଛୁଟିରେ କଟକ ପଳାଇଗଲି। ମାତ୍ର ଛୁଟି ଶେଷ ହେବାରୁ ସେହି କ୍ୱାର୍ଟରକୁ ଆସିବାକୁ ପଡ଼ିଲା। ସେତେବେଳକୁ ନାନାପ୍ରକାର କନ୍ୟାଶ୍ରମ ସମସ୍ୟା ମୋର ମସ୍ତିଷ୍କକୁ ଭାରାକ୍ରାନ୍ତ କରି ରଖୁଥାଏ। ଛୁଟିରୁ ଫେରି କନ୍ୟାଶ୍ରମ ଗେଟ୍ ଭିତରେ ପଶିବା ମାତ୍ରେ ମୁଣ୍ଡ ଭାରି ହୋଇଯାଏ। ଯା ହେଉ ଅନେକ ଶୃଙ୍ଖଳା ବି ଆସି ସାରିଥାଏ। କନ୍ୟାଶ୍ରମ ଚାକିରିରେ ଗତ ଚାରିବର୍ଷ ଧରି ଏକ ବ୍ୟକ୍ତିଗତ ସମସ୍ୟା ମତେ ଭାରାକ୍ରାନ୍ତ କରି ରଖିଥାଏ। ସେହି କାରଣରୁ ମୁଁ ଚାରିବର୍ଷ ଭିତରେ ଅତି କମ୍ ଦଶ ବାର ଥର ଇସ୍ତଫା ପତ୍ର ମଧ୍ୟ ଲେଖିସାରି ପୁଣି ଚିରିଥାଏ। କାରଣଟି ହେଲା ମୋ ସ୍ୱାମୀଙ୍କର ସ୍ତ୍ରୀ ଉପରେ ଏକାଧିପତ୍ୟ ଅଧିକାରର ମନୋଭାବ ବା ଅତିରିକ୍ତ ପଜେସିଭ୍‌ନେସ୍। ସେ ସ୍କୁଲର

ସମସ୍ତେ ମାଲିକ ବୋଲି ଆଗରୁ ଲେଖିଛି। ଛୁଟିଦିନମାନଙ୍କରେ ମୋ ସ୍ୱାମୀ ଆସନ୍ତି ଓ ବିଶିଷ୍ଟ ଅତିଥିମାନେ କପିଳାସ ମହାପ୍ରଭୁଙ୍କ ଦର୍ଶନରେ ଆସି କପିଳାସ ସ୍କୁଲ ପରିଦର୍ଶନରେ ମାଡ଼ି ଆସନ୍ତି। ସମୟ ଅସମୟ କିଛି ନଥାଏ। ଅତିଥି ଆସିବା ମାତ୍ରେ ମୁଁ ସଙ୍ଗେ ସଙ୍ଗେ ଅଫିସ୍ ଖୋଲାକରେ ଓ ନିଜେ ଘରୁ ପଳାଇ ଆସି ଅତିଥିଙ୍କୁ ଦର୍ଶନ କରେ। ସେମାନେ ଅଫିସ୍‌ରୁ ନଯିବା ପର୍ଯ୍ୟନ୍ତ ମୁଁ କ୍ୱାର୍ଟରକୁ ଫେରିପାରେ ନାହିଁ। ମୋର ଯେ ଚାକିରି ଏହିପରି ମୋ ସ୍ୱାମୀ ବୁଝନ୍ତି ନାହିଁ କି ମୋର ଯେ ଘରସଂସାର ଅଛି ତାହା ଅଫିସର୍‌ମାନେ ବୁଝନ୍ତି ନାହିଁ। ଅଫିସରମାନଙ୍କୁ ବିଦାୟ ଦେଇ ଘରକୁ ଆସିବା ବେଳକୁ ମୋ ସ୍ୱାମୀଙ୍କର ରୁଦ୍ରଅବତାର ଦର୍ଶନ କରିବାକୁ ପଡ଼େ। ଶୁଣିବାକୁ ଯେ ଚାକିରି କରିବାର ବଡ଼ ଆକର୍ଷଣ ହେଉଛି ଅଫିସରମାନଙ୍କ ଦର୍ଶନ। କି ଚାକିରି, କି ଦରମା ଯେ ଜଙ୍ଗଲ ଭିତରେ ଆସି ଚାକିରି କରାହେଉଛି ! କାହାର ଚାକିରି ଲୋଡ଼ା ? କିଏ ଖାତିର କରେ ଏ ଦରମା ଓ ଚାକିରିକୁ? ବେଳେ ବେଳେ ଖିଆପିଆ ବି ବନ୍ଦ ହୁଏ। ମୁଁ କୌଣସି ଯୁକ୍ତିତର୍କ ନ କରି ସଙ୍ଗେ ସଙ୍ଗେ ଏକ ଇସ୍ତଫାପତ୍ର ଲେଖେ। ହାଡ଼ିବଂଧୁକୁ ଡାକି ଦେଇଦିଏ। ତା ପରଦିନ ଢେଙ୍କାନାଳ ଅଫିସ୍‌କୁ ଦେଇ ଆସିବା ପାଇଁ ନିର୍ଦ୍ଦେଶ ଦିଏ। ସେତେବେଳେ ବାସ୍ତବରେ ମୋର ଚାକିରିରୁ ମୋହ ତୁଟିଯାଏ। ବଡ଼ ବ୍ୟତିବ୍ୟସ୍ତ ଲାଗେ। ତିନି ପିଲା, ସ୍କୁଲଛାତ୍ରୀ, ପିଅନ, ଶିକ୍ଷୟିତ୍ରୀ ଓ ତା ସାଙ୍ଗକୁ ଜନ୍ତୁ, ରୋଗ ବ୍ୟାଧି, ମିଶିମାଶି ଗୋଟାଏ ଚକ୍ରବ୍ୟୁହ ଭଳି ମନେ ହୁଏ। ମୋ ସ୍ୱାମୀଙ୍କର ରାଗ ଶାନ୍ତ ହେଲେ ସେ ହାଡ଼ିବଂଧୁଠାରୁ ଇସ୍ତଫାପତ୍ର ଫେରାଇଆଣି ଚିରି ଦେଉଥିଲେ। ମୋ ଚାକିରିଟାକୁ ସେ ଆଦୌ ଚାକିରିରେ ଗଣା କରୁନଥିଲେ। ସେ ମୋଟ ଉପରେ ଚାକିରି କରିଥିବା ସ୍ତ୍ରୀ ଚାହୁଁନଥିଲେ। ମୋ ବଡ଼ ଦେଢ଼ଶୁର ସେପରି ଦୃଢ଼ମନା ବ୍ୟକ୍ତି ନ ହୋଇଥିଲେ ମୁଁ ଅନ୍ୟ ଦୁଇ ଯାଆଙ୍କ ଭଳି ଖାଇ, ପିନ୍ଧି, ଗହଣାରେ ଦିଲ୍ ଭାରି କରି ପ୍ରତିବର୍ଷ ପିଲାଜନ୍ମ କରି ପ୍ରସବ ମେସିନ୍‌ରେ ପରିଣତ ହୋଇଥାନ୍ତି। ବାସ୍ତବରେ ମୋ ଯାଆମାନେ ତ ରାଣୀ ଭଳି ଅୟସରେ ଥିଲେ। ଗୋଡ଼ ପାଖକୁ ଲୋକ ଖଂଜା। ପାଣି ଗ୍ଲାସ୍‌ଟିଏ ଗଡ଼ାଇ ପିଉନଥିଲେ। ଭାତ ବାଢ଼ି ଖାଉନଥିଲେ। ମୁଁ ତ ଥିଲି ଦିନ ମଜୁରିଆଣୀ କର୍ମଜୀବୀ ମହିଳାଟିଏ। ସାରାଜୀବନ ଘରେ, ବାହାରେ ଖଟିଛି। ଇଞ୍ଜିନିୟର ସ୍ୱାମୀଙ୍କ କ୍ୱାର୍ଟରରେ କେବେହେଲେ ରହି ଆରାମ କରିନାହିଁ। ଢେଙ୍କାନାଳରେ ଖୁବ୍ କମ୍ ଦିନ ଥିଲି ୟାଙ୍କ କ୍ୱାର୍ଟରରେ। ସେତେବେଳେ ଚାକିରି ପାଇଁ ଓ ପୋଷ୍ଟଗ୍ରାଜୁଏଟ୍ ପଢ଼ା ପାଇଁ ବସ୍‌ରେ ଯିବା ଆସିବା କରିବାରେ ଦିନ ଯାଉଥିଲା।

ତୃତୀୟ ସନ୍ତାନ ଜନ୍ମପରେ ୟାଙ୍କର ପଦୋନ୍ନତି ହେଲା। ଜୁନିୟର ଇଂଜିନିୟରରୁ ସେ ହେଲେ ଆସିଷ୍ଟାଣ୍ଟ ଇଂଜିନିୟର। ଢେଙ୍କାନାଳରେ ରହିବେ ବୋଲି

ଡେପୁଟେସନ୍‌ରେ ରୁରାଲ ଇଞ୍ଜିନିୟରିଂ ଅର୍ଗାନାଇଜେସନ୍‌କୁ (ଆର.ଇ.ଓ)କୁ ଯାଇ ଢେଙ୍କାନାଳ କ୍ୱାର୍ଟରରେ ରହିଲେ। ଏହି କ୍ୱାର୍ଟରଟି ଢେଙ୍କାନାଳ ବସ୍‌ଷ୍ଟାଣ୍ଡର ବିପରୀତ ଦିଗରେ ଥିଲା। ଏହା ଥିଲା ଯାଙ୍କ କ୍ୱାର୍ଟରରେ ପିଲାଙ୍କୁ ନେଇ ରହିବାର ପ୍ରଥମ ଓ ଶେଷ ସୁଯୋଗ। ଯା ପରେ ମୁଁ କଟକ ଘରେ ପିଲାଙ୍କୁ ନେଇ ରହିଲି ଓ ସେମାନଙ୍କ ପାଠପଢ଼ା ଓ ମୋ ଚାକିରିକୁ ସମ୍ଭାଳିଲି। ମୋ ସ୍ୱାମୀ ଏକା ଏକା ଓଡ଼ିଶାର ବିଭିନ୍ନ ସ୍ଥାନରେ ଚାକିରି ସମ୍ଭାଳି ରହିଲେ। ଅବସର ନେବା ପର୍ଯ୍ୟନ୍ତ ମୁଁ ଆଉ ଇଂଜିନିୟର ସାହେବଙ୍କ କ୍ୱାର୍ଟରରେ ରହିନାହିଁ।

୧୯୭୧ ମସିହା ଆରମ୍ଭରେ ମୁଁ ଆଦିବାସୀ କଲ୍ୟାଣ ବିଭାଗର ପ୍ରଧାନ ଶିକ୍ଷୟିତ୍ରୀ ପଦ ଛାଡ଼ି ଶିକ୍ଷା ବିଭାଗର ସହକାରୀ ଶିକ୍ଷୟିତ୍ରୀ ପଦ ପାଇଁ ଦରଖାସ୍ତ କରିସାରିଥିଲି। କ୍ୱାର୍ଟରରୁ ସାପ ବାହାରିବା ପରେ ପିଲା ତିନିଟି ଧରି ଆଉ କିଛିମାସ ମୁଁ କେମିତି ସେଠାରେ ରହିଛି ତା ପ୍ରଭୁ ଚନ୍ଦ୍ରଶେଖର ଜାଣନ୍ତି। ମୋ ସ୍ୱାମୀଙ୍କର ଢେଙ୍କାନାଳ କ୍ୱାର୍ଟର ମିଳିବା ମାତ୍ରେ ମୁଁ ସୁଯୋଗ ପାଇବା ମାତ୍ରେ ତାଙ୍କ ପାଖରେ ରହିଲି। ଯିବା ଆସିବା କରିବା ପାଇଁ ବସ୍‌ର ସୁବିଧା ନଥିଲା। ଆବାସିକ ବିଦ୍ୟାଳୟ ହୋଇଥିବାରୁ ପ୍ରଧାନ ଶିକ୍ଷୟିତ୍ରୀ ବାହାରେ ରହିବା ପାଇଁ ଅନୁମତି ମଧ୍ୟ ନଥିଲା। ଥରେ ମୁଁ ଛୁଟିରେ କଟକ ଯାଇଥାଏ ପିଲାଙ୍କୁ ନେଇ। ମୋ କ୍ୱାର୍ଟରର ଦାଣ୍ଡଘରେ କିଛି ପିଲା ନିୟମିତ ଶୋଉଥାନ୍ତି। କାରଣ ଡରମିଟାରୀରେ ସେତେବେଳକୁ ସ୍ଥାନାଭାବ ହେଲାଣି। ପିଲାଏ ନିଜ ଇଚ୍ଛାରେ ଆରାମ୍‌ରେ ଶୋଇବେ ବୋଲି ଖୋଲା ପଡ଼ିଥିବା ମୋ ଦାଣ୍ଡଘରେ ଶୋଉଥିଲେ। ସେକଥା ମତେ ମଧ୍ୟ ଜଣା ନ ଥିଲା। ଦିନେ ରାତି ଦଶଟାରେ ଏକ ଷୋଳବର୍ଷର ଛାତ୍ରୀର ପାଦ ଉପରେ ମୋରି କ୍ୱାର୍ଟର ଦାଣ୍ଡଘର ଏରୁଣ୍ଡିବନ୍ଧରେ ସର୍ପାଘାତ ହେଲା। ଅଂଜନା ଦେ ବୋଲି ଜଣେ ତାଲିମପ୍ରାପ୍ତ ଗ୍ରାଜୁଏଟ ସହକାରୀ ଶିକ୍ଷୟିତ୍ରୀ ପ୍ରଧାନ ଶିକ୍ଷୟିତ୍ରୀ ଦାୟିତ୍ୱରେ ଥିଲେ। ସେ ଆଉ କ'ଣ ବା କରିପାରିଥାନ୍ତେ ? ଢେଙ୍କାନାଳକୁ ନେବାପାଇଁ ଶଗଡ଼ ଗାଡ଼ି ଠିକ୍ କରୁ କରୁ ଝିଅଟି ବିଷଜ୍ୱାଳାରେ ସେପାରିକୁ ଚାଲିଗଲା। କନ୍ୟାଶ୍ରମରେ କାନ୍ଦ ବୋବାଳି ପଡ଼ିଲା। ତାହାଥିଲା ବୋଧହୁଏ କନ୍ୟାଶ୍ରମ ଇତିହାସରେ ପ୍ରଥମ ଦୁଃଖାବହ ଘଟଣା। ଝିଅଟିର ବାପା କିଛି ଗଣ୍ଡଗୋଳ କରିନଥିଲେ। ତାର ଆୟୁଷ ପୂରିଥିଲା, ସର୍ପାଘାତରେ ଯିବାର ଥିଲା, ଘରେ ଥିଲେ ମଧ୍ୟ ତାଙ୍କ ଝିଅ ସେହି ରାତିରେ ସେହି କାରଣରୁ ଯାଇଥାନ୍ତା ବୋଲି କହି ସେ ଅଂଜନା ଦେଙ୍କୁ ପ୍ରବୋଧନା ଦେଲେ। ଝିଅଟିର ମରଦେହକୁ ଘରକୁ ନ ନେଇ କନ୍ୟାଶ୍ରମ ହତାରେ ଜଙ୍ଗଲ ଭିତରେ ସମାଧି ଦେବାପାଇଁ ଅନୁରୋଧ କରିଥିଲେ। ତା ଫଳରେ ତାଙ୍କ ଝିଅ ତାର ପ୍ରିୟ କନ୍ୟାଶ୍ରମରେ ସବୁଦିନ ରହିଲା ବୋଲି ସେ ଧରିନେବେ କହି

କାନ୍ଦିଲେ। ତାଙ୍କ ଅନୁରୋଧ ରକ୍ଷା କରାଗଲା। ଝିଅଟି ସବୁଦିନ ପାଇଁ କନ୍ୟାଶ୍ରମ ମାଟିରେ ମିଶିଗଲା। ଆମ୍ବ, ପଣସ, କାଜୁ ଗଛର ଶାଖାରେ ସେ ଫଳମାନଙ୍କର ମିଠାରେ ପ୍ରତିବର୍ଷ ସମସ୍ତଙ୍କୁ ସ୍ନେହର ସ୍ପର୍ଶ ଦେଉଥିବ ବୋଲି ଭାବିଲି। ଅଂଜନାର ଆଖି ଆଗରେ ଝିଅଟି ଚାଲିଗଲା ଓ ସେ କିଛି କରିପାରିଲା ନାହିଁ ବୋଲି ଦୁଃଖରେ ଭାଙ୍ଗି ପଡ଼ିଥିଲା। ମୁଁ ନଥିଲି ଓ ମୋ ଅନୁପସ୍ଥିତିରେ ଝିଅଟି ଚାଲିଗଲା ମୁଁ ଦୁଃଖରେ ଭାଙ୍ଗିପଡ଼ିଥିଲି। କନ୍ୟାଶ୍ରମରୁ ମନ ଛାଡ଼ିଗଲା। ତା ପରେ ମୁଁ ଆଉ ପିଲାମାନଙ୍କୁ ନେଇ ସେ କ୍ୱାର୍ଟରରେ ରହିବା ପାଇଁ ସାହସ କଲି ନାହିଁ। କାହିଁକି ମୋ କ୍ୱାର୍ଟରରେ ଶୋଇବା ପାଇଁ ଝିଅମାନେ ଆସିଲେ ବୋଲି ନିଜକୁ ପ୍ରଶ୍ନକଲି। ଏହି ଦୁଃଖ ମୋର ସ୍ମୃତିରେ ଏକ ଅଭୁଲା କ୍ଷତିଚିହ୍ନ ହୋଇ ରହିଲା।

*("ଅମୃତ ଅନ୍ୱେଷା", ଅମୃତାୟନ, ନଭେମ୍ବର ୨୦୦୩, ପୃଷ୍ଠା ୮-୧୦; ଅମୃତାୟନ, ନଭେମ୍ବର ୨୦୦୮, ପୃଷ୍ଠା ୧୨-୧୪)*

* * *

# ପ୍ରତିଭା ଶତପଥୀ

## (ଜନ୍ମ: ୧୯୪୫)

ପ୍ରତିଭା ଶତପଥୀ ୧୮ ଜାନୁଆରୀ ୧୯୪୫ ମସିହାରେ କଟକର ସତ୍ୟଭାମାପୁରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ଚକ୍ରଧର ଶତପଥୀ ଜଣେ ଡାକ୍ତର ଥିଲେ। ପ୍ରତିଭା କଟକ ରେଭେନ୍ସା ମହାବିଦ୍ୟାଳୟରେ ଉଚ୍ଚଶିକ୍ଷା ପ୍ରାପ୍ତ ହୋଇଥିଲେ। ସେ ଓଡ଼ିଆ ସାହିତ୍ୟର ଅଧ୍ୟାପକ ତଥା ସମାଲୋଚକ ନିତ୍ୟାନନ୍ଦ ଶତପଥୀଙ୍କୁ ବିବାହ କରିଥିଲେ। ପ୍ରତିଭା ଶତପଥୀ ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଓଡ଼ିଆ ସାହିତ୍ୟ ଶିକ୍ଷା ଦେଇଥିଲେ। ସେ "ଓଡ଼ିଆ କବିତାରେ ରୋମାଣ୍ଟିସିଜିମ୍" ଅଧ୍ୟୟନ ପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଦ୍ୱାରା ଦିଆଯାଉଥିବା ଅନୁଦାନ ପ୍ରାପ୍ତ ହୋଇଥିଲେ। ଓଡ଼ିଆ କବିତାରେ ନାରୀଙ୍କ ଅସ୍ତିତ୍ୱ ଚିତ୍ରଣ ଉପରେ ଗବେଷଣା କରିବା ପାଇଁ ସେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଦ୍ୱାରା ପ୍ରଦାନ କରାଯାଉଥିବା ପ୍ରମୁଖ ଗବେଷଣା ପ୍ରକଳ୍ପ ମଧ୍ୟ ଗ୍ରହଣ କରିଥିଲେ।

ପ୍ରତିଭା ଶତପଥୀ ଚାଳିଶ ବର୍ଷରୁ ଅଧିକ ସମୟ ଧରି ଓଡ଼ିଆରେ କବିତା ଲେଖୁଛନ୍ତି। ତାଙ୍କର ପ୍ରଥମ କବିତା ସଂକଳନ "ଆମ କବିତା" ୧୯୬୨ ମସିହାରେ ପ୍ରକାଶିତ ହୋଇଥିଲା। ସେ ଚାଳିଶରୁ ଅଧିକ ପୁସ୍ତକ ଲେଖିଛନ୍ତି ଯେଉଁଥିରେ କବିତା, ପ୍ରବନ୍ଧ ଏବଂ ଅନୁବାଦ ପୁସ୍ତକ ରହିଛି। ସେ ପର୍ଲ୍. ଏସ୍. ବକ୍, ଆଇଜାକ୍ ବାଶେଭିସ୍ ସିଙ୍ଗର ଏବଂ ଚିଙ୍ଗିଜ୍ ଆଇଟମାଟୋଭଙ୍କ ପରି ଜଣାଶୁଣା ଲେଖକଙ୍କ କାର୍ଯ୍ୟକୁ ଓଡ଼ିଆରେ ଅନୁବାଦ କରିଛନ୍ତି। ସେ ପଚିଶ ବର୍ଷ ଧରି ଏକ ପ୍ରମୁଖ ଓଡ଼ିଆ ପତ୍ରିକା "ଇସ୍ତାହାର"ର ସହ-ସମ୍ପାଦକ ଥିଲେ।

୧୯୮୬ ମସିହାରେ ପ୍ରତିଭା ଶତପଥୀ ତାଙ୍କ କବିତା ସଂଗ୍ରହ "ନିମିଷେ ଅକ୍ଷର" ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଗ୍ରହଣ କରିଥିଲେ। ତାଙ୍କ କବିତା ସଂଗ୍ରହ "ଶବରୀ" ପାଇଁ ୧୯୯୨ରେ ତାଙ୍କୁ ଶାରଳା ପୁରସ୍କାର ପ୍ରଦାନ କରାଯାଇଥିଲା। ସେ

ତାଙ୍କ କବିତା ପୁସ୍ତକ "ତନ୍ମୟ ଧୂଳି" ପାଇଁ ୨୦୦୧ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିଲେ। ଭାରତୀୟ ସାହିତ୍ୟକୁ ତାଙ୍କର ଅବଦାନ ପାଇଁ ତାଙ୍କୁ ୨୦୨୫ରେ କବୀର ସମ୍ମାନରେ ସମ୍ମାନୀତ କରାଯାଇଥିଲା।

ପ୍ରତିଭା ଶତପଥୀଙ୍କ ସ୍ମୃତିଲିପି "ଶୈଶବରୁ ସଂସାର" ୨୦୦୮ ମସିହାରେ ପ୍ରକାଶିତ ହୋଇଥିଲା। ସେ ତାଙ୍କ ଗାଁ, ପିଲାଦିନ ଏବଂ କବି ସତ୍ତାର ଅଭିବୃଦ୍ଧି ଓ ପରିପ୍ରକାଶ କଥା ମନେପକାଇଛନ୍ତି। ଏଠାରେ ଅନ୍ତର୍ଭୁକ୍ତ ଉଦ୍ଧୃତାଂଶଟିରେ ସେ ତାଙ୍କ ପିତାମାତାଙ୍କ ତିକ୍ତ ସମ୍ପର୍କ ଏବଂ ତାଙ୍କ ପିତା କିପରି ଅନ୍ୟ ଜଣେ ସ୍ତ୍ରୀ ପାଇଁ ତାଙ୍କ ମାତାଙ୍କୁ ଛାଡ଼ି ଚାଲିଯାଇଛନ୍ତି ତାହାର ଅନୁସନ୍ଧାନ କରିଛନ୍ତି। ତାଙ୍କର ପିଲାଦିନର ସ୍ମୃତି ତାଙ୍କୁ ହନ୍ତସନ୍ତ କରୁଥିବା ପରି ଲାଗୁଛି ଯେହେତୁ ସେ ବର୍ତ୍ତମାନର ନିରାଶାକୁ ସାମ୍ନା କରିବାକୁ ଚେଷ୍ଟା କରୁଛନ୍ତି।

## ହୃଦୟେଶ୍ୱରୀ

'କାମନା ତୁ ମୋ ବାପାଙ୍କୁ
ଉଡ଼େଇଲୁ ପକ୍ଷୀର ଡେଣାରେ
ମନରେ ଖଂଜିଲୁ ନୀଳ
ନଚାଇଲୁ ସର୍ପିଣୀର ଚିତ୍ରିତ ଫଣାରେ
ମୋ ବୋଉର ଆଖି ତଳେ ଅଜାଡ଼ିଲୁ ସମୁଦ୍ରର ଜଳ
ହାତରେ କଉଡ଼ି ମୁଠେ ଧରାଇଲୁ
ଓଠ ପରେ ଢାଳିଲୁ ଗରଳ।'

('ଇନ୍ଦ୍ରଧନୁ', ଗ୍ରସ୍ତ ସମୟ ୧୯୭୮)

ପ୍ରାୟ ତାଲା ପଡୁ ନଥିବା ବିରାଟ କାଠ ଆଲମାରିର ମଝିଥାକରେ ଥାଏ ଗୋଟିଏ ସୁସଜ୍ଜ କାଠବାକ୍ସ। ତାଲାପଡୁ ନଥାଏ, କାହିଁକି ନା ଆମ ଟଙ୍କା ଓ ସୁନାରୂପା ସେଥିରେ ନଥାଏ। କିଛି ସୁନା ବୋଉ ରୋଷେଇ ଘର ପିଣ୍ଡିତଳେ ପୋତିକି ରଖିଥାଏ। ତା ଉପରେ ମାଟି ଗୋବର ଲିପି, ଇଟାଖଣ୍ଡମାନ ସଜାଡ଼ି ଥାଏ । ଇଟା ଉପରେ ଥାଏ ତେଲଟିଣ, ମୁଢ଼ିଟିଣ, ଚୁଡ଼ାଭଜା ଟିଣ, ଡାଲିଡବା ଇତ୍ୟାଦି। ତେଣୁ କାଠ ଆଲମାରିରେ କିଛି ପୁରାଣ ଓ ବହିପତ୍ର ଥାଏ। ମଝି ଥାକରେ କାଠବାକ୍ସ। ଦିନେ ତାକୁ ଘାଣ୍ଟୁ ଘାଣ୍ଟୁ କେତେକ ପୁରୁଣା ଚିଠି ସହ ଏକ ଦୀର୍ଘଚିଠି ମୋର ହସ୍ତଗତ ହୁଏ। ସୁନ୍ଦର ଅକ୍ଷର, ମାର୍ଜିତ ଭାଷା, ଆବେଗପୂର୍ଣ୍ଣ। ଏପରି ଚିଠି ମୁଁ କେବେ ପଢ଼ିବା ତ ଦୂରର କଥା, ଦେଖି ନଥାଏ। ବାପାଙ୍କ ଅକ୍ଷର ଅବଶ୍ୟ। ବାପା ଘରକୁ ନିୟମିତ ଚିଠି ଲେଖନ୍ତି। ତେବେ ଯେ ଚିଠି

ନିଆରା। ମତେ ସେତେବେଳେ ୧୨/୧୩ ବର୍ଷ ବୟସ। ଚିଠିର ଆଲୋଡ଼ନ ମତେ ଟାଣି ଟାଣି ନେଲା। ଚାରିପୃଷ୍ଠାର ଚିଠି। ପ୍ରଥମ ପୃଷ୍ଠା ସରିଲାବେଳକୁ ଜାଣିଲି ଯେ ବାପାଙ୍କ ଚିଠି, ଲେଖା ହେଇଚି ବୋଉ ପାଖକୁ। ୧୯୩୬ ମସିହାରେ ଲେଖା। ଡାକ ଯୋଗେ ଆସିଥିବ, ମାତ୍ର ଲଫାପା ନଥାଏ। ମୁଁ ଓ ମୋ ବଡ଼ଭାଇ ଜନ୍ମହୋଇ ନଥାଉ। କେବଳ ବଡ଼ଭଉଣୀ ୨/୩ ବର୍ଷର ହୋଇଥିବ। ଚିଠିଟି ସୁରକ୍ଷିତ, ସେ ଯାବତ୍ ଖତରା ହୋଇଯାଇନାହିଁ। ସେତେବେଳେକୁ ବାପା ପାରଳାଖେମୁଣ୍ଡିରେ ଡାକ୍ତର ଥାଆନ୍ତି। ନାନୀ ବେମାର ଥାଏ। କଟକର ଭଡ଼ାଘରେ ବୋଉ ଅଜା ଆଇଙ୍କ ସହ ରହୁଥାଏ। କଟକରେ ବାପାଙ୍କ ବନ୍ଧୁ ଡାକ୍ତରମାନେ (ତନ୍ମଧ୍ୟରୁ ଡାକ୍ତର ନିଶାମଣି ନନ୍ଦ ଅନ୍ୟତମ) ଚିକିତ୍ସା କରୁଥାନ୍ତି। ସେଇଠିକୁ ବାପା ଲେଖିଥାନ୍ତି ବ୍ୟାକୁଳ ବିଭୋର ଚିଠି। ଜାଣିଥିଲି ବାପା ତାଙ୍କ ଦଦେଇ ଗୋପାଳ ପ୍ରହରାଜଙ୍କ ଘରେ ରହି ୨ ବର୍ଷ ମାଟ୍ରିକ୍ ପଢ଼ିଥିଲେ। ଶୁଣିଥିଲି ତାଙ୍କର ମଧୁର ଛନ୍ଦର ଗୀତଗୋବିନ୍ଦଗାନ। ସେ ସୁଛାତ୍ର ଥିଲେ, ଅଭିନୟ କରୁଥିଲେ। ଶୁଣିଥିଲି ସେ ମଧ୍ୟ ଜଣେ ରସିକ ବ୍ୟକ୍ତି।

ତାର ଚାକ୍ଷୁଷ ପ୍ରମାଣ ପାଇଲି ଚିଠିଟିରୁ। କଣ ଲେଖାଥିଲା ଚିଠିରେ, କେତେ ବା ବୁଝିଲି ମୁଁ, ବୁଝିପାରିଲି ନାହିଁ ତତୋଽଧିକ, ଭାବିଲି ମୋ ଓଲୀ ବୋଉ ସତେ କଣ ଏ ଚିଠିଟିକୁ ଠିକ୍ ଭାବେ ବୁଝିଥିବ ? ବୋଉର ଗୋଟେ ଗର୍ବ ଥିଲା ହୁଏତ। ସେ ସୁନ୍ଦରୀ ଓ ବାପା ତାକୁ ଜିଦ୍ କରି ବିଭା ହୋଇଥିଲେ, ସେ କଥା ପୂର୍ବରୁ କହିଛି। କିନ୍ତୁ ମୋର ହେତୁ ହେଲାବେଳକୁ ତାର ବିଷଣ୍ଣ ମୁହଁ ଓ ଉଦାସୀନ ଚେହେରା ତଥା ସୌନ୍ଦର୍ଯ୍ୟ ନିରୂପଣ କରିବାରେ ମୋର ଅପାରଗତା ହେତୁ, ସେ କେତେ ସୁନ୍ଦରୀ ମୁଁ କଳନା କରିପାରିନଥିଲି। ଥରେ ମୁଁ ରେଭେନ୍ସା କଲେଜରେ ଚାକିରି କରୁଥାଏ, ମୋର ବୟୋଜ୍ୟେଷ୍ଠ ୨ଜଣ ପ୍ରାଧ୍ୟାପିକା ଆମ ଘରକୁ ଆସିଥିଲେ। ବୋଉ ମୋ ପାଖେ ରହୁଥାଏ। ସେତେବେଳକୁ ତାକୁ ୫୫/୫୬ ବର୍ଷ ହୋଇଥିବ। ସେମାନେ ପରଦିନ କଲେଜରେ ଉଚ୍ଛ୍ୱସିତ ହୋଇ ବୋଉ ଚେହେରାର ପ୍ରଶଂସା କରିବାକୁ ଲାଗିଲେ। 'ପ୍ରତିଭାର ବୋଉଙ୍କୁ ଦେଖିଲୁ ସେ କି ସୁନ୍ଦରୀ। ଖୁବ୍ କମ୍ ଏଭଳି ସୁନ୍ଦରୀ ଦେଖିବାକୁ ମିଳନ୍ତି।' ସେ ଦୁହେଁ ଥିଲେ ପୂଜ୍ୟା ଶାନ୍ତି ମିଶ୍ର ଓ ପୂଜ୍ୟା ଶକୁନ୍ତଳା ମହାନ୍ତି। (ଚାକିରି କାଳ ମଧ୍ୟରେ ଉଭୟେ ବିଭିନ୍ନ ସମୟରେ ମୋର ପ୍ରିନ୍ସିପାଲ୍ ଥିଲେ) କାହିଁ! ବୋଉ ଏତେ ସୁନ୍ଦରୀ ବୋଲି ତ ମୁଁ କେବେ ଲକ୍ଷ୍ୟ କରିନାହିଁ! କେହି ବି କେବେ ମତେ କହିନାହାନ୍ତି! ତାର କ'ଣ ସତରେ କିଛି ଗୁଣ ଥିଲା, ଯେଉଁଥିପାଇଁ ମୋର ଡାକ୍ତର ବାପା ତାଠାରୁ ଅନେକ ବର୍ଷ ଦୂରେଇ ରହିଲେ ନିହାତି ଦରଦହୀନ ଭାବେ ? ବୋଉ ସଚ୍ଚରିତ୍ରା, ସରଳ, ହୁଏତ ବାପା ବହୁତ ବିଜ୍ଞ ଓ ରସିକ। ତଥାପି ବୋଉର ହାତଧରି ତାକୁ କିଛିବାଟ ତ ସାଂଗରେ ନେଇଥିଲେ। ଆଉ ଆଗକୁ ନେଲେ ନାହିଁ କାହିଁକି? କେବଳ ବୋଉକୁ ନୁହେଁ, ଆମ ତିନି ଭାଇଭଉଣୀଙ୍କୁ ଗାଁରେ ଛାଡ଼ି

କୋରାପୁଟରେ ରହିଗଲେ । ତାଙ୍କ ସହ ଆମର ସଂପର୍କ ପ୍ରତି ମାସରେ କିଛି ଟଙ୍କା ଓ ମଝିରେ ଖଣ୍ଡିଏ ଖଣ୍ଡିଏ ଚିଠି କେବଳ । ୩/୪ ବର୍ଷରେ ଥରେ ଘରକୁ ଆସିବା । ବୋଉ ନିଜକୁ ବୁଝାଇଥାଏ ଯେ ବାପାଙ୍କୁ କେହି ଓଷଦ କରି, ଗୁଣିକରି କୋରାପୁଟ ଜଂଗଲରେ ରଖିଚି । ବାପା କାଳେ ତାକୁ କହିଛନ୍ତି ଯେ ବିଜୟନଗରମ୍ ଷ୍ଟେସନ୍ ଡେଇଁ ଗଲାପରେ ସେ ଗାଁ କଥା ଓ ଆମକଥା ପାସୋରି ଯାଆନ୍ତି । କିନ୍ତୁ ଯେ 'ଗୁଣି' କଥାଟି ବଡ଼ ବିଚିତ୍ର । ମୋ ନିଜର ସେଥିରେ ବିଶ୍ୱାସ ନଥିଲେ ମଧ୍ୟ ଆମ ଅଜା 'ବୀରବାହୁଟି' ଦ୍ୱାରା ଆକ୍ରାନ୍ତ ହୋଇ ସର୍ବସ୍ୱ ହରାଇଥିବାର ମୁଁ ଶୁଣିଥାଏ । ପ୍ରମାଣ ତ କରି ହବନି ସହଜରେ । ଯାହାକୁ ନାହିଁ ବୋଲି ପ୍ରମାଣ କରି ନ ହବ, 'ଅଛି' ବୋଲି କହିବ ନାହିଁ କାହିଁକି, କେଉଁ କାରଣରୁ ?

ଚିଠିଟି ସେଦିନ ପଢ଼ିଥିଲି, ଆଉ କେବେ ଥରେ ଅଧେ ବି ପଢ଼ିଥିଲି । କିଶୋରୀ ମନନେଇ ଭାବିଥିଲି, ବାପା ଯାହାକୁ 'ହୃଦୟେଶ୍ୱରୀ' ସଂବୋଧନ କରି ଏତେ ପାଖରେ ରଖିଥିଲେ, ଦୂରରେ ଥାଇ ବି ନିକଟରେ 'କେତେଦୂରେ ଚାନ୍ଦ, କେତେ ଦୂରେ କୁମୁଦିନୀ'... ଭଳି, ପୁଣି କିଏ ମଝିରେ ଆସିଗଲା ଯେ, ବୋଉ ଛିଟ୍‌କି ପଡ଼ିଲା ଦୂରକୁ ? ଚିଠିଟି ପରବର୍ତ୍ତୀ ସମୟରେ ଖୋଜିଲି ନାହିଁ, ଶେଷ ଆଡ଼କୁ ଖୋଜିଲେ ବି ଆଉ ପାଇଲି ନାହିଁ । ଆଜି ଭାବେ କେତେ ମୂର୍ଖ ମୁଁ ସତେ ! ପ୍ରେମ ପତ୍ରଟିକୁ ସାଇତି ରଖିବାର ନଥିଲା କି ? ମୁଁ କ'ଣ ଜାଣିଥିଲି, ମୋ ସ୍ମୃତିପଟରେ ସେଇ ଚିଠିଟି ଆଙ୍କି ହୋଇଯିବ ବୋଲି, ପୁଣି ୫୦ ବର୍ଷ ପରେ । ଅନ୍ୟର ପ୍ରେମପତ୍ର ପଢ଼ିବା ଗର୍ହିତ, ପୁଣି ଯଦି ନିଜ ବାପାଙ୍କର ହୋଇଥାଏ ?

ତଥାପି ସେଇ ପିଲାକାଳେ ପୁରୁଷର ଚରିତ୍ରଠାରେ ଆସିଥିଲା ସ୍ୱାଭାବିକ ଅବିଶ୍ୱାସ ଓ ଘୃଣା । ଏମାନଙ୍କ ଆବେଗ ଏହିପରି ଦି ଦିନିଆ । ଲଂପଟତା ଏମାନଙ୍କ ମୂଳ ଚରିତ୍ର । ଅଥଚ ଆଦ୍ୟ ଯୌବନରେ ମୁଁ ବି ଜଣେ ନବ ଯୁବକର ବ୍ୟାକୁଳତା ଓ ମୁଗ୍ଧତାରେ ଟାଣି ହୋଇଗଲି । କହୁଚି ଏଇଥିପାଇଁ ଯେ ପୁରୁଷକୁ ବିଶ୍ୱାସ କରିବି ନାହିଁ, ତା ଧୋକ୍କାବାଜ୍‌ର ପାଖ ମାଡ଼ିବିନି ବୋଲି ପ୍ରତିଜ୍ଞା କରିଥିଲି । କିନ୍ତୁ ଧୋକ୍କା ଖାଇବା ବୋଧହୁଏ ପ୍ରତ୍ୟେକ ନାରୀର ନିୟତି ! କି ଇତିହାସ, କି ପୁରାଣ ସବୁଠାରେ ଏହାର ଭୂରି ଭୂରି ଦୃଷ୍ଟାନ୍ତ ରହିଛି । ମୋ କବିତାରେ ଏପରି ଧାଡ଼ି କେତୋଟି – "ପୁରୁଷ, ସେ ଦେବତା ହେଉ କି ମାନବ ହେଉ କି ଦାନବ ହେଉ – ତା ହାତରେ ନିର୍ଯ୍ୟାତିତ ହେବା ତ ମୋର ଭାଗ୍ୟ ।" ହୃଦୟେଶ୍ୱରୀ ସଂବୋଧନ କିଭଳି ଆବିଷ୍ଟ କରିଥିଲା ମତେ, ବାପାଙ୍କ ସୁନ୍ଦର ଅକ୍ଷର ଓ ଅର୍ଥବହ ଭାଷାକୁ ନେଇ ! ପୁଣି ସାକ୍ଷାତ୍ ହେଲା କେତେ ପ୍ରକାର ସଂବୋଧନ ସହ, ଆରୋପିତ ଭୂମିକା ସହ । ଏଗୁଡ଼ିକ ବିଶ୍ଳେଷଣ କଲେ ମିଳେ ବିଭୋରତା ଯେତିକି, ହାହାକାର ଓ ପୀଡ଼ା ମଧ୍ୟ ତାଠୁଁ ଅଧିକ । ହେଲେ ଏକଥା ଲେଖିଲା ବେଳକୁ ସେଇ ବିହ୍ୱଳତା ଓ ପୀଡ଼ାକୁ ମୁଁ ଅତିକ୍ରମ କରିସାରିଛି । ବୁଝିସାରିଛି ଆବେଗର

ଯେ ଗୋଟିଏ ଚାଲ୍। 'ପ୍ରାଣର', 'ପ୍ରାଣାଧିକା' 'ପ୍ରିୟତମା' 'ପ୍ରିୟା', 'ଧନ', 'ରାଣୀ', 'ଦେବୀ', 'ସରସ୍ୱତୀ', 'ସୁବର୍ଣ୍ଣ ପ୍ରତିମା', 'ଜହ୍ନ'– ଏସବୁ ସଂବୋଧନ ତତ୍‌କାଳିକତାରେ ଆକ୍ରାନ୍ତ। ଏଥିରେ ସବୁଦିନିଆ ଅର୍ଥ କିଛି ନାହିଁ। ଏ ସବୁର ମାନସିକତା କ୍ଷଣସ୍ଥାୟୀ। ଏବେ, ଏହି ପରିଣତ କାଳରେ ଭାବେ, ବିଚରା ପୁରୁଷକୁ ମୁଁ ଭୁଲ୍ ବୁଝୁନାହିଁ ତ ! ସେ ହୁଏତ ସାମୟିକ ଆବେଗରେ ଏସବୁ କହି ନଥିବ, ହୁଏତ, କିଛି ଆଶା କରୁଥିବ, ଆଶା ପୂରଣ ହୋଇ ନଥିବ ତାର। ତେଣୁ ତାର ମୋହଭଂଗ ଘଟିଥିବ। ତାର ଏକଦା ଭଲପାଇବାର ଅବଲମ୍ବନକୁ ଗୋଟିଏ ଜାଗାରେ ଛାଡ଼ି ଯାଇଥିବ ସେ। ମୁଁ ବି ବୋଧହୁଏ ପାଖରେ ରହିପାରିବା 'ଜନ୍ତୁ' ନୁହେଁ। ପ୍ରକୃତରେ ମୁଁ 'ଜନ୍ତୁ' ନୁହେଁ ଜଣେ ଅନୁଭବୀ ସ୍ତ୍ରୀଲୋକ। କିନ୍ତୁ ମୁଁ ଖୋଜିବି ମୋର ଆତ୍ମମର୍ଯ୍ୟାଦା, ବଜାୟ ରଖିବି ମୋର ଅଭିମାନ, ମୋର ରୁଚି ଅରୁଚି। ମୋର ବଡ଼ ଦୁର୍ଗୁଣ, ମୁଁ ଚାଲାକ୍ ନୁହେଁ। କାହାକୁ କଣ ସୁହାଇବ, ମୁଁ ବୁଝି ବିଚାରି କରିପାରେନା। କଣ କରିବି ? କ'ଣ ଭଲ, କଣ ମନ୍ଦ, ଠିକ୍ ମତେ ଚିହ୍ନିପାରେ ଯେତେବେଳେ 'ମନ୍ଦ'କୁ 'ଭଲ' ବୋଲି କହିବି କିପରି ? କିଛି ଜାଗତିକ ସ୍ୱାର୍ଥସିଦ୍ଧି ଆଶାରେ ? ନା, ମୁଁ ତାହା କଦାପି ପାରିନାହିଁ, ପାରିବି ନାହିଁ।

ମୋର ଜଣେ ବାନ୍ଧବୀ କହନ୍ତି, "ଜାଣ, ଯେ ଯେତେ ଦଂପତି ସୁଖରେ ଅଛନ୍ତି, ସମସ୍ତେ ସ୍ୱାମୀ 'କୁଆ'ଟାକୁ 'ଶୁଆ'ଟାଏ କହିଲେ ହଁ ଭରନ୍ତି।" ସେ ଅବଶ୍ୟ ଟିକେ ବିପ୍ଳବିଣୀ। ମୁଁ ତାଙ୍କ ସହ ଏକମତ ହୋଇପାରେ ନାହିଁ। ମୁଁ ଭାବେ ଶତକଡ଼ା ୯୦ଭାଗ ସେପରି ହୋଇଥାଇପାରନ୍ତି। ବାକି ୧୦ଭାଗ ଥିବେ ଭିନ୍ନ। ସେମାନଙ୍କ ଭିତରେ ପରସ୍ପର ଶ୍ରଦ୍ଧା ଓ ମର୍ଯ୍ୟାଦାବୋଧ ଅତୁଟ ରହିଥିବ। କେଜାଣି, ଯେ ବି ମୋର ଅଳୀକ ପରିକଳ୍ପନା ! ନାରୀ ପୁରୁଷ (ଦଂପତି) ଭିତରେ 'ଭଲପାଇବା' ଭାବଟା ହୁଏତ ଆଦୌ ନାହିଁ। ଅଛି ପରସ୍ପର ନିର୍ଭରଶୀଳତା, ସ୍ୱାର୍ଥଭିତ୍ତିକ ସଂପର୍କ, ସାମାଜିକ ବନ୍ଧନ, ଶରୀର ତୃଷ୍ଣା, ଯାହାକୁ ବିଚରାମାନେ 'ଭଲପାଇବା' କହି ଜୀବନକୁ ଧନ୍ୟ ମଣନ୍ତି। ନ ହେଲେ ବା ଅନେକଟା ଆଶ୍ୱସ୍ତ ହୁଅନ୍ତି। ପ୍ରକୃତରେ ତାହା ହିଁ ଯଥାର୍ଥ ଓ କଲ୍ୟାଣକର। ଭଲ ପାଇବା ଏକ 'ପାଗଳପଣ'। ଏହା ଖୁବ୍ ଶୀଘ୍ର ଅପସରିଯାଏ। ଖୁବ୍ ବେଶି ଆନ୍ଦୋଳିତ କରିଥାଏ ଯଦିଓ। 'ହୃଦୟେଶ୍ୱରୀ' ଅପସରି ଗଲା ଯଦି ଯାଉ, ବରଂ ସହାନୁଭୂତି ଟିକକ ବଂଚି ରହିବା କଥା ତ !"

*(ଶୈଶବରୁ ସଂସାର, ପୃଷ୍ଠା ୧୧୭-୧୨୧)*

* * *

କର୍ମଜୀବି

# ବୀଣା ଦେଈ

## (୧୯୦୪-୨୦୦୩)

ବୀଣା ଦେଈ ୧୯୦୪ ମସିହାରେ ଓଡ଼ିଶାର ବଗଲଗଡ଼ଠାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା କ୍ଷେତ୍ରମୋହନ ରାୟ ଜଣେ ଡାକ୍ତର ଥିଲେ। ବୀଣା ଦେଈ ଓ ତାଙ୍କ ସାନ ଭଉଣୀ ଜ୍ୟୋତ୍ସ୍ନା ଦେଈ ୧୯୨୪ ମସିହାରେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ବେସରକାରୀ ଛାତ୍ରୀ ଭାବରେ ମାଟ୍ରିକ୍ ପରୀକ୍ଷାରେ ଶୀର୍ଷସ୍ଥାନ ହାସଲ କରିଥିଲେ। ବୀଣା ଦେଈ ନୂଆଦିଲ୍ଲୀର ଲେଡ଼ି ହାର୍ଡ଼ିଙ୍ଗ ମେଡ଼ିକାଲ କଲେଜରୁ ୧୯୩୩ ମସିହାରେ ଡାକ୍ତରୀ ଶିକ୍ଷା ଶେଷ କରିଥିଲେ। ସେ ଭାରତ ସରକାରଙ୍କ ଛାତ୍ରବୃତ୍ତି ସହିତ ଇଂଲଣ୍ଡରେ ମାତୃତ୍ୱ, ଶିଶୁ କଲ୍ୟାଣ ଏବଂ ପରିବାର ଯୋଜନାରେ ସୁପର ସ୍ପେସିଆଲିଟି ଶିକ୍ଷା ହାସଲ କରିଥିଲେ। ତାଙ୍କର  ଡାକ୍ତରୀ ଜୀବନ ବିହାରରେ ଚମ୍ପାରଣ ଡଫରିନ ହସ୍ପିଟାଲରେ ଆରମ୍ଭ ହୋଇଥିଲା। ୧୯୩୮ ମସିହାରେ ସେ ଲେଡ଼ି ଆସିଷ୍ଟାଣ୍ଟ ସର୍ଜନ ଭାବେ କଟକ ମେଡ଼ିକାଲ ସ୍କୁଲରେ ଯୋଗ ଦେଇଥିଲେ। ସେ ଓଡ଼ିଶାର ମହିଳା ଏବଂ ଶିଶୁ ଚିକିତ୍ସା ସହାୟତା ଅଧୀକ୍ଷକ ଭାବରେ କାର୍ଯ୍ୟ କରିଥିଲେ ଏବଂ ଓଡ଼ିଶାରେ ମହିଳା ଓ ଶିଶୁ ଯତ୍ନ କେନ୍ଦ୍ରଗୁଡ଼ିକୁ ଯାଞ୍ଚ କରିବା ପାଇଁ ସାରା ରାଜ୍ୟ ଭ୍ରମଣ କରିଥିଲେ।

ବୀଣା ଦେଈଙ୍କର ଆତ୍ମଜୀବନୀ "ଅକିଞ୍ଚନାର ଜୀବନସ୍ମୃତି" ୨୦୦୧ ମସିହାରେ ପ୍ରକାଶିତ ହୋଇଥିଲା। ତାଙ୍କ ଚରିତ୍ରର ଅନେକ ଦିଗ ଏଠାରେ ସ୍ପଷ୍ଟ ଦେଖିହୁଏ: ଶିକ୍ଷା ପ୍ରତି ତାଙ୍କର ଆଗ୍ରହ, ବରିଷ୍ଠ ଡାକ୍ତରଙ୍କ ପ୍ରତି ଧୈର୍ଯ୍ୟହୀନତା, ନିଜ ଭାଇର ପିଲାମାନଙ୍କର ଯତ୍ନ ନେବାର ଇଚ୍ଛା ଏବଂ ଧାର୍ମିକ ପ୍ରବୃତ୍ତି। ପାଠ ପଢ଼ିବା ପାଇଁ ତାଙ୍କର ସଂକଳ୍ପ ତାଙ୍କ

ଘରେ ଅନେକ ବିତର୍କ ଏବଂ ବିବାଦ ସୃଷ୍ଟି କରିଥିଲା। ସେ ପାଠ ପଢ଼ିବାକୁ ସୁଯୋଗ ନ ମିଳିଲେ ଆତ୍ମହତ୍ୟା କରିବେ ବୋଲି ଧମକ ଦେଇଥିଲେ।

ବୀଣା ଦେଇଙ୍କ ବନ୍ଧୁ ଏବଂ ଶୁଭେଚ୍ଛୁମାନଙ୍କ ଅନୁରୋଧ କ୍ରମେ ଲିଖିତ ଏହି ଆତ୍ମଜୀବନୀ ଏକ ସମନ୍ୱିତ, ଆକର୍ଷଣୀୟ କାହାଣୀ ଉପସ୍ଥାପନ କରେ। ଏଠାରେ ଅନ୍ତର୍ଭୁକ୍ତ ଉଦ୍ଧୃତାଂଶ ବୀଣା ଦେଇଙ୍କ ଜୀବନ ତଥା ସେହି ସମୟରେ ନାରୀଶିକ୍ଷା ପ୍ରତି ସାମାଜିକ ମନୋଭାବକୁ ବୁଝିବା ପାଇଁ ଗୁରୁତ୍ୱପୂର୍ଣ୍ଣ। ଯଦିଓ ସେ ଏକ ଧନୀ, ଶିକ୍ଷିତ ପରିବାରର ଥିଲେ, ତଥାପି ତାଙ୍କୁ ପାଠ ପଢ଼ିବାକୁ ବହୁ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ତାଙ୍କର ପ୍ରଚଣ୍ଡ ଇଚ୍ଛାଶକ୍ତି, ଗଭୀର ନିଷ୍ଠା ଓ ଆଗ୍ରହ ଫଳରେ ଏହା ସମ୍ଭବ ହୋଇଥିଲା।

## ପାଠ ପଢ଼ିବା ପାଇଁ ମରଣପଣ

ବାପା ଏମ୍.ବି.ବି.ଏସ୍ ପାଶ୍ କରିବାଠାରୁ ମିଲିଟାରୀ ସର୍ଭିସ୍‌ରେ ଯୋଗଦେବା ପର୍ଯ୍ୟନ୍ତ ପାଞ୍ଚବର୍ଷ କାଳ ଆମର ପାଠପଢ଼ା ବନ୍ଦ ଥିଲା। ପାଞ୍ଚବର୍ଷ ପରେ ପୁଣି ନୂଆକରି ପଢ଼ା ଆରମ୍ଭ ହେଲା। ମତେ ସେତେବେଳକୁ ୧୪/୧୫ ବର୍ଷ ବୟସ ହୋଇଥାଏ। ସଂଗ୍ରାମକୁ ଆଠ ବର୍ଷ। ଆମେ ତିନିଜଣ ଯାକ ଏକା ସାଙ୍ଗରେ ପୁଣି ପଢ଼ା ଆରମ୍ଭ କଲୁ। ବାପା ଆମକୁ ଇଂରାଜୀ ପଢ଼ାଉଥାନ୍ତି। ଇଂରାଜୀ ବହି ମୁଖସ୍ଥ କରି ଆମେ ବାପାଙ୍କୁ ଶୁଣାଉ। ଛୋଟ ଛୋଟ ଡ୍ରାମାକୁ ଅଭିନୟ ମାଧ୍ୟମରେ ବାପା ମାଆଙ୍କ ଆଗରେ ଦେଖାଉ। ବାପା ଆମକୁ ଘରେ ଇଂରାଜୀରେ କଥାବାର୍ତ୍ତା ହେବାକୁ କହନ୍ତି। ପୁଣି କହନ୍ତି – ଯିଏ ଓଡ଼ିଆରେ କଥା କହିବ ତା ନାଁ ପାଖରେ ଛକି ଚିହ୍ନ ଦିଆଯିବ ଏବଂ ମାସ ଶେଷରେ ହିସାବ କରି ଦେଖାଯିବ, ଯାହାର କମ୍ ଛକି ଚିହ୍ନ ଥିବ ସେ ଗୋଟିଏ ପୁରସ୍କାର ପାଇବ। ସପ୍ତାହରେ ଥରେ ବକ୍ତୃତା ପ୍ରତିଯୋଗିତା ହୁଏ। ଯିଏ ପ୍ରଥମ ସ୍ଥାନ ଅଧିକାର କରେ ସେ ପୁରସ୍କାର ପାଏ। ରଚନା ମଧ୍ୟ ସେହିପରି ପ୍ରତିଯୋଗିତା ମନୋଭାବ ନେଇ ଲେଖୁଥିଲୁ। ଯାହାର ଭଲ ହୁଏ ସେ ମଧ୍ୟ ଗୋଟିଏ ପୁରସ୍କାର ପାଏ। *Lamb's Tales From Shakespeare*ର ଗଳ୍ପ ସବୁ ମୁଖସ୍ଥ କରିଥିଲୁ। *Robinson Crusoe, Folk Tales of Banyan* ଗଳ୍ପ ସବୁ ମଧ୍ୟ ପଢୁଥିଲୁ। ବାପାଙ୍କର ଇଂରାଜୀ ଉଚ୍ଚାରଣ ଖୁବ୍ ଭଲ ଥିଲା। କାରଣ ସେ ସାହେବମାନଙ୍କ ସହ କାମ କରୁଥିଲେ। ସେ ମଧ୍ୟ ଆମକୁ ଭଲ ଉଚ୍ଚାରଣ ଶିଖାଉଥିଲେ।

ଏହିପରି ପ୍ରାୟ ଦୁଇବର୍ଷ କଟିଗଲା। ଏହା ଭିତରେ ବାପାଙ୍କର ଅନେକ ଜାଗାକୁ ବଦଳି ହୋଇଥାଏ। ମିରଟ, କରାଚି, ହାଇଦ୍ରାବାଦ, ନର୍ଥୱେଷ୍ଟ ଇତ୍ୟାଦି। ପ୍ରତ୍ୟେକ ଜାଗାରେ ପ୍ରାୟ ସାତ, ଆଠ ମାସ ଯାଏ ରହୁ। ଶେଷରେ ବାପାଙ୍କୁ ଯୁଦ୍ଧକ୍ଷେତ୍ରକୁ ଯିବାକୁ

ଆଦେଶ ଆସିଲା। ତାପରେ ଅବଶ୍ୟ ଯୁଦ୍ଧ ଶେଷ ହେଲା; କିନ୍ତୁ ସେ ଯୁଦ୍ଧରେ ସୈନିକମାନେ ବହୁ ସଂଖ୍ୟାରେ ଆହତ ହୋଇ ଚିକିତ୍ସା ପାଇଁ ଯେଉଁ ହସ୍ପିଟାଲକୁ ଆସିଥିଲେ, ସେ ଜାଗାକୁ ବାପାଙ୍କର ବଦଳି ଆଦେଶ ଆସୁଥିଲା। ସେ ଜାଗାସବୁ ଯୁଦ୍ଧକ୍ଷେତ୍ରର ନିକଟବର୍ତ୍ତୀ ଥିବାରୁ ପିଲାମାନଙ୍କୁ ପାଖରେ ରଖିବା ମନା ଥିଲା। ତେଣୁ ଆମେ ବାଧ୍ୟ ହୋଇ ଓଡ଼ିଶାକୁ ଫେରି ଆସିଲୁ ଏବଂ ବାପା ତାଙ୍କ ଫିଲ୍‌ଡ଼ ସର୍ଭିସ୍‌କୁ ଯିବାକୁ ବାଧ୍ୟ ହେଲେ।

ମାମୁଁ ପୁରୀର ସାକ୍ଷୀଗୋପାଳ ମନ୍ଦିରରେ ଚାକିରି କରୁଥାନ୍ତି। ବାପା ତାଙ୍କୁ ଚିଠି ଲେଖି ଡକାଇ ଆଣିଲେ ଏବଂ ଆମେ ମାମୁଁଙ୍କ ସାଙ୍ଗରେ ସାକ୍ଷୀଗୋପାଳ ଆସିଲୁ। ମୋର ପଢ଼ାପଢ଼ି ବନ୍ଦ ହୋଇଯିବ ବୋଲି ମୁଁ କାନ୍ଦିଲି। ମାମୁଁ କହିଲେ – ବକୁଳ ବନ ସ୍କୁଲରେ ଜଣେ ଶିକ୍ଷକ ଅଛନ୍ତି ଏବଂ ସେଠାରେ ତାଙ୍କର ଦୁଇଭଉଣୀ (ଜଣେ ବିଧବା, ଅନ୍ୟ ଜଣେ ସ୍ୱାମୀ ପରିତ୍ୟକ୍ତା) ଏବଂ ସ୍ତ୍ରୀ, ଏପରି ତିନିଜଣ ସ୍ତ୍ରୀଲୋକ ରହୁଛନ୍ତି। ସେମାନେ କେହି ପରଦା କରନ୍ତି ନାହିଁ। ସେ ତାମିଲ୍ ଶିକ୍ଷକ ତାଙ୍କ ଭଉଣୀଙ୍କୁ ଘରେ ପଢ଼ାନ୍ତି। ଆମେ ସାକ୍ଷୀଗୋପାଳ ଗଲେ ତାଙ୍କରି ପାଖରେ ପଢ଼ିବୁ ବୋଲି ମାମୁଁ କହିଲେ। ତା ପରେ ଆମେ ଆସି ସାକ୍ଷୀଗୋପାଳ ଠାକୁରଙ୍କ ଡାକବଙ୍ଗଳାରେ ରହିଲୁ। ସେ ସମୟରେ ସାରା ଟାଉନ୍‌ରେ କେବଳ ସାକ୍ଷୀଗୋପାଳ ମନ୍ଦିରର ବଙ୍ଗଳା କୋଠାଘର ଥିଲା। ତା ଚାରି ପାଖରେ ବିରାଟ ଫୁଲ ବଗିଚା ଓ ବଗିଚା ଭିତରେ ବଡ଼ ବଡ଼ ଆମ୍ବଗଛ, ପଣସ ଗଛ ଓ ଚମ୍ପାଗଛ ସବୁ ଥିଲା। ଘର ସାମ୍ନାରେ ଗୋଟାଏ ବଡ଼ ବାଙ୍ଗି ଥିଲା। ଗୋଟାଏ ପୋଖରୀ ମଧ୍ୟ ଥିଲା। ସେ ସମୟରେ ବକୁଳବନ ସ୍କୁଲର ଶିକ୍ଷକ, ପଞ୍ଚସଖା ନାମରେ ପରିଚିତ, ସେମାନେ ହେଲେ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ପଣ୍ଡିତ ଗୋପବନ୍ଧୁ ଦାସ। ଏମାନେ ସମସ୍ତେ ଥିଲେ ସ୍ୱାଧୀନତା ସଂଗ୍ରାମୀ। ଗୋପବନ୍ଧୁ ଦାସ ଅନେକ ସମୟ ଓଡ଼ିଶା ବାହାରେ ବୁଲି ଜାତୀୟ ଆନ୍ଦୋଳନ ପାଇଁ କାର୍ଯ୍ୟ କରୁଥିଲେ। ବାକି ଚାରିଜଣ ଶିକ୍ଷକ ବକୁଳ ବନରେ ଶିକ୍ଷାଦାନ କରୁଥିଲେ। ତାଙ୍କ ଭିତରେ ସେହି ତାମିଲ୍ ଶିକ୍ଷକ ବେନୁ ଗୋପାଳ ଆଚାର୍ଯ୍ୟ ଥାଆନ୍ତି। ଏହି ପଞ୍ଚସଖାଙ୍କ ସହିତ ବାପାଙ୍କ ଭଲ ପରିଚୟ ଥିଲା। ତେଣୁ ସେମାନେ ମଧ୍ୟ ଆମର ସୁବିଧା, ଅସୁବିଧାରେ କିଛି ବୁଝୁଥିଲେ। ସାକ୍ଷୀଗୋପାଳରେ ଥିବାବେଳେ ସଂଗ୍ରାମର ଟାଇଫଏଡ୍ ଜ୍ୱର ହୋଇଥିଲା। ଶ୍ରୀ ନୀଳକଣ୍ଠ ଦାସ ତାର ଜ୍ୱର ଭଲହେବା ପର୍ଯ୍ୟନ୍ତ ରାତିଦିନ ଜଗି ତାର ସେବା କରିଥିଲେ। ସେହି ତାମିଲ୍ ଶିକ୍ଷକଙ୍କ ସହିତ ଥାଆନ୍ତି ତାଙ୍କ ସ୍ତ୍ରୀ ଶଙ୍କରୀ, ବିଧବା ଭଉଣୀ ଭାଗୀରଥୀ (ବୟସ ତିରିଶ) ଏବଂ ଅନ୍ୟ ଭଉଣୀ ବିଶାଳାକ୍ଷୀ (ବୟସ ପ୍ରାୟ

କୋଡ଼ିଏ)। ଶଙ୍କରୀ ଓ ଭାଗୀରଥୀ ଘରକାମ କରନ୍ତି ଏବଂ ବିଶାଳାକ୍ଷୀ ପାଠ ପଢ଼ାପଢ଼ି କରନ୍ତି। ତାଙ୍କର ଗୋଟିଏ ପୁଅ ଥିଲା। ତାର ନାମ କରାସିଂ (ତମ୍ବି)। ଗୋପବନ୍ଧୁ ଦାସଙ୍କ ପୁଅ ନାମ ଅଶୋକ। ତାକୁ ସେତେବେଳେ ବୟସ ସାତ-ଆଠ। ସେ ମଧ୍ୟ ତାଙ୍କ ପାଖରେ ଥାଆନ୍ତି।

ମାମୁଁଙ୍କ କହିବାନୁସାରେ ସେ ଆମକୁ ବେନୁ ଗୋପାଳ ଆଚାର୍ଯ୍ୟଙ୍କ ପାଖକୁ ପାଠ ପଢ଼ିବାକୁ କାହିଁକି ନେଉନାହାନ୍ତି ବୋଲି ପଚାରିବାରୁ ମାମୁଁ କଥାଟାକୁ ଏଡ଼େଇ ଯାଆନ୍ତି। ଦିନେ ସେ ମାଆକୁ କହିଲେ - ତାଙ୍କର ପରଦା ପ୍ରଥା ନାହିଁ। ତାଙ୍କ ସ୍ତ୍ରୀ ଓ ଭଉଣୀମାନେ ବିନା ପରଦାରେ ବୁଲନ୍ତି ତେଣୁ ତାଙ୍କ ସାଥିରେ ଏମାନେ ମିଶିବେ। ମାଆ ଏକଥା କହିବାରୁ ଆମ ମନରେ ଭାରି ରାଗ ହେଲା। କିଛିଦିନ ଆମେ ପରଦାରେ ରହିବା ପରେ ଚାକରାଣୀ ପୁନି ସହିତ ରାତି ପାହାନ୍ତାରୁ ଉଠି ସେହି ବଡ଼ ପୋଖରୀକୁ ଗାଧୋଇବାକୁ ଯାଉ। ସେହି ପୋଖରୀ ତୁଠରେ ଉକ୍ତ ତାମିଲ୍ ଶିକ୍ଷକଙ୍କ ଭଉଣୀଙ୍କ ସହ ଆମର ସାକ୍ଷାତ ହେଲା। ବିଶାଳାକ୍ଷୀ ଟିକେ ଟିକେ ଇଂରାଜୀ କହୁଥିଲା। ସେ ଆମ ପରିଚୟ ଜାଣି ତାଙ୍କ ଘରକୁ ଯିବାକୁ ଡାକିଲେ। ତାଙ୍କ ଘର ଥାଏ ମନ୍ଦିରର ପଛପଟେ। ଆମେ ଗାଧୋଇ ପାଧୋଇ ସକାଳୁ ସକାଳୁ ତାଙ୍କ ଘରକୁ ଚାଲିଗଲୁ।

ବେନୁ ଗୋପାଳଙ୍କ ସହିତ ଆମର ପରିଚୟ ହେଲା। ଆମେ ଇଂରାଜୀ କଥାବାର୍ତ୍ତା ହେଉଥିବାର ଦେଖି ସେ ଭାରି ଖୁସି ହେଲେ। ଆମେ ତାଙ୍କ ପାଖରେ ପଢ଼ିବାକୁ ଚାହୁଁ ବୋଲି ଆମର ଅଭିଳାଷ ଜଣାଇବାରୁ ସେ ଆମକୁ ପଢ଼େଇବାକୁ ରାଜି ହେଲେ ଏବଂ ଆମେ ଦୁଇ ଭଉଣୀ ତାଙ୍କ ଘରକୁ ଯାଇ ପଢ଼ିବାକୁ ସେ କହିଲେ। ଆମେ ଘରକୁ ଫେରୁ ଫେରୁ ପ୍ରାୟ ଆଠଟା ବାଜିଯିବାରୁ ମାମୁଁ ରାଗିଲେ। ମାଆ ମଧ୍ୟ ଅସନ୍ତୋଷ ପ୍ରକାଶ କଲେ। କାରଣ ବିନା ପରଦାରେ ଦିନରେ ରାସ୍ତାରେ ଯିବାର ପ୍ରଥା ସେତେବେଳେ ନଥିଲା। ଆମେ ତାଙ୍କ ପାଖରେ ପଢ଼ିବା କଥା ସ୍ଥିରକରି ଆସିଛୁ ବୋଲି ପ୍ରକାଶ କରିବାରୁ ମାଆ ଓ ମାମୁଁ ସ୍ଥିର କଲେ ସନ୍ଧ୍ୟାବେଳେ ଚାକରାଣୀ ପୁନି ସହିତ ଆମେ ଯିବୁ, ରାତି ଆଠଟା-ନଅଟା ଯାଏ ପଢ଼ିବୁ; କିନ୍ତୁ ଦିନରେ ଯାଇପାରିବୁ ନାହିଁ। ଏକଥା ଆମେ ବେନୁଗୋପାଳ ଆଚାର୍ଯ୍ୟଙ୍କୁ ଜଣାଇଲୁ। ସେ ଏକଥା ଶୁଣି ଭାରି ହସିଲେ ଏବଂ କହିଲେ - ଅନ୍ଧାର ରାତିରେ ସିନା ମଣିଷ କୁକର୍ମ କରେ, ଦିନ ଦ୍ୱିପ୍ରହରରେ ତ ଖରାପ କାମ କରିବାକୁ ସାହସ କରିପାରେନା। ମାମୁଁ ତମର ଦିନରେ ନଆସି ସନ୍ଧ୍ୟାରେ ଆସିବାକୁ କହୁଛନ୍ତି କେଉଁ ବୁଦ୍ଧିରେ ?

ମୁଁ ତାଙ୍କ ଯୁକ୍ତିର ଯଥାର୍ଥତା ଉପଲବ୍ଧି କଲି। ମାଆ ଓ ମାମୁଁ ମଧ୍ୟ କଥାକୁ ଠିକ୍ ବୁଝିଲେ ଏବଂ ସ୍ଥିର ହେଲା ଆମେ ସେଠାକୁ ସନ୍ଧ୍ୟା ଅନ୍ଧାରରେ ନଯାଇ ଦିନବେଳା

ଯିବୁ। ବାପାଙ୍କୁ ଚିଠି ଲେଖାଗଲା ଯେ ବେନୁଗୋପାଳ ପଢ଼ାଇବାକୁ ରାଜି ଅଛନ୍ତି। ବାପା ଖୁସି ହୋଇ ଖଣ୍ଡେ ଚିଠିରେ ତାଙ୍କ ପାଖକୁ ଲେଖିଲେ - ମୁଁ ଆପଣଙ୍କୁ ପ୍ରତି ମାସରେ ପଚାଶ ଟଙ୍କା ଲେଖାଏଁ ପାଠପଢ଼ା ବାବଦକୁ ଦେବି। ଆଚାର୍ଯ୍ୟ କହିଲେ- ମୁଁ ଜଣେ ସନ୍ନ୍ୟାସୀ। ମୁଁ ଟଙ୍କା ନେଇ ପାଠ ପଢ଼ାଏ ନାହିଁ।

ସେଠାରେ ପ୍ରାୟ ଦଶ ମାସ ଖଣ୍ଡେ ପଢ଼ିବା ପରେ ମାଆଙ୍କ ନାଁରେ ନିଆଳିରେ ଯେଉଁ ଜମିବାଡ଼ି ଥିଲା ସେଥିରେ ଗଣ୍ଡଗୋଳ ହେଲା। ତେଣୁ ମାଆ ଆମକୁ ନେଇ ନିଆଳି ଚାଲିଗଲେ। ଆମେ ବେନୁଗୋପାଳଙ୍କ ପାଖରେ ପାଠପଢ଼ା ବନ୍ଦ କରି ଗଲୁ। ଏଣେ ନିଆଳିରେ ଆମ ପାଠ ପଢ଼ାର ମଧ୍ୟ କୌଣସି ସୁବିଧା ନଥିଲା। ମୁଁ କନ୍ଦାକଟା କରିବାରୁ ବାପାଙ୍କ ପାଖକୁ ମାଆ ଚିଠି ଲେଖିଲା। ତଥାପି ମୋର ପାଠ ପଢ଼ିବାର କୌଣସି ବ୍ୟବସ୍ଥା ନହେବାରୁ ମୁଁ ନିରୁତ୍ସାହିତ ହୋଇ ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥିଲି। ଏ ଘଟଣା ମଧ୍ୟ ମାଆ ବାପାଙ୍କ ପାଖକୁ ଲେଖି ଜଣାଇଲା। ପାଠ ପଢ଼ାପଢ଼ି ବନ୍ଦ ହେବାରୁ ଜ୍ୟୋସ୍ନା ମନରେ ଆଦୌ ଦୁଃଖ ନଥିଲା। ପାଠପଢ଼ାର ଝୁଙ୍କ୍ ଯୋଗୁଁ ମୁଁ ଖ୍ରୀଷ୍ଟିଆନ୍ ହୋଇଯିବାକୁ ଚେଷ୍ଟା କଲି। ମତେ ବରଂ ଚାକରାଣୀ କରି ରଖନ୍ତୁ, କିନ୍ତୁ ପାଠ ପଢ଼ିବା ପାଇଁ ଜିଦ୍ ଧରିଲି। ସେତେବେଳେ ଥିବା କଟକ ରେଭେନ୍ସା ମହିଳା କଲେଜର ପ୍ରିନ୍ସିପାଲ୍ Miss Bank ପାଖକୁ ଖଣ୍ଡିଏ ଚିଠି ମଧ୍ୟ ଲେଖିଲି - ମୋର ପାଠ ପଢ଼ିବାକୁ ବହୁତ ଇଚ୍ଛା, ମୋ ପାଇଁ କିଛି ବ୍ୟବସ୍ଥା କରନ୍ତୁ। ମହାତ୍ମା ଗାନ୍ଧିଙ୍କ ପାଖକୁ ମଧ୍ୟ ଖଣ୍ଡେ ଚିଠି ଲେଖିଲି - ଏମାନେ ସମସ୍ତେ ନାରୀ ଶିକ୍ଷାର ବିରୋଧୀ, ମତେ ପାଠ ପଢ଼େଇବାକୁ ରାଜି ନୁହନ୍ତି, ତେଣୁ ମୋ ପାଇଁ କିଛି ବ୍ୟବସ୍ଥା କରନ୍ତୁ। ମୁଁ ବରଂ ଆଣ୍ଡାମାନ୍‌ରେ ରହିବି, ମୋ ପାଇଁ ପାଠ ପଢ଼େଇବାର ବ୍ୟବସ୍ଥା କରାଯାଉ। ଏ ଚିଠି ଡାକରେ ପକେଇବାକୁ ମୁଁ ଯାହାଙ୍କୁ ଦେଲି ସେ ମାଆଙ୍କୁ ଦେଲେ ଏବଂ ମାଆ ବାପାଙ୍କ ପାଖକୁ ପଠାଇଦେଲେ। ବାପା ଉତ୍ତର ଦେଲେ, ମତେ ଓ ଜ୍ୟୋସ୍ନାକୁ ନେଇ କଟକରେ ଦାଦାଙ୍କ ପାଖରେ ପହଞ୍ଚାଇ ଦେବାକୁ। ସେହି ମର୍ମରେ ସେ ଦାଦାଙ୍କ ପାଖକୁ ମଧ୍ୟ ଲେଖିଥିଲେ। ତେଣୁ ମାଆ ଆମକୁ ନେଇ ଦାଦିଙ୍କ ଘରେ ଛାଡ଼ି ବାଳିକା ସ୍କୁଲରେ ନାଁ ଲେଖାଇ ଦେବାକୁ କହିଲେ । ଖୁଡ଼ୀ ଏକଥାକୁ ନିନ୍ଦା କରନ୍ତି ଏବଂ କହନ୍ତି - ସ୍ତ୍ରୀଲୋକେ ପାଠ ପଢ଼ିବା ନିର୍ଲ୍ଲଜ ପଣିଆ। ପୁଅମାନଙ୍କ ସହ କିପରି ମିଶି ପାଠ ପଢ଼ିବେ? ମୁଁ ଏକଥାଗୁଡ଼ା ଶୁଣେ ନାହିଁ କିମ୍ବା ଶୁଣିକରି କିଛି କହେ ନାହିଁ, ଚୁପ୍ ରହିଯାଏ। ଦାଦା ମଝିରେ ମଝିରେ ଯୁକ୍ତି ବାଢ଼ି କହନ୍ତି - ପାଠ ପଢ଼ିଲେ ସ୍ତ୍ରୀଲୋକମାନଙ୍କର ଚରିତ୍ର ଖରାପ ହୁଏ। ମୁଁ ପ୍ରତିବାଦ କରି କହେ - ଏଗୁଡ଼ା କି କଥା ! ଯିଏ ଭଲ ହେବାକୁ ଚାହିଁବ ତାକୁ କେହି ଖରାପ କରିପାରିବେ ନାହିଁ। ଦାଦା କହନ୍ତି - ସମସ୍ତଙ୍କ ସହ ମିଶି ସମସ୍ତେ

ସେଇ ସୁଅରେ ଭାସି ଯାଆନ୍ତି। କେହି ଏଥିରୁ ବାଦ୍ ଯାଆନ୍ତି ନାହିଁ। ମୁଁ କହିଲି – ପାଠ ପଢ଼ା ସିଲାବସ୍‌ରେ କଣ ଏହି ଚରିତ୍ର ଖରାପ ହେବା ଗୋଟିଏ ବାଧତାମୂଳକ ବିଷୟ ଅଛି ? ତା ପରେ ସେ କିଛି ନ କହି ଚାଲିଯାଆନ୍ତି। ଆଉ ଦିନେ ଯୁକ୍ତି କଲେ – ତୁମେ ପାଠ ପଢ଼ିଲେ, ତୁମକୁ କେହି ବାହା ହେବେ ନାହିଁ। ମୁଁ ନିର୍ଭୟରେ କହିଲି – ଯେଉଁ ପାଷାଣ୍ଡ ବିବାହ ପାଇଁ ଶିକ୍ଷାକୁ disqualification ଭାବେ ସେଭଳି ଲୋକଙ୍କୁ ମୁଁ ବିବାହ କରିବି ନାହିଁ। ତା ଛଡ଼ା ମୋର ବିବାହରେ ଆଗ୍ରହ ନାହିଁ। ଆଉ ଦିନେ ସେ ଯୁକ୍ତି କଲେ – 'ତୁମେ କ'ଣ ଭାବିଛ, ପାଠ ପଢ଼ି ଓଡ଼ିଶାଟାକୁ ଲେଉଟାଇ ଦେବ ? ତୁମ ବାପା ବହୁତ ବିଦେଶ ବୁଲି ଥାଇ ପାରନ୍ତି, କିନ୍ତୁ ସେ ଦେଶର ନେତା ନୁହନ୍ତି। ଦେଶର ନେତା ହେଉଛନ୍ତି ଗୋକୁଳାନନ୍ଦ ଚୌଧୁରୀ। ଇଏ ଯାହା କହିବେ, ଓଡ଼ିଶା ତାକୁ ଅନୁକରଣ କରିବ। କିନ୍ତୁ ତୁମକୁ କିଏ ପଚାରେ ? ତୁମେ କେବଳ ଲୋକଙ୍କର ହାସ୍ୟାସ୍ପଦ ହେବ।'

ମୁଁ କହିଲି – ଓଡ଼ିଶାକୁ ଓଲଟାଇବା ମୋର ଉଦ୍ଦେଶ୍ୟ ନୁହେଁ। ମୁଁ ନିଜେ ମୁହଁ ମାଡ଼ି ପଡ଼ିଛି। ମୁଁ ନିଜକୁ ଓଲଟାଇବାକୁ ଚାହେଁ। ଏ ପୃଥିବୀର ସୁନ୍ଦର ଦୃଶ୍ୟ, ସୂର୍ଯ୍ୟ, ଚନ୍ଦ୍ର, ତାରା, ନାନା ଜାତିର ସୁନ୍ଦର ପକ୍ଷୀ, ଗଛ, ଲତା, ଫୁଲ, ଫଳ ଦେଖି ଖୁସି ହେବି। ଅନ୍ୟ କେହି ଯଦି ଓଲଟାଇବାକୁ ଚାହେଁ ମୁଁ ଖୁସି ହେବି।

ଆଉ ଦିନେ ସେ କହିଲେ– 'କୃତ୍ତିବାସ ସାମନ୍ତରାୟ, ରେଭେନ୍ସା କଲେଜ୍‌ର ଜଣେ ପ୍ରଫେସର, ଯିଏ କି ଡବଲ୍ ଏମ୍.ଏ., ମହାପଣ୍ଡିତ, ମହାଜ୍ଞାନୀ; ତାଙ୍କ ଉପଦେଶ ସମସ୍ତେ ମାନନ୍ତି। କାହାର କିଛି ଅସୁବିଧା ହେଲେ ସେମାନେ ତାଙ୍କ ପରାମର୍ଶ ଲୋଡ଼ିଥାନ୍ତି। ତାଙ୍କ ପରାମର୍ଶ ଅନୁସାରେ କାମ କରି ଉପକୃତ ହୋଇଥାନ୍ତି। ମୁଁ କାଲି ତାଙ୍କ ପାଖକୁ ଯାଇଥିଲି। ସ୍ତ୍ରୀ ଶିକ୍ଷା ସମ୍ବନ୍ଧରେ ଆପଣଙ୍କର ମତ କ'ଣ ? ସେ କହିଲେ– ସ୍ତ୍ରୀଲୋକମାନେ ମାତୃଭାଷା ପଢ଼ିବା ଦରକାର ଯେଉଁଥିରେ କି ସେମାନେ ପୋଥି ପୁରାଣ ପଢ଼ି ପାରିବେ, ବୁଝି ପାରିବେ ଏବଂ ଓଡ଼ିଆରେ ଚିଠିପତ୍ର ଲେଖିପାରିବେ। ଆଉ କିଛି ଅଙ୍କ ଜାଣିଥିବେ ଯେଉଁଥିରେ ଘରର ହିସାବ ରଖିପାରିବେ। ଅଳ୍ପ କିଛି ଇଂରାଜୀ ଜାଣିଥିଲେ ଲଫାପା ଉପରେ ଠିକଣା ଲେଖିପାରିବେ, ଗୋଟିଏ ଟେଲିଗ୍ରାମ୍ ଆସିଲେ ପଢ଼ି ବୁଝି ପାରିବେ ଏବଂ ଦରକାର ପଡ଼ିଲେ ଟେଲିଗ୍ରାମ୍‌ଟିଏ କରି ପାରିବେ। ତୁମର ତ ସେତକ ଜ୍ଞାନ ଅଛି, ଆଉ ଅଧିକ କାହିଁକି ପଢ଼ିବ ?

ମୁଁ କହିଲି – କୃତ୍ତିବାସ ସାମନ୍ତରାୟ ମହାପଣ୍ଡିତ ହୋଇଛନ୍ତି ବୋଲି ଲୋକେ ତାଙ୍କ କଥା ମାନନ୍ତି, ତେଣୁ ମୁଁ ସେହିପରି ପାଣ୍ଡିତ୍ୟ ଲାଭ କରିବାକୁ ଚାହେଁ।

ଏ ଯୁକ୍ତି ଶୁଣି ଦାଦା ମୋ ପାଠପଢ଼ା ସମ୍ବନ୍ଧରେ କିଛି କହନ୍ତି ନାହିଁ କି ବାଳିକା ବିଦ୍ୟାଳୟରେ ମୋ ନାଁ ଲେଖାଇବାର ନାଁ ଧରନ୍ତି ନାହିଁ। ଏହିପରି ଦୁଇମାସ ବିତିଯିବାରୁ ମୁଁ ବାପାଙ୍କ ପାଖକୁ ଚିଠି ଲେଖିଲି ଯେ ଦାଦା ଖୁଡ଼ୀଙ୍କର ଇଚ୍ଛା ନୁହେଁ, ଆମେ ପାଠ ପଢୁ। ତୁମେ ଯଦି ଏଥିପାଇଁ କିଛି ବ୍ୟବସ୍ଥା ନ କରିବ, ତେବେ ମୁଁ ମୋର ବାଟ ବାଛିନେବି।

ବାପା ଦାଦାଙ୍କ ପାଖକୁ ଟେଲିଗ୍ରାମ୍ କଲେ ଯେ ବୀଣା ଓ ଜ୍ୟୋତ୍ସ୍ନାକୁ ତୁରନ୍ତ ବାଳିକା ସ୍କୁଲରେ ନାଁ ଲେଖାଇ ଦିଅ ଏବଂ ଟଙ୍କା ମଧ୍ୟ ପଠାଇଲେ। ତେଣୁ ଦାଦା ଆମ ଦୁଇଭଉଣୀଙ୍କର ରେଭେନ୍ସା ବାଳିକା ବିଦ୍ୟାଳୟରେ ନାମ ଲେଖାଇଦେଲେ। ସେଠାରେ ପଢୁଥିବା ସମୟରେ ନାରୀନେତ୍ରୀ ସରଳା ଦେବୀ କେଉଁଠୁ ଆମ ବିଷୟରେ ଶୁଣି ଦାଦାଙ୍କ ଘରକୁ ଆସି ଖୁଡ଼ୀଙ୍କୁ କହିଲେ - ମୁଁ ବୀଣାକୁ ସାଙ୍ଗରେ ନେଇ ଯାଉଛି, ସନ୍ଧ୍ୟାରେ ଆଣି ଛାଡ଼ି ଦେଇଯିବି।

ସରଳା ଦେବୀ ତାଙ୍କ ଘରେ ଗୋଟିଏ ଯୁବକ ସଂଘ ଗଢ଼ିଥାନ୍ତି। ଯାହାର ସଭାପତି ଥାଆନ୍ତି ସେ ନିଜେ। ଅନ୍ନଦା ଶଙ୍କର ରାୟ, ବୈକୁଣ୍ଠ ପଟ୍ଟନାୟକ, ବାଳମୁକୁନ୍ଦ ନାୟକ, ନବକୃଷ୍ଣ ଚୌଧୁରୀ, ଏମାନେ ସମସ୍ତେ ଛାତ୍ର ଥିଲେ। ସରଳା ଦେବୀଙ୍କର ସେହି ସଂଘର ନାମ ଥିଲା 'ସବୁଜ ସଂଘ'। ସେମାନଙ୍କର ଗୋଟିଏ ପତ୍ରିକା ମଧ୍ୟ ବାହାରୁ ଥିଲା। ମୁଁ ସେମାନଙ୍କୁ ଦେଖି ମିଶି ପାରୁ ନଥାଏ। ଲାଜ କରି ଚୁପ୍‌ଚାପ୍ ବସିଥାଏ। ସେମାନେ ଖୁବ୍ ମୁକ୍ତ ଭାବରେ ହସଖୁସି ମଜା କରୁଥାନ୍ତି। ବେଳେବେଳେ ସରଳା ଦେବୀ ମତେ ଚିଡ଼ାନ୍ତି - ତୁ ଗୋଟାଏ ରସହୀନା କାଠଫଳ।

ସନ୍ଧ୍ୟାବେଳେ ଯେତେବେଳେ ଘରକୁ ଫେରିଲି ଦାଦା ମତେ ଖୁବ୍ ଗାଳିଦେଲେ। କହିଲେ - କଚେରୀରେ କେତେ ଲୋକ ଥିଲେ, ତାଙ୍କରି ସାମ୍ନା ଦେଇ ଗଲୁ। ସରଳା ଦେବୀଙ୍କ ଯୁବକ ସଂଘରେ କେତେ ଲୋକ ଥାନ୍ତି, ସେମାନଙ୍କ ସଙ୍ଗରେ ଆଡ୍‌ଡ଼ା ମାରି ଆସିଲୁ। ଆଉ ଦିନେ ମତେ ନପଚାରି ଘରୁ ଗୋଡ଼ କାଢ଼ିବୁ ନାହିଁ।

ଏହା ଭିତରେ ତାଙ୍କ ଘରେ ଗୋଟିଏ ଦୁର୍ଘଟଣା ଘଟିଗଲା, ଯେଉଁ ବିଷୟ ଶୁଣି ବାପା ଭାବିଲେ ଆମର ଆଉ ସେଠାରେ ରହିବା ନିରାପଦ ନୁହେଁ। ଦାଦାଙ୍କ ପାଖକୁ ସେ ଟେଲିଗ୍ରାମ୍ କରି ଜଣାଇଦେଲେ - ବୀଣା ଓ ଜ୍ୟୋତ୍ସ୍ନାକୁ ଶୀଘ୍ର ଗାଁକୁ ପଠାଇଦିଅ। ମାଆ ପାଖକୁ ମଧ୍ୟ ସେହିପରି କରିଥିଲେ, ତେଣୁ ମାଆ ଆସି ଆମ ଦୁହିଁଙ୍କୁ ଗାଁକୁ ନେଇଗଲେ। ଗାଁରେ ଆମ ପାଠପଢ଼ାର ପୂର୍ଣ୍ଣଚ୍ଛେଦ ପଡ଼ିଲା ବୋଲି ଭାବିଲି। ମାସେ ଖଣ୍ଡେ ପରେ ବାପା ଛୁଟିନେଇ କଟକ ବାଟଦେଇ ଗାଁକୁ ଆସିଲେ । ମୋତେ କହିଲେ - ମୁଁ ବୀର ସାଙ୍ଗରେ କଥାବାର୍ତ୍ତା ହୋଇ ଆସିଛି, ସ୍ଥିର ହୋଇଛି, ସେ ଜଣେ ଶିକ୍ଷକ ଠିକ୍ କରିଛି, ଯିଏ ଆମ ଘରେ ରହି ତୁମକୁ ପଢ଼ାଇବ।

ମୁଁ ଏକଥାରେ ସନ୍ତୁଷ୍ଟ ହେଲି ନାହିଁ ଏବଂ ଭାବିଲି – ଯେଉଁ ଶିକ୍ଷକମାନେ ଘରେ ରହି ପଢ଼ାନ୍ତି, ସେମାନେ କଦାପି ଉଚ୍ଚକୋଟିର ଶିକ୍ଷକ ହୋଇ ନଥିବେ। ତଥାପି 'ନାହିଁ ମାମୁଁଠାରୁ କଣାମାମୁଁ ଭଲ'ଭାବିକରି ଶିକ୍ଷକଙ୍କ ଆଗମନ ଅପେକ୍ଷାରେ ରହିଲି। କିଛିଦିନ ପରେ ଶିକ୍ଷକ ନ ଆସିବାର କାରଣ ପଚାରି ଦାଦାଙ୍କ ପାଖକୁ ଚିଠି ଲେଖିଲି। ଉତ୍ତର ଆସିଲା – ବର୍ତ୍ତମାନ ପିଲାଙ୍କର ପରୀକ୍ଷା ଚାଲିଛି। ପରୀକ୍ଷା ସରିଲେ ଆସି ପହଞ୍ଚିବେ।

ମୁଁ ମନେମନେ ଭାବିଲି – ଯେଉଁ ଲୋକ ପରୀକ୍ଷା ଦେଉଛି, ସେ କି ଶିକ୍ଷକତା କରିବ ? ଉପାୟ ନ ପାଇ ପୁଣି ଅପେକ୍ଷା କରି ରହିଲି। ଶିକ୍ଷକ ନ ଆସିବାରୁ ଦାଦାଙ୍କ ପାଖକୁ ପୁଣି ଚିଠି ଲେଖିଲି ଏବଂ ଉତ୍ତର ଆସିଲା – ବର୍ତ୍ତମାନ ସପ୍ଲିମେଣ୍ଟାରୀ ପରୀକ୍ଷା ଚାଲିଛି, ପରୀକ୍ଷା ଫଳ ବାହାରିଲେ ଶିକ୍ଷକ ମିଳିବେ।

ଚିଠି ପଢ଼ି ମୁଁ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଲି। କାନ୍ଦିଲି ଏବଂ କହିଲି – କିଭଳି ମାଷ୍ଟର ଆସିବ ଆଉ କିଭଳି ପାଠ ପଢ଼ା ହେବ ତାହା ଜଳଜଳ ହୋଇ ଦେଖାଯାଉଛି। ମାଷ୍ଟର ପୁଣି ଏମିତି ଅପୂର୍ବ ଯେ ମିଳୁ ନାହାନ୍ତି ! ଏହି ସମୟରେ ମୋର ବଡ଼ବାପାଙ୍କ ପୁଅ ସୁନ୍ଦର ଭାଇ (ବ୍ରଜସୁନ୍ଦର ରାଉତରାଏ, ପରେ ପଟ୍ଟନାୟକ) ମୋତେ କହିଲେ – ତୁ ବୁଝିନୁ କି ବୀଣା, ଦାଦା ଓ ବଡ଼ଦାଦାଙ୍କ ଭିତରେ କଥାବାର୍ତ୍ତା ହୋଇଥିବାର ମୁଁ ଶୁଣିଛି, ସେମାନେ ହଁ ପଢ଼େଇବା ହଁ ପଢ଼େଇବା କହି ସମୟ ଗଡ଼ାଇଦେବେ ଏବଂ ଗୋଟାଏ ବରପାତ୍ର ଖୋଜି ତୋର ବାହାଘର କରିଦେଲେ ପାଠପଢ଼ା ଝୁଙ୍କ ଆପେ ଆପେ ମରିଯିବ।

ଏକଥା ଶୁଣି ମୁଁ ହତାଶ ହେଲି ଏବଂ ଆତ୍ମହତ୍ୟା ଛଡ଼ା ମୋର ଅନ୍ୟ ଗତି ନାହିଁ ବୋଲି ଭାବିଲି। ଅନେକବାର ଆତ୍ମହତ୍ୟା କରିବାକୁ ଚେଷ୍ଟା କରି ମଧ୍ୟ ବିଫଳ ହେଲି। ମାଆ ବିବ୍ରତ ହୋଇ ବାପାଙ୍କ ପାଖକୁ ଲେଖିଲା – ବୀଣା ଯାହା କରୁଛି ନା ସେଥିଲାଗି ମୋତେ ବି ଦିନେ ଆତ୍ମହତ୍ୟା କରିବାକୁ ପଡ଼ିବ। ଶୀଘ୍ର ମୋତେ ଉପାୟ କୁହ।

ବାପା ଟେଲିଗ୍ରାମ୍ କରି ଜଣାଇଲେ – ବୀଣା, ଜ୍ୟୋତ୍ସ୍ନା, ବଡ଼ଭାଇଙ୍କ ବିଧବା ସ୍ତ୍ରୀ ଏବଂ ଆମ ଘରର ପୁରୁଣା ଚାକର ବଳିଆକୁ ନେଇ କଟକରେ ଗୋଟେ ଭଡ଼ାଘର ନେଇ ରୁହ ଏବଂ ତୁମ ସହିତ ସଂଗ୍ରାମ ମଧ୍ୟ ରହିବ। ଯେଉଁ ମାଷ୍ଟର ସଂଗ୍ରାମକୁ ଟିଉସନ୍ କରୁଛନ୍ତି ସେ ବୀଣା ଓ ଜ୍ୟୋତ୍ସ୍ନାକୁ ମଧ୍ୟ ପଢ଼ାଇବେ।

ତାହା ହିଁ ହେଲା। ଗୋଟିଏ ଭଡ଼ାଘର ଠିକ୍ ହେଲା, ଆମେ ସେଇଠି ରହିଲୁ। ସଂଗ୍ରାମକୁ ପଢ଼ାଉଥିବା ଶିକ୍ଷକ ଗୋପୀନାଥ ବେହେରା ଆମକୁ ମଧ୍ୟ ପଢ଼ାଇଲେ। ତା

ପରେ କିଛିଦିନ ପରେ ବାପା ଛୁଟି ନେଇ କଟକ ବାଟେ ଗାଁକୁ ଆସିବେ ବୋଲି ଖବର ଆସିଲା। କଟକ ରେଳ ଷ୍ଟେସନ୍‌ରେ ମୁଁ ଓ ଜ୍ୟୋସ୍ନା ତାଙ୍କୁ ଭେଟିବାକୁ ଜିଦି କରିବାରୁ ଆମ ଶିକ୍ଷକ କହିଲେ - ଏତେ ପୁରୁଷ ଲୋକ ଗହଳିରେ ତୁମେ ସେଠାକୁ ଯାଇପାରିବ ନାହିଁ। ତେଣୁ ଗୋଟାଏ ଘୋଡ଼ା ଗାଡ଼ି ଦୁଆରକୁ ଆସିଲା। ଦୁଇ ଜଣ ଲୋକ ଚାଦର ଧରିଲେ, ଆମେ ଦୁଇଜଣ ଘୋଡ଼ା ଗାଡ଼ିରେ ବସିଲୁ। ତା ପରେ ଗାଡ଼ିର କବାଟ ଝରକା ସବୁ ବନ୍ଦ ହେଲା। ଆମେ ଯାଇ ଷ୍ଟେସନ୍‌ରେ ପହଞ୍ଚିଲୁ। ଆମକୁ କିନ୍ତୁ ଘୋଡ଼ା ଗାଡ଼ିରୁ ଓହ୍ଲାଇ ପ୍ଲାଟ୍‌ଫର୍ମକୁ ଯିବାକୁ ଦିଆଗଲା ନାହିଁ। ମାଆ ସାନପିଲାମାନଙ୍କୁ ନେଇ ପ୍ଲାଟ୍‌ଫର୍ମକୁ ଗଲା। ଆମେ ଦୁଇ ଭଉଣୀ ଘୋଡ଼ାଗାଡ଼ି ଭିତରେ ରହିଲୁ। ବାପା ଆସି କହିଲେ - ପ୍ଲାଟ୍‌ଫର୍ମକୁ ତ ଗଲ ନାହିଁ, ତା ହେଲେ ଷ୍ଟେସନ୍‌କୁ ଆସୁଥିଲ କାହିଁକି ? ମାଷ୍ଟ୍ରେ ଆମକୁ ଯିବାକୁ ଦେଲେ ନାହିଁ ବୋଲି କହିବାରୁ ବାପା କହିଲେ - ଆଛା ଗବା ମାଷ୍ଟରଟିଏ ତ ! ତା ପରେ କିଛିଦିନ ପରେ ବାପାଙ୍କର ମିଡ଼ିଲ୍ ଇଷ୍ଟରୁ ବଦଳି ହୋଇଗଲା ଭାରତକୁ। ସେ ଆମଙ୍କୁ ସଙ୍ଗରେ ନେଇଗଲେ ଏବଂ ଆମେ ଯାଇ ରହିଲୁ କରାଚୀରେ। କିଛିଦିନ ପରେ ବାପା ମିଲିଟାରୀ ସର୍ଭିସ୍‌ରୁ ଇସ୍ତଫା ଦେଇ ସିଭିଲ୍ ସର୍ଭିସ୍‌କୁ ବଦଳି ହୋଇ ଓଡ଼ିଶାକୁ ଫେରିଲେ। ତାଙ୍କ ସାଙ୍ଗରେ ଆମେ ବି ଆସିଲୁ। ଫେରିଲା ବେଳେ ବାପା କହିଲେ ତୀର୍ଥ କରି ଯିବା।

କରାଚୀରୁ ଓଡ଼ିଶାକୁ ଆସିବା ବେଳେ ବାଟରେ ହରିଦ୍ୱାର ଦର୍ଶନ କଲୁ। ସେଠାରେ ସ୍ୱାମୀ ଶିବାନନ୍ଦଙ୍କ ଆଶ୍ରମ ଓ ଅନେକ ତୀର୍ଥସ୍ଥାନ ପରିଦର୍ଶନ କଲୁ। ଗଙ୍ଗାସ୍ନାନ କଲୁ। ହରିଦ୍ୱାରର ଅପୂର୍ବ ପ୍ରାକୃତିକ ଦୃଶ୍ୟ ମୋତେ ବିଭୋର କରିଥିଲା। ଉତ୍ତୁଙ୍ଗ ପର୍ବତମାଳା ଉପରେ ବୃକ୍ଷରାଜିର ଦୃଶ୍ୟ ମୋତେ ମୁଗ୍ଧ କରିଥିଲା। ଉତ୍ତୁଙ୍ଗ ପର୍ବତମାଳା ଉପରେ ଦୀର୍ଘ ବୃକ୍ଷରାଜି ଦେଖିଲେ ମନେ ହେଉଥିଲା, ସେଗୁଡ଼ିକ ଯେପରି ସ୍ୱର୍ଗପୁରୀକୁ ସ୍ପର୍ଶ କରୁଛି। ଏବଂ ପବନରେ ଦୋହଲିଲା ବେଳେ ମନେହୁଏ ସେମାନେ ଯେପରି ଭଗବାନଙ୍କ ପାଦ ତଳେ ପ୍ରଣତି ଢାଳୁଛନ୍ତି। ଦେଖିକରି ମୋର ପୁଲକ ଜାତ ହୋଇଥିଲା। ମୁଁ ମନେ ମନେ ଭାବୁଥିଲି ଏଇମାନଙ୍କ ପରି ଗୋଟିଏ ବୃକ୍ଷ ହୋଇଥାନ୍ତି କି ? ତାହାହେଲେ ମୁଁ ଭଗବାନଙ୍କୁ ଦର୍ଶନ ଓ ସ୍ପର୍ଶ କରିପାରୁଥାନ୍ତି। ସେଠାରେ ଶୀତଳବାୟୁ ମୋର ଅଙ୍ଗସ୍ପର୍ଶ କଲାବେଳେ ଭଗବାନଙ୍କର ପରଶ ପାଇବା ପରି ମନେ ହେଉଥିଲା। ମୁଁ ଏତେ ମୁଗ୍ଧ ହୋଇ ଯାଇଥିଲି ଯେ, ମୋର ସମଗ୍ର ଜୀବନଟା ଏହି ସ୍ଥାନରେ କଟାଇ ଦିଅନ୍ତି କି ବୋଲି ମନରେ ଭାବନା ଆସିଥିଲା। ସକାଳୁ ଗଙ୍ଗାନଦୀକୁ ସ୍ନାନ କରିବାକୁ ଗଲୁ। ସେଠାରେ ଗଙ୍ଗାଜଳ ଏତେ ସ୍ୱଚ୍ଛ ଯେ, ପ୍ରାୟ ଦେଢ଼ପୁରୁଷ ତଳେ ଗଭୀର ଶଯ୍ୟା ସ୍ପଷ୍ଟ ଦେଖାଯାଉଥାଏ। ନଦୀ ବହିଯାଉଥିବାରୁ କୁଳୁ କୁଳୁ ଶବ୍ଦ

ଶୁଣାଯାଉଥାଏ। ସେ ସ୍ଥାନରେ ମାଛ ମାରିବା ମନାଥିବାରୁ ମାଛମାନେ ନିର୍ଭୟରେ ମନୁଷ୍ୟପାଖକୁ ଚାଲି ଆସନ୍ତି। ଯାତ୍ରୀମାନେ ଖାଦ୍ୟ ଆଣି ମାଛମାନେ ଖାଇବା ପାଇଁ ପାଣିରେ ପକାନ୍ତି। ତେଣୁ ପାଣିରେ ଗୋଡ଼ ଦେବାମାତ୍ରେ ମାଛମାନେ ଗୋଡ଼ ପାଖକୁ ଚାଲି ଆସନ୍ତି। ଗଙ୍ଗାନଦୀରେ ସ୍ନାନକରି ମଠରେ ଖାଇ ଫେରିଲୁ। ସେ ଜାଗାରେ ଦୁଇଦିନ ରହିଲୁ। ବାପା ତାଙ୍କ ବାପାବୋଉ ପାଇଁ ଗଙ୍ଗାନଦୀରେ ଶ୍ରାଦ୍ଧ ଦେଲେ। ମଥୁରା, ବୃନ୍ଦାବନ, କାଶୀ, ଏହ୍ଲାବାଦରେ ତ୍ରିବେଣୀରେ ସ୍ନାନ କଲୁ। ସେ ଜାଗାରେ ମଧ୍ୟ ତାଙ୍କ ବାପା ବୋଉଙ୍କୁ ଶ୍ରାଦ୍ଧ ଦେଲେ।

ଆମେ ଯେତେବେଳେ ବୃନ୍ଦାବନରେ ପହଞ୍ଚିଲୁ ସନ୍ଧ୍ୟା ହୋଇ ଆସୁଥାଏ। ରେଳଗାଡ଼ିରେ ବସି ଆସିଲା ବେଳେ ଦେଖିଲୁ ଦୁଇକଡ଼ ରାସ୍ତାରେ ଖାଲି ତୁଳସୀ ବଣ ଭର୍ତ୍ତି। ମୁଁ ଭାବିଲି ଏଇଥିପାଇଁ ବୋଧେ ଏହାକୁ ବୃନ୍ଦାବନ କୁହାଯାଏ। ତା ପରେ ମନ୍ଦିର ଭିତରକୁ ଗଲୁ। ଦେଖିଲୁ ଛୁଆଗୁଡ଼ିଏ ଖୁବ୍ ଆନନ୍ଦରେ ନାଚୁଥାନ୍ତି ଏବଂ ଗୀତ ବୋଲୁଥାନ୍ତି।

ରାଧା କୁଣ୍ଡ ଶ୍ୟାମ କୁଣ୍ଡ ଗିରି ଗୋବର୍ଦ୍ଧନ
ମଧୁର ମଧୁର ବଇଁଶୀ ବାଜେ
ଏଇତ ବୃନ୍ଦାବନ
ବେଟା ବୋଲ୍ ହରି ॥

ଏ ଦୃଶ୍ୟ ଦେଖି ମନ ପୁଲକିତ ହୋଇଗଲା। ସେଠାରେ କଳାମୁଗୁନି ପଥର ନିର୍ମିତ ରାଧାକୃଷ୍ଣଙ୍କର ବିଗ୍ରହ କିଣିଲି। ସେହି ବିଗ୍ରହ ଦୁଇଟି ମୁଁ ସବୁବେଳେ ପୂଜା କରୁଥିଲି। ମୁଁ ଡାକ୍ତରୀ ପଢ଼ିବାକୁ ଯିବା ସମୟରେ ମାଆ ପୂଜା କରୁଥିଲେ। ଆମେ ବୃନ୍ଦାବନରେ ଦୁଧ ଏବଂ ଦୁଧରେ ତିଆରି ନାନା ପ୍ରକାର ମିଠା ଖାଇଲୁ। ମଥୁରା ଏବଂ କାଶୀ ଯାଇଥିଲୁ। ଷ୍ଟିମର ନମିଳିବାରୁ ଅଯୋଧ୍ୟା ଯାଇପାରିଲୁ ନାହିଁ।

ଆମେ ବୃନ୍ଦାବନରେ ଜଣେ ସନ୍ନ୍ୟାସୀଙ୍କର କୁଟୀରକୁ ଯାଇଥିଲୁ। କୁଟୀର ଭିତରଟା ପ୍ରଶସ୍ତ; କିନ୍ତୁ ଦୁଆର ମୁହଁଟି ଛୋଟ ଥିବାରୁ ଆମେ ଗଳିକରି ଗଲୁ। ସେ ସନ୍ନ୍ୟାସୀ ଜଣକ ବଙ୍ଗାଳି ଥିଲେ। ଶରୀରଟି ସ୍ଥୂଳକାୟ ଏବଂ ଅତ୍ୟନ୍ତ ଗୌରବର୍ଣ୍ଣ। ସେ ଗୋଟିଏ ଆସନ ପକାଇ ପଦ୍ମାସନରେ ବସିଥାନ୍ତି। ସମ୍ମୁଖରେ ଗୋଟିଏ ଡେକ୍ସ ଉପରେ ଖାତା ରଖି ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା କବିତା ଆକାରରେ ଲେଖୁଥାନ୍ତି। ଆମେ ତାଙ୍କୁ ପ୍ରଣାମ କରି ତାଙ୍କ ପାଖରେ ବସିଲୁ। ସେ ଭଗବାନ ଶ୍ରୀକୃଷ୍ଣଙ୍କ ଉପରେ ଆଧାରିତ କବିତାଟି ପଢ଼ି ଆମକୁ ବୁଝାଉଥାଆନ୍ତି ଏବଂ ପଢୁଥିବା ସମୟରେ ତାଙ୍କ ଆଖିରୁ

ଝରଝର ଲୁହ ବୋହି ଯାଉଥାଏ। ଆମ୍ଭେମାନେ ତାଙ୍କୁ ପ୍ରଣାମ କରି ଆସିଲା ବେଳକୁ, ସେ ତାଙ୍କର ଜପାମାଳି ଥିବା ଝୁଲାମୁଣିଟିକୁ ଆମ ସମସ୍ତଙ୍କ ମୁଣ୍ଡରେ ଛୁଆଁଇଲେ ଏବଂ କହିଲେ–

ହରେ କୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ।

ସେ ଏହି ନାମଟିକୁ ସଦାସର୍ବଦା ଜପ କରିବା ପାଇଁ ଆମକୁ କହିଲେ। ସେହିଦିନଠାରୁ ଏହି ଜପ ମୁଁ ଆଜି ପର୍ଯ୍ୟନ୍ତ କରୁଛି। ମୋର ଭଉଣୀ ଜ୍ୟୋସ୍ନା ମଧ୍ୟ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ଜପ କରୁଥିଲା। ଆମବାପାଙ୍କର ଆମେ ଛଅଟି ସନ୍ତାନ ଥିଲୁ। ପାଞ୍ଚଭଉଣୀ ଓ ଗୋଟିଏ ଭାଇ ସଂଗ୍ରାମ। ସେତେବେଳକୁ ମୋ ବୋଉର ସପ୍ତମଗର୍ଭରେ ଦ୍ୱିତୀୟ ପୁତ୍ର ଗର୍ଭସ୍ଥ ଥିଲା। ମଥୁରା, ବୃନ୍ଦାବନ, କାଶୀ, ଏଲ୍‌ହାବାଦର ତ୍ରିବେଣୀ ସଙ୍ଗମରେ ସ୍ନାନ କଲୁ। ତ୍ରିବେଣୀରେ ବାପା ତାଙ୍କ ବାପାବୋଉଙ୍କ ପାଇଁ ଶ୍ରାଦ୍ଧ ଦେଲେ। ବୁଦ୍ଧଗୟା ଯେଉଁଠି ଭଗବାନ ବୁଦ୍ଧ ଏକ ବିରାଟ ଅଶ୍ୱତ୍‌ଥ ବୃକ୍ଷ ତଳେ ତପସ୍ୟା କରି ସିଦ୍ଧିଲାଭ କରିଥିଲେ, ସେ ସ୍ଥାନ ପରିଦର୍ଶନ କଲୁ। ବୁଦ୍ଧ ଗୟାରେ ମଧ୍ୟ ବାପା ତାଙ୍କ ବାପାବୋଉଙ୍କୁ ଶ୍ରାଦ୍ଧ ଦେଲେ। ସବାଶେଷରେ ପୁରୀକୁ ଆସି ଜଗନ୍ନାଥ ଦର୍ଶନ କଲୁ। ପୁରୀରେ ମଧ୍ୟ ବାପା ତାଙ୍କ ବାପା ବୋଉଙ୍କୁ ଶ୍ରାଦ୍ଧ ଦେଲେ।

ବାପା ଓଡ଼ିଶାକୁ ଫେରି ଆସିବା ପରେ କଟକ ମେଡ଼ିକାଲ ସ୍କୁଲରେ ଟିଚର ଭାବରେ ନିଯୁକ୍ତି ପାଇଲେ। ଡଗର ପଡ଼ାରେ ଗୋଟିଏ ବଡ଼ କୋଠା ଭଡ଼ା ନେଲେ। ଆମେ ସମସ୍ତେ ସେ ଘରେ ରହିଲୁ।

ମୋ ବୋଉର ସମ୍ପର୍କୀୟ ଭାଇ ଗୋପାଳ ଚନ୍ଦ୍ର ମହାନ୍ତି ସ୍କୁଲ ଟିଚର ଥାଆନ୍ତି। ସେ ବର୍ତ୍ତମାନର ଅର୍ଥୋପେଡ଼ିକ୍ସ ସର୍ଜନ ଶ୍ରୀ ରାଧାଶ୍ୟାମ ମହାନ୍ତିଙ୍କର ବାପା। ଦିନେ ସେ ଆମଘରକୁ ଆସିଲେ ଏବଂ ଆମ ସହିତ ଦେଖା କରିବାକୁ ଚାହିଁଲେ। ବୋଉ ଆମକୁ କହିଲା – ଏ ତୁମର ଗୋପାଳ ମାମୁଁ। ତୁମକୁ ଦେଖିବାକୁ ଆସିଛନ୍ତି। ଆମେମାନେ ପଢ଼ାଘରେ ପଢୁଥିଲୁ। ଆମର ମୁଣ୍ଡରେ ଥିବା ଓଢ଼ଣାକୁ ଆଉଟିକେ ଟାଣିଦେଇ ଚୌକିଛାଡ଼ି ଠିଆହେଲୁ ଓ ତାଙ୍କୁ ନମସ୍କାର କରି ଗୋଟିଏ ଚୌକି ଦେଖେଇଦେଲୁ, ବସିବା ପାଇଁ। ସେ ବସିଲେ।

ବୋଉ ତାଙ୍କ ପାଇଁ ଚାହା କରି ଆଣିବ କହି ରୋଷେଇ ଘରକୁ ଚାଲିଗଲା।

ଗୋପାଳ ମାମୁଁ ମୋ ଆଡ଼କୁ ଅନାଇ କହିଲେ, ଶୁଣୁଛି କୁଆଡ଼େ ପାଠ ('ପାଠ' ଶବ୍ଦଟି ଉପରେ ଅଧିକ ଜୋର ଦେଇ) ପଢୁଛ।

ମୁଁ କହିଲି - ଆଜ୍ଞା ହଁ।

ସେ ପଚାରିଲେ - କାହିଁକି ପଢୁଛ ?

ମୁଁ - ଜ୍ଞାନ ଅର୍ଜନ କରିବାକୁ।

ଗୋପାଳ ମାମୁଁ - କ'ଣ ପଢୁଛ ?

ମୁଁ - ଏ ବର୍ଷ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେବାକୁ ଆମେ ପ୍ରସ୍ତୁତ ହେଉଛୁ।

ଆମ ପଢ଼ାଘରେ ଗୋଟିଏ ଲାଇବ୍ରେରୀ ଥାଏ। ସେଥିରେ ଅନେକଗୁଡ଼ିଏ ଇଂରାଜୀ ବହି ଥାଏ। ସେଗୁଡ଼ିକ ହେଲା -

୧. *Book of Knowledge* ର ବାରଟା Volume

୨. *Master pieces of world's best writers* ବାରଟା Volume

୩. *Sherlock Holmes*

୪. *Lamb's Tales of Shakespeare*

୫. *Robinson Crusoe* ଇତ୍ୟାଦି ଅନେକ ଗୁଡ଼ିଏ ଇଂରାଜୀ ବହି ଥାଏ।

ବିବେକାନନ୍ଦ, ରାମକୃଷ୍ଣ ପରମହଂସଙ୍କର କଥାମୃତ, ରାମାୟଣ, ମହାଭାରତ, ଗୀତା, ଭାଗବତ ପ୍ରଭୃତି ଓଡ଼ିଆ ଓ ବଙ୍ଗଳା ବହି ସେହି ଛୋଟ ଲାଇବ୍ରେରୀରେ ଥିବାର ଦେଖିଲେ। ସେଥିରୁ ଖଣ୍ଡିଏ ଇଂରାଜୀ ନଭେଲ୍ ଟାଣିଆଣି ମଝିରୁ ମେଲା କରିଦେଇ ମୋ ହାତକୁ ବଢ଼ାଇଦେଲେ।

ଗୋପାଳ ମାମୁଁ କହିଲେ - ଏଇଟା ପଢ଼।

ମୁଁ ଏତେ ଭଲଭାବରେ ପଢ଼ି ପାରୁଥିବାର ଦେଖି ସେ ମୋତେ ଇଂରାଜୀରେ ପଚାରିଲେ -

Did you study in any English school with English children ?

ମୁଁ କହିଲି - No sir, we never went to any English school. We are in strict purda.

ଗୋପାଳ ମାମୁଁ - Then who taught you ?

ମୁଁ କହିଲି - Our father taught us.

ଗୋପାଳ ମାମୁଁ - Is your mother a step mother ?

ମୁଁ କହିଲି - No sir, thank God she is our own mother

ତୁମେ କିଛି English Essay ଲେଖିଥିବ ଦେଖାଅ।

ବାପାଙ୍କ ସାଙ୍ଗରେ ଓଡ଼ିଶାକୁ ଫେରିବା ବାଟରେ ବହୁତ ତୀର୍ଥସ୍ଥଳ ଦର୍ଶନ କରିଥିଲୁ। ତନ୍ମଧ୍ୟରୁ ହରିଦ୍ୱାରର ଦୃଶ୍ୟ ଅତୀବ ରମଣୀୟ ଥିଲା। ସେହି ହରିଦ୍ୱାରର ଦୃଶ୍ୟ ମୋର ଅନ୍ତରକୁ ସ୍ପର୍ଶ କରିଥିଲା। ଏହା ଏକ ଆଧ୍ୟାତ୍ମିକ ଭାବନା ଓ ସ୍ୱର୍ଗୀୟ ଚେତନାରେ ମୋର ଅନ୍ତରକୁ ଦ୍ରବୀଭୂତ କରିଥିଲା। ସେହି ଅନୁଭୂତି ରଞ୍ଜିତ ଭାବକୁ, ସେହି ଅପରିକଳ୍ପିତ ଚେତନାକୁ ନିଜର ଭାଷାଦେଇ ଇଂରାଜୀରେ ଗୋଟିଏ ପ୍ରବନ୍ଧ ରଚନା କରିଥିଲି। ତାହା ସେ ମୋତେ ପଢ଼ିବାକୁ କହିବାରୁ ମୁଁ ତାଙ୍କୁ ପଢ଼ି ଶୁଣାଇଥିଲି।

ଗୋପାଳମାମୁଁ - ଓଡ଼ିଆରେ କ'ଣ ଲେଖିଛ ?

ବୋଉ ଆମକୁ ଖିଆପିଆ ସରିବାପରେ ଦ୍ୱିପ୍ରହର ସମୟରେ ରାମାୟଣ ପଢ଼ି ଶୁଣାଉଥିଲା। ତନ୍ମଧ୍ୟରୁ ସୀତାଙ୍କ ଅଗ୍ନିପରୀକ୍ଷା ଭଲ ଲାଗିଥିଲା। ସେହି ବିଷୟଟି ଗୋଟିଏ କବିତା ଆକାରରେ ଲେଖିଥିଲି। ଏବଂ ସେହି କବିତାଟି ପଢ଼ି ତାଙ୍କୁ ଶୁଣାଇଲି।

ସେତେବେଳେ ଯେଉଁ କବିତାଟି ଲେଖିଥିଲି ତାର ଭାବ ଏହିପରି ଥିଲା। ସୀତାଦେବୀ ରାମଚନ୍ଦ୍ରଙ୍କୁ ଭର୍ତ୍ସନା କରିବା କଥା ମୁଁ କୌଣସି ରାମାୟଣରେ ପଢ଼ି ନଥିଲି। ଏ ଜୀବନୀ ସେତେବେଳେ ମୋ ମନକୁ ଆସିଥିବାରୁ ମୁଁ ଲେଖିଥିଲି। କବିତାଟି ପଢ଼ି ଗୋପାଳମାମୁଁ ମୋ ମୁଣ୍ଡ ଆଉଁଷି ପକାଇଲେ। ପିଠିରେ ହାତମାରି, ବାଃ ଝିଅ ବାଃ କହିଲେ। ଏବଂ ଅପା, ଅପା କହି ମାଆ କୁ ଡାକ ପକାଇଲେ। ମାଆ ଜଳଖିଆ ଧରି ଆସି ପହଞ୍ଚିଲା।

ଗୋପାଳ ମାମୁଁ କହିଲେ - ଅପା, ଏ ଝିଅକୁ ନିଶ୍ଚୟ ପାଠ ପଢ଼ାଇବୁ। ତୁ କୌଣସି ବାଧାବିଘ୍ନ ମାନିବୁ ନାହିଁ। ଏ ଝିଅ ଯଦି ନପଢ଼ିବ ତେବେ ଆଉ କାହାର ପଢ଼ିବାର ଅଧିକାର ନାହିଁ। ମୁଁ ଏକାଥରକେ ଏହାର ଜ୍ଞାନ, ବୁଦ୍ଧି, ବିଦ୍ୟା ଏବଂ ଚରିତ୍ର ବିଷୟରେ ଜାଣିଗଲି। ମୁଁ ବାହାରେ ଶୁଣିଥିଲି ଯେ ତୁ ଏମାନଙ୍କର ସାବତମାଆ ଥିବାରୁ ବାହାଘର ଖର୍ଚ୍ଚରୁ ରକ୍ଷାପାଇବା ପାଇଁ ପାଠପଢ଼ା ଗୋଟିଏ ବାହାନା। ଏମାନଙ୍କର ଜ୍ଞାନବୁଦ୍ଧି କିଛିନାହିଁ। ଖାଲି ଲୋକ ଦେଖାଣିଆ। ପାଠପଢ଼ା ଗୋଟିଏ ଛଳନା। ଏବେ ବୁଝିପାରିଲି ସେସବୁ ଖଳ ଲୋକଙ୍କର ମିଥ୍ୟା ପ୍ରଚାର।

ବୋଉ କହିଲା - ବଡ଼ଟିକୁ ପଚାରିଲୁ, ହେଲେ ମୋର ସାନଝିଅକୁ କିଛି ପଚାରିଲୁନି ?

ସେ କହିଲେ – ଭାତ ହାଣ୍ଡିରୁ ଗୋଟିଏ ଭାତ ଚିପି ପରୀକ୍ଷା କରାଯାଏ।

ମାଆ ଜଳଖିଆ ଆଣିଥିଲେ। କିନ୍ତୁ ଭଦ୍ରଲୋକ କହିଲେ – ଆଉ ଖାଇବି କ'ଣ, ମୋର ତ ପେଟ ପୂରିଗଲାଣି।

ମୁଁ କହିଲି – "ମାଆ କେତେ କଷ୍ଟକରି ଜଳଖିଆ ତିଆରି କରିଚନ୍ତି, ଆପଣ ନଖାଇଲେ ମାଆ ଦୁଃଖ କରିବେ।"

ଆଚ୍ଛା ହେଉ ବୋଲି ସେ ଖାଇଲେ ଏବଂ ଆସୁଛି ବୋଲି କହି ଚାଲିଗଲେ। ତା ପରେ ସ୍ୱାଧୀନତା ସଂଗ୍ରାମୀ ଲକ୍ଷ୍ମୀନାରାୟଣ ସାହୁ ଆମେ ପାଠପଢୁଥିବା ଶୁଣି ଆମ ସାଙ୍ଗରେ ଦେଖା କଲେ। ନାରୀଶିକ୍ଷା ଓ ନାନା ବିଷୟରେ ଆମକୁ କହନ୍ତି। ନାରୀଶିକ୍ଷାର ପ୍ରଶଂସା କରନ୍ତି ଏବଂ ଆମମାନଙ୍କୁ ଉତ୍ସାହ ଦିଅନ୍ତି। ଆମର ପୂଜ୍ୟ ଶିକ୍ଷକ ଜୟକୃଷ୍ଣ ଦାସ, ଗୋପାଳ ମାମୁଁ ଆମମାନଙ୍କୁ ପଢ଼ିବା ପାଇଁ ଉତ୍ସାହ ଦିଅନ୍ତି। ବାକି ଅଧିକାଂଶ ଲୋକ ଆମ ପାଠପଢ଼ା ବିରୁଦ୍ଧରେ କହନ୍ତି।

ତା ପରେ କଟକ ଫେରିଲୁ ଏବଂ ଆମ ପାଇଁ ପୁରୁଣା ଟିଉସନ୍ ମାଷ୍ଟରଙ୍କୁ ବଦଳାଇ ଜଣେ ନୂଆ ଶିକ୍ଷକଙ୍କୁ ରଖାଗଲା। ତାଙ୍କ ନାଁ ଜୟକୃଷ୍ଣ ଦାଶ। ସେ କଟକ ଭିକ୍ଟୋରିଆ ହାଇସ୍କୁଲ (ଭକ୍ତମଧୁ ବିଦ୍ୟାପୀଠ) ଶିକ୍ଷକ ଥିଲେ। ବାପାଙ୍କ ସହିତ ତାଙ୍କର ବନ୍ଧୁତା ଥିଲା। ଭଲ ପାଠ ପଢ଼ାନ୍ତି ବୋଲି ତାଙ୍କର ଅନେକ ସୁନାମ ଥିଲା। ଅଳ୍ପଦିନ ମଧ୍ୟରେ ତାଙ୍କ ପରିବାର ସହିତ ଆମ ପରିବାରର ସମ୍ପର୍କ ବଢ଼ିଗଲା।

ଆମେ ପଢୁଥିବା ସମୟରେ କଟକ ସହରରେ ଚହଳ ପଡ଼ିଗଲା ଯେ କ୍ଷେତ୍ରମୋହନ ରାୟଙ୍କ ଦୁଇ ଝିଅ ପାଠ ପଢୁଛନ୍ତି। ନାରୀ ଶିକ୍ଷା ସେତେବେଳେ ଆଦୌ ଅଗ୍ରଗତି କରି ନ ଥିବାରୁ ଏକଥା ଶୁଣି ସମସ୍ତେ ନିନ୍ଦା କରିବାକୁ ଲାଗିଲେ। ଅନେକ ଲୋକ କହିଲେ କ୍ଷେତ୍ରମୋହନ ରାୟଙ୍କ ସ୍ତ୍ରୀ ସାବତ ମାଆ ହୋଇଥିବାରୁ ଝିଅମାନଙ୍କୁ ବାହା ଦେବାକୁ ଚାହାନ୍ତି ନାହିଁ। ସେଇଥି ପାଇଁ ଏ ପାଠ ପଢ଼ାକୁ ଗୋଟାଏ ଆଳ କରାଯାଇଛି। କେତେକ ଭଦ୍ରମହିଳା ତାଙ୍କ ଅପାଠୋଇ ଝିଅମାନଙ୍କୁ ଧରି ଆମ ଘରକୁ ବୁଲି ଆସନ୍ତି ଏବଂ ଝିଅମାନଙ୍କ ପାଠପଢ଼ା ବିରୋଧରେ ଯୁକ୍ତି କରନ୍ତି। ସେମାନଙ୍କ ସହିତ ଆସିଥିବା ଝିଅମାନେ ଆମକୁ ଦେଖି ହସନ୍ତି; ଯେମିତିକି ଆମେ ଚିଡ଼ିଆଖାନାର ବିଚିତ୍ର ଜନ୍ତୁ!

*(ଅକିଞ୍ଚନାର ଜୀବନସ୍ମୃତି, ପୃଷ୍ଠା ୪୫ – ୫୯)*

* * *

# ରାଧା ଦେବୀ

## (୧୯୩୦-୨୦୦୮)

ରାଧା ଦେବୀ ୧୧ ନଭେମ୍ବର ୧୯୩୦ ମସିହାରେ ବାଲେଶ୍ୱରର ନୀଳଗିରିରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ନୀଳମଣି ଜେନା ନୀଳଗିରି ରାଜାଙ୍କ ଅଧୀନରେ ପୋଲିସ ବିଭାଗରେ କାର୍ଯ୍ୟ କରିଥିଲେ। ରାଧା ଦେବୀ ୧୯୫୦ ମସିହାରେ କଟକ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜରେ ନାମ ଲେଖାଇବା ପୂର୍ବରୁ ବାଲେଶ୍ୱର ମିଶନ ସ୍କୁଲ ଏବଂ ଫକୀରମୋହନ ମହାବିଦ୍ୟାଳୟରେ ଶିକ୍ଷା ପ୍ରାପ୍ତ ହୋଇଥିଲେ।

ରାଧା ଦେବୀ ରାଜନେତା ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ୧୯୫୪ ମସିହାରେ ତାଙ୍କ ପରିବାରର ଇଚ୍ଛା ବିରୁଦ୍ଧରେ ଯାଇ ବିବାହ କରିଥିଲେ। ଶ୍ୟାମସୁନ୍ଦର ମହାପାତ୍ର (୧୯୨୯-୨୦୦୬) ଜଣେ ବ୍ରାହ୍ମଣ, ଜମିଦାର ପରିବାରରୁ ଆସିଥିଲେ। ସେ ଜଣେ ଲୋକପ୍ରିୟ ଛାତ୍ର ନେତା ଥିଲେ ଏବଂ ୧୯୭୧ ମସିହାରୁ ୧୯୭୭ ପର୍ଯ୍ୟନ୍ତ ଲୋକସଭାର ସଦସ୍ୟ ତଥା ୧୯୮୦ ମସିହାରୁ ୧୯୮୬ ପର୍ଯ୍ୟନ୍ତ ରାଜ୍ୟସଭା ସଦସ୍ୟ ହୋଇଥିଲେ। ସେ ଅଲ ଇଣ୍ଡିଆ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ।

ରାଧା ଦେବୀ କେବଳ ଜଣେ ଜଣାଶୁଣା ଡାକ୍ତର ଭାବରେ ନୁହେଁ ବରଂ ଓଡ଼ିଶାର ଜଣେ ଉତ୍ସର୍ଗୀକୃତ ସମାଜସେବୀ ଭାବେ ମଧ୍ୟ ସ୍ମରଣୀୟ ଅଟନ୍ତି। ସେ ଅନେକ ସାମାଜିକ ସଂଗଠନ ସହ ଜଡ଼ିତ ଥିଲେ ଯାହାକି ରାଜ୍ୟରେ ଗରିବ ଏବଂ ପଛୁଆବର୍ଗର ଲୋକଙ୍କ ଉନ୍ନତି ପାଇଁ କାର୍ଯ୍ୟ କରୁଥିଲା। ୧୯୬୦ ମସିହାରେ ସେ ବାଲେଶ୍ୱର ନାରୀ ସଂଘର ସଚିବ ହୋଇଥିଲେ, ଯାହା ଗ୍ରାମାଞ୍ଚଳର ମହିଳାଙ୍କ ଜୀବନରେ ଉନ୍ନତି ଆଣିବା ପାଇଁ କାର୍ଯ୍ୟ କରୁଥିଲା।

୧୯୬୧ ମସିହାରେ ରାଧା ଦେବୀ ମହିଳାମାନଙ୍କ ପାଇଁ ମାସିକ ପତ୍ରିକା "ଯୁଗନାରୀ" ସମ୍ପାଦନା ଆରମ୍ଭ କରିଥିଲେ, ଯାହା ୧୯୭୧ ପର୍ଯ୍ୟନ୍ତ ଜାରି ରହିଥିଲା। ସେଥିରେ ଓଡ଼ିଆ ଲେଖିକାମାନଙ୍କ ଲେଖା ପ୍ରକାଶ ପାଉଥିଲା। ୧୯୮୯ ମସିହାରେ ସେ ଏହାର ନାମ "ଯୁଗଶ୍ରୀ ଯୁଗନାରୀ" ନାମରେ ନାମିତ କରି ପୁନଃପ୍ରକାଶନ ଆରମ୍ଭ କଲେ। ରାଧା ଦେବୀ ୩୧ ମଇ ୨୦୦୮ ମସିହାରେ ଶେଷ ନିଶ୍ୱାସ ନେବା ପର୍ଯ୍ୟନ୍ତ ଏହାର ସମ୍ପାଦକ ଥିଲେ।

୨୦୦୭ ମସିହାରେ ପ୍ରକାଶିତ ତାଙ୍କ ସ୍ମୃତିଲିପି, "ମୋ ଜୀବନ ମୋ ସମୟ"ରେ ସେ ତାଙ୍କ ପିଲାଦିନ, ଗଡ଼ଜାତ ଅଞ୍ଚଳରେ ବଢ଼ିବା ଏବଂ ଡାକ୍ତରୀ ଛାତ୍ର ଭାବରେ ଦିନଗୁଡ଼ିକ ବିଷୟରେ ଲେଖିଛନ୍ତି। ସେ କୋଲକାତାରେ ଡାକ୍ତର ଭାବରେ ଅଭ୍ୟାସ କରିବାର ପ୍ରଥମ ଦିନଗୁଡ଼ିକୁ ମନେ ପକାଇଛନ୍ତି ଏବଂ ଡାକ୍ତରୀ ସମ୍ମିଳନୀରେ ପ୍ରତିନିଧି ଭାବରେ ବିଦେଶ ଗସ୍ତରେ ଯାଇଥିବା କଥାକୁ ମଧ୍ୟ ଉଲ୍ଲେଖ କରିଛନ୍ତି। ଅନେକ ଗୁରୁତ୍ୱପୂର୍ଣ୍ଣ ସାମାଜିକ-ରାଜନୈତିକ ଘଟଣା ଉପରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ ତାଙ୍କ ଲେଖନୀରେ ତାଙ୍କର ପାରିବାରିକ ଜୀବନ, ବାଲେଶ୍ୱରର ଅତୀତ ଜୀବନ୍ତ ହୋଇ ଉଠିଛି।

## ବିବାହ ଓ ତାର ପର ସମୟ

୧୯୫୪ ମସିହା ଗ୍ରୀଷ୍ମଛୁଟିରେ ବାହାଘର ହେବାପାଇଁ ସ୍ଥିର କଲୁ। ମୁଁ ଛୁଟିରେ ନୀଳଗିରି ଚାଲିଯାଇଥିଲି। ବିବାହ କଲିକତାରେ ହେବାପାଇଁ ସ୍ଥିରହେଲା। ଶେରଗଡ଼ର ପ୍ରଫୁଲ୍ଲ ରଥ, ବାଲେଶ୍ୱରର ଅନିରୁଦ୍ଧ ପାଢ଼ୀ, ଦୁଇଜଣ ବନ୍ଧୁ ଏ ବିଷୟରେ ଜାଣିଥିଲେ। କଲିକତା ପାଇଁ ତୃତୀୟ ଶ୍ରେଣୀର ଭଡ଼ା ୧୦ଟଙ୍କା ଥିଲା। ଶ୍ୟାମବାବୁଙ୍କର ଏକ ଫଟୋ ଓ ୩୦ଟଙ୍କା ମୋ ଶୋଇବା ଖଟର ତକିଆ ତଳେ ରଖିଥିଲି। ଦୁର୍ଭାଗ୍ୟବଶତଃ ସେ ଟଙ୍କା କିଏ ଚୋରି କରି ନେଇଗଲା। ହତାଶ ହୋଇପଡ଼ିଲି। ମୋର ପିତା ଏ ବିବାହ ବିରୋଧ କରୁଥିଲେ। ସେ ଭାବୁଥିଲେ ମୁଁ ବିବାହ କରିଗଲେ ବାପଘର ପରିବାରକୁ ସାହାଯ୍ୟ କରିବି ନାହିଁ। ଏଣୁ ବିବାହ ନ ଦେବାକୁ ସେ ଚାହିଁଥିଲେ। ପିଲାଙ୍କ ମଧ୍ୟରେ ମୁଁ ବଡ଼ ଥିଲି। ତେଣୁ ଘରର ଭବିଷ୍ୟତ ପାଇଁ ସେ ମୋ ଉପରେ ନିର୍ଭର କରୁଥିଲେ। ମୋର ମାଆ କିନ୍ତୁ ନିରକ୍ଷରା ଥିଲେ ମଧ୍ୟ ମହିୟସୀ ନାରୀ ଥିଲେ। ତା ପ୍ରାଣରେ ସ୍ନେହ ମମତା ପୂରି ରହିଥିଲା। ମୋ ପାଇଁ ସତ୍ୟ, ଧର୍ମ ଓ ମାନବତା ଚିନ୍ତାଧାରା ଓ ବିଚାରଧାରା ତାର ଥିଲା। ତାକୁ ମୋର ବିବାହ କଲିକତାରେ ହେଉଛି ବୋଲି ଓ ମୋର ୩୦ଟଙ୍କା ଚୋରି କଥା ମଧ୍ୟ କହିଲି। ମୋର ଅନ୍ତରଂଗ ବନ୍ଧୁ ଯାମିନୀର ସ୍ୱାମୀ ରାଜନୀତି ନେତା ବନମାଳୀ

ବାବୁଙ୍କୁ ଟଙ୍କା ପାଇଁ ଅନୁରୋଧ କଲି। ସେ କୋଡ଼ିଏ ଟଙ୍କା ଦେଇ ଯାତ୍ରାପାଇଁ ସୁବିଧା କରାଇଦେଲେ। ମାଆ କିଛି ଟଙ୍କା ଦେଲା ଓ ସେତେବେଳେ ମୋର ବାପାଙ୍କ ଘରେ ଆଶ୍ରୟ ନେଇଥିବା ୭୦ ବର୍ଷର ବୃଦ୍ଧ ବୈଦା, ମୋର ଦୁଇ ଛୋଟ ଭାଇ ବଡ଼ ବୁଲୁ ବା ଗିରିଶ୍ ସାନ ଜୟରାମକୁ ମୋ ସହିତ ଯିବା ପାଇଁ ବ୍ୟବସ୍ଥା କରିଦେଲା। ମନରେ ଦୁଃଖ କୋହ ଓ ବ୍ୟଥା ନେଇ ବୈଦା ବୁଢ଼ା ଏବଂ ବୁଲୁ ଓ ଜୟ ଦୁଇଭାଇ ସହିତ ଦିଲଜାନ୍ ବସ୍‌ରେ ଆସି ଷ୍ଟେସନରେ, ଇଣ୍ଟରକ୍ଲାସ ପ୍ରତୀକ୍ଷାଳୟରେ ବସିରହିଲି। ସେତେବେଳେ ସେ ପ୍ରତୀକ୍ଷାଳୟରେ ଶୌଚାଳୟ ନଥିଲା। ୧୫ଫୁଟ ଚଉଡ଼ା ୨୦ଫୁଟ ଲମ୍ବ ଘରଟିରେ ଗଦି ଲାଗିଥିବା, ଦୁଇଟି ଲମ୍ବା ବେଞ୍ଚ ଓ ଚାରୋଟି ଚେୟାର ଥିଲା। ସନ୍ଧ୍ୟା ଘନେଇ ଆସିଲା। ଗାଡ଼ି ୮ଟାରେ। ଶ୍ୟାମବାବୁ ଆସି ଗାଡ଼ି ଚଢ଼ାଇବେ, ଟିକଟ୍ କାଟିବେ। ସେହି ଗାଡ଼ିରେ କଟକରୁ ଦୁଇତିନିଜଣ ବନ୍ଧୁ ମଧ୍ୟ ଆସିବେ। ଏହି କଥାବାର୍ତ୍ତା ହୋଇଥିଲା। ଗ୍ରୀଷ୍ମଦିନର ସନ୍ଧ୍ୟା, ଆଶା, ଆକାଂକ୍ଷା, ଦୁଃଶ୍ଚିନ୍ତା ଓ ସବୁଦିନ ପାଇଁ ବାପାଙ୍କ ଆଶ୍ରୟରୁ ଚାଲିଯିବାର ଭାବନା ମନକୁ ଅସ୍ଥିର କଲା। ଆଗରେ ଅନିଶ୍ଚିତ ଭବିଷ୍ୟତ, ପଢ଼ା ଶେଷ ହୋଇନାହିଁ, ଚଳିବା ପାଇଁ ବ୍ୟବସ୍ଥା କିଛି ନାହିଁ। ସ୍ୱଳ୍ପ ଆୟକରୁଥିବା ଜଣେ ଯୁବକ ଉପରେ ନିର୍ଭରଶୀଳ ହୋଇ, କେବଳ ଆଶା ରଖି ଆଗେଇଯାଉଛି, ଅନିଶ୍ଚିତ ଭବିଷ୍ୟତ ଆଡ଼କୁ। ଜାତି ଭିନ୍ନତା ଯୋଗୁଁ ଶ୍ୟାମବାବୁଙ୍କ ପିତାଙ୍କର କଠୋର ମନୋଭାବ, ଅନ୍ତରଂଗ ବନ୍ଧୁ ଦୈତାରୀ ଦାସଙ୍କ ବିରୋଧ ଏବଂ ମୋର ବାପାଙ୍କର ବିବାହ ପାଇଁ ବିରୋଧ। ସାରା ଓଡ଼ିଶାର ଛାତ୍ରମାନେ ଶ୍ୟାମବାବୁଙ୍କ ନେତୃତ୍ୱ ପ୍ରତି ନିର୍ଭରଶୀଳ ଥିଲେ। ଶ୍ୟାମବାବୁ କହିବା ମାତ୍ରେ ଶହଶହ ଛାତ୍ରଛାତ୍ରୀ ସ୍କୁଲ କଲେଜରୁ ବାହାରି ଆସି ଶୋଭାଯାତ୍ରାରେ ଭାଗ ନେଉଥିଲେ। ସ୍କୁଲ କଲେଜ ବନ୍ଦ ହୋଇ ଯାଉଥିଲା। ଅଗ୍ନିବର୍ଷୀ ବକ୍ତୃତାରେ ଛାତ୍ରଛାତ୍ରୀମାନେ ମନ୍ତ୍ରମୁଗ୍ଧ ହୋଇଯାଉଥିଲେ। ଷଢ଼େଇକଳା ଖରସୁଆଁ ମିଶ୍ରଣ ଆନ୍ଦୋଳନର ନେତୃତ୍ୱ ନେଇ ଶ୍ୟାମବାବୁ କାରାବରଣ କରିଥିଲେ। ଏସବୁ ଚିନ୍ତା ମଧ୍ୟରେ ଆନ୍ଦୋଳିତ ଓ ବିଷଣ୍ଣ ମନରେ ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ କଟିଲା। ଶ୍ୟାମବାବୁ ଆସି ପହଞ୍ଚିଲେ। ଟିକଟ୍ କାଟି ଆମେ ରେଳରେ ଚଢ଼ିଲୁ। ସକାଳେ ଶ୍ୟାମବାବୁ ଆମକୁ ଟିଉସନ୍ କରୁଥିବା ଝିଅର ଘର ଗିରିଶ୍ ପାର୍କ ନିକଟରେ ଥିବା ଘରକୁ ନେଇଗଲେ। ମୋ ଭାଇ ଓ ବୈଦା ବୁଢ଼ା ତରୁଣ ହୋଟେଲରେ ରହିଲେ। ବିଜୟ ଘରେ ଏକ ଅନଭ୍ୟସ୍ତ ବାରିକ ଆସି ମୋ ଗୋଡ଼ରେ ନଖ କାଟିଦେଲା। ସେ ଏଭଳି ନଖସବୁ କାଟିଲା ଯାହାର ବ୍ୟଥା ଦୁଇଦିନ ଯାଏଁ ଗଲାନି। ଗାଧୋଇ ସାରି ଅଳତା ଲଗାଇ ହାଡ଼କଟା ଲେନରେ ଥିବା ଚିତ୍ତ ନାୟକଙ୍କ ଶ୍ୱଶୁର ଘରକୁ ଗଲି। ଚିତ୍ତ ନାୟକଙ୍କ ଶାଶୁ କନ୍ୟା ସମର୍ପଣ କରିବା ପାଇଁ ବ୍ୟବସ୍ଥା ହୋଇଥିଲା। ଚିତ୍ତ ନାୟକ ବଙ୍ଗଦେଶୀ କନ୍ୟା ଗୁୟାରାଣୀଙ୍କୁ ବିବାହ କରିଥିଲେ। ତାଙ୍କ ଶାଶୁ, ଗୁୟାର ମାଆ ଅତ୍ୟନ୍ତ ସରଳ ଓ ମେଳାପି ମହିଳା ଥିଲେ। ଦିନରେ ବିବାହ ହୋଇଥିଲା।

ଓଡ଼ିଆ ପ୍ରେସ ନାମକ ଏକ ଛାପାଖାନାକୁ ସ୍ୱାଧୀନତା ସଂଗ୍ରାମୀ ଆକୁଳ ମିଶ୍ର ପରିଚାଳନା କରୁଥିଲେ। ସେ ତତ୍‌କାଳୀନ ଓଡ଼ିଆ ନେତା ଥିଲେ। ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀଙ୍କ ଠାରୁ ଆରମ୍ଭ କରି ସମସ୍ତ ବିଶିଷ୍ଟ ନେତାମାନଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଥିଲ। ଓଡ଼ିଆମାନଙ୍କର ସଭାସମିତି, ଆନ୍ଦୋଳନରେ ସେ ଲେଖା ତଥା ଆର୍ଥିକ ସାହାଯ୍ୟ ଦେଉଥିଲେ। ତାଙ୍କର ଘର କଟକର ମଫସଲ ଅଞ୍ଚଳରେ ଥିଲା। ସେ ଶ୍ୟାମବାବୁଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ଏବଂ ବରକର୍ତ୍ତା ହୋଇଥିଲେ। ତତ୍‌କାଳୀନ ଓଡ଼ିଶାର ଜନପ୍ରିୟ ପତ୍ରିକା ଆସନ୍ତାକାଲିର ଶ୍ୟାମବାବୁ ସଂପାଦକ ଥିଲେ। ଏହି ପତ୍ରିକାର ସ୍ୱତ୍ୱାଧିକାରୀ ଯଦୁମଣି ପରିଜା ଏ ବିବାହରେ ସମ୍ବେଦନଶୀଳ ଥିଲେ। ବିବାହ ବେଦୀଠାରେ ଉପସ୍ଥିତ ଥିବା ଭଦ୍ର ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ ଜଗଦୀଶ ପାଣି, ଯିଏ ପରେ ଓଡ଼ିଶାରେ ସମାରୋହ ପତ୍ରିକା ସଂପାଦନ କରୁଥିଲେ ଏବଂ ସେ କ୍ୱାଲିଟି ପ୍ରେସ୍ ସ୍ୱତ୍ୱାଧିକାରୀ ଥିଲେ। ଏବେ ସେ ସଂସାରରୁ ବିଦାୟ ନେଇଛନ୍ତି। ଶ୍ୟାମବାବୁଙ୍କର ଘନିଷ୍ଠ ବନ୍ଧୁ ଯାଦବ ପଟ୍ଟନାୟକ ବର୍ତ୍ତମାନ ଇଂଲଣ୍ଡର କଭେଣ୍ଟ୍ରୀଠାରେ ଅଧ୍ୟାପକ ଅଛନ୍ତି। ବିଶିଷ୍ଟ ପ୍ରଶାସକ ମନମୋହନ ରାୟ ପରେ ବର୍ମା ସେଲ୍ ପେଟ୍ରୋଲରେ ମ୍ୟାନେଜର ହୋଇଥିଲେ। ଶ୍ରମିକ ନେତା ଅଭୟ ମହାନ୍ତି, ଭିକାରୀ ଚରଣ ଧଳ ଓ ବହୁ ଲୋକ ଆମ ବିବାହ ଉତ୍ସବରେ ଯୋଗ ଦେଇଥିଲେ। ବିବାହ ବିଷୟ ସମାଜରେ ଖବର ଆକାରରେ ବାହାରିଥିଲା। ୧୯୫୪ ମସିହା ଜୁନ୍ ସଂଖ୍ୟା ଆସନ୍ତାକାଲିରେ ଗୋଟିଏ ପୂରାପୃଷ୍ଠାରେ ବିବାହ ଫଟୋ ବାହାରିଥିଲା। ଏବେ ମଧ୍ୟ ଅନେକ ଲୋକ ମନେ ରଖିଛନ୍ତି। ସେ ବିବାହ ଫଟୋ ମୋଠାରେ ବର୍ତ୍ତମାନ ମୋର ଶୟନ କକ୍ଷରେ ସ୍ମାରକୀ ହୋଇରହିଛି। ବିବାହ ପରେ ରାତିରେ ତରୁଣ ହୋଟେଲକୁ ଆମେ ଫେରିଆସିଲୁ। ଆମର ବିବାହର ପ୍ରଥମ ରାତ୍ରିର ରହଣି ତରୁଣ ହୋଟେଲର ଏକ ପ୍ରକୋଷ୍ଠରେ କଟିଥିଲା। ସେ ରାତିର ସ୍ମୃତି ଏବେ ମନେପଡୁଛି। ଦୁଇଟି ମୁଦି ମୋର ଗୋଟିଏ ଓ ଶ୍ୟାମବାବୁଙ୍କର ଗୋଟାଏ ସୁନାମୁଦି, ବଡ଼କଷ୍ଟରେ ଶ୍ୟାମବାବୁ ଯୋଗାଡ଼ କରିଥିଲେ। ବିବାହ ଶାଢ଼ି ଚମ୍ପାଫୁଲ ରଙ୍ଗର ହଳଦିଆ, ଅଳ୍ପ ଧଡ଼ିଥିବା ବାଙ୍ଗାଲୋର ଶିଲ୍‌କ ଶାଢ଼ି। ତା ସଂଗେ ହଳଦିଆ ବ୍ଲାଉଜ ଓ ଧଳା ସାୟାଟିଏ। ନିରାଡ଼ମ୍ବର ବାହାଘର। ମୋ ମଥାରେ ବିରାଟ ଖୋସାରେ ରଜନୀଗନ୍ଧା ମାଳ। ଗଳାରେ ରଜନୀଗନ୍ଧା ହାର। ହାତରେ ମଧ୍ୟ ରଜନୀଗନ୍ଧା ମାଳା ବନ୍ଧା ହୋଇଥିଲା।

ବଙ୍ଗଳାରେ ବାହାଘରରେ କନ୍ୟାମାନେ ଫୁଲରେ ସଜା ହୁଅନ୍ତି। ମଥାରେ ମୋର ଦୋଳମୁକୁଟ ଥିଲା। ଶ୍ୟାମବାବୁ ଧୋତି, ଶିଲ୍‌କ ପଞ୍ଜାବୀ, ମଥାରେ ବଙ୍ଗଦେଶୀୟ ଦୋଳମୁକୁଟ ପିନ୍ଧିଥିଲେ। ହାତରେ ନଡ଼ିଆ ଗୁଆକାତି ଧରି ବସିଥିଲେ। ପାନ ବରକୋଳି ପତ୍ର ଓ ଦୁବରେ ବନ୍ଧା ହୋଇଥିବା ବନ୍ଧନୀ ଶ୍ୟାମବାବୁ ଡାହାଣ ହାତରେ ପିନ୍ଧିଥିଲେ।

ବହୁତ ଲୋକ ଶ୍ରମିକ ସଂଗଠନରୁ ବିବାହ ଦେଖିବା ପାଇଁ ଆସିଥିଲେ। କେତେବେଳେ ହାତଗଣ୍ଠି ପଡ଼ିଲା ମନେ ନାହିଁ। ଏତେବର୍ଷ ପରେ ସେ ସ୍ମୃତି ଉଦ୍‌ଜୀବିତ। ଖାଇବାର ବ୍ୟବସ୍ଥା ନୁରମହମ୍ମଦ ଲେନ୍‌ରେ ହୋଇଥିଲା। ରାତିରେ ଆମେ ତରୁଣ ହୋଟେଲକୁ ଫେରିଆସିଲୁ। ବହୁଦିନ ପରେ ସ୍ୱାମୀ ସ୍ତ୍ରୀ ଭାବରେ ଦୁଇଜଣ ପ୍ରେମାସ୍ପଦଙ୍କର ଏକତ୍ର ରହିବା, ଗୋଟାଏ କୋଠରି ମଧ୍ୟରେ, ଏବେ ବି ଶିହରଣ ସୃଷ୍ଟି କରେ। ସିନେମାରେ ପରଦା ଉପରେ ସ୍ୱାମୀ ସ୍ତ୍ରୀର ପ୍ରଥମ ଦର୍ଶନ ବହୁ ରିୟେଲସେଲ୍ ପରେ ଅନୁଷ୍ଠିତ ହୋଇ ଦର୍ଶକମାନଙ୍କୁ ପରଦାରେ ଦେଖାଯାଏ। ଶାରୀରିକ ରତିକ୍ରିୟା ପ୍ରାୟ ସବୁ ସମୟରେ ଏକପ୍ରକାର। ଈଶ୍ୱର ସୃଷ୍ଟିପାଇଁ ଆଦିମକାଳରୁ ଯୁବକ ଯୁବତୀଙ୍କ ମାନସିକ ସ୍ତରରେ ଏହା ସନ୍ନିବେଶିତ କରିଥାନ୍ତି। ଯାହା ଶାରୀରିକ ପ୍ରକ୍ରିୟାରେ ଶେଷ ହୁଏ। କିନ୍ତୁ ଜଣେ ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଅପୂର୍ବ ମୋହ, ସ୍ପର୍ଶ, ଚିନ୍ତାଧାରା ଜୀବନର ଶେଷ ଯାଏ ରହିଯାଏ। ରଜନୀଗନ୍ଧାର ବାସନା ନୂଆ ଶିଲ୍‌କ ଶାଢ଼ି ଦେହର ପିନ୍ଧିଥିବା ଫୁଲର ଅଳଙ୍କାରରେ ଯେଉଁ ପରିବେଶ ସୃଷ୍ଟି ହୋଇଥିଲା ତାହା ଥିଲା ଅନନ୍ୟ। ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଗଭୀର ଆଲିଙ୍ଗନରତ ରହି ମନରେ ସାହସ, ସାମାଜିକ ସ୍ତରରେ ସ୍ୱୀକୃତି ଏବଂ ଲୋକଙ୍କର ଅପବାଦର ଅନ୍ତ କେବେ ଶେଷ ହେବ, ବିବାହର ପ୍ରଥମ ରାତ୍ରିରେ ଥିଲା ଏହି ଭାବନା ।

ବିବାହ ପୂର୍ବରୁ ଶ୍ୟାମବାବୁ ଓ ମୁଁ ଦୁଇଥର ଏକତ୍ର ହୋଟେଲ୍‌ରେ ରହିଥିଲୁ। ଭୟ ସହିତ ଗୋପନରେ ଏ ରହଣି ବଡ଼ ମନୋରମ ଥିଲା। ନୂଆ ହୋଇ ମୁକ୍ତ ହୋଇଥିବା 'ବୈଜୁ ବାୱାରା, ତୁ ଗଙ୍ଗା କି ଲେହେର ମେଁ ଯମୁନା କୀ ଧାରା" ଗୀତଟି ଅଳ୍ପ ଦୂରରେ ଏକ ସିନେମା ହଲ୍ ପାଖରେ ବାଜୁଥିଲା। କଲିକତାରେ ବହୁବଜାରରେ ଦ୍ୱିତଳରେ ଥିବା ଏକ ଛୋଟ ରୁମ୍‌ରେ ବସି, ଘଣ୍ଟା ଘଣ୍ଟା ଧରି ସେ ଗୀତ ଶୁଣୁଥିଲୁ। ସେଇଥିଲା ମୋର ପ୍ରଥମ ସାନ୍ନିଧ୍ୟ ଏକ ପୁରୁଷ ସହ। ବିଦ୍ୟୁତ୍ ସ୍ପର୍ଶଭଳି ବିହ୍ୱଳ ଓ ମ୍ରିୟମାଣ ମୁଁ ହୋଇଯାଇଥିଲି। ତା ପରେ ଶୋଇଯାଇଥିଲୁ। ସେତେବେଳର ବନ୍ଧୁ ସୁଧୀର କର ହୋଟେଲରେ କୋଠରିଟିଏ ବ୍ୟବସ୍ଥା କରିଥିଲେ। ସେହି ସମୟରେ ବହୁଭାବରେ ସାହାଯ୍ୟ କରିଥିବା ବନ୍ଧୁ ହେଲେ ସ୍ୱର୍ଗତ ଦେବେନ୍ଦ୍ର ଦାସ ମହାପାତ୍ର। ହସଖୁସି ମଜଗୁଲର ଯୁବକ। ପରେ ମୋର ଜଣେ ବାନ୍ଧବୀ ରାଇକିଶୋରୀଙ୍କୁ ପ୍ରେମ କରି ବିବାହ କରିଥିଲେ। ସେ ଓଡ଼ିଶାର ପର୍ଯ୍ୟଟନ ବିଭାଗର ଉଚ୍ଚକର୍ତ୍ତା ଭାବେ କାମ କରୁଥିଲେ ଏବଂ ତାଙ୍କର ଅକାଳ ବିୟୋଗ ଆମ ସମସ୍ତଙ୍କୁ ମର୍ମାହତ କରିଥିଲା। ଦୈତାରୀ ଦାସ ବିବାହକୁ ବିରୋଧ କରୁଥିଲେ ମଧ୍ୟ ପରେ ବହୁତ ସାହାଯ୍ୟ କରିଥିଲେ। ତାଙ୍କର ପତ୍ନୀ ନିରୋଦା ଦାସ ହାଇସ୍କୁଲରେ ମୋର ସହପାଠିନୀ ଥିଲେ। ସେମାନଙ୍କର ମଧ୍ୟ ପ୍ରେମ ବିବାହ ହୋଇଥିଲା।

ପରେ ଦୈତାରୀବାବୁ ରାଉରକେଲାରେ ସାମ୍ବାଦିକତା (A.I.R) ଓ ଓକିଲାତି କରି ବସବାସ କଲେ ଏବଂ ଅଳ୍ପ ବୟସରେ ଦୁର୍ଘଟଣାଗ୍ରସ୍ତ ହୋଇ ତାଙ୍କର ମୃତ୍ୟୁ ଘଟିଲା। ତାଙ୍କର ମୃତ୍ୟୁପରେ ତାଙ୍କର ବଡ଼ପୁଅ ସାମ୍ବାଦିକତା ଓ ଓକିଲାତି କଲେ। ସାନପୁଅ ପ୍ଲାଣ୍ଟରେ କାମ କଲେ। ନିରୋଦା ଦେବୀ କିଛିଦିନ ଆଗରୁ ସ୍ୱର୍ଗବାସିନୀ ହୋଇଛନ୍ତି। ବନ୍ଧୁ ସୁଧୀର କର ଭୁବନେଶ୍ୱରରେ କାର୍ଯ୍ୟ କରୁଥିଲେ। ମୋର ହାଇସ୍କୁଲର ସହପାଠିନୀ ଅସୀମାକୁ ବିବାହ କରିଥିଲେ। ସେ ଅକାଳରେ ରକ୍ତଚାପରେ ମୃତ୍ୟୁବରଣ କଲେ। ଅସୀମା ପିଲାମାନଙ୍କୁ ନେଇ ଭୁବନେଶ୍ୱରରେ ରହିଛି। ଅନ୍ୟବନ୍ଧୁମାନେ ଯେଉଁମାନେ ଜୀବିତ ଅଛନ୍ତି, ସେମାନେ ହେଲେ ଲେଖକ ସଦାନନ୍ଦ ଦାସ, ଅବସର ପ୍ରାପ୍ତ ପୋଲିସ ଡି.ଜି. ବିଜୟ ପାଣିଗ୍ରାହୀ। ତାଙ୍କର ସ୍ୱାସ୍ଥ୍ୟ ଭଲ ନାହିଁ ଏବଂ ଗୋବିନ୍ଦ ସେନାପତି ପୂର୍ବତନ ଡି.ଜି.। ବନ୍ଧୁ ଓ ଶିକ୍ଷାବିତ୍ ଲେଖକ ଅନ୍ନଦା ରକ୍ଷିତ୍ ୨୦୦୧ରେ ତାଙ୍କର ଦେହାନ୍ତ ହୋଇଛି। ତାଙ୍କର ପତ୍ନୀ ଭୁବନେଶ୍ୱରରେ ନିଜଘରେ ରହୁଛି। ଯାଦବ ପଟ୍ଟନାୟକ ଇଂଲଣ୍ଡରେ କେଭେଣ୍ଟିରେ ଶିକ୍ଷକତା କରୁଥିଲେ।

୧୯୭୨ ମସିହାରେ ନିରସ୍ତ୍ରୀକରଣ ସମ୍ମିଳନୀରେ ଯୋଗଦେବାକୁ ଯାଇଥିବା ବେଳେ ଯାଦବବାବୁଙ୍କ ଘରେ ୧୫ଦିନ ଥିଲି। ସେ ତାଙ୍କର ସ୍ତ୍ରୀ, ଏକମାତ୍ର ପୁତ୍ରକୁ ନେଇ ସେଠାରେ ରହିଗଲେ। ତାଙ୍କର ପୁତ୍ର ଭାରତ ଆସିବାକୁ ଅନିଚ୍ଛା ପ୍ରକାଶ କରିବାରୁ, ଶେଷ ଜୀବନ ସେଠାରେ କଟାଇବାକୁ ସ୍ଥିର କଲେ। ପ୍ରତି କ୍ଷେତ୍ରରେ ଶ୍ୟାମବାବୁଙ୍କ ଅସଂଖ୍ୟ ବନ୍ଧୁ। କଲିକତାର ବିଶିଷ୍ଟ ଶ୍ରମିକ ନେତା ହିମାଂଶୁ ସେନଗୁପ୍ତା, ସୀମର ଦତ୍ତ, ମନେ ପଡୁ ନଥିବା ଅନେକ ବନ୍ଧୁ ସ୍ମୃତିପଟରୁ ଲିଭିଗଲେଣି। ବିବାହର କିଛିଦିନ ପରେ ହାୱଡ଼ାର ସାଲକିଆଠାରେ ଶ୍ୟାମବାବୁ ଗୋଟିଏ ଘରଭଡ଼ା ନେଇଥିଲେ। ସେଠାରେ ପ୍ରାୟ ଦୁଇମାସ ଥିଲି। ୧୫ଫୁଟରୁ ୨୦ଫୁଟ ବିଶିଷ୍ଟ ଘରଟିଏ। ଗୋଟାଏ ଗାଧୁଆଘର, ତା ପାଖକୁ ଲାଗି ଗୋଟାଏ ପାଇଖାନା। ରୋଷେଇ ପାଇଁ ଚାଳିଟିଏ। ଲଗାମଛଡ଼ା ସ୍ୱାଧୀନଚେତା ଶ୍ୟାମବାବୁ ଲାଲବାବା ହାଇସ୍କୁଲରେ ଶିକ୍ଷକତା କରୁଥାନ୍ତି। ପ୍ରତ୍ୟେକ ଦିନ ସାଲକିଆରୁ ନଦୀପାର ହୋଇ ସ୍କୁଲକୁ ଯାଆନ୍ତି। ତା ପରେ ଯାଆନ୍ତି ବାଲିଗଞ୍ଜର ଘୋଷ ପରିବାର ଏକମାତ୍ର ପୁତ୍ର ଅଶୋକକୁ ଟିଉସନ୍ କରିବାପାଇଁ। ଫେରିବାକୁ ରାତି ହୋଇଯାଏ। ଦିନେ ଦିନେ ବହୁତ ରାତିରେ ଫେରନ୍ତି। ବହୁ ବନ୍ଧୁ ତାଙ୍କର କଲିକତାରେ। ସେହି ସମୟରେ ବିଜୟକୁ ମଧ୍ୟ ଟିଉସନ୍ କରୁଥାନ୍ତି। ବିବାହରେ ବିଜୟ, ତାର ମାଆ ଠାକୁମା ବହୁତ ସାହାଯ୍ୟ କରିଥିଲେ। ଶ୍ୟାମବାବୁଙ୍କର ବନ୍ଧୁ ଚିତ୍ତରଂଜନ ନାୟକ 'ଶ୍ରମିକ' ପତ୍ରିକାର ସକ୍ରିୟ ସହାୟକ ଥିଲେ। ପରେ ଓଡ଼ିଶାକୁ ଫେରିଆସି ବିଜୁ ପଟ୍ଟନାୟକଙ୍କ ଦଳରେ ମିଶି ରାଜନୀତି କଲେ। ପରେ ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ ହୋଇଥିଲେ।

ଏହି ସମୟରେ ତାଙ୍କର ପତ୍ନୀ ଛାୟାଙ୍କର ଅକାଳ ମୃତ୍ୟୁ ହେଲା। ଛାୟାଙ୍କର ମୃତ୍ୟୁପରେ ବିଜୟ ଛାୟାଙ୍କର ପୁତ୍ର କନ୍ୟାମାନଙ୍କର ଯତ୍ନ ନେଉଥିଲେ। ତାଙ୍କର ପୁତ୍ର ଦେବାଶୀଷ ଏବେ ସୂଚନା ଓ ପ୍ରସାରଣ ମନ୍ତ୍ରୀ।

ସାଲିକିଆ ଠାରୁ ହାୱଡ଼ାକୁ ଦିନରେ ଅନେକଥର ବସ୍ ଯାତାୟତ କରୁଥିଲା। ଏଣୁ ଅନେକ ସମୟରେ ମୁଁ କଲିକତା ଯାଉଥିଲି। ବିଷ୍ଣୁଚରଣ ପଣ୍ଡା (ଯିଏ ପରେ ମୋ ନଣନ୍ଦକୁ ବିବାହ କରିଥିଲେ) ଚିତ୍ତରଂଜନ ନାୟକ, ଭିକାରୀ ଧଳ, ଶ୍ରମିକ ନେତା ବସ୍ତିଆ ଓ ଅନ୍ୟବହୁ ବଙ୍ଗାଳୀ ଶ୍ୟାମବାବୁଙ୍କର ବନ୍ଧୁଥିଲେ।  ତୁଙ୍ଗନେତାମାନଙ୍କ ମଧ୍ୟରେ ମୁଖ୍ୟମନ୍ତ୍ରୀ ବିଧାନ ରାୟ, ଅଶୋକ ସେନ, ଯତୀନ ଚକ୍ରବର୍ତ୍ତୀ ଓ ବହୁ ଶ୍ରମିକ ନେତାଙ୍କ ସଂଗରେ ସଂପର୍କ ଥିଲା। ଅନେକ ସମୟରେ ସନ୍ଧ୍ୟାପରେ ହାୱଡ଼ାର ଝୁଲନ୍ତା ପୋଲ ଉପରେ ଠିଆ ହୋଇ, ସନ୍ଧ୍ୟାକାଳୀନ ଦୃଶ୍ୟ, ହୁଗୁଳୀ ନଦୀ ବକ୍ଷରେ କ୍ଷୁଦ୍ର ବୋଟ ଓ ଜାହାଜର ଦୃଶ୍ୟ ଦେଖେ। ମୃତ୍ୟୁପରେ ଶୁଦ୍ଧିକାମ ଅସ୍ଥି ବିସର୍ଜନ ଇତ୍ୟାଦି କରୁଥିବା ଦୃଶ୍ୟ ଏବେ ମଧ ମନରେ ରହିଛି। ନଦୀର ଉଭୟ ପାର୍ଶ୍ୱରେ ହାୱଡ଼ା ଷ୍ଟେସନକୁ ଯିବାପାଇଁ ବସ୍, ଟ୍ରାମ୍, ଟ୍ୟାକ୍ସି, ଶହଶହ ଦୋକାନ, ଆଲୋକରେ ଝଲମଲ କରୁଥିବା ରାସ୍ତା ଦେଖୁ ଦେଖୁ ଘଣ୍ଟାଘଣ୍ଟା ସମୟ କଟିଯାଉଥିଲା। ବିଜୟ ଘରେ ରାତ୍ରି ଭୋଜନ ସାରି ଆମ୍ଭେ ଦୁଇଜଣ ସାଲିକଆ ଫେରିଆସୁଥିଲୁ। ମନେ ପଡୁଛି ବିବାହ ପରେ ପ୍ରଥମ ବିବାହ ବାର୍ଷିକୀ ପାଳନ। ଆମର ବିବାହ ୧୯୫୪ ମସିହା ମେ ୨୮ ତାରିଖରେ ହୋଇଥିଲା। କେତେ ସ୍ୱପ୍ନ, ଭୟ ଓ ଜୀବନ ପଥରେ ଚାଲିବାର ଦୁର୍ବାର ଚେଷ୍ଟା। ସେତେବେଳେ ଶ୍ୟାମବାବୁଙ୍କର ଚାକିରି ଆୟ ମାତ୍ର ୮୦ ଟଙ୍କା ଏବଂ ମେଡ଼ିକାଲ୍ କଲେଜରେ ଶେଷବର୍ଷର ଛାତ୍ରୀ ମୁଁ ଥିଲି।

ରନ୍ଧାବଢ଼ା ମୁଁ ବିଲକୁଲ ଜାଣିନଥିଲି। କୋଇଲା ଚୁଲିରେ ଆଞ୍ଚ ଲଗାଇ ଜଳାଇବା ମୋ ପକ୍ଷରେ ବଡ଼ କଷ୍ଟକର ହୋଇଥିଲା। ସାଲକିଆ ଘର ପାଖ ପଡ଼ିଶାଘରର ଜଣେ ପ୍ରୌଢ଼ା ମୋର ଦୂରାବସ୍ଥା ଦେଖି ସାହାଯ୍ୟ କଲେ ଓ ଚୁଲି ଲଗା ଶିଖାଇ ଦେଇଥିଲେ। ଯାହାଙ୍କ ଘରେ ଭଡ଼ାରେ ଥିଲୁ, ତାଙ୍କର ୨୨/୨୩ ବର୍ଷର ଅବିବାହିତା କନ୍ୟା ରୁବି ମୋତେ ଚଳିବାରେ ବହୁତ ସାହାଯ୍ୟ କଲା। ରୁବି ଶ୍ୱାସରୋଗୀ ଥିଲା। ବ୍ରାହ୍ମଣ ଘରର ଝିଅ ବୟସ୍କା ପୁଣି ଦେଖିବାକୁ ସୁନ୍ଦର ନଥିଲା। ତାର ଜଣେ ଖୁଡ଼ୀ ଓ ଦୁଇଭାଇ ଥିଲେ। ବିବାହ ପାଇଁ ସମ୍ବଳ ନଥିଲା। ତାର ଖୁଡ଼ୀ ସବୁବେଳେ ତାକୁ ଭର୍ତ୍ସନା କରୁଥିଲେ। ଆମ ପଡ଼ୋଶୀ କାୟସ୍ଥଘରର ପୁଅ ସମୀର ଦତ୍ତକୁ ରୁବି ଭଲ ପାଉଥିଲା। ଆମେ ରହୁଥିବା ଘରଟି ଆସବାବବିହୀନ ଥିଲା। ତଳେ ବିଛଣା ପାରି ଆମେ ଶୋଉଥିଲୁ। ରୁବିପ୍ରାୟ ସବୁବେଳେ ମୋ ପାଖରେ ରହୁଥିଲା। ମଝିରେ ମଝିରେ ଡିକି କବାଟ ଦେଇ ସମୀର

ଦତ୍ତ ସଂଗେ କଥାବାର୍ତ୍ତା କରୁଥିଲା । ବ୍ରାହ୍ମଣ ଘରର ବୟସ୍କା ଝିଅକୁ ବିବାହ ଦେଇପାରୁ ନଥିବାରୁ ତାର ବଡ଼ଭାଇ ବଡ଼ମା ବଡ଼ ଚିନ୍ତାଗ୍ରସ୍ତ ଥିଲେ । ପିତୃମାତୃହୀନା ରୁବି ବୟସ୍କ ଯୁବକ ସମୀରକୁ ପ୍ରେମ କରୁଥିବାର ଜାଣି ସେମାନେ ସମସ୍ତେ ବଡ଼ ବ୍ୟସ୍ତ ହୋଇଗଲେ । ଏହି ଅବସ୍ଥାରେ ଗଳାରେ ଫାସିଲଗାଇ ଆତ୍ମହତ୍ୟା ଚେଷ୍ଟାକରୁଥିବା ରୁବିକୁ ମୁଁ ମେଡ଼ିକାଲ କଲେଜରୁ ଫେରିବା ସମୟରେ କଟକ ନେଇଆସିଲି । ସେ ଏକ ଇତିହାସ । ତତ୍‌କାଳୀନ ମେଡ଼ିକାଲ କଲେଜରେ ପ୍ରିନ୍‌ସପାଲଙ୍କୁ ଅନୁରୋଧ କଲି, ତାକୁ ନର୍ସିଂ ତାଲିମରେ ଭର୍ତ୍ତି କରିଦେବାକୁ । ସେ କହିଲେ ନର୍ସିଂ ଭର୍ତ୍ତି କରିବାକୁ ହେଲେ ନିତାନ୍ତ ପକ୍ଷେ ଓଡ଼ିଆରେ ସପ୍ତମ ଶ୍ରେଣୀ ପାଶ୍ କରିଥିବା ସାର୍ଟିଫିକେଟ୍ ଦରକାର । କଟକର ଜଣେ ବନ୍ଧୁଙ୍କ ମାଧ୍ୟମରେ ରୁବିକୁ ଖ୍ରୀଷ୍ଟିୟାନ୍ ସଂପ୍ରଦାୟ ଦ୍ୱାରା ପରିଚାଳିତ ସେଲଟର ସ୍କୁଲରେ ଭର୍ତ୍ତି କରାଇ ସପ୍ତମ ଶ୍ରେଣୀର ଏକ ସାର୍ଟିଫିକେଟ୍ ହାସଲ କଲି । ତାପରେ ସେ ନର୍ସିଂ ସ୍କୁଲରେ ଭର୍ତ୍ତି ହେଲା । କାଳକ୍ରମେ ସେହି ଝିଅଟି ଷ୍ଟାଫ୍‌ନର୍ସ ହେଲା । ଆଖି ଅପରେସନ୍ ଥିଏଟରରେ ବହୁଦିନ କାର୍ଯ୍ୟକରି ସୁନାମ ଅର୍ଜନ କଲା । ପରେ ତାଠାରୁ ୧୦ବର୍ଷ ସାନ ଜଣେ ବଙ୍ଗାଳୀ ଯୁବକକୁ ବିବାହ କରିଥିଲା । ଯୁବକଟିର ଅକାଳ ମୃତ୍ୟୁପରେ ରୁବି ତା ସଂପତ୍ତିର ଅଧିକାରିଣୀ ହୋଇଥିଲା । ସେ ପୋଷ୍ୟପୁତ୍ର ଗ୍ରହଣ କରିଥିଲା ଓ କଟକର ଯୋବ୍ରା ଅଞ୍ଚଳରେ ନିଜ ଘରେ ଅବସର ଗ୍ରହଣ ପରେ ବସବାସ କରୁଛି । ସେ ମୋର କଟକ ରହଣୀ ସମୟରେ ଏବଂ ବଡ଼ପୁଅର ଜନ୍ମ ସମୟରେ ବହୁତ ସାହାଯ୍ୟ କରିଥିଲା । ବିବାହ ପରେ କଲିକତାର ସାଲିକିଆ ରହଣି ସମୟରେ ଶ୍ୟାମବାବୁଙ୍କର ମାମୁଁ ବିଖ୍ୟାତ ଜମିଦାର ପ୍ରାଣବନ୍ଧୁ ପଣ୍ଡା ଦିନେ ସାଲକିଆ ଘରେ ପହଞ୍ଚିଲେ । ସେତେବେଳେ ମୋର ଶ୍ୱଶୁର ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଥିଲେ । ଏ ବିବାହ ସାରା ଓଡ଼ିଶାରେ ଚହଳ ପକାଇଥିଲା । ଉଦୀୟମାନ ଛାତ୍ରନେତା ଶ୍ୟାମସୁନ୍ଦର ମହାପାତ୍ରଙ୍କର ଅସବର୍ଣ୍ଣ ବିବାହ ଓଡ଼ିଶା ସମ୍ବାଦପତ୍ରରେ ଏକ ଚାଞ୍ଚଲ୍ୟକର ସମ୍ବାଦ ଭାବେ ପ୍ରକାଶିତ ହୋଇଥିଲା । ଲୋକପ୍ରିୟ ପତ୍ରିକା ଆସନ୍ତାକାଲିରେ ଏକ ପୃଷ୍ଠାରେ ବିବାହ ଫଟୋ ସହିତ ଲେଖା ମଧ୍ୟ ବାହାରିଥିଲା । ପରେ ଆସନ୍ତାକାଲି ପତ୍ରିକାର ଶ୍ୟାମବାବୁ ସଂପାଦକ ହୋଇଥିଲେ । ମାମୁଁ ଶ୍ୱଶୁର ପ୍ରାଣବନ୍ଧୁ ବାବୁଙ୍କଠାରୁ ଛୋଟଛୋଟ ଦୁଇଟି କାନଫୁଲ ଉପହାର ସ୍ୱରୂପ ପାଇଥିଲି । ଏହି ସମୟରେ ମନରେ ମୋର ବଡ଼ ଅସହାୟ ଅବସ୍ଥା ଥିଲା ।

ବାପଘର ଓ ଶ୍ୱଶୁର ଘର କାହାରି ସହଯୋଗ ନଥିଲା । ବନ୍ଧୁ ଦୈତାରୀ ଦାସ ଓ ସଦାନନ୍ଦ ଦାସ ଏ ବିବାହରେ ଖୁସି ନଥିଲେ । ଏହି ସମୟରେ ସନ୍ତାନ ଧାରଣର ପ୍ରଥମ ତିନିମାସର ପ୍ରତିଦିନ ବାନ୍ତିବାନ୍ତି ଭାବ, ଖାଇବାରେ ଅରୁଚି ଓ ଅନିଚ୍ଛା ଏବଂ ସାରା ଶରୀରରେ ଅସ୍ଥିରତା ଏସବୁ ଦେଖି ଅନଭିଜ୍ଞ ଯୁବକ ଶ୍ୟାମବାବୁ ବ୍ୟସ୍ତ ହୋଇପଡୁଥିଲେ ।

ଟିଉସନରେ ୨୫୦ଟଙ୍କା ଓ ଲାଲବାବା ସ୍କୁଲରୁ ୮୦ ଟଙ୍କା ମାସିକ ଦରମା, ଏକମାତ୍ର ଚଳିବାପାଇଁ ପାଥେୟ ଥିଲା। ସେହି ସମୟର କିଛି ସ୍ମୃତି ମନରେ ଗୁନ୍ଥି ହୋଇ ରହିଛି। ପ୍ରଥମେ ମାଂସ ରାନ୍ଧିବା ଦିନର ପ୍ରହସନ। ଇଟା ଚୁଲିରେ କାଗଜ ଜାଳି ମାଂସ ରାନ୍ଧିବାକୁ ୨ଘଣ୍ଟା ଲାଗିଲା। ମାଂସ ରାନ୍ଧିବା ମୋ ଦ୍ୱାରା ହେବନି ଓ ମୁଁ ମାଂସ ଖାଇବି ନାହିଁ ବୋଲି ସ୍ଥିର କଲି। ଦିନେ ଶ୍ୟାମବାବୁ ସ୍କୁଲ ଚାଲିଯିବା ପରେ ରୁବି ହାତରେ ମାଂସ ମଗାଇ ରାନ୍ଧି ରାତ୍ରି ୧୧ଟା ପର୍ଯ୍ୟନ୍ତ ଚାହିଁ ବସିଥିଲି। କ୍ରମେ ଆଖିପତା ମାଡ଼ିଆସିଲା। କଲିକତାର ଜନଗହଳି ଗାଡ଼ିମଟର ଭିଡ଼ ଓ ଦୁର୍ଘଟଣା କଥା ଚିନ୍ତାକରି ମନ ବ୍ୟାକୁଳ ହେଲା। ମୁଁ ଶୋଇପଡ଼ିଲି। ରାତ୍ରି ୧୨ଟା ପରେ କବାଟରେ ବାଡ଼େଇବା ଶବ୍ଦଶୁଣି ଉଠି କବାଟ ଖୋଲିଲି। ଶ୍ୟାମବାବୁ ବହୁତ କାରଣ ବଖାଣିଲେ, ବାଟରେ ଡେରି ପାଇଁ। ଏହିପରି ପ୍ରାୟ ଅଧିକାଂଶ ଦିନ ଡେରି କରି ଫେରିବା ମୋର ଦେହସୁହା ହୋଇଗଲା। ସେପ୍ଟେମ୍ବର ମାସ ଶେଷ ସପ୍ତାହରେ ଦୁର୍ଗାପୂଜା କଲିକତାର ସବୁଠାରୁ ଆକର୍ଷଣୀୟ ଓ ଆନନ୍ଦଦାୟକ ପୂଜା। ଠାକୁର, ଆଲୋକ ସଜ୍ଜା, ଦୋକାନ ସବୁ ଆଲୋକମାଳରେ ଝଲମଲ କରୁଥାଏ। ପୂଜାବଜାର କଲିକତାର ମାସେ ଆଗରୁ ଆରମ୍ଭ ହୋଇଥାଏ। ଲୁଗାପଟା କିଣିବା ପାଇଁ ହଜାର ହଜାର ଲୋକ ସହର ତଳି ଆଖପାଖ ଗ୍ରାମରୁ ଆସନ୍ତି। ଏହି ପୂଜାବଜାରରେ ମୁଁ ଓ ଶ୍ୟାମବାବୁ ମନଖୁସିରେ କଲିକତାରେ ବୁଲାବୁଲି କରୁଥିଲୁ। ହଠାତ୍ ଷଷ୍ଠୀଦିନ ଟେଲିଗ୍ରାମ ଆସିଲା । ମାଆଙ୍କର ଅବସ୍ଥା ଗୁରୁତର ଶୀଘ୍ର ଆସ। ତାର ପ୍ରେରକ ଥିଲେ ବନ୍ଧୁ ସଦାନନ୍ଦ ଦାସ। ମନଦୁଃଖରେ ବସିଥାଆନ୍ତି, ଗୋଟିଏ ପାଖରେ ତାଙ୍କର ଅତିପ୍ରିୟ ମାଆ ଓ ଅନ୍ୟପକ୍ଷରେ ମୋତେ ଏକାକୀ ଛାଡ଼ି ବାଲେଶ୍ୱର ଯିବା, କିଛି ସ୍ଥିର କରିପାରୁନଥାନ୍ତି। ବହୁତ ପଚରାଉଚୁରା କଲାପରେ ସବୁଘଟଣା କହିଲେ। ମୁଁ କହିଲି ରୁବି ଓ ତାର ପରିବାର ସହିତ ରହିଯିବି। ସେ ଶୀଘ୍ର ବାଲେଶ୍ୱର ଯାଇ ମାଆଙ୍କୁ ଦେଖିଆସିବାକୁ ଅନୁରୋଧ କଲି। ସପ୍ତମୀ ଦିନ ବାଲେଶ୍ୱର ଯିବା ପାଇଁ ବ୍ୟବସ୍ଥା କରି ବାହାରିଲେ। ସେହିଦିନ ତାଙ୍କର ଆଉଜଣେ ଅନ୍ତରଂଗ ବନ୍ଧୁ ଅନ୍ନଦା ରକ୍ଷୀତ୍ ତାର କରିଥିଲେ, 'ମାଆ ଭଲ ଅଛନ୍ତି, ଆସିବା ଦରକାର ନାହିଁ।' ସେ ବାଲେଶ୍ୱର ଗଲେ ନାହିଁ। ଏହାର କିଛିଦିନ ପରେ କିଛି ଟଙ୍କା ଓ ଅନ୍ନଦାବାବୁଙ୍କର ସ୍ନେହ ଓ ଶୁଭେଚ୍ଛା ପୂର୍ଣ୍ଣ ଚିଠି ପାଇଲି। ସେଥିରେ ସେ ଲେଖିଥିଲେ ପୂଜା ଯୋଗୁଁ ବଡ଼ପୁଅର ଘରେ ଅନୁପସ୍ଥିତି ଯୋଗୁଁ ମାଆ ବଡ଼ ବ୍ୟସ୍ତ ହେଉଛନ୍ତି। ଏଣୁ ସଦାନନ୍ଦ ତାର କରିଥିଲା। ପୂଜାପରେ ମୁଁ କଟକ ଫେରି ଆସି ପରୀକ୍ଷା ପାଇଁ ପଢ଼ାପଢ଼ି କଲି। ଶ୍ୟାମବାବୁ ସାଲକିଆ ଛାଡ଼ି ଉତ୍ତର କଲିକତାରେ ବହୁବଜାର ଅଞ୍ଚଳକୁ ରହିବା ପାଇଁ ଉଠିଗଲେ। ପୂରା ବର୍ଷେକାଳ କଟକରେ ରହିବା ଅବସ୍ଥାରେ ଆମକୁ ବହୁତ ଅର୍ଥାଭାବ ଘଟିଥିଲା। ମୋର ପଢ଼ାଖର୍ଚ୍ଚ, ମେସ୍ ଖର୍ଚ୍ଚ

ମିଶି ମାସକୁ ୧୨୦ଟଙ୍କା ପଡୁଥିଲା। ମୋର ବାପା ଗୋଟାଏ ପଇସା ଦେଲେନାହିଁ। ଶ୍ୟାମବାବୁ ବହୁତ ପରିଶ୍ରମ କଲେ। ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ, ଆସନ୍ତାକାଲିର କାଗଜରେ ଚାକିରି କରି ମୋର ଖର୍ଚ୍ଚ ସେ ପଠାଉଥିଲେ।

ବିବାହ ପରେ କଟକରେ ପଢୁଥିବା ସମୟରେ ଶ୍ୟାମବାବୁ କଲିକତାରୁ କଟକ ମୋତେ ଭେଟିବାକୁ ଆସୁଥିଲେ। ଆର୍ଥୀକ ଅନାଟନ ଯୋଗୁଁ ଅନେକ ସମୟରେ ସେ ବିନା ଟିକଟରେ ଆସୁଥିଲେ। ସେ ସମୟରେ ନୀରଦା ଘରକୁ ମୁଁ ଯାଉଥିଲି। ମଙ୍ଗଳାବାଗ୍‌ରେ ଥିବା ଇଦାନ ମହଲରେ ସେମାନେ ଉପରମହଲାରେ ରହୁଥିଲେ। ଦୈତାରୀବାବୁ ଲ ପଢୁଥିଲେ ଏବଂ ସପ୍ଲାଇ ଡିପାର୍ଟମେଣ୍ଟରେ କାମ କରୁଥିଲେ। ଅନେକ ରନ୍ଧା ନୀରଦା ପାଖରୁ ମୁଁ ଶିଖିଥିଲି। ସେ ଗୋଟିଏ ସୁଗୃହିଣୀ ଥିଲା। ଶ୍ୟାମବାବୁ ରୁଚିକର ଖାଦ୍ୟ ଖାଇବାକୁ ପସନ୍ଦ କରୁଥିଲେ। ଏଣୁ ଭଲ ରାନ୍ଧି ଖୁଆଇବାକୁ ମୁଁ ଭଲପାଏ। ରୋଟି ଓ ତରକାରୀ ଭୋଜନରେ ପ୍ରାୟ ଯୁବକ ସ୍ୱାମୀଙ୍କୁ ସନ୍ତୁଷ୍ଟ କରିବାକୁ ପଡୁଥିଲା। ସେତେବେଳେ ମୋର ଗର୍ଭାବସ୍ଥା। ରକ୍ତଚାପ ମଝିରେ ମଝିରେ ବଢୁଥାଏ। ତଳିପାଦ ଫୁଲିଯାଉଥିଲା। ହଷ୍ଟେଲର ଖାଇବା ଓ ପରୀକ୍ଷା ପାଇଁ ଅତ୍ୟଧିକ ପରିଶ୍ରମ ପରେ ମୁଁ ହାଲିଆ ହୋଇ ପଡୁଥାଏ। ପ୍ରତିଦିନ ଶ୍ୟାମବାବୁଙ୍କ ଚିଠିକୁ ଅପେକ୍ଷା କରୁଥାଏ। ମାର୍ଚ୍ଚ ମାସ ଶେଷ ଆଡ଼କୁ ମଝିରେ ମଝିରେ ପେଟରେ କଷ୍ଟ ଆରମ୍ଭ ହେଉଥାଏ। ମେଡ଼ିସିନ୍‌ର ପ୍ରଥମ ଭାଗ ପରୀକ୍ଷା ଶେଷ ହେଲା। ଏପ୍ରିଲ୍ ୧୭ ତାରିଖରେ ମୋର ସହପାଠିନୀ କମଳା ଓ ବାଙ୍ଗାରାମା ସଙ୍ଗରେ ସଂଧ୍ୟାବେଳକୁ ଚଣ୍ଡୀଙ୍କ ଆଶୀର୍ବାଦ ପାଇଁ ପୂଜା ଦେବାକୁ ଯାଇଥିଲି। ସେହିଦିନ ରାତିରେ ହଠାତ୍ କରି ଗୁଡ଼ାଏ ଜଳସ୍ରାବ ହେଲା। ତତ୍‌କ୍ଷଣାତ୍ ମୋ ବନ୍ଧୁ କମଳା ଓ ବାଙ୍ଗରାମା ମୋତେ ନେଇ ଓ୍ୟାର୍ଡରେ ଭର୍ତ୍ତି କରିଦେଲେ। ସାରାରାତି ସିଟ୍‌ରେ ଗ୍ଲୁକୋଜ ଚାଲିଲା। ଶେଷ ରାତ୍ରିବେଳକୁ ଗର୍ଭକଷ୍ଟ ଆରମ୍ଭ ଆସ୍ତେ ଆସ୍ତେ ହେଲା। ସକାଳେ ବଙ୍ଗାଳୀ ପ୍ରିନ୍‌ସପାଲ୍ ଏ.ଦାସ ମୋତେ ଦେଖିବାକୁ ଆସିଲେ। ସେ ମୋତେ ଅତ୍ୟନ୍ତ ସ୍ନେହ କରୁଥିଲେ। ସେ ପଚାରିଲେ ଲେବର କଷ୍ଟ ଆରମ୍ଭ ହେଲାଣି। ପରୀକ୍ଷା ଦେବାପାଇଁ ସାହସ ହେଉଛି କି? ଆର୍ଥିକ ଦୂରାବସ୍ଥା ଯୋଗୁଁ ମୋତେ ଭୟ ଲାଗିଲା।

ମୁଁ ପରୀକ୍ଷା ଦେବାପାଇଁ ଅନୁମତି ମାଗିଲି। ଓ୍ୱାର୍ଡରୁ ମୋତେ ଷ୍ଟୁଡ଼େଣ୍ଟ୍ କେବିନକୁ ସ୍ଥାନାନ୍ତରିତ କଲେ। ଗର୍ଭକଷ୍ଟ ବହୁସମୟ ଛାଡ଼ି ଛାଡ଼ି ଆସୁଥିଲା। ଜଳସ୍ରାବ ହେଉଥାଏ। ଶୋଇ ଶୋଇ ମେଡ଼ିସିନ୍ ଦ୍ୱିତୀୟ ଭାଗଟି ପରୀକ୍ଷା ଦେଲି। ଦୁଧ, ବିସ୍କୁଟ, ଫଳ, ପାଉଁରୋଟି ଖାଇବାକୁ ଦେଲେ। ପରୀକ୍ଷା ସମୟରେ ଜଗିବା ପାଇଁ ଡାକ୍ତର ଅକ୍ଷୟ ଆଚାର୍ଯ୍ୟ ଆସିଥିଲେ। ପରେ ସେ ପାଥୋଲଜି ପ୍ରଫେସର ହୋଇଥିଲେ। ଡାକ୍ତର ଯାମିନୀ

ମୋହନ ସେନାପତି ମଧ୍ୟ (ପରେ ମେଡିସିନ୍ ପ୍ରଫେସର ହେଲେ) ରହିଲେ। ଶୋଇ ଶୋଇ ପରୀକ୍ଷା ଖାତାରେ ଲେଖିଥିଲି। ମେଡ଼ିକାଲ କଲେଜରେ ଏହା ଏକ ଇତିହାସ। ୧୯ ତାରିଖ ଉପରଓଳି ମୋର ବନ୍ଧୁ ନୀରଦା, ଦୈତାରୀବାବୁଙ୍କ ସ୍ତ୍ରୀ ଏବଂ ତାର ଭଉଣୀ ଲୁସି, ଶ୍ୟାମବାବୁଙ୍କର ଅନ୍ତରଂଗ ବନ୍ଧୁ ଦୈତାରୀବାବୁ କିଛି ଖାଦ୍ୟ ଓ ପରିବା ତରକାରୀ ନେଇ କେବିନ୍‌ରେ ପହଞ୍ଚିଲେ। ରୁବି ସବୁବେଳେ ମୋ ପାଖରେ ବସିରହିଥାଏ। କଲିକତାକୁ ଶ୍ୟାମବାବୁଙ୍କୁ ଟେଲିଗ୍ରାମ୍ କରିବା ପାଇଁ କହିଲି। ସନ୍ଧ୍ୟାପରଠୁଁ କଷ୍ଟ ଘନ ଘନ ହେଲା। ରାତ୍ରି କେତେ ଘଣ୍ଟା ମନେ ପଡୁନାହିଁ। ପୁଅଟିଏ ଜନ୍ମ ହେଲା । ପ୍ରାୟ ୭ଟି ଷ୍ଟିଚ୍ ପଡ଼ିଥିଲା। ପେଥିଡ୍ରିନ୍ (ତତ୍‌କାଳୀନ କଷ୍ଟନାଶକ ଔଷଧ) ଦେଇ ମୋତେ ଅପରେସନ୍ ଓ୍ୱାର୍ଡ଼ରେ ଗୋଟାଏ କୋଣକୁ ରଖିଥିଲେ। ରାତ୍ରି ୧୨ଟା ବେଳେ ଜ୍ଞାନ ଆସିଲା।

ସୌଭାଗ୍ୟବଶତଃ ଶଯ୍ୟାପାଖରେ ରାସ୍ତାକଡ଼କୁ ଝରକାଟିଏ ଥିଲା। ରୁବି କହିଲା 'କେ ଏସେଛେ ଦେଖ'। ଝରକା ଆଡ଼କୁ ଚାହିଁଲି। ଝରକା ଆରପଟେ ଶ୍ୟାମବାବୁ ଛିଡ଼ା ହୋଇଥିଲେ। ମୋ ଆଖିରୁ ଧାର ଧାର ହୋଇ ଲୁହ ବୋହୁଥିଲା। ସକାଳେ ଡାକ୍ତର କେବିନକୁ ନେଇଗଲେ। ତା ପରଦିନ ପରୀକ୍ଷା ନଥିଲା। ଶ୍ୟାମବାବୁ ସକାଳ ସନ୍ଧ୍ୟା କେବିନରେ ଆସି ବସୁଥିଲେ। ରାତିରେ ନୀରଦା ଘରେ ରହୁଥିଲେ। ରୁବି ବହୁ ପରିଶ୍ରମ କରୁଥିଲା। ପିଲାକୁ ଉଠାଇବା ଦୁଧ ଖୁଆଇବା, ଲୁଗା ବଦଳାଇବା ପ୍ରଭୃତି କରୁଥିଲା। ତା ପରେ ଷ୍ଟ୍ରେଚରରେ ବୁହା ହୋଇ ଲିଖିତ ପରୀକ୍ଷା ଓ ପ୍ରାକ୍‌ଟିକାଲ୍ ଦେଲି। ତତ୍‌କାଳୀନ ପ୍ରିନ୍‌ସପାଲଙ୍କ ଅନୁଗ୍ରହରୁ ଏହା ସମ୍ଭବ ହୋଇଥିଲା। ପରୀକ୍ଷାଫଳ ବାହାରିଲା। କେବଳ ମେଡ଼ିସିନ୍‌ରେ ଆଉଥରେ ପରୀକ୍ଷା ଦେବାକୁ ହୋଇଥିଲା। ଏକୋଇଶ ଦିନପରେ ରେଳରେ ଶ୍ୟାମବାବୁଙ୍କ ସହିତ ଟିକିପୁଅକୁ କୋଳରେ ଧରି ମୁଁ ବାଲେଶ୍ୱର ଶ୍ୱଶୁର ଘରକୁ ଯିବାପାଇଁ ଆସିଲି। ମୋର ଶ୍ୱଶୁର ତାଙ୍କ ଘରକୁ ଆମ୍ଭମାନଙ୍କୁ ନ ନେବା ପାଇଁ ଜିଦ୍‌ଧରି ବସିଥିଲେ। ଏଣୁ ମୋର ଖୁଡୁତାଶୁର ନଗେନବାବୁ ତାଙ୍କର କାର୍ଯ୍ୟାଳୟ ଖଡଗପୁରକୁ ନେବାପାଇଁ ବ୍ୟବସ୍ଥା କଲେ। ଶେଷ ମୁହୂର୍ତ୍ତରେ ଶ୍ୱଶୁର ଅନୁମତି ଦେବାରୁ ମୁଁ ନୁରୁପୁରରେ ଥିବା ଚାରି ବଖୁରିଆ ମାଟିଘରକୁ ଆସିଲି।

*(ମୋ ଜୀବନ ମୋ ସମୟ, ପୃଷ୍ଠା ୬୪ – ୭୦)*

* * *

## ସ୍ମୃତିର କାରିଗର

# ହେମଲତା ମାନସିଂହ

**(୧୯୧୯-୨୦୦୪)**

ହେମଲତା ମାନସିଂହ ୧୯୧୯ ମସିହାରେ ଜଗତସିଂପୁରର ବିଲିପଡ଼ାରେ ଜନ୍ମଗ୍ରହଣ କରିଥିଲେ। ସେ ରେଭେନ୍‌ସା ବାଳିକା ଉଚ୍ଚ ବିଦ୍ୟାଳୟରେ ପାଠ ପଢ଼ିଥିଲେ। ସେ ଓଡ଼ିଶାର ପ୍ରସିଦ୍ଧ କବି ଓ ବିଦ୍ୱାନ ମାୟାଧର ମାନସିଂହଙ୍କୁ ବିବାହ କରିଥିଲେ।

ତାଙ୍କର ସ୍ମୃତିକଥା "ପ୍ରିୟ ପରମ" ୨୦୦୪ ମସିହାରେ ପ୍ରକାଶିତ ହୋଇଥିଲା। ସମ୍ପାଦକ ଶ୍ରୀଚରଣ ମହାନ୍ତିଙ୍କ ଉଲ୍ଲେଖ ଅନୁସାରେ ଏହା ତିନୋଟି ପର୍ଯ୍ୟାୟରେ ଲେଖାଯାଇଥିଲା। ଏହାର ସମସ୍ତ ବିଭାଗ ତାଙ୍କ ସ୍ୱାମୀ ମାୟାଧର ମାନସିଂହଙ୍କ ଉପରେ କେନ୍ଦ୍ରିତ। ସେ ଏଥିରେ ତାଙ୍କ ବୈବାହିକ ଜୀବନର ଦିଗଗୁଡ଼ିକୁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଛନ୍ତି ଯାହା ଓଡ଼ିଆ ନାରୀମାନଙ୍କ ଦ୍ୱାରା ଲିଖିତ ଆତ୍ମଚରିତଗୁଡ଼ିକରେ କ୍ୱଚିତ୍ ଦେଖିବାକୁ ମିଳିଥାଏ।

ଏହି ଉଦ୍ଧୃତାଂଶଟି ବିଂଶ ଶତାବ୍ଦୀର ଚାଳିଶ ଏବଂ ପଚାଶ ଦଶକର ପ୍ରାରମ୍ଭରେ ହେମଲତାଙ୍କ ପରିବାର କିପରି କଠିନ ସମୟ ଦେଇ ଗତି କରିଥିଲା ତାହା ବର୍ଣ୍ଣନା କରେ। ଏଠାରେ ସେ ତାଙ୍କ କବି-ସ୍ୱାମୀଙ୍କ ପାଇଁ ପ୍ରେରଣାର ଏକ ଅବିଚ୍ଛିନ୍ନ ଉତ୍ସ ହେବା ସହିତ ନିଜ ଚାରିପାଶ୍ୱର ଏକ ସ୍ମରଣୀୟ ବର୍ଣ୍ଣନା ପ୍ରଦାନ କରିବାକୁ ଭୁଲିନାହାନ୍ତି।

# ପ୍ରଥମ ସାକ୍ଷାତ

ଶୀତରାତି । ନିଘୋଡ଼ ନିଦରେ ଶୋଇଛି । ହଠାତ୍ କିଏ ମତେ ଡାକିଲା– "ବୁଢ଼ୀ ଉଠ୍ ଉଠ୍, ବିଛଣା ଦେ ।" ଆଖି ଖୋଲି ଦେଖେ ତ ପେଟ୍ରୋମାକ୍ସ ଜଳୁଛି । ସେଇ ଡିସେମ୍ବର ମାସ ଅଧରାତିରେ ସମସ୍ତେ କର୍ମଚଞ୍ଚଳ । ରୋଷାଇ ଘରୁ ଚେଁ–ଚେଁ ଶବ୍ଦ ସ୍ପଷ୍ଟ ଶୁଭୁଛି । ବୋଉ ପଛରୁ ଡାକି କହିଲା, "ସେ ଆଡ଼େ ଯାନା, କଲେଜବାବୁମାନେ ଆସିଛନ୍ତି ।" ଦାଦି (ଔପନ୍ୟାସିକ ସତ୍ୟାନନ୍ଦ ବେହୁରା) କହିଲେ, "ତାକୁ ନାହିଁ କରୁଛ କାହିଁକି ? ତାକୁ ପରା ଦେଖିବାକୁ ଆସିଛନ୍ତି ।"

ତା ପରଦିନ ସମସ୍ତେ ଖିଚିଂ ଦେଖିବାକୁ ବାହାରିଲେ । କରଞ୍ଜିଆରୁ ଖିଚିଂ ମାତ୍ର ଅଳ୍ପ କେତେ ମାଇଲ । ମୁଁ ଓ ମୋ ସାନଭାଇ ରାମ (ଡକ୍ଟର ବସନ୍ତ କୁମାର ବେହୁରା, ପ୍ରଫେସର, ଜୁଓଲଜି) ମଧ୍ୟ ସେମାନଙ୍କ ସହିତ କାର୍‌ରେ ଗଲୁ । ବୋଧହୁଏ ଦାଦିଙ୍କ କଥା ଯୋଗୁଁ ବୋଉ ମୋତେ ସେମାନଙ୍କ ସାଥିରେ ଛାଡ଼ିବାକୁ ଅରାଜି ହୋଇ ନ ଥିଲା । ତରୁଛାୟା ଶୀତଳ ରାସ୍ତାରେ ଆମ କାର୍ ଆଗେଇ ଚାଲିଥାଏ । ଆମେ ଦୁଇ ପାର୍ଶ୍ୱର ବନ ଶୋଭା ଦେଖି ଦେଖି ଯାଉଥାଉ । ଖିଚିଂରେ ପହଞ୍ଚି ଖିଚିଙ୍ଗେଶ୍ୱରୀଙ୍କୁ ଦର୍ଶନ କଲୁ । କି ବିରାଟ ବିରାଟ ମୂର୍ତ୍ତି । କେତେକ ମୂର୍ତ୍ତିକୁ କଳାପାହାଡ଼ ଭାଙ୍ଗି ଦେଇଛି ଶୁଣି ଆମ ପିଲାମନ ହେଉଥାଏ କଳାପାହାଡ଼କୁ ଧରି ମାରିଦେବାକୁ । ରାମ ସେତେବେଳେ ତା ବହିରେ ପଢ଼ିଥିବା ଓଡ଼ିଶାରେ ସର୍ବତ୍ର ପ୍ରଚାରିତ ଏଇ କେତୋଟି ପଦ ଆବୃତ୍ତି କରିଥିଲା–

"ଅଇଲା କଳାପାହାଡ଼ ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି,
ସୁବର୍ଣ୍ଣ ଥାଳିରେ ହେଡ଼ା(ହୀରା ?) ପରସିଲେ
ମୁକୁନ୍ଦ ଦେବଙ୍କ ରାଣୀ ।"

ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ଗୃହ ନିର୍ମାଣ ହୋଇ ସେଇଠି ମୂର୍ତ୍ତି ସବୁ ରଖା ଯାଇଥାଏ । ତା ପାଖକୁ ଶାଳବନ ବୀଥିକା । ସେଇଠି କାର୍‌ଟି ଥୁଆ ହୋଇଥାଏ । କାର୍‌ରେ ସ୍ଥାନ ନ ହେବାରୁ ଦୁଇଜଣ ସାଇକେଲରେ ପଛରେ ଆସୁଥାନ୍ତି । ସେମାନେ ବହୁତ ସମୟ ପର୍ଯ୍ୟନ୍ତ ନ ଆସିବାରୁ ତାଙ୍କୁ ଖୋଜିବାକୁ ଏମାନେ ସମସ୍ତେ ଗଲେ । ମନେପଡୁଛି, ସେମାନେ ହେଉଛନ୍ତି ପରବର୍ତ୍ତୀ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ସଦାଶିବ ମିଶ୍ର, ସ୍ୱର୍ଗତ କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ନାଏକ ଓ ରତ୍ନାକର ଷଡ଼ଙ୍ଗୀ । କିନ୍ତୁ ମାନସିଂହ ଖୋଜିବାକୁ ନ ଯାଇ କାର୍‌ର ଆଗ ସିଟ୍‌ରେ ସେଇ ଶାଳଗଛ ଛାଇରେ ବସି ରହିଥାନ୍ତି ।

ରାମ ଖୁବ୍ ଚଞ୍ଚଳିଆ ପିଲା; ଏପଟ ସେପଟ ହେଉଥାଏ। ମୁଁ ବି ତା ସାଥିରେ ଥାଏ। ସେ ଶାଳ ଦାନ୍ତକାଠି ଭାଙ୍ଗି ପତର ଛିଣ୍ଡେଇ ନେଉଥାଏ। ଆମେ ଶାଳଫୁଲ ଓ ମଞ୍ଜି ଖୋଜୁଥାଉ। ଶାଳମଞ୍ଜି ଖାଇବାକୁ ଭଲ ଲାଗେ ଜଙ୍ଗଲରେ ଭ୍ରତୁ କୋଳି ଖୋଜୁଥାଏ। ବତାସରେ ଅଜଣା ଫୁଲର ମହକ। କେତେ ନାମହୀନ ଫୁଲ ବି ଛିଣ୍ଡାଉଥାଉ। ମାନସିଂହ ରାମକୁ ଡାକି କ'ଣ କହିଲେ – ସେ ଆସି ମୋତେ ମାନସିଂହଙ୍କ ପାଖକୁ ଡାକିନେଲା। ମାନସିଂହ ମୋତେ ପଚାରିଲେ – "ଓଡ଼ିଶାର ତିନି ଜଣ ବିଶିଷ୍ଟ କବିଙ୍କ ନାମ କହିଲ ?" ମୁଁ ରାଧାନାଥ, ଫକୀରମୋହନ ଓ ଗଙ୍ଗାଧର ମେହେରଙ୍କ ନାମ କହିଲି। ତା ପରେ ପଚାରିଲେ – ତିନୋଟି ଓଡ଼ିଆ ମାସିକ ପତ୍ରିକାର ନାମ କୁହ ? କହିଲି; ସେଥିରେ ବୋଧହୁଏ ସେତେବେଳେ ମହତାବ ସମ୍ପାଦିତ ବାଲେଶ୍ୱରରୁ ପ୍ରକାଶିତ 'ପ୍ରତିଭା' ନାମକ ପତ୍ରିକାର ନାମ କହିଥିଲି। ମାନସିଂହ କହିଲେ – "ହଉ, ଭଲ କରି ପଢ଼, ଭଲ ବର ପାଇବ।"

ପତ୍ରିକା ବା ସାହିତ୍ୟିକଙ୍କ ନାମ କହିବା ମୋ ପକ୍ଷେ କଷ୍ଟକର ନ ଥିଲା, କାରଣ ଆମ ବାପା ସାହିତ୍ୟିକ ନ ହେଲେ ମଧ୍ୟ ଥିଲେ ସାହିତ୍ୟପ୍ରେମୀ। ସେତେବେଳେ ଆମ ଘରକୁ ରାଧାନାଥ, ଫକୀରମୋହନ ଓ ମେହେରଙ୍କ ସବୁ ଛାପା ବହି ଆସୁଥିଲା, ତା ସହିତ ପତ୍ରପତ୍ରିକା ମଧ୍ୟ। ମୋର ମନେଅଛି ନାରୀକବି କୁନ୍ତଳାକୁମାରୀଙ୍କ ସମସ୍ତ ବହି ମଧ୍ୟ ଆମ ଘରେ ଥିଲା।

ସେଦିନ ତ ଶ୍ରାନ୍ତକ୍ଳାନ୍ତ ହୋଇ ସମସ୍ତେ କରଞ୍ଜିଆ ଫେରି ଆସିଲେ – ତା ପରଦିନ ମୋର ପରୀକ୍ଷା କରାହେଲା। ମାନସିଂହ ଓ ତାଙ୍କ ବନ୍ଧୁ ଭଗବତୀ ପାଣିଗ୍ରାହୀ ଘର ଭିତରକୁ ଆସିଲେ। ଗୀତ, ସିଲେଇ ଓ ଅଙ୍କ ବିଷୟରେ ମୋତେ କେତେକ ପାଠ ପଚାରିଲେ। ମୋର ଅଙ୍କ ତ ଭଲ ହେଉଥିଲା; ତେଣୁ ମୁଁ ପାସ୍ କଲି। ଭଗବତୀବାବୁ ଗୋରା ହୋଇ ପତଳା; ଆଖିରେ ଚଷମା ପିନ୍ଧିଥାନ୍ତି। ମାନସିଂହ ବେଶ୍ ହୃଷ୍ଟପୁଷ୍ଟ ସ୍ୱାସ୍ଥ୍ୟବାନ୍। ସେମାନଙ୍କର ଗ୍ରୁପ୍ ଫଟୋକୁ ନେଇ କେହି ବୋଧହୁଏ ବୋଉକୁ ତାର ଭାବୀ ଜ୍ୱାଇଁର ଛବି ଦେଖାଉଥାନ୍ତି। ମୁଁ ତ କିଛି ଜାଣି ନ ଥାଏ, ପଚାରିଲି – "ଏ ମୋଟା ଲୋକଟି କିଏ ?" ସମସ୍ତେ ସମସ୍ୱରରେ ହସିଲେ। ମୁଁ କିଛି ବୁଝି ପାରିଲି ନାହିଁ।

ମାନସିଂହ ଓ ତାଙ୍କ ସାଙ୍ଗମାନଙ୍କ ଇଣ୍ଟରଭ୍ୟୁରେ ମୋର ପାସ୍ ହେଲା ସିନା, କିନ୍ତୁ ସେମାନଙ୍କର ପରାମର୍ଶ ହେଲା ମତେ ସ୍କୁଲରେ ପାଠ ପଢ଼ିବାକୁ ହେବ। ସେତେବେଳେ କେଉଁଠି ହେଲେ ବାଳିକା ହାଇସ୍କୁଲ ନଥିଲା। ତେଣୁ ସ୍ଥିର ହେଲା ମୁଁ ରେଭେନ୍ସା ବାଳିକା ବିଦ୍ୟାଳୟରେ ପଢ଼ିବି।

ମାନସିଂହ ଓ ତାଙ୍କ ବନ୍ଧୁବର୍ଗ ବିଦାୟ ନେଲେ। କେବଳ ଭାଇ (ଶ୍ରୀ ଦୁର୍ଗାମାଧବ ବେହୁରା) ରହିଗଲେ - ମତେ ନେଇ କଟକ ଯିବେ। ଭାଇ ଓ ଦାଦି କରଞ୍ଜିଆରୁ କଟକ କିପରି ଯା ଆସ କରୁଥିଲେ, ମୋର ମନେନାହିଁ; କିନ୍ତୁ ମୋର ଯିବା ବିଷୟରେ ଘର ଭିତରେ ଘମାଘୋଟ ଆଲୋଚନା ହୋଇଥିବାର ମନେଅଛି।

ଏ ହେଉଛି ବୋଧହୁଏ ୧ ୯ ୨ ୯ ସାଲର କଥା। ମୋର ବୟସ ସେତେବେଳକୁ ଦଶ। ତା ପରେ ମୁଁ ରେଭେନ୍ସା ଉଚ୍ଚ ବାଳିକା ବିଦ୍ୟାଳୟରେ ଅଧ୍ୟୟନ କଲି। ହଷ୍ଟେଲରେ ଥାଏ। ଉଚ୍ଚ ଶ୍ରେଣୀର ଜଣେ ଛାତ୍ରୀ ମୋର ସ୍କୁଲ ମଦର୍ ହୋଇଥାନ୍ତି। ସେ ମୋର ଭଲମନ୍ଦ ସବୁ ବୁଝନ୍ତି। ମୋ ମୁଣ୍ଡର ସୁନାପାତିଆ, ଟ୍ରଙ୍କ୍ ଚାବି ସବୁ ତାଙ୍କରି ପାଖରେ ଥାଏ। ସେତେବେଳକୁ ଉପେନ୍ଦ୍ର ଭଞ୍ଜଙ୍କୁ ନେଇ ଲିଖିତ ମାନସିଂହଙ୍କର 'ରାଜକବି' ନାଟିକା କେବଳ ପ୍ରକାଶିତ ହୋଇଥାଏ। ସେଥିରୁ କେତେକ କବିତା ମୋର ମୁଖସ୍ଥ ହୋଇ ଯାଇଥିଲା।

ଛାତ୍ରୀ ଆବାସର ନିୟମ ଅନୁସାରେ ଶନିବାର ଦିନ ଉପରବେଳା କିମ୍ବା ରବିବାର ସକାଳ ଓ ଚାରିଟାବେଳେ ଭିଜିଟର ଆସିପାରିବେ। ସେଥିପାଇଁ ନିର୍ଦ୍ଦିଷ୍ଟ ରୁମ୍ ଥାଏ, ସେଇ ରୁମ୍‌ରେ ସାକ୍ଷାତ୍ ହୁଏ। ଗେଟ୍‌ରେ ଦରୱାନ୍‌ର ଖାତାରେ ଦସ୍ତଖତ କରି ଆସିବାକୁ ପଡ଼େ। ମୋର ବଡ଼ଭାଇ ଓ ଦାଦି ସେତେବେଳେ ରେଭେନ୍ସା କଲେଜରେ ପଢୁଥାନ୍ତି। ସେମାନେ ନିୟମିତ ଆସି ମୋର ସୁବିଧା ଅସୁବିଧା ବୁଝନ୍ତି। ଅନେକ ଥର ମାନସିଂହ ମଧ୍ୟ ଆସନ୍ତି। କେତେବେଳେ ସାଥିରେ ତାଙ୍କର ବନ୍ଧୁ ଜଣେ ଥାନ୍ତି। ବେଳେବେଳେ ସେ ଏକା ମଧ୍ୟ ଆସନ୍ତି।

ପଞ୍ଚମ ବା ଷଷ୍ଠ ଶ୍ରେଣୀ ହେବ (ଆଜିର ଷଷ୍ଠ ବା ସପ୍ତମ ଶ୍ରେଣୀ)- ମାନସିଂହଙ୍କୁ ବେଶି କଥା କହିବାକୁ ମୋତେ ସଙ୍କୋଚ ଲାଗୁଥାଏ। କିନ୍ତୁ ମୋର ମୋଜା ବୁଣିବା ପାଇଁ ଛୁଞ୍ଚିଟାଏ ନିହାତି ଦରକାର। ତାଙ୍କ ମୁହଁକୁ ଅନେଇ ନପାରି ଲାଜ ଲାଜ ହୋଇ ଅତି କଷ୍ଟରେ କହିଥିଲି- "ମଉଜା ବୁଣିବାକୁ ଚାରିଟା ଛୁଞ୍ଚି ଦରକାର।" ସେ ସଙ୍ଗେ ସଙ୍ଗେ ସଂଶୋଧନ କରି କହିଲେ- 'ମଉଜା ହବନି, 'ମୋଜା'। ତା ପର ଥର ଆସିଲା ବେଳେ ଚାରିଟା ଛୁଞ୍ଚି ଆଣି ଦେଇଥିଲେ। ତା ସହିତ 'ପଞ୍ଚସତୀ' ନାମରେ ଗୋଟାଏ ବଙ୍ଗଳା ଉପହାର ବହି। ବହିରେ ମୋର ନାମ ଲେଖି ଦେଇଥାନ୍ତି। ସେଥିରେ ବେହୁଲା, ସାବିତ୍ରୀ, ସତ୍ୟବାନ୍ ଆଦିଙ୍କର କାହାଣୀ ସହିତ ସୁନ୍ଦର ସୁନ୍ଦର ଚିତ୍ର ଥାଏ। ନଦୀ ବକ୍ଷରେ ବେହୁଲା ତାଙ୍କ ସ୍ୱାମୀଙ୍କ ମୃତ ଦେହକୁ କୋଳରେ ଧରି ଭାସି ଯାଉଛନ୍ତି। ସାବିତ୍ରୀ ସତ୍ୟବାନ୍‌ଙ୍କ ମୃତ ଦେହକୁ ଧରି ଜଙ୍ଗଲରେ ବସିଛନ୍ତି, ଯମରାଜା ଆସିଛନ୍ତି ସତ୍ୟବାନ୍‌ଙ୍କୁ ନେବାକୁ।

ଆଉ ଥରେ ଗୋଟିଏ ବହି ଦେଇଥିଲେ ଗଙ୍ଗାଧର ମେହେରଙ୍କ 'ପ୍ରଣୟବଲ୍ଲରୀ'। ଏଥିରେ ବି ଦୁଇ ଚାରିଟା ଛବି ଥିଲା – ଦୁଷ୍ମନ୍ତ ଶକୁନ୍ତଳାଙ୍କର ପ୍ରଥମ ଦର୍ଶନ ଓ ବିଚ୍ଛେଦ ପରେ ଭରତ, ଶକୁନ୍ତଳା ଓ ଦୁଷ୍ମନ୍ତଙ୍କର ମିଳନ। ମୋର ଏ ବହିରୁ କେତେଗୁଡ଼ିଏ ପଦ ମୁଖସ୍ଥ ହୋଇ ଯାଇଥିଲା। ଏବେ ବି ମନେଅଛି,

"ଘେନ ପୂଜ୍ୟପୂଜା ବ୍ୟତିକ୍ରମ ଫଳ
ଯା ଠାରେ ରଖିଛୁ ଲୟ,
ସେ ତୋତେ ଚିହ୍ନିବ ନାହିଁ, ତୁ ଦେଲେ ହେଁ
ଆପଣାର ପରିଚୟ।"

ଆଉଥରେ ମାନସିଂହ ଆଣିଦେଲେ ଗୋଟାଏ ବିଚିତ୍ର ପେଟମୋଟା ଛୁରୀ; ଛୁରୀଟି ଭିତରେ ୨୬ ପ୍ରକାର ଛୋଟ ବଡ଼ ଛୁରୀ ଥାଏ, ଗୋଟିକ ପରେ ଗୋଟିଏ ଦରକାର ଅନୁଯାୟୀ କାଢ଼ିବାକୁ ହେବ। ମୋତେ ବଡ଼ କୌତୁକିଆ ଲାଗୁଥାଏ। ମୋର ସବୁ ଜିନିଷ ବିଛଣା ତଳେ ରହେ। ଟ୍ରଙ୍କ୍ ଚାବି ତ ସ୍କୁଲ ମଦର୍‌ଙ୍କ ପାଖରେ। ସେ ତ ଲୁଗାପଟା କାଢ଼ି ଦିଅନ୍ତି।

ଆଉ ଥରେ ମାନସିଂହ ଗୋଟାଏ ମୋଟା ବନ୍ଧେଇ ଖାତା ଆଣି ମତେ ଦେଲେ ଓ କହିଲେ, "ଏଥିରେ କବିତାଗୁଡ଼ିକ କପି କରି ରଖିଥିବ; ଆରଥରକୁ ମୁଁ ଆସି ନେଇଯିବି।" ମୁଣ୍ଡ ଟୁଙ୍ଗାରି ହଁ ଭରିଲି। ଖାତାଟିକି ସିନା ନେଇ ଆସିଲି; ରଖିବି କେଉଁଠି ? ଲେଖିବି କେତେବେଳେ ? ସମସ୍ତଙ୍କୁ ଲୁଚେଇ ତହିଁରୁ 'ମାଲୁଣୀ' କବିତାଟି ପଢ଼ି ଦେଇଥିଲି। ଏ କବିତାଗୁଡ଼ିକ ଏତେ ଭଲ ଲାଗିଲା ଯେ, ମୁଁ ସମସ୍ତଙ୍କୁ ଲୁଚେଇ ଲୁଚେଇ ତାକୁ ପଢ଼ିବାକୁ ଲାଗିଲି। 'ଶଙ୍କିତ ସ୍ନେହ', 'ଦୂରେରହ', 'ପ୍ରେମର ଭାଷା'– ମୋ ହୃଦୟରେ ଆଲୋଡ଼ନ ସୃଷ୍ଟି କରୁଥାଏ। ବିଶେଷତଃ "ଚାରୁକେଶୀ ସେଇ ବାଳିକାର ପ୍ରେମ ପାଇଁ/ ଏ ଜୀବନେ ମୋର ନ ଦେବାର କିଛି ନାହିଁ" ଆଦି ପଙ୍କ୍ତିଗୁଡ଼ିକ ମୋତେ ବେଶ୍ ଉଦ୍‌ବୁଦ୍ଧ କରିଥିଲା। ଏ ଖାତାଟି ଦେବା ପୂର୍ବରୁ ମାନସିଂହ ମତେ ପଚାରି ମୋଠୁଁ ସମ୍ମତି ନେଇଥିଲେ ଯେ, ଗୋଟିଏ ବହି ମୋତେ ଉତ୍ସର୍ଗ କରିବେ। ଏଇ ଖାତାଟି ପରେ ପରେ 'ଧୂପ' ନାମରେ ପ୍ରକାଶ ପାଇଲା ଓ ପ୍ରଥମ ସଂସ୍କରଣର 'ଉତ୍ସର୍ଗ'ରେ ଲେଖାଥିଲା "ହେମଲତାଦେବୀ କାନ୍ତକରେଷୁ"।

ମୁଁ ପରେ ଯେତେବେଳେ 'ଧୂପ' କବିତାର ମର୍ମ ବୁଝିପାରିଲି, ସେତେବେଳେ ଉତ୍ସର୍ଗଟି ଉଠାଇ ଦେବାକୁ କବିଙ୍କୁ ଅନୁରୋଧ କରିଥିଲି; ପରବର୍ତ୍ତୀ ସଂସ୍କରଣରେ ତାହା ଉଠାଇ ଦିଆ ଯାଇଥିଲା। ଏହି କବିତାଗୁଡ଼ିକ ମୋ ମନରେ ଦାଗ କାଟିବାର କାରଣ

ହେଲା, ଗ୍ରୀଷ୍ମାବକାଶ ଓ ଅନ୍ୟାନ୍ୟ ଅବକାଶମାନଙ୍କରେ କବି ମାନସିଂହ ଆମ ଘରେ କରଞ୍ଜିଆରେ ଛୁଟି କଟାଉଥିଲେ । ସେ ସମୟରେ ସେ ସର୍ବଦା ମୋର ଉପସ୍ଥିତି କାମନା କରୁଥିଲେ । ମୁଁ ସେତେବେଳେ ଚପଳମତି ବାଳିକା - ମୋତେ ସଙ୍କୋଚ ଲାଗେ ଗୋଟିଏ ଯୁବକ ଥିବା ଘରେ ଯାଇ ବସି ରହିବାକୁ । କବି ମାନସିଂହ କିନ୍ତୁ ମୋର ସାନଭାଇ ଭଉଣୀଙ୍କୁ ଗଳ୍ପ କହିବାର ପ୍ରଲୋଭନ ଦେଖାଇ ମତେ ଘରୁ ଡକାଇ ପଠାନ୍ତି, ନଗଲେ ଅଭିମାନ କରନ୍ତି । ସେଇ ସମୟରେ ସେକ୍ସପିୟରଙ୍କର କେତେଗୁଡ଼ିଏ ଗଳ୍ପ ଆମେ କବିଙ୍କଠାରୁ ହିଁ ଶୁଣିଥିଲୁ । ତାଙ୍କଠାରୁ ଶୁଣି ସାଇଲକ୍ ପ୍ରତି ଆମ ମନରେ ଘୃଣା ଜାତ ହୋଇଥିଲା । ପୁଣି ରାଧାନାଥ ଗ୍ରନ୍ଥାବଳୀରୁ କବି ମାନସିଂହ ମତେ 'ଚନ୍ଦ୍ରଭାଗା', 'ଉଷା' ଓ 'କେଦାରଗୌରୀ' ପଢ଼ାଇ ବୁଝାଇଥିଲେ ଓ ମଝିରେ ମଝିରେ ସେ ବିଷୟରେ ପଚାରୁଥିଲେ । ତା ସହିତ ପୁଣି ନାନା ପ୍ରଶ୍ନ ରସିକତା କରି ପଚାରୁଥିଲେ - ସେହିପରି "ମୁଁ ତମର କ'ଣ ହେବି ?" "ଗୁରୁଜନ ? ବନ୍ଧୁ ନୁହେଁ ?"

## ଆମର ବିବାହ

କବିଙ୍କ ସହିତ ମୋର ବିବାହ ସମ୍ବନ୍ଧ ସ୍ଥିର ହୋଇଗଲା, ମାତ୍ର ମୁଁ ବାଳିକା ଥିବାରୁ ବିବାହ ହୋଇ ପାରିଲା ନାହିଁ । ସେତେବେଳେ ଶାରଦା ଆଇନ୍ ତାଜା ପାସ୍ ହୋଇଥାଏ । ଚଉଦ ବର୍ଷ ହୋଇ ନ ଥିବା କନ୍ୟାକୁ ବିବାହ ଦେଲେ କନ୍ୟାପିତାକୁ ଜେଲ୍ ଓ ଜୋରିମାନା ଦଣ୍ଡ ଭୋଗିବାକୁ ହେବ । ଭ୍ରୂଣ ଅବସ୍ଥାରେ ଥିବା ସମୟକୁ ଅର୍ଥାତ୍ ଗର୍ଭରେ ଥିବା ଦଶ ମାସକୁ ହିସାବକୁ ନେଇ ମୋର ଚଉଦ ବର୍ଷ କରା ଯାଇଥିଲା । ପ୍ରକୃତରେ ମୋର ତେର ବର୍ଷ ଦୁଇ ମାସ ବୟସରେ ୧୯୩୨ ମସିହା ମେ ମାସ ୮ ତାରିଖରେ ବିବାହ ହୋଇଥିଲା ଆମ ଗାଁ ବିଲିପଡ଼ାରେ । କବିଙ୍କ ଅଭିଭାବକମାନଙ୍କର ଇଚ୍ଛା ଥିଲା ଚିଲିକା ମଧ୍ୟସ୍ଥ ଦ୍ୱୀପ ପାରିକୁଦ ବା ମାଲୁଦ ମଧ୍ୟରୁ ବୋହୂ ଆଣିବାକୁ । ଚିଲିକା ହ୍ରଦ ବାହାରେ ସେମାନେ ପ୍ରାୟ ସମ୍ବନ୍ଧ କରୁ ନଥିଲେ । ମୋ ଜାଣିବାରେ ଚିଲିକା ଦ୍ରଦ ସେପାରି କବି ଗୋଦାବରୀଶଙ୍କ ଜନ୍ମସ୍ଥଳୀ ବାଣପୁର ଗ୍ରାମ ନିକଟବର୍ତ୍ତୀ ନରେନ୍ଦ୍ରପୁର ସରକାରୀ ହାଇସ୍କୁଲର ପ୍ରଧାନ ଶିକ୍ଷକ ରଘୁନାଥ ବଳିୟାରସିଂହ ଓ ସ୍ୱନାମଧନ୍ୟ ଶିଳ୍ପୀ ଉପେନ୍ଦ୍ର ମହାରଥୀ କବିଙ୍କର ଦୂର ସମ୍ପର୍କୀୟ ମଉଳାପୁଅ ଭାଇ ଥିଲେ । ତଥାପି ସେଇ ଦ୍ୱୀପ ମଧ୍ୟରେ କେତୋଟି ଖଣ୍ଡାୟତ କ୍ଷତ୍ରିୟ ପରିବାର ମଧ୍ୟରେ ବିବାହ ହେଉଥିଲା; ଏପରିକି କବିଙ୍କ ନିଜ ଭଣଜା ସହିତ ନିଜ ସାନ୍ତବାପା ପୁଅର ଝିଅ ସହିତ ମଧ୍ୟ ବିବାହ ସ୍ଥିର ହୋଇଥିଲା । ଦୁର୍ଭାଗ୍ୟକୁ ଆମ ଭଣଜାର ଅକାଳ ବିୟୋଗ ଘଟିବାରୁ ଏ ବିବାହ ହୋଇପାରିନଥିଲା ।

କବିଙ୍କ ଅଭିଭାବକମାନେ ତାଙ୍କୁ ସେଇ ଦ୍ୱୀପ ଅଞ୍ଚଳର କୌଣସି ଏକ ନିରକ୍ଷରା

କନ୍ୟା ସହିତ ବିବାହ ଦେବାକୁ ଉଦ୍‌ଯୋଗ କରିଥିଲେ। ଆତଙ୍କିତ କବି ଦାଦିଙ୍କୁ କହି ବାଣପୁରସ୍ଥ ଦେବୀ ଭଗବତୀଙ୍କ ପୀଠରେ ବହୁ ପୂର୍ବରୁ ଅଭିଭାବକଙ୍କ ଦ୍ୱାରା ନିର୍ବନ୍ଧ କରାଇଥିଲେ। ସେମାନେ ଆମ ଗାଁ ବିଲିପଡ଼ାକୁ ଆସି ଘରଦ୍ୱାର ଦେଖି ଯାଇଥାନ୍ତି। ତଥାପି କେଉଁଆଡ଼େ, କି ଜାତିରେ ବାହାଘର ହେବ କହି ନିର୍ଦ୍ଦିଷ୍ଟ ଦିନ ବନ୍ଧୁବାନ୍ଧବ କେହି ଆସିଲେ ନାହିଁ। ଆମର ଏଣେ ବିବାହର ସମସ୍ତ ଆୟୋଜନ ସମ୍ପୂର୍ଣ୍ଣ – କେବଳ ବର ଓ ବରଯାତ୍ରୀଙ୍କୁ ଅପେକ୍ଷା କରି ସମସ୍ତେ ରହିଥାନ୍ତି। ପାରମ୍ପରିକ ରୀତି ଅନୁଯାୟୀ ବାପା, ବୋଉ ଓ ମୁଁ ଉପବାସ ରହିଥାଉ।

ମେ ମାସ ୭ ତାରିଖ ଦିନ ବିବାହ ସ୍ଥିର ହୋଇଥିଲା, କିନ୍ତୁ ପ୍ରକୃତରେ ବିଭାଘର ହେଲା ମେ ମାସ ୮ ତାରିଖରେ। ଆମକୁ ପ୍ରାୟ ଦୁଇଦିନ ଉପବାସ ରହିବାକୁ ହେଲା। ଯାହାହେଉ, ଦ୍ୱିତୀୟ ଦିନ ରାତିରେ କବି ବରବେଶରେ ଆସି ପହଞ୍ଚିଲେ। ବର ପୋଷାକ ଓ ପଗଡ଼ି ପିନ୍ଧିଥିଲେ ବୋଲି ଶୁଣିଥିଲି। ବାଟବରଣି ବେଳେ ବାରିକ କୌଣସି ଭୁଲ୍ କରି ପକାଇଲା। କବିଙ୍କ ଦାଦା ତାକୁ ଥୋଡ଼ାଏ ବାଟ ଟାଣି ନେଉଥିଲେ। ଆମ ଦାଦି ଏଣେ ମାର୍କୁଣ୍ଡିକୁ ଥୋଡ଼ାଏ ବାଟ ଟାଣି ଟାଣି ଆଣୁଥିଲେ, ସିଏ ବୋଧହୁଏ ନ ଆସିବାକୁ ଅଝଟ କରୁଥିଲା। ବରଯାତ୍ରୀମାନଙ୍କ ଗହଣରେ ଭଗବତୀ ପାଣିଗ୍ରାହୀ, ରତ୍ନାକର ଷଡ଼ଙ୍ଗୀ, ଆଡ଼ଭୋକେଟ ଚଣ୍ଡେଶ୍ୱର ମିଶ୍ର ଆଦି ଆସିଥିଲେ।

ଆମ ଗାଁ ବିଲିପଡ଼ାରୁ ଜଗତସିଂହପୁର ୨୦ ମାଇଲ। ମୁଁ ସବାରିରେ ଓ କବି ପାଲିଙ୍କିରେ ଜଗତସିଂହପୁର ଆସିଲୁ। ସେଠୁ ବସ୍‌ରେ ଆସିଲୁ କଟକ। କଟକରୁ ଟ୍ରେନ୍‌ରେ ଆସି ହୁମା ଷ୍ଟେସନରେ ଓହ୍ଲାଇଲୁ। ସାଥିରେ ବର ତରଫରୁ ଓ କନ୍ୟା ତରଫରୁ ବହୁତ ଲୋକ ଥାନ୍ତି। ମୋର ଓଢ଼ଣା ଉପରେ ଓଢ଼ଣି ପଡ଼ିଥାଏ। ଆଜିକାଲି ପରି ଫିନ୍ ଫିନ୍ ନାଇଲନ୍ ଓଢ଼ଣି ନୁହେଁ, ଶାଢ଼ିର ଅଧା ହେବ ଲମ୍ବା ଚଉଡ଼ାବାଲା ଓଢ଼ଣି।

ଟିକିଏ ସୁବିଧା ପାଇଲେ କବି ଆସି କୁହନ୍ତି, "ଓଢ଼ଣାଟି ଟିକିଏ ଟେକିଦିଅ।" ସେ ପାଖରୁ ଆମ ଗାଁ ବାରିକ ଆସି କହେ, "ଓଢ଼ଣାଟା ଆହୁରି ଟାଣିଦେ; ଶଶୁରଘର ଲୋକ ଅଛନ୍ତି ପରା!"

ହୁମା ଷ୍ଟେସନରୁ ପୁଣି ସବାରିରେ ଯାତ୍ରା। ନିକଟବର୍ତ୍ତୀ ଏକ ବଡ଼ ପୋଖରୀ ନିକଟରେ ସବାରି ରହିଲା। ତାରି ଭିତରେ କବାଟ ବନ୍ଦ କରି ବସିଥାଏ। ସେଇ ପୋଖରୀ କୂଳରେ ରନ୍ଧାବଢ଼ା ହେଲା, ସମସ୍ତେ ଗାଧୁଆପାଧୁଆ କରି ଖାଇଲେ। ସବାରି ଭିତରକୁ ମୋ ପାଇଁ ମଧ୍ୟ ଅନ୍ନ ବ୍ୟଞ୍ଜନ ଆସିଲା; ଫେରାଇ ଦେଲି, ଖାଇଲି ନାହିଁ, ଖରା ନେଉଟାଣି ନନ୍ଦଳା ଗ୍ରାମକୁ ଯାତ୍ରା କଲୁ।

# କବିଙ୍କ ଘର - ମୋ ଶାଶୁଘର

ବର୍ତ୍ତମାନ ଯେଉଁ 'ନନ୍ଦଲା' ଗ୍ରାମ ଅଛି, ସେଇ ଗାଁ କବିଙ୍କ ଜନ୍ମସ୍ଥାନ ନୁହେଁ; ମାତ୍ର ଶୈଶବର କ୍ରୀଡ଼ାସ୍ଥଳୀ ଥିଲା। ପୁରୁଣା ନନ୍ଦଲା ଘରକୁ ମୁଁ ବାହାହୋଇ ଯାଇଥିଲି। ମୋତେ ବୋହୂ କରି ନେଇ କବିଙ୍କ ପରିବାର ବହୁତ ଅସୁବିଧାର ସମ୍ମୁଖୀନ ହେଲେ। ତାଙ୍କ ନିଜ ମଉଳା ଲୋକେ ତାଙ୍କ ଘରକୁ ବାଛନ୍ଦ କଲେ। କୁଆଡ଼େ ଗଲେ ବନ୍ଧୁବାନ୍ଧବ କେହି ଖାଇବାକୁ ଡାକିଲେ ନାହିଁ କି ଘରେ ପୂରାଇଲେ ନାହିଁ। ସେତେବେଳେ ଗାଁ-ଗାଁଆକେ ଦୋକାନ ବଜାର ନ ଥିଲା। କେହି କୌଣସି ଗ୍ରାମକୁ ଗଲେ ନିଜର ବନ୍ଧୁବାନ୍ଧବ ଘର ହେଉ କିମ୍ବା ଗାଆଁର କାହାରି ବନ୍ଧୁ ଘରଟିଏ ଥିଲେ ସେଠି ଯାଇ ଆଶ୍ରୟ ନେଉଥିଲେ।

ବାଛନ୍ଦ ତ କଲେ, ପୁଣି ବିଚାର ପାଇଁ ଦିନେ ସଭା ବସିଲା। ପଇତା ତ ସାଧାରଣ କଥା, ଖଣ୍ଡାୟତ ସାମନ୍ତମାନେ କାନରେ ନୋଳି ଓ ବେକରେ ସୁନାର ମାଳି ପକାଇ ଆସିଥିଲେ। କବିଙ୍କ ସାନ୍ତ ବାପାଙ୍କ ପୁଅ ଭାଇ ହାତରେ ସୁନା ଖଡୁ ଓ ବେକରେ ହାର ପିନ୍ଧିଥାନ୍ତି। ମୋ ବିଭାଘରକୁ ଆମ ବାପା ଷୋଳ ସାନ୍ତ ମର୍ଯ୍ୟାଦା କଣ, ଯେତେ ମୁଖିଆ ମୁଖିଆ ଯାଇଥିଲେ ସମସ୍ତଙ୍କ ପାଇଁ ଶାନ୍ତିପୁରୀ ଯୋଡ଼ ଦେଇଥିଲେ। ସେଠୁ ଯୋଡ଼ ପିନ୍ଧି ଆସିଲେ କଣ ହେବ, ପାରିକୁଦରେ ପହଞ୍ଚି ନଅ ମୌଜାର ସଭାରେ ବି ସେମାନେ ଯୋଗଦେଲେ। ସେ ସଭାରେ ସ୍ଥିର ହେଲା - ଜୋରିମାନା ଦେବାକୁ ହେବ। ବାଛନ୍ଦ କରିବାର କାରଣ - କେଉଁ ଜାତିରୁ ବୋହୂ ଆସିଛି ? ଆମ ବାପଘର ପଦବୀ ବା ସଂଜ୍ଞା ଥିଲା ବେହୁରା। ଏଇ ପଦବୀଟା ସେମାନଙ୍କର ମନଃପୂତ ହେଲା ନାହିଁ। ମୁଁ କିନ୍ତୁ ଅଡ଼ି ବସିଲି - "ଜୋରିମାନା ଦିଆଗଲେ ମୁଁ ଏଠାରେ ରହିବି ନାହିଁ।" ଯାହାହେଉ, ଶେଷକୁ ପାରିକୁଦ ରାଜା ଏହାର ସମାଧାନ କରିଥିଲେ, ମାନସିଂହଙ୍କ ପରିବାରକୁ ଜାତିରେ ମିଶିବା ପାଇଁ ଆଉ ଜୋରିମାନା ଦେବାକୁ ପଡ଼ିଲା ନାହିଁ।

କବିଙ୍କ ଜ୍ୟେଷ୍ଠା ଭଗ୍ନୀ ସୁଜା ଅପା। 'କ-କାଚ' ଓ 'ଭଗିନୀ' ଆଦି ଚାରୋଟି କବିତାରେ କବି ତାଙ୍କ ପ୍ରତି ଗଭୀର ସ୍ନେହ ଓ ବେଦନାବୋଧ ପ୍ରକାଶ କରିଛନ୍ତି। କବିଙ୍କର ଏହି ଭଗିନୀ ଅତିଶୟ ଦୁଃଖିନୀ। ବାଲ୍ୟକାଳରେ ପିତାମାତା ଉଭୟଙ୍କର ପରଲୋକ ହୋଇ ଯାଇଥିଲା। ପରେ ଜ୍ୟେଷ୍ଠତାତ ଅଗାଧୁ ନାୟକ ତାଙ୍କୁ ପୋଷ୍ୟାକନ୍ୟା ରୂପେ ପ୍ରତିପାଳନ କଲେ। ଅଗାଧୁ ନାୟକ ପାରିକୁଦ ଷ୍ଟେଟର ଦେୱାନ ଥିବାରୁ ସେତେବେଳର ଏକମାତ୍ର ଏଣ୍ଟ୍ରାନ୍ସ ପାସ୍ ଯୁବକ ଉଦୟନାଥ ଜେନାଙ୍କୁ ଜାମାତା ରୂପେ ଗ୍ରହଣ କରିଥିଲେ। ବିବାହ ସମୟକୁ ଉଦୟନାଥ ପାରିକୁଦ ରାଜାଙ୍କ କ୍ୟାସିୟର ଭାବେ କାର୍ଯ୍ୟ କରୁଥାନ୍ତି।

ଅପାଙ୍କ ସହିତ ଉଦୟନାଥଙ୍କ ଭେଟ ମାତ୍ର ଦଶଦିନ - ତାହା ପୁଣି ଗଭୀର ନିଶାର୍ଦ୍ଧରେ। ସ୍ୱାମୀଙ୍କ ସହିତ ଅପାଙ୍କର ସେତିକି ମାତ୍ର ପରିଚୟ। ଅପା ପିତ୍ରାଳୟକୁ ଆସିଲେ; କେତେ ମାସ ପରେ ଭାରଥୋର ନେଇ ପୁଆଣୀ ହୋଇ ଶ୍ୱଶୁରାଳୟକୁ ଗଲେ। ସେତେବେଳକୁ ସ୍ୱାମୀ ସରକାରୀ ଟଙ୍କା ତୋଷାରପାତ କରି ପଳାତକ। ପରେ ଶୁଣାଗଲା, ସେ ମାଳୟରେ ଆଉ କାହାକୁ ବିବାହ କରି ସବୁଦିନ ପାଇଁ ରହିଗଲେ।

ସ୍ୱାମୀ ଶୋକରେ ଘାରି ହେଉଥିବା ବେଳେ ପୁତ୍ରଟିଏ ଜାତ ହେଲା। ଅପା ଚେତନାଶୂନ୍ୟ। ଅପାଙ୍କଠାରୁ ଶୁଣିଛି, ତାଙ୍କ ମୁଣ୍ଡ ଚିରି ବୈଦ୍ୟ ସର୍ପ ଗରଳ ଦେବାରୁ ସେ ଚେତା ପାଇଲେ; ପାଣି ପାଣି ବୋଲି ଆକୁଳ ହେଲେ। ବିକଳରେ ପରିସ୍ରା କରି ସେହି ପରିସ୍ରାକୁ ପିଇଲେ। ଗାଁମାନଙ୍କରେ ଅନ୍ତୁଡ଼ିଶାଳରେ ପାଣି ପିଇବାକୁ ଦିଆ ଯାଉ ନଥିଲା। ସେତେବେଳେ ଗୋଟିଏ ଧାରଣା ଥିଲା, ବେଶି ପାଣି ପିଇଲେ ଦେହ ପାଚିଯିବ (ସେପ୍‌ଟିକ୍ ହୋଇଯିବ) କିମ୍ବା ସନ୍ନିପାତ ହୋଇଯିବ। ପୁଆତିକୁ ଫୁଟିଆଣି ପାଣି (ଭାତ ଫୁଟୁଥିବା ପାଣି) ଦିଆହୁଏ କିମ୍ବା ଲୁହାତତା ପାଣି ଦିଅନ୍ତି। ଅପାଙ୍କ ଜୀବନ ଚିତ୍ର ମାନସିଂହଙ୍କ 'ଭଗିନୀ' କବିତାରେ ସ୍ପଷ୍ଟ ହୋଇ ଉଠିଛି-

"ଅପା, କି କରୁଥିବ ସାନବୋହୂ ସେ
ବଳିତା ଦେବନି ତ ସରମବଶେ
ଦୁଇ ମୁହଁରେ 'ନିଆଁ ଗୁଞ୍ଜାଇ ଧୀରେ'
ଶମାଉ ଥିବ ଦୁଃଖ ନୟନ ନୀରେ ଯେ।
ପତି ତା କାହିଁ ଦୂରେ, ଦୂରେ ମୁଁ ଭାଇ
କୋଳ-ଦୁଲାଳ ଦୁଷ୍ଟ ଗାଆଁ ଭାଙ୍ଗଇ
ପଦପଦକେ ଖଞ୍ଜା ଜାଆ-ଗଞ୍ଜଣା
କାହିଁକି ତା ଦୁଃଖର ଆହା କଳଣା ଯେ।
ବଡ଼ କଷ୍ଟରେ ଭାଷା ଲେଖିଥିଲା ସେ
'ମୁଁ କିରେ ତୋର ଆଉ ମନେ ନଆସେ
ମଲି କି ଗଲି ବୋଲି ପଚାରିଲୁନି
କେତେ ଏମିତି ତୋର ଛନ୍ତି ଭଉଣୀ ରେ।
ଏଥର ଧନ ପରା ଆସିବୁ ନିତେ
କେତେ ତ କହିଲୁଣି 'ଯିବି ମୁଁ ପଛେ'
ଏଥର ତୋର ବାଟ ରହିଲି ଚାହିଁ
ଭାଇଟି ପରା ଆଶା ଭାଙ୍ଗିବୁ ନାହିଁରେ।" ଇତ୍ୟାଦି

ଅପାଙ୍କ ଅତିଶୟ ଗେଲବସର ଏଇ କୋଳ – ଦୁଲାଳଟିକି ଆମେ ଆଣି ପାଖରେ ରଖି ପଢ଼ାପଢ଼ି କରାଉଥିଲୁ। ପଢ଼ାପଢ଼ିରେ ସେତେ ଭଲ ନ କରିବାରୁ କବି ତାକୁ କଟକ ଇଞ୍ଜିନିୟରିଂ ସ୍କୁଲରେ ଟେକ୍‌ନିକାଲ୍ ଟ୍ରେନିଂ ଦିଆଉଥିଲେ। ସେତେବେଳକୁ ସେ ବେଶ୍ ସବଳ ସ୍ୱାସ୍ଥ୍ୟବାନ୍ ଯୁବକ। ଆମେ ଆଠଗଡ଼ରେ ଥାଉ। ଦାଶରଥି (ଅପାଙ୍କ ପୁଅ) ମତେ ଲେଖିଥାଏ ଯେ, ତାକୁ ଜର ହେଉଛି, ସେ ତା ବୋଉ ପାଖକୁ ଯିବ।" ମୁଁ ତାକୁ ଲେଖିଲି, "କଟକରେ ଡାକ୍ତର ଅଛନ୍ତି, ତମେ ଗାଁକୁ କାହିଁକି ଯିବ ?" ମାନସିଂହ ଆଠଗଡ଼ରୁ ଆସି ଦେଖିଲାବେଳକୁ ଦାଶରଥି ଆଉ ଏ ସଂସାରରେ ନଥିଲା। ନୟନର ମଣି ପୁତ୍ର ଗଲା, ସ୍ୱାମୀ ତ ଆଗରୁ ତାଙ୍କୁ ଛାଡ଼ି ନିଖୋଜ ହୋଇଥିଲେ, ପରେ ଆଦରର ଭାଇ ବି ଏ ଦୁନିଆରୁ ବିଦାୟ ନେଇଗଲେ। 'କ-କାଚ'ର ଅପା ଗାଁର ପିତୃପିତ୍ରାର୍ଜିତ ଭୂମିକି ଜଗି ଆଜି ବି ବଞ୍ଚିରହିଛନ୍ତି। ଆଖିରୁ ତାଙ୍କର ଅସରା ଲୁହର ଦାଗ ଶୁଖୁନାହିଁ।

କବିଙ୍କ ଘରେ ପ୍ରତିଦିନ ଭାଗବତ ପାଠହୁଏ। ପୋଲାଙ୍ଗ ତେଲର ଦୀପ ଜଳେ। ବେଳେବେଳେ କବି ମଧ୍ୟ ଛାନ୍ଦ ଚଉପଦୀ ଭଉଣୀମାନଙ୍କ ସହ ଗାଆନ୍ତି। ତାଙ୍କ ଦାଦାଝିଅ ଭଉଣୀମାନେ ଛାନ୍ଦ ଚଉପଦୀ ବରାବର ବୋଲନ୍ତି, ବିଶେଷତଃ ଉପେନ୍ଦ୍ର ଭଞ୍ଜଙ୍କ "ଚେତି ଚତୁରୀ ଚାହିଁଲା ନିଶା ନାଶେ ପାଶେ ନାହିଁ ଦିବ୍ୟ ତରୁଣ..." କିମ୍ବା "ଦ୍ୱିତୀୟା ଯାମିନୀରେ ମୋ ପ୍ରାଣସହି" ଆଦି ଗୀତ ଶୁଣି ମୁଁ ଲାଜରେ ସଢ଼ି ଯାଉଥିଲି। ସେମାନେ କିନ୍ତୁ ନିର୍ବିକାର ଚିତ୍ତରେ ଏସବୁ ବୋଲୁଥିଲେ – ଅର୍ଥ ବୁଝୁଥିଲେ କି ନାହିଁ ସେମାନଙ୍କୁ ଜଣା। ତେବେ ନୂଆବୋଉ ଛାନ୍ଦ ଚଉପଦୀ ବୋଲି ଜାଣିନି ଶୁଣି ସେମାନେ ହତାଶ ହେଉଥିଲେ।

ମାନସିଂହ ମତେ କହିଥିଲେ ତାଙ୍କ ଘରେ ସମସ୍ତଙ୍କ ସହିତ ମିଶି ସବୁ କାମ କରିବାକୁ। ଘର ସଫା କରିବା, ରାନ୍ଧିବା ବା ଭାତ ଗାଳିବା କିଛି କଠିନ କାମ ନୁହେଁ। କିନ୍ତୁ ତାଙ୍କ ଘରର ଢିଙ୍କି ବହୁତ ଓଜନଦାର। ସେଥିରେ ଏକାଥରକେ ତିନିଜଣ ଚଢ଼ି ଧାନ କୁଟନ୍ତି। ମୁଁ ବି ଢିଙ୍କିରେ ଚଢ଼ିଲି। ଠିକ୍ ତାଳ ଦେଇ ଗୋଡ଼ ବଦଳ କରିବାକୁ ହୁଏ। ଅନେକ ଦିନଯାଏ ମୋ ଗୋଡ଼ ଦରଜ ହୋଇ ଯାଇଥିଲା। ଗାଁ ଗହଳିରେ ମାଇପେ ସେଥିପାଇଁ କହିଥାନ୍ତି–

"ପାଣିଅଣା କି ପାଇଟି ଲୋ ମା / ଭାତରନ୍ଧା କି ପାଇଟି,
ପାଇଟି କରିବ ପାଇଟିରେ ଲେଖା / ଧାନକୁଟା ବଡ଼ ପାଇଟି।"

*(ପ୍ରିୟ ପରମ, ପୃଷ୍ଠା ୧୧- ୧୮)*

* * *

# ସ୍ନେହଲତା ମହାପାତ୍ର

## (୧୯୩୨-୨୦୧୩)

ସ୍ନେହଲତା ମହାପାତ୍ର ୧୯୩୨ ମସିହାରେ ଓଡ଼ିଶାର ଗଜରାଜପୁରରେ ଜନ୍ମଗ୍ରହଣ କରିଥିଲେ। ସେ ଗୋଟିଏ ଏକ କୋଠରି ବିଶିଷ୍ଟ ନିମ୍ନ ପ୍ରାଥମିକ ବିଦ୍ୟାଳୟକୁ ଯାଇଥିଲେ, ଯେଉଁଠି ତାଙ୍କ ପିତା ରାମଚନ୍ଦ୍ର ଆଚାର୍ଯ୍ୟ ଜଣେ ଶିକ୍ଷକ ଥିଲେ। ସେ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ। ମାତ୍ର ଏଗାର ବର୍ଷ ବୟସରେ ତାଙ୍କର ବିବାହ ହୋଇଥିଲା ଏବଂ ଷୋହଳ ବର୍ଷ ବୟସରେ ସେ ମାଆ ହୋଇଥିଲେ। ସେ ପରବର୍ତ୍ତୀ ସମୟରେ ବାରଟି ସନ୍ତାନ ଜନ୍ମ ଦେଇଥିଲେ, ଯେଉଁଥିରୁ ଦୁଇଜଣ ଶିଶୁ ଅବସ୍ଥାରେ ମୃତ୍ୟୁବରଣ କରିଥିଲେ। ତାଙ୍କ ସ୍ୱାମୀ ବାଉରୀବନ୍ଧୁ ମହାପାତ୍ର ଜଣେ ସରକାରୀ କର୍ମଚାରୀ ଥିଲେ, ଯିଏ ଓଡ଼ିଶା ସରକାରଙ୍କ ଅଧୀନରେ ଜଣେ ବରିଷ୍ଠ ପ୍ରଶାସକ ଭାବରେ ଅବସର ନେଇଥିଲେ।

ସ୍ନେହଲତାଙ୍କର ସଂକ୍ଷିପ୍ତ ଆତ୍ମଲିପିଖଣ୍ଡ "ମୋ ପିଲାଦିନ" ଶିଖା ପତ୍ରିକାରେ ପ୍ରକାଶ ପାଇଥିଲା। ଏହା ୨୦୦୮ ମସିହାରେ ଏକ ପତଳା ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା ଯାହାର ଅନ୍ୟ ଏକ ଭାଗରେ ତାଙ୍କ ସ୍ୱାମୀଙ୍କର ସ୍ମୃତିଚାରଣ ରହିଥିଲା। ଏହାକୁ ତାଙ୍କର ଜ୍ୟେଷ୍ଠ ପୁତ୍ର କମଳାକାନ୍ତ ମହାପାତ୍ର ସଂପାଦନା କରିଥିଲେ। ନିମ୍ନୋଦ୍ଧୃତାଂଶରେ ଲେଖିକା ତାଙ୍କର ଚିନ୍ତାମୁକ୍ତ ପିଲାଦିନ, ପାଠପଢ଼ା, ଆଉ ସେମାନେ କିପରି ଚଟାଣରେ ତିନିଟି ବୃତ୍ତ ଅଙ୍କନ କରି ବର୍ଣ୍ଣମାଳା ଶିଖିବା ଆରମ୍ଭ କରୁଥିଲେ, ଆଦି ବିଷୟରେ ବର୍ଣ୍ଣନା କରିଛନ୍ତି। ତା ଛଡ଼ା ଗୋଟିଏ କୋଠରିରେ ଦୁଇଜଣ ଶିକ୍ଷକ ବିଭିନ୍ନ ଶ୍ରେଣୀର ଛାତ୍ରମାନଙ୍କୁ କିପରି ଶିକ୍ଷା ପ୍ରଦାନ କରୁଥିଲେ ତାହା ମଧ୍ୟ ଦେଖିବାକୁ ମିଳେ।

# ମୋ ପିଲାଦିନ, ମୋ ପାଠପଢ଼ା

ମୋ ପିଲାଦିନ ଓ ମୋ ପାଠପଢ଼ା ଏକାବେଳେ ସରିଲା, ବର୍ଷେ ଏପାଖ ସେପାଖ, ଆଗ ପାଠ, ତା ପରେ ପିଲାଦିନ। ମତେ ଏଗାର ଚାଲୁଥିଲା ମୋ ବାହାଘର ହେଲା, ତା ଛଅ ଆଠ ମାସ ଆଗରୁ ପାଠ ବନ୍ଦ ହେଲା; ସେତେବେଳକୁ ମୁଁ ନି.ପ୍ରା. ପାସ୍ କରିଥାଏ।

ନି.ପ୍ରା. ମାନେ ନିମ୍ନ ପ୍ରାଥମିକ ସ୍କୁଲ, ମୋ ବାପା ହେଡ଼ମାଷ୍ଟର। ତୃତୀୟ ଶ୍ରେଣୀ ସାରି ମୁଁ ଘରେ ରହିଲି, ଘରକାମ କଲି; ଆଗରୁ ଘରକାମ ଯାହା କରୁଥିଲି ତାଠୁ ଢେର ବେଶି କାମ ଏବେ କରିବାକୁ ପଡ଼ିଲା। ବେଶି ଘରକାମ ପଡ଼ିଲାରୁ ଦାୟିତ୍ୱ ବଢ଼ିଲା, ବୁଲିବାକୁ ଆଉ ସମୟ କାଇଁ? ସେଇଠୁ ମୋ ପିଲାଦିନ ସରିଲା। ଆମ ବେଳକୁ ଆମ ଗାଁରେ ନି.ପ୍ରା. ସ୍କୁଲ, ମୁଣ୍ଡାଳରେ ଉ.ପ୍ରା. ଓ ମାଇନର ସ୍କୁଲ। ଉ.ପ୍ରା.ରେ ଚତୁର୍ଥ, ପଞ୍ଚମ ଶ୍ରେଣୀ; ମାଇନରରେ ଷଷ୍ଠ, ସପ୍ତମ ଶ୍ରେଣୀ, ତା ପରେ ହାଇସ୍କୁଲ। କିନ୍ତୁ ମୋ ବେଳେ ଆମ ଗାଁ ଆଖପାଖ କେଉଁ ଗାଁରୁ କେଉଁ ଝିଅ ହାଇସ୍କୁଲକୁ ଯାଉଥିବା କଥା ଆମ କାନରେ ବାଜିନଥିଲା। ଝିଅଙ୍କର ପାଠଶାଠ ନାହିଁ; ଥିଲେ ନି.ପ୍ରା., ଖୁବ୍ ଜୋର୍‌ରେ ଉ.ପ୍ରା. ଯାଏ, ତା ଉପରକୁ ନୁହେଁ।

ଦଶ ବର୍ଷ ବୟସରେ ମୋର ତୃତୀୟ ଶ୍ରେଣୀ ସରିଲା ମାନେ ମୁଁ ନିଶ୍ଚୟ ପାଠ ଆରମ୍ଭ କରିଥିଲି ଛଅ ବର୍ଷ ବୟସରେ। ସେତେବେଳେ ଛ ବର୍ଷରେ ପାଠ ଆରମ୍ଭ ମାନେ ଖୁବ୍ ସହଳ; ଅନେକ ପିଲା, ବିଶେଷ କରି ପୁଅ ପିଲାଏ, ଆହୁରି ବର୍ଷେ ଦି ବର୍ଷ ଡେରିରେ ପାଠ ଆରମ୍ଭ କରୁଥିଲେ; ମୋର ମନେ ଅଛି ଆମ ତୃତୀୟ ଶ୍ରେଣୀରେ ନଟିଆ, ବଇଁଶିଆ ବୋଲି ଦୁଇ ଚାରି ଜଣ ଷୋଳ ସତର ବର୍ଷିଆ ବୁଢ଼ା ହନୁ ବି ଥିଲେ।

ନି.ପ୍ରା. ସ୍କୁଲରେ ଚାରିଟା ଶ୍ରେଣୀ ଥିଲା; ଶିଶୁ ଶ୍ରେଣୀ, ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ। ସ୍କୁଲ କଥା ଉଠିଲା ମାନେ ଆମେ ନିମ୍ନ ପ୍ରାଥମିକ ନକହି ନି.ପ୍ରା. ବୋଲି କହୁଥିଲୁ ଓ ତୃତୀୟ ଶ୍ରେଣୀ ବେଳକୁ ଆମକୁ ଲାଗୁଥିଲା – ଓହୋ, ଆମେ କେଡ଼େ କେଡ଼େ ପଣ୍ଡିତ ହେଲୁଣି, କେତେ ପାଠ ପଢ଼ିଲୁଣି!

ମୋ ବାପା ରାମଚନ୍ଦ୍ର ଆଚାର୍ଯ୍ୟ ଏଇ ନି.ପ୍ରା. ସ୍କୁଲର ହେଡ଼ମାଷ୍ଟର ଥିଲେ। ତାଙ୍କୁ ଗାଁରେ ସମସ୍ତେ ମାଷ୍ଟ୍ରେ ବୋଲି ଡାକୁଥିଲେ; ବୟସ୍କ ବା ସମାସ୍କନ୍ଧ ଲୋକେ ଡାକୁଥିଲେ ରାମ ମାଷ୍ଟ୍ରେ। ସେ ଚାକିରି ଆରମ୍ଭ କଲାବେଳେ ସ୍କୁଲରେ ଜଣେ ବୋଲି ମାଷ୍ଟ୍ର ଥିଲେ; ଆମର ତୃତୀୟ ଶ୍ରେଣୀ ହେଲାବେଳକୁ ଆଉ ଜଣେ ମାଷ୍ଟ୍ର ଆସିବାରୁ ବାପା ହେଲେ ହେଡ଼ମାଷ୍ଟ୍ରେ; ଆମ ଗାଁ ଆରମୁଣ୍ଡ ନାୟକ ସାହିର ଗଜି ନାୟକ ହେଲେ

ସେକେଣ୍ଡ ସାର୍‌। ଗଜି ମାଷ୍ଟ୍ରଙ୍କ ପରେ ଆସିଲେ ମଧୁ ମାଷ୍ଟ୍ର; ତା ପରେ ମହୀରାରୁ ଆଉ ଜଣେ ମାଷ୍ଟ୍ର; କିନ୍ତୁ ଏମାନଙ୍କ ଭିତରୁ କେହି ଆମକୁ ପଢ଼ାଇ ନଥିଲେ।

ଆମ ଘର ଗାଁ ମଝିରେ; ବଡ଼ ଗାଁ; ଏମୁଣ୍ଡ ସେମୁଣ୍ଡ ଛାଡ଼ିଦେଲେ ବି ମଝିଖଣ୍ଡକ ଅନ୍ୟ ଗାଁ ଭଳି ଲମ୍ବ, କେତେଗୁଡ଼ାଏ ବାଟ। ମୁଁ ବାପାଙ୍କ ସଙ୍ଗେ ଚାଲି ଚାଲି ସ୍କୁଲ ଯାଉଥିଲି। ସେ ଆଗେ ଆଗେ, ମୁଁ ତାଙ୍କ ପଛେ ପଛେ। ବାପା ଡେଙ୍ଗା, ତାଙ୍କର ଲମ୍ବା ପାହୁଲ, ତା ଉପରେ ପୁଣି ତାଙ୍କର ଟିପେଇ ଟିପେଇ ଚାଲିବା ସ୍ୱଭାବ। ତାଙ୍କର ଖେପାଏ ମୋର ଚାରି ଖେପା। ମୁଁ ତେଣୁ ତାଙ୍କ ପଛେ ପଛେ ସାରା ବାଟ ଦୌଡ଼ି ଦୌଡ଼ି ଯାଉଥିଲି। ବେଳେ ବେଳେ ବାପାଙ୍କ ଗୁରୁଜନସ୍ଥାନୀୟ ଲୋକ ତାଙ୍କୁ ଆକଟୁଥିଲେ - "ହଇଓ ମାଷ୍ଟ୍ରେ, କାହିଁକି ଝିଅଟାକୁ ଦୌଡ଼େଇ ଦୌଡ଼େଇ ମାରୁଛ ? ବାଟ ତିନି ପା, କୋଉ ଦି ଖୋଜ ହୋଇଥାନ୍ତା !"

ଅତି ସାନ ପିଲାଏ, ଶିଶୁ ଶ୍ରେଣୀରେ କାଖ ହୋଇ ଆସୁଥିଲେ; ଗୋଟେ ଅତି ଗେଲବସରିଆ ପିଲା ଥିଲା ଯେ ତାକୁ ତାଙ୍କ ଘର ଚାକର କାନ୍ଧରେ ବସେଇ ଆଣୁଥିଲା। ଅନ୍ୟ ପିଲାଏ ଚିଡ଼େଇ ଚିଡ଼େଇ ତାର ସେ ଅଭ୍ୟାସ ଭଙ୍ଗେଇଲେ।

ଘରୁ ସ୍କୁଲ ପର୍ଯ୍ୟନ୍ତ ଦୌଡ଼ି ଦୌଡ଼ି ଯିବା ମଝିରେ ମୁଁ ଅଟକୁଥିଲି ମାତ୍ର ଗୋଟିଏ ଜାଗାରେ; ଗୌରାଙ୍ଗବାବୁ ଦୋକାନ। ସ୍କୁଲ ଅଧବାଟ ଥିବ, ଡାହାଣ ହାତକୁ ପଡ଼ିବ ଆମ ଗାଁ ଗୋପାଳଜୀଉ ଠାକୁରଙ୍କ ମନ୍ଦିର, ମନ୍ଦିର ହତାକୁ ଲାଗି ଗୋଟିଏ କୁଦ, କୁଦ ଉପରେ ଲମ୍ବା ଦାଣ୍ଡିଏ ଛଣଛପର ଦୋକାନଘର। ଗୌରାଙ୍ଗବାବୁ ଗୋରା ହୋଇ ଗେଡ଼ା ହୋଇ ମୋଟା ଲୋକ, ତାଙ୍କର ଅନ୍ତଲ ପେଟ। ସାରା ଗାଁରେ ତାଙ୍କର ଏକା ଦୋକାନ; ଆଖପାଖ ଗାଁରେ ତାଙ୍କ ଦୋକାନ ପରି ବଡ଼ ଦୋକାନ ନଥିଲା। ସେତେବେଳେ ତାଙ୍କ ଦୋକାନ ପାଇଁ ମାଲପତ୍ର ଦେବୀ ନଈରେ ଡଙ୍ଗାରେ ବୋଝେଇ ହୋଇ ସିଧା କଟକରୁ ଆସୁଥିଲା; ଏରଡ଼ା ଘାଟରୁ ଲୋକେ ଭାର କରି ଦୋକାନକୁ ବୁହାଇ ଆଣୁଥିଲେ। ତାଙ୍କ ଦୋକାନରେ କଣ ମିଳୁନଥିଲା ! ତେଲ ଲୁଣ ସୋରିଷ ଡାଲି ଚାଉଳଠୁ ଆରମ୍ଭ କରି ବୁଟଭଜା, ଚିନାବାଦାମ, ମିଶ୍ରି। ଲେବନଚୁସ୍‌ ଆମ ପିଲାଦିନ ଯାଏ ଗାଁକୁ ଆସିନଥିଲା। ଆମ ପାଟି ମିଠା ଲୋଡ଼ିଲେ ଆମେ ମିଶ୍ରି ଟେଳାଏ ପାଇଗଲେ ସ୍ୱର୍ଗସୁଖ ପାଇଗଲୁ ବୋଲି ମଣୁଥିଲୁ।

ମୁଁ ସକାଳେ ବାପାଙ୍କ ପଛେ ପଛେ ସ୍କୁଲ ଗଲାବେଳେ ମୋ ଜେଜେବାପା ଫକୀର ଆଚାର୍ଯ୍ୟ - ଲୋକେ ଡାକୁଥିଲେ ଫକୀରାଚାର୍ଯି - ଦୋକାନ ପିଣ୍ଡାରେ ବସିଥାଏ, ମୋ ଅପେକ୍ଷାରେ। ମୋ ଜେଜେବାପା ମତେ ଭାରି ଭଲ ପାଉଥିଲା, ମୁଁ ବି

ତାକୁ। ସକାଳୁ ଉଠିଲେ ତା ପାଇଁ ପାଣି ଗରମ କରିବା, କରେଇ ବସେଇ ଦି ମୁଠା ଚୂଡ଼ା ଭାଜିବା, ଇତ୍ୟାଦି କାମ ମୋର ଲାଗୁଥା। ଯୋଉଦିନ ହରି ବାରିକ ନ ଆସେ, ସେଦିନ ଜେଜେବାପା ପିଠିରେ ତେଲ ମାଲିସ କରିବା କାମ ମୋର। (ବେଳେ ବେଳେ ଲାଗଲାଗ ଦି ଚାରି ଦିନ ତେଲଘଷା କାମ ମୋ ଉପରେ ପଡ଼ିଲେ ମୁଁ ଚିଡ଼ିଯାଇ ଗାଳି ଦେଉଥିଲି; "ପୋଡ଼ାମୁହାଁ ବୁଢ଼ା!" ଜେଜେବାପା କିଛି କହୁ ନ ଥିଲା, କିନ୍ତୁ ବାପାଙ୍କ କାନରେ ବାଜିଲେ ବାପା ଖୁବ୍ ବିଗୁଡୁଥିଲେ ମୋ ଉପରେ।)

ମୁଁ ଦୋକାନ ପାଖାପାଖି ହେଲେ ମୁଣ୍ଡ ଉଠେଇ ଜେଜେବାପାକୁ ଥରେ ଚାହିଁଦିଏ। ଜେଜେବାପା ଦଣ୍ଡି ଧରୁଥିବା ଟୋକା ବନ୍ଧୁଆକୁ ଡାକ ମାରେ- "ହେ ବଂଧୁଆ, ଆରେ ଆମ ଝିଅ ଆସିଲା!" (ସେ ମତେ ମାଆ କି ଝିଅ ବୋଲି ଡାକୁଥିଲା, ମୋଟେ ନାଆଁ ଧରି ନୁହେଁ।) ତା ଅର୍ଥ, "ଦୋକାନରେ ପାଟି ଟକଳିଆ ଜିନିଷ ଯାହା ଅଛି ପଇସାଏକର ଆଣି ଦେ।" କେତେବେଳେ ବୁଟଭଜା (ବାଲିଭଜା), କେତେବେଳେ ଚିନାବାଦାମ (ବହୁ ଦିନର ହୋଇଥିଲେ ଶିପି ଯାଇଥାଏ, ତେଲିଆ ଲାଗେ), କେତେବେଳେ ମିଶ୍ରି ଖଣ୍ଡେ।

ଜେଜେବାପା କେବଳ ସକାଳେ ଭଲମନ୍ଦ ଦେଉଥିଲା, ଉପରଓଳି ବୁଢ଼ା ମୋଟେ ଦୋକାନ ପିଣ୍ଡାରେ ବସୁନଥିଲା।

ଆମର ସ୍କୁଲ ଥିଲା ଦି ଓଳି; ସକାଳୁ ଦିନ ଏଗାର ଯାଏ, ଉପରଓଳି ଦିନ ଅଢ଼େଇ ତିନିରୁ ସନ୍ଧ୍ୟା ପାଞ୍ଚ ଯାଏ, କି ଖରା କି ବର୍ଷା ଶୀତ; ଖାଲି ଶନିବାର ସ୍କୁଲ ଓଳାଏ, ରବିବାର ପୂରା ଛୁଟି।

ଆମ ସ୍କୁଲରେ ଘଣ୍ଟା ନ ଥିଲା। ସମୟ ଜାଣିବା ପାଇଁ ମୋ ବାପା ଆମ ଘରୁ ଗୋଟିଏ ଟେବୁଲ ଘଣ୍ଟା ନେଇ ସ୍କୁଲ ଯାଉଥିଲେ; ସାଙ୍ଗରେ ନେଉଥିଲେ, ପୁଣି ସାଙ୍ଗରେ ଫେରାଇ ଆଣୁଥିଲେ। ଟେବୁଲ ଘଣ୍ଟାରେ ଆଲାର୍ମ ମୋଡ଼ି ରଖୁଥିଲେ, ବେଳେ ବେଳେ ଘଣ୍ଟି ବାଜିଲେ ଶିଶୁ ଶ୍ରେଣୀ ପିଲାଏ ଚମକି ପଡୁଥିଲେ। ଘଣ୍ଟି ବାଜିଲେ ସ୍କୁଲ ଶେଷ। ଆମ ବେଳେ ସ୍କୁଲରେ ପିତଳ ପିଟାଘଣ୍ଟା ବି ନ ଥିଲା। ପରେ ସ୍କୁଲ ଆରମ୍ଭ, ଶେଷ ଓ ପ୍ରତି ପିରିୟଡ଼ ସରିଲେ ଘଣ୍ଟା ବାଜିଲା; ଆମେ ଘରେ ଥାଇ ମଧ୍ୟ ଶୁଣି ପାରୁଥିଲୁ।

ସ୍କୁଲ ଘର ବୋଇଲେ ଲମ୍ବା ବଖରାଏ ଘର। ଛଣ ଛପର, ମାଟି କାନ୍ଥ, ଗୋଟିଏ ଦୁଆରମୁହଁ, ଦୁଇଟା ଝରକା। ଆମେ ସବୁ ଶ୍ରେଣୀର ପିଲାଏ ସେଇ ଗୋଟିକ ବଖରାରେ ଚାରି ଧାଡ଼ି ହୋଇ ଅଳ୍ପ ଛଡ଼ାଛଡ଼ି ହୋଇ ବସୁଥିଲୁ, ଧାଡ଼ି ଗୋଟାକ ଶ୍ରେଣୀ ଗୋଟାଏ।

ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ମାଷ୍ଟ୍ର ଜଣେ। ସେଇ ଜଣକ ସବୁ ଶ୍ରେଣୀକୁ ଏକାବେଳେ ସମ୍ଭାଳୁଥିଲେ, ଏ ଶ୍ରେଣୀ ପାଖେ ଟିକିଏ ଠିଆ, ସେ ଶ୍ରେଣୀ ପାଖେ ଟିକିଏ ଠିଆ; ଏଠି ରକମେ ପାଠ, ସେଠି ଆଉ ରକମେ। ମାଷ୍ଟ୍ରେ ବସିବା ପାଇଁ ଗୋଟିଏ କାଠ ଚଉକି, କିନ୍ତୁ ସେ ବେଶି ସମୟ ଏପାଖ ସେପାଖ ବୁଲୁଥିଲେ, ଚଉକିରେ ବସିଲେ ପିଲାଏ ଅନ୍ୟମନସ୍କ ହୋଇଯାଉଥିଲେ। ଦୁଇଜଣ ମାଷ୍ଟ୍ର ହେବା ପରେ ଦୁଇଟି କାଠ ଚଉକି ପାଖାପାଖି ହୋଇ ପଡ଼ିଲା; କିନ୍ତୁ ଟେବୁଲ ସେଇ ଗୋଟାଏ। ହେଡ଼ମାଷ୍ଟ୍ରଙ୍କ ଆଡ଼କୁ ବେଶି ଟେବୁଲ, ସାନ ମାଷ୍ଟ୍ରଙ୍କ ଆଡ଼କୁ କମ୍। ତେବେ ତାଙ୍କ ଭିତରେ କଳିଗୋଳ, ବାକବିତଣ୍ଡା ହେବାର ଆମେ କେବେ ଦେଖିନୁ। ଦୁହେଁ ପରସ୍ପରକୁ ପାନ, ଗୁଆ, ଗୁଣ୍ଡି ଦିଆନିଆ ହେବା ଦେଖିଛୁ।

ଆମର ଶିଶୁ ଶ୍ରେଣୀରୁ ପାଠ ଆରମ୍ଭ ହେଉଥିଲା। ଯେଉଁମାନେ ପଢୁଆଘର ପିଲା – ମୋ ପରି – ସେମାନେ ଘରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ମଡ଼େଇ ଶିଖିଥିଲେ, କେତେଜଣ ଘରେ କେଇଟା ଅକ୍ଷର ବି ଶିଖି ଆସୁଥିଲେ। ବେଶି ଭାଗ ପିଲାଙ୍କ ପାଠ ଆରମ୍ଭ ସ୍କୁଲରେ। ଶିଶୁ ଶ୍ରେଣୀର ସମୁଦାୟ ପାଠ ଥିଲା ଅ ଠୁ କ୍ଷ ଯାଏ ଅକ୍ଷର ଶିଖିବା ଓ ଏକରୁ ଦଶ ଯାଏ ଗଣି ଶିଖିବା।

ପ୍ରଥମ ଶ୍ରେଣୀ ବେଳକୁ ସହଜ ଶବ୍ଦ – ଆକାର, ଇକାର ନଥିବା – ସିଲଟରେ ଲେଖିବା, ବହିରୁ ପଢ଼ିବା; ଏକରୁ ଶହେ ଯାଏ ଗଣିବା ପାଠ। ଦ୍ୱିତୀୟ ଶ୍ରେଣୀରେ ମିଶାଣ, ଫେଡ଼ାଣ; ଏକରୁ ସାତ ଯାଏ ପଣିକିଆ; ଆକାର, ଇକାର ହ୍ରସ୍ୱଇକାର, ଦୀର୍ଘଇକାର, ଉକାର ଲେଖାଲେଖି, ପଠନ ପଢ଼ା, ସାହିତ୍ୟ ପାଠ। ତୃତୀୟ ଶ୍ରେଣୀରେ ବାକି ସବୁ ପଚିଶକ ଯାଏ ପଣିକିଆ, ଗୁଣନ, ହରଣ, ଯାବତୀୟ ଯୁକ୍ତାକ୍ଷର, ଶୃତଲିଖନ, ଉଚ୍ଚ ସାହିତ୍ୟ ପାଠ; ସକାଳ ଓଳି ଗଣିତ ପାଠ, ଉପର ଓଳି ସାହିତ୍ୟ ପାଠ।

ବହି ଭିତରେ ନି.ପ୍ରା. ସରିଲାବେଳକୁ ଆମର ସରିଥିଲା ମଧୁ ବର୍ଣ୍ଣବୋଧ, ଚାଟଶାଳି ପାଠ, ଆହୁରି ଦୁଇ ତିନିଟି ବହି। ସାହିତ୍ୟ ପାଠ ହେଉ କି ଗଣିତ ପାଠ ହେଉ, ମାଷ୍ଟ୍ରେ ନ କହିଲେ ଆମେ ବଡ଼ ପାଟିରେ ଚିଲ୍ଲେଇ ଚିଲ୍ଲେଇ ପଢୁନଥିଲୁ; ବଡ଼ ପାଟି କରି ପଢ଼ିଲେ ଗୋଳମାଳିଆ ଧରୁଥିଲା, ସାରା ସ୍କୁଲ ଅଣଆୟତ୍ତ ହୋଇ ଯାଉଥିଲା।

ଯାହାକୁ ପାଠ ଆସୁନଥିଲା ତା ଉପରେ ବସୁଥିଲା ମାଡ଼– "ସକାଳେ ବେତ, ଉପରଓଳି ହାତ।" ଅର୍ଥ, ସକାଳ ବେଳା ମାଷ୍ଟ୍ରେ ବେତରେ ପିଟୁଥିଲେ; ଉପରଓଳି ଦେଉଥିଲେ ଠଣା, ଚିମୁଟା, ଚଟକଣା। ସକାଳ ବେତମାଡ଼ ଅଙ୍କକଷା ପାଇଁ, ପିଠିରେ

ଗୋଡ଼ରେ ହାତରେ ଚାଇଁଚାଇଁ ବସିଯାଏ; ପିଲାଏ ମାଙ୍କଡ଼ପରି ଭାରି ଡିଆଁଡେଇଁ କରନ୍ତି, ଦେହହାତ ଆଉଁସି ହୁଅନ୍ତି।

ଛୁଆଁଛୁଇଁ ଭୟରୁ ଅଛବ ଜାତି ପିଲାଙ୍କୁ ମାଷ୍ଟ୍ରେ ବେତ ଧରି ପିଟୁ ନ ଥିଲେ। ଖଣ୍ଡେ ଦୂରରୁ ସେମାନଙ୍କ ଉପରକୁ ବେତ ଫୋପାଡୁଥିଲେ। ଏମିତି କୌଶଳ, ଏମିତି ବାଗରେ ଯେ ସେମାନଙ୍କ ପିଠିରେ ନୋଳା ବସି ଯାଉଥିଲା । ସେମାନେ ପୁଣି ବେତକୁ ଆଣି ମାଷ୍ଟ୍ରଙ୍କ ସାମ୍ନାରେ ଥୋଉଥିଲେ; ମାଷ୍ଟ୍ରେ ବେତ ଉଠେଇ ପୁଣି ସେମାନଙ୍କ ଉପରକୁ ଫୋପାଡୁଥିଲେ।

ଛୁଆଁଛୁଇଁ ଡର ଯୋଗୁ ମୋ ବାପା ତାଙ୍କ ସ୍କୁଲପିନ୍ଧା ଲୁଗାପଟାକୁ ଅନ୍ୟ ଲୁଗାପଟା ସଙ୍ଗେ ରଖୁନଥିଲେ। ଆମ ଭିତର ପିଣ୍ଡା ଚାଳରେ ଗୋଟିଏ ଦଉଡ଼ି ବନ୍ଧା ହୋଇଥିଲା; ବାପା ତାଙ୍କ ସ୍କୁଲ ଲୁଗା ଓ ଫତେଇ ସେଇଠି ରଖୁଥିଲେ; ଦି ଚାରିଦିନ ପିନ୍ଧିବା ପରେ ସେ ହଳକ ଧୋବା ଘରେ ପଡୁଥିଲା, ଆଉ ହଳେ ସଜ ଲୁଗା ବାହାରୁଥିଲା।

ଅଛବ ପିଲାଏ ସ୍କୁଲଘରେ ନ ପଶି ବାହାର ବାରଣ୍ଡାରେ ବସୁଥିଲେ। ମାଷ୍ଟ୍ରେ ବେଳେ ବେଳେ ଦୁଆରବନ୍ଧ ପାଖରେ ଠିଆହୋଇ ସେମାନଙ୍କ ପାଠ ବୁଝୁଥିଲେ, ନହେଲେ ବାରଣ୍ଡାକୁ ବାହାରି ଆସୁଥିଲେ।

ମିଶାଣ ଫେଡ଼ାଣ ଶିଖିବା ସହଜ ହେବ ବୋଲି ଆମେ ସ୍କୁଲକୁ ନେଉଥିଲୁ, ଦ୍ୱିତୀୟ ଶ୍ରେଣୀ ଆରମ୍ଭରୁ, ଦଶବିଡ଼ା ବାଉଁଶକାଠି ଓ ଶହେଟା ମାଟିଗୁଲି। ପ୍ରତି ବିଡ଼ାରେ ଦଶଟା କାଠି। ବାଉଁଶକାଠିକୁ କଟୁରୀରେ ଉଞ୍ଚି ସାଉଁଳିଆ କରା ହୋଇଥାଏ, ଯେମିତି ଧାରାରେ ହାତ କଟିନଯାଏ। ମାଟିଗୁଲି ଆମେ ନିଜେ କାଦୁଅ ଚକଟି ଗୁଳି ବଳି ଖରାରେ ତିଆରି କରୁଥିଲୁ। ବାଉଁଶକାଠିରେ ରଙ୍ଗ ଦିଆ ହେଉଥିଲା; ସ୍ୟାହି, ଅଳତା, ନହେଲେ ପାଚିଲା ପୋଇମଞ୍ଜି ରସ। ମାଟିଗୁଳିରେ କେହି କେହି ନାଲି ମାଟି, ବନ ମାଟି ମିଶାଉଥିଲେ; ମାଟି ଭଲ ଭାବେ ଚକଟା ନ ହେଲେ ଗୁଳି ଜଲଦି ଫାଟି ଯାଉଥିଲା।

ସ୍କୁଲ ଗଲାବେଳେ ଆମେ ଗୋଟେ କାଖରେ ଜାକି ଧରୁଥିଲୁ କନା ବସ୍ତାନି ଓ ସ୍କୁଲଘରେ ତଳେ ପକାଇ ବସିବା ପାଇଁ ଛପା (ତାଳପତ୍ର ଚଟେଇ); ଆର ହାତରେ ଧରୁଥିଲୁ ବାଉଁଶକାଠି ଓ ମାଟିଗୁଲି ଭର୍ତ୍ତିଥିବା ତାଳପତ୍ର ଭୋଗେଇ। ଭୋଗେଇରେ ନାଡ଼ ଲାଗିଥାଏ, ଆମେ ତାକୁ ଝୁଲେଇ ଝୁଲେଇ ଚାଲୁଥିଲୁ।

ସ୍କୁଲରେ ବାଉଁଶକାଠି ଓ ମାଟିଗୁଳି ଚୋରି ଚାଲେ। ଚୋର ସହଜେ ଧରାପଡ଼େନି; ଧରା ପଡ଼ିଲେ ଖାଏ ମାଡ଼, ମାଷ୍ଟ୍ରଙ୍କଠୁ, ପିଲାଙ୍କଠୁ।

ଆମର ସେତେବେଳେ ଥାଏ ସିଲଟ, ଖଡ଼ି, ବହି। ଖାତା, କଲମ, ପେନ୍‌ସିଲ୍ ବ୍ୟବହାର ନଥିଲା। ପରୀକ୍ଷା ବେଳେ ମଧ୍ୟ ସିଲଟ ବ୍ୟବହାର ହେଉଥିଲା। ପରୀକ୍ଷାକୁ ଶ୍ରେଣୀଉଠା ବୋଲି କୁହାଯାଉଥିଲା। ଶ୍ରେଣୀଉଠା ବେଳେ ମାଷ୍ଟ୍ରେ ପ୍ରଶ୍ନ ଦିଅନ୍ତି, ଆମେ ସିଲଟରେ ଉତ୍ତର ଲେଖି ଗୋଟିଏ ସିଲଟ ଉପରେ ଅନ୍ୟ ସିଲଟ ଥୋଇଦେଉ, ମାଷ୍ଟ୍ରେ ଦେଖିସାରିବା ପରେ ଯେଝା ସିଲଟ ଆଣି ପୁଣି ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଲେଖୁଥିଲୁ। ଶ୍ରେଣୀଉଠା ସ୍କୁଲଛୁଟି ପୂର୍ବରୁ ପାଟିକରି ନାଆଁ ଡାକି ଘୋଷଣା କରାଯାଉଥିଲା। ପ୍ରତି ଶ୍ରେଣୀରେ ତିନି ଚାରି ପିଲା ଠାକି ଯାଉଥିଲେ; ଗୋଟେ ଗୋଟେ ଶ୍ରେଣୀରେ ସେମାନଙ୍କୁ ଦୁଇ ତିନି ବର୍ଷ ଲାଗୁଥିଲା, ନଟିଆ, ବଇଁଶିଆ ଭଳି ପିଲାଙ୍କୁ। ଆମେ ଝିଅପିଲାଏ ଶ୍ରେଣୀଉଠାରେ ଅଟକି ନଥିଲୁ, ମୁଁ କି ମୋର କେହି ସାଙ୍ଗ। ମୋ ଝିଅ ସାଙ୍ଗ ଥିଲେ ଶଇଳ, ଖେମୀ, ଗୁନିଆ, ବେବି, ବାଉରାଣୀ, ବେଲ ଇତ୍ୟାଦି।

ଆମେ ଝିଅପିଲାଏ ମାଡ଼ ବି ଖାଉ ନଥିଲୁ। ଖୁବ୍ ହେଲେ ହାତରେ ଦି ଚାରି ପାହାର ବେତ; ସରୁ ପାହାର; କାଟେ, କିନ୍ତୁ ଏତେ ଜୋର୍ ବାଉରାଣୀ ଖାଇଥିଲା ଜବର ମାଡ଼। ଦ୍ୱିତୀୟ ଶ୍ରେଣୀ କଥା। ମାଷ୍ଟ୍ରେ ଡାକିଲେ ଶ୍ରୁତଲିଖନ। ବେଶି କଷ୍ଟ ପାଠ ନୁହେଁ, ସାଧାରଣ ଆକାର। କିନ୍ତୁ ଶବ୍ଦଗୁଡ଼ାକ ତା ପରେ ତା ପରେ, ତମେ କେତେ ଜଲ୍‌ଦି ଲେଖିପାରିବ ଦେଖିବା କଥା। ମଝିରେ ମାଷ୍ଟ୍ରେ ଡାକିଲେ ଗୋଟିଏ ଶବ୍ଦ – 'ଢମଣା। ତା ପରେ ପୁଣି ଗୁଡ଼ାଏ ଶବ୍ଦ। ବାଉରାଣୀ ସିଲଟରେ ଆଉ କିଛି ନ ଲେଖି ଖାଲି ଲେଖିଥାଏ ଢମଣା ଢମଣା। ମାଷ୍ଟ୍ରେ ପିଟିଦେଇ ଗଲେ। ବାଉରାଣୀ କାନ୍ଦି କାନ୍ଦି ଯାଇ ତା ବାପାକୁ କହିଲା; ତା ବାପା ଆମ ଘରେ ହାଜର। ସେ ବାପାଙ୍କୁ ପଚାରିଲା – "ମାଷ୍ଟ୍ରେ, ମୋ ଝୁଅକୁ କାଇଁକି ପିଟିଲ?" ବାପା ତାକୁ କହିଲେ – "ସ୍କୁଲକଥା ସ୍କୁଲରେ ଆସି ପଚାରିବ, ମୋ ଘରେ କଣ ?" ବାଉରାଣୀ ବାପା ବିହାରୀ ଜେନା ଚୁପ୍‌ହୋଇ ଫେରିଗଲା, ସ୍କୁଲକୁ ଆସିଲାନି।

ଆମେ ପୁଅ କଣ ଝିଅ କଣ ଆଜିକାଲି ଭଳି ଜାମାପଟା ପିନ୍ଧି ସ୍କୁଲ ଯାଉନଥିଲୁ। ସିଲେଇ ଜାମାପଟା ନଥିଲା। ଆମେ ଝିଅମାନେ ତନ୍ତୀବୁଣା କସ୍ତା ପିନ୍ଧି ଯାଉଥିଲୁ। କସ୍ତା ଲୁଗା ଥିଲା ଛ ହାତିଆ, ସାତହାତିଆ, ଆଠହାତିଆ। ଛ ହାତିଆରେ ପାଠ ଆରମ୍ଭ, ଆଠହାତିଆରେ ନି.ପ୍ରା. ପାଠ ଶେଷ। ପୁଅପିଲାଏ ଗାମୁଛା ପିନ୍ଧି ଆସୁଥିଲେ।

ଆମ ବେଳେ ଖେଳଛୁଟି ନଥିଲା। ଆମେ ସାନପାସ୍ ବଡ଼ପାସ୍ ପକେଇ

ବାହାରକୁ ଯାଉଥିଲୁ। ସାନପାସ୍ ପରିସ୍ରା ପାଇଁ, ବଡ଼ପାସ୍ ଝାଡ଼ାଯିବା ପାଇଁ। ଶ୍ରେଣୀରେ ବସିବସି ଅଣ୍ଟା କାଟିଲେ, ଆମେ ପାସ୍ ପକେଇ ଉଠୁଥିଲୁ। ଏକାବେଳେକେ ତିନିଚାରିଜଣ ପୁଅ କି ଝିଅ ଉଠିଲେ ମାଷ୍ଟ୍ରେ କହୁଥିଲେ – "କଣ ସାଙ୍ଗସୁଙ୍ଗା ହୋଇ ଯିବାକୁ ଥିଲା ? ସମସ୍ତଙ୍କୁ ଏକାବେଳେ ପାସ୍ ମାଡ଼ିଲା ? ଛେପ ପକେଇ ଯା, ଶୁଖିବା ଆଗରୁ ଆସିବ।" ପ୍ରକୃତରେ ଛେପ ପକାଇବାକୁ ପଡୁନଥିଲା। ସାନପାସ୍ ନେଇ ଯାଇଥିଲେ ଆମେ ସ୍କୁଲହତା ଦାଢ଼ରେ ଥିବା କରମଙ୍ଗା ଗଛ ମୂଳକୁ ଯାଉଥିଲୁ, କାଳେ ପାଚିଲା କରମଙ୍ଗା ଝଡ଼ିଥିବ। ବଡ଼ପାସ୍ ନେଇ ବାହାରିଥିଲେ ଆମେ ଦୂରକୁ ଯାଉ – ରାଧାମାଧବଙ୍କ ମନ୍ଦିର ବେଢ଼ା, ସେଠି ବଡ଼ ଝଙ୍କା ବଉଳ କୋଳି ଗଛ; ଗୋପାଳଜୀଉଙ୍କ ମନ୍ଦିର ବେଢ଼ା, ସେଠି ସେତେବେଳେ ପହଡ଼ ପଡ଼ିଥାଏ; ଗୋବରୀ ନଈ ଉପରେ ବନ୍ଧା ହୋଇଥିବା କାଠପୋଲ, ତା ଉପରେ ଠିଆହୋଇ ପାଣିସୁଅ ଦେଖିବା ମଜା। ପୁଅପିଲାମାନେ ମଧ୍ୟ ପାସ୍ ପକେଇ ଖସୁଥିଲେ; ସେମାନେ ଆମଠୁ ଶିଆଣା, ବେଧଡ଼କ; ମାଷ୍ଟ୍ରେ ଟିକିଏ ଢୁଳେଇ ପଡ଼ିଲେ ବି ସେମାନେ ସ୍କୁଲଘରୁ ବାହାରି ପଳାଉଥିଲେ; ଫେରିଲାବେଳେ କହୁଥିଲେ ପାସ୍ ପକେଇ ଯାଇଥିଲେ ବୋଲି। ଦୁଇଜଣ ମାଷ୍ଟ୍ର ହେଲାରୁ ଏସବୁ ଏମିତି ସହଜ ହେଲାନି; କିନ୍ତୁ ଦିନେ ଦିନେ ଉଭୟ ମାଷ୍ଟ୍ର ନଥାନ୍ତି।

ଆମେ ଝିଅମାନେ ତୃତୀୟ ଶ୍ରେଣୀ ବେଳକୁ ହରଗଉରାର ଫୁଲରେ ନଖ, ହାତ ପଟେଇବା ଆରମ୍ଭ କରିଥିଲୁ। ନାଲି ହରଗଉରା ଫୁଲରେ ମିଶେଇ ବଟାହୁଏ ଦେଶିଆଳୁ ଡଙ୍କ, ଫିଟିକିରି, ଟଭା (ଖଟା କମଳା), ଖଇର। ବାଟିଲା ବେଳକୁ ବି ପାପୁଲି ଲାଲ ହୋଇଯାଏ। ଆମେ ପାପୁଲିରେ, ନେଡ଼ିରେ ବିଭିନ୍ନ ଚିତ୍ର ଆଙ୍କୁଥିଲୁ; ଜହ୍ନ, ତାରା, ଲତା।

ମୁଁ ନଖ ପଟେଇଲେ ବାପା ରାଗୁଥିଲେ; "ହାତରେ କ'ଣ ସେଗୁଡ଼ାକୁ ଲଦିଛୁ, ଗୋବର ?" ତେଣୁ ନଖ ପଟେଇ ଶୋଇବା ପୂର୍ବରୁ ଦୁଇ ତିନି ଘଣ୍ଟା କାଳ ହାତକୁ ପିଠି ପଛ ପଟେ କରି ବାପାଙ୍କଠୁ ଲୁଚେଇ ରଖିବାକୁ ହେଉଥିଲା। ଟିକିଏ ଅସାବଧାନ ହେଲେ ଫୁଲବଟା ଲାଗି ଲୁଗା କଷ ହୋଇ ଯାଉଥିଲା।

ମୁଁ ଆମ ଗାଁ ପୁଲିସ୍ ଅନାଦି ଦାସଙ୍କ ବଗିଚାରୁ କେତେଥର ହରଗଉରା ଫୁଲ ଚୋରେଇଛି। ଚୋରୀ ବୋଇଲେ ସେଇ ଫୁଲଚୋରୀ। ସ୍କୁଲ ସରିଲେ, ଆମେ ସମସ୍ତେ କି ପୁଅ କି ଝିଅ, ଦୌଡ଼ାଦୌଡ଼ି ହୋଇ ଘରକୁ ଫେରୁ। ସେତେବେଳେ କିଛି ଆକଟ ନାହିଁ। ମୁଁ ବି ବାପାଙ୍କ ଲାଞ୍ଜ ନ ହୋଇ ମୋ ସାଙ୍ଗଙ୍କ ସହିତ ଫେରେ। ଯୋଉଦିନ ଫୁଲ

ଚୋରି ପାଇଁ ମନ ହୁଏ, ମୁଁ ସାଙ୍ଗମାନଙ୍କୁ କହେ - ତମେମାନେ ଆଗରେ ଯାଅ, ମୋ ଦିହ ଭଲ ଲାଗୁନି, ମୁଁ ଆସ୍ତେ ଆସ୍ତେ ଯିବି। ସେମାନେ ଯାଇ ସାରିଲେ ମୁଁ ଅତି ସନ୍ତର୍ପଣରେ ଅନାଦିବାବୁଙ୍କ ବଗିଚାରେ ପଶି ଅଣ୍ଟିରେ ଅଣ୍ଟିଏ ହରଗଉରା ଫୁଲ ତୋଳିପକାଏ । କେବେ ଧରା ପଡ଼ିନି। ଧରା ପଡ଼ିଥିଲେ ମୁହଁ ଦେଖେଇ ପାରିନଥାନ୍ତି। ଲୋକେ କହିଥାନ୍ତେ - ରାମ ମାଷ୍ଟ୍ରଙ୍କ ଝିଅ ଚୋରଣୀ! ପାଠ ଚୋରଣୀ ଠାରୁ ଏ ଅପବାଦ ବଳି ପଡ଼ିଥାନ୍ତା।

*("ମୋ ପିଲାଦିନ", ପୃଷ୍ଠା ୭-୧୪)*

* * *

# ଦୁର୍ଗାବତୀ ତ୍ରିପାଠୀ

## (୧୯୨୯-୨୦୧୪)

ଦୁର୍ଗାବତୀ ତ୍ରିପାଠୀ ୧୯୨୯ ମସିହାରେ କଟକରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା କଟକ ରେଭେନ୍ସା ମହାବିଦ୍ୟାଳୟରେ ପଦାର୍ଥ ବିଜ୍ଞାନର ପ୍ରଫେସର ଥିଲେ। ତେଣୁ ତାଙ୍କର ପିଲାଦିନ ଏହାର ପ୍ରଶସ୍ତ ପ୍ରାଙ୍ଗଣରେ କଟିଥିଲା। ସେ ୧୯୩୯ ମସିହାରେ ରେଭେନ୍ସା ବାଳିକା ଉଚ୍ଚ ବିଦ୍ୟାଳୟରୁ ମାଧ୍ୟମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଇଥିଲେ। ୧୯୪୫ ମସିହାରେ ସେ ମୟୂରଭଞ୍ଜର ରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କ ଅଧୀନରେ କୁରଡ଼ିହ ପ୍ରଗଣାର ସର୍ଦ୍ଦାର ଅମରେନ୍ଦ୍ର ତ୍ରିପାଠୀଙ୍କୁ ବିବାହ କରିବା ସମୟରେ ଉଚ୍ଚମାଧ୍ୟମିକ ବିଜ୍ଞାନ ଅଧ୍ୟୟନ କରୁଥିଲେ। ତାଙ୍କ ବିବାହ ପରେ ସେ ମୟୂରଭଞ୍ଜରେ ତାଙ୍କ ଶାଶୁଘରେ ରହିବାକୁ ଆସିଥିଲେ।

ଦୁର୍ଗାବତୀ ୧୯୩୯ ମସିହାରେ ତାଙ୍କର ପ୍ରଥମ କବିତା ଲେଖିଥିଲେ ଯାହା ପରବର୍ତ୍ତୀ ସମୟରେ ହଜିଯାଇଥିଲା। ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ୧୯୫୦ ମସିହାରେ ଦୈନିକ ସମ୍ବାଦ "ନାରୀ ଜଗତ" ବିଭାଗରେ ପ୍ରକାଶିତ ହୋଇଥିଲା। ସେ ଅନେକ କ୍ଷୁଦ୍ର ଗଳ୍ପ, କବିତା ଏବଂ ପ୍ରବନ୍ଧ ସଂକଳନ ପ୍ରକାଶ କରିଥିଲେ। ସାହିତ୍ୟରେ ତାଙ୍କର ଅବଦାନ ପାଇଁ ଅନେକ ସାଂସ୍କୃତିକ ଅନୁଷ୍ଠାନ ତାଙ୍କୁ ସମ୍ମାନିତ କରିଥିଲେ। ତାଙ୍କର ସ୍ମୃତିକଥା "ସୁନେଲି ସ୍ମୃତିର ସୁରଭି" ୨୦୦୮ ମସିହାରେ ପ୍ରକାଶିତ ହୋଇଥିଲା। ସେ ତାଙ୍କ ଶାଶୁଙ୍କ ପରିବାରରେ ତାଙ୍କ ଜୀବନ ବିଷୟରେ ଲେଖିଛନ୍ତି, ଯେଉଁଠି ସେ ନିଜକୁ ସର୍ବଦା କୌଣସି ରାଣୀଙ୍କଠାରୁ କମ୍ ବୋଲି ଭାବୁନଥିଲେ। ଏଠାରେ ମନୋନୀତ ହୋଇଥିବା ଉଦ୍ଧୃତାଂଶ ତାଙ୍କ ଶାଶୁଙ୍କ ସ୍ମୃତିଚାରଣ ଉପରେ କେନ୍ଦ୍ରିତ। ସେ ସ୍ମୃତିର ଏପରି ଏକ ଚିତ୍ର ଉପସ୍ଥାପନ କରନ୍ତି ଯାହା ନିଜ ଶାଶୁଙ୍କ ଅନୁଭୂତିକୁ ନିଜେ ଅଙ୍ଗେ ନିଭେଇଥିବା ପରି ଅନୁଭବ ପ୍ରଦାନ କରେ। ଏହା ଆଲିସ୍ ବି ଟୋକଲାସଙ୍କ ଆତ୍ମଜୀବନୀର ଉଦାହରଣ

ମନକୁ ଆଣିଥାଏ, ଯାହା ବାସ୍ତବରେ ଆଲିସ୍ ବି ଟୋକଲାସଙ୍କ ଆତ୍ମଜୀବନୀ ନୁହେଁ; ବରଂ ଜର୍ଟରୁଡ୍ ଷ୍ଟେନଙ୍କ ବିଚାରରେ ତାଙ୍କ ଆତ୍ମଜୀବନୀ କିପରି ହେବ ତାହାର ଏକ ପରିକଳ୍ପନା। ଏଠାରେ ଦୂର୍ଗାବତୀଙ୍କ ଶାଶୁଙ୍କ ଜୀବନର କାହାଣୀ ତିକ୍ତତା କିମ୍ବା ଅନୁତାପ ବିନା ବର୍ଣ୍ଣନା କରାଯାଇଛି।

ଗୋଟିଏ ଜୀବନ ଏବଂ ବ୍ୟକ୍ତିତ୍ୱର ଜୀବନ୍ତ ଗଠନକୁ ଜଣାଇବା ପାଇଁ ଦୁର୍ଗାବତୀ ତ୍ରିପାଠୀ ଦୈନନ୍ଦିନ ଜୀବନର ସୂକ୍ଷ୍ମ ବିବରଣୀ ଉପରେ ଧ୍ୟାନ ଦେଇଛନ୍ତି, କାରଣ ଏହି ବିବରଣୀଗୁଡ଼ିକ ହିଁ ଏକ ଜୀବନ୍ତ ଚରିତ୍ରର ପୁନଃସୃଷ୍ଟି କରେ। ଏହି ପରିପ୍ରେକ୍ଷୀରେ ବ୍ୟକ୍ତି ଉପଯୁକ୍ତ ବିଷୟ ପ୍ରଦାନ କରିବା ପାଇଁ ପ୍ରତିଷ୍ଠିତ କିମ୍ବା ପ୍ରସିଦ୍ଧ ହେବା ଆବଶ୍ୟକ ନୁହେଁ। ସେ ଆତ୍ମଜୀବନୀମୂଳକ ଲେଖାକୁ କାହାଣୀ ଭଳି ବର୍ଣ୍ଣନା କରି ଦୈନନ୍ଦିନ ଜୀବନକୁ ଏକ ଅପୂର୍ବ ରୂପ ଦେବାରେ ସଫଳ ହୋଇଛନ୍ତି। ସାଧାରଣ ମଣିଷଙ୍କର ଉଦାରତା, କରୁଣା ଓ ଜ୍ଞାନର ଜୟକାର କରୁଥିବା ବେଳେ, ଆତ୍ମଜୀବନୀ ପାଇଁ ଆବଶ୍ୟକୀୟ ସଂଯମ ଏବଂ ଆତ୍ମନିୟନ୍ତ୍ରଣରେ ପରିପୂର୍ଣ୍ଣ ତାଙ୍କ ଗଦ୍ୟରେ କବିତାର ଉଜ୍ଜ୍ୱଳତା ଝଲସି ଉଠିଛି।

# ସୁନେଲି ସ୍ମୃତିର ସୁରଭି

"ହଳଦୀ ମଖାମଖି
ସୁବର୍ଣ୍ଣରେଖା ପାରି ହେଲେ କୁଟୁମ ଦେଖାଦେଖି।"

କାହାଠୁ କେବେ ଢଗଟା ଶୁଣିଥିଲି ମନେନାହିଁ। ମାତ୍ର କଥାଗୁଡ଼ା ଗହୀରିଆ ଦାଗ କାଟି ବସି ଯାଇଛି ମୋ ମନରେ, ହୃଦୟରେ। କେତେ ମନ ହୁଏ, ମାତ୍ର ଭରା ସୁବର୍ଣ୍ଣରେଖା ପାରି ହୋଇ ଛାଡ଼ି ଆସିଥିଲି ଯେଉଁ ଜନ୍ମ ମାଟିକୁ, ସେଠିକୁ ଆଉ ଫେରି ପାରିଲିନି ଏ ଅବଧି, ଏ ଜୀବନ କାଳରେ। ଯୋଉ ସମୟର କଥା କହୁଛି ସେଇଟା ଇଂରାଜୀ ୧୯୦୮ ମସିହା ହେବ ପ୍ରାୟ। ମୋତେ ଚାରିବର୍ଷ, ମୋ ସାନ ଭଉଣୀକୁ ଦେଢ଼ ବର୍ଷ ବୟସ ହୋଇଥିବ। ମାଆ ସାଙ୍ଗେ ଆମେ ଭରା ନଈ ପାରି ହୋଇ ଡଙ୍ଗାରେ ଆସିଥିଲୁ। ତଳେ ଖଳଖଳ ପାଣି। ଉପର ଆକାଶରେ ଭରା କଳା ବଉଦ, ଥାଇଥାଇ ବିଜୁଳିର ଦାନ୍ତ ନିକୁଟା ସାଙ୍ଗକୁ ଘଡ଼ଘଡ଼ି, ମୋ ପିଲା ମନଟା ଭୟରେ ଭର୍ତ୍ତି ହୋଇ ଯାଇଥିଲା। ସାଙ୍ଗରେ ଗୋରା ତକତକ ଉଚ୍ଚାପହଣ୍ଡ ଚୁରକିଚୁଟିଆ ମାମୁ ଜଣେ ଆସିଥିଲେ କି କିସ ଠିକ୍‌ରେ ମନେ ପଡୁନି। ମନରେ ପଡୁଛି ପଛରେ ପକାଇ ଆସିଥିବା ଆମ ଅନାମୟେ ଜଗନ୍ନାଥପୁର ଗାଁଆର କେତେ କେତେ ମଧୁର ସ୍ମୃତି। ଚାରି ହାତିଆ ନାଲି ଛିଟଶାଢ଼ୀ ବେଢ଼େଇ ହୋଇ ପିଉସୀ ନାନୀମାନଙ୍କ ସାଙ୍ଗେ ଟିକିଟିକି ହାତରେ ଟିଣ ଉପରେ ବଡ଼ି ପକାଇବା,

ଛୋଟିଆ ଖେଳନା ତମ୍ବା ଲୋଟାରେ ଦଉଡ଼ି ବାନ୍ଧି କୂଅରୁ ପାଣି କାଢ଼ିବା, କଣ୍ଢେଇ ଖେଳ, ପୁଣି ପିଉସୀନାନୀଠୁ ପିଠଉ ବେଲା ଛଡ଼େଇ ଅଲାମଲା ଚିତା ପକାଇବା, ଲମ୍ବା ପିଣ୍ଡା, ବଡ଼ବଡ଼ ଘର, ଧାନ ଅମାର, ମାର୍ବଲ ପଥର ବିଛା ଯାଇଥିବା ବଡ଼ ଅଗଣା ମଝିରେ କୂଆ ସବୁଠୁ ସୁନ୍ଦରିଆ ମୋର ବାଲ୍ୟ - ଅତୀତଟାକୁ ପଛରେ ପକାଇ ବସିଲାଠୁ ଉଠି ଆସିଲୁ ଆମେ। ବାବାଙ୍କର ଦେହ ଖରାପ। ଅତ୍ୟନ୍ତ ଖରାପ। ବାବା ଚାଲିଗଲେ।

ଚାଲି ଆସିଲୁ। ଭଦ୍ରକର ଜଗନ୍ନାଥପୁରଠୁ ଆସି ପହଞ୍ଚିଲୁ ବିଦେଶରେ ବାରିପଦା ସହରରେ କକାଙ୍କ ଘରେ। ସାଙ୍ଗରେ ସେଇ ମାମୁ ଆସିଥିଲେ। ମୁଣ୍ଡରେ ଚୁରକି ଚୁଟି। କପାଳରେ, ବାହୁରେ, ଛାତିରେ, ଚନ୍ଦନ ଚିତା ଚଇତନ। କାନ୍ଧରେ ପଇତା ନାମାବଳୀ। ସେମାନେ କୁଆଡ଼େ ତାଙ୍କ ଭଉଣୀ ଓ ଭାଣିଜୀ ଦୁହିଁଙ୍କୁ ସାଙ୍ଗରେ ନେଇଯିବାର ପ୍ରସ୍ତାବ ଦେଇଥିଲେ ବାବାଙ୍କ ଅନ୍ତେ। ପ୍ରସ୍ତାବଟାକୁ କକା ତାଙ୍କ ବଜ୍ର କଣ୍ଠରେ ନାକଚ କରି ଦେଇଥିଲେ। ସିଧା କହିଥିଲେ - ନା, ନା, ନା,। ମୋ ଭାଇର ପିଲାମାନଙ୍କୁ ମୁଁ ଛାଡ଼ିବିନି। ତୁମେ କିସ କରିବ ନେଇ ? ସାତବର୍ଷ ହୋଇ ଗଲେ କନ୍ୟାସୁନା ନେଇ କୋଉ ଚୁରୁକି ଚୁଟିଆ ଚିତାକଟା ବ୍ରାହ୍ମଣ ଦେଖି ଗୌରୀଦାନ କରିବ ? ହେଇ ପାରିବନି। ମୁଁ ଛାଡ଼ିବିନି। ସେମାନେ ଏଇଠି ମୋ ପାଖେ ରହିବେ। ତାଙ୍କ ବାବା ନଥିଲେ କିସ ହେଲା ! ମୁଁ ତ ଅଛି।

ସ୍ୱପ୍ନଭଳି ଝାପ୍‌ସା ମନେ ପଡୁଚି, ମାଆର କାନିତଳେ ରହି କାନି ତଳୁ ଅଳ୍ପ ମୁହଁ କାଢ଼ି ଦେଖିଥିଲି। ପିଲା ବୁଦ୍ଧିରେ ପରିସ୍ଥିତିକୁ ପରଖୁଥିଲି। କକାଙ୍କର ବଜ୍ରଗମ୍ଭୀର କଣ୍ଠସ୍ୱର ଶୁଣି ଭୟରେ ଅଧିକ ସଙ୍କୁଚିତା ହୋଇ ପଡୁଥିଲି। ମାଆର କାନିତଳେ ପୁଣି ମୁହଁ ଲୁଚାଉଥିଲି।

ଆମକୁ ଗାଁଠୁ ଅଣା ଯାଇଥିଲା, ବାବାଙ୍କ ଅବସ୍ଥା ଅତ୍ୟନ୍ତ ଖରାପ ହୋଇଥିବାରୁ। ପ୍ରାୟ ଦେଢ଼ବର୍ଷ ହେଲାଣି ବାବା ପାଗଳ ହୋଇ ଯାଇଥିଲେ। ବର୍ତ୍ତମାନ ବଦ୍ଧ ପାଗଳ। ଖାସ୍ ତାଙ୍କ ପାଇଁ ଗୋଟିଏ ଘର ରେଲିଂ ଦେଇ ତିଆରି ହୋଇଥିଲା, ଜେଜେବାବା କରାଇଥିଲେ। ତାଙ୍କୁ ବନ୍ଦୀ କରି ରଖା ଯାଉଥିଲା। ସକାଳ ହେଲେ ଚାରି ଚାରିଟା ଗଧିଆ ଚାକର ତାଙ୍କୁ ଜବରଦସ୍ତ ଧରି ଘେନି ଆଣୁଥିଲେ, ଛାତି ପାଣିରେ ଠିଆକରି ତାଙ୍କ ମୁଣ୍ଡରେ ପଙ୍କ ଲଦୁଥିଲେ। କିନ୍ତୁ ବାବା ପାଗଳ ହେଲେ କାହିଁକି ? ତାଙ୍କ ପାଇଁକି ଲୁହାରେଲିଂ ଦିଆ ପକ୍କା ଗାରଦ ବନାଇଲା କିଏ ?

ବାବା ଥିଲେ ବିରାଟ ଧନୀ, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓଙ୍କ ଗୁରୁଙ୍କର ପଣ୍ଟୁଆ ପୁଅ। ଜେଜେବାପାଙ୍କ ନାମ ଥିଲା ଗୋବିନ୍ଦଚନ୍ଦ୍ର ମହାପାତ୍ର। ଅନେକ

ପୂଜା ଯାଚନା ପରେ, ପୁରସ୍ତମ ଯାଇ ବଡ଼ ଠାକୁରଙ୍କୁ ଦର୍ଶନ କଲାପରେ, ଆଠଝିଅ ତଳେ ବାବା ଜନ୍ମ ହୋଇଥିଲେ। ଜେଜେ, ଜେଜେମାଙ୍କର ଅଲ୍ୟଳ ଦୁଲାଳ। କନ୍ଦର୍ପ ରୂପ। ସେ ଯୁଗରେ ବି.ଏ. ପଢୁଥିଲେ। ମୁଣ୍ଡ ଖରାପ ହେଲା କାହିଁକି ? ଫେଲ୍ ହେଲେ କାହିଁକି ! ତତ୍‌କାଳୀନ ଓଡ଼ିଶାରେ ବଙ୍ଗାଳୀବାବୁ ଓ ବଙ୍ଗଳାଭାଷାର ପ୍ରଚଣ୍ଡ ପ୍ରଭାବ। ପ୍ରତ୍ୟେକ ବିଦ୍ୟାଳୟରେ ଓଡ଼ିଆ ପଢ଼ାଇବାକୁ ମଧ୍ୟ ବଙ୍ଗାଳୀ ଶିକ୍ଷକ ବାହାରି ଥିଲେ। ଜେଜେବାପା ସେ କାଳରେ ପଣ୍ଡିତ ଗଣା। ମଧୁବାବୁ, ପଣ୍ଡିତ ଗୋପବନ୍ଧୁ ଦାସ, ଫକୀରମୋହାନ ସେନାପତି, ଭକ୍ତକବି ମଧୁସୂଦନ ରାଓ ସହିତ ସହଯୋଗ ଫଳରେ ଜେଜେବାପାଙ୍କ ଉପରେ ମଧ୍ୟ ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକ ଲେଖିବାର କିଛି ଦାୟିତ୍ୱ ପଡ଼ିଲା। କଟକ ସହରରେ ଭଡ଼ାଘର କରି ରହିବାକୁ ପଡ଼ିଲା। ଜେଜେମାଆଙ୍କୁ କଟକ ଆସିବା ସକାଶେ ଲୋକ ପଠାଇ ତଲବ ଗଲା।

ଜେଜେମାଆଟା ଏଡ଼ିକି ହୁଣ୍ଡି ! କହିଲା କଣ ନା - ମୁଁ କଟକ ଯିବିନି। ମୋ ଶ୍ୱଶୁରଙ୍କ ଭିଟାମାଟି ଛାଡ଼ି କୁଆଡ଼େ ହଲିବିନି।

ବାରମ୍ବାର ଅନୁରୋଧର ବିରୋଧ ପରେ, ଜେଜେ ତାଙ୍କ ବେଉରାବାହକ ହାତରେ ଶେଷ ନୋଟିସ ଜଣାଇଦେଲେ - ନ ଆସିଲେ ନଇଲେ, ସଂସାର ଧର୍ମ ପାଳନ କରିବା ସକାଶେ ଏଇଲେ ମତେ ଦ୍ୱିତୀୟ ଦାରା ପରିଗ୍ରହଣ କରିବାକୁ ପଡ଼ିବ।

ବେଉରା ବାହାକକୁ ଜେଜେମା ଜବାବ ଦେଲା - ଆଉ ଥରେ ବାହା ହୁଅନ୍ତୁ ଏବେ ! ମୋର କୋଉ ପୁଅ ଝିଅରେ ଊଣା ପଡ଼ିଛି କି !

ସେତେବେଳକୁ ବଡ଼ପୁଅ B.A.ପଢୁଛି। ଆଠ ଝିଅ ଦୁଇ ପୁଅଙ୍କ ବାପ ଜେଜେ କଟକରେ ଗୋଟାଏ କିରିସ୍ତାନ ଝିଅକୁ, କୋଉ ରୀତିରେ ମତେ ଅଜଣା, ବିଭାହେଲେ। ପୁଅଝିଅ ଜନ୍ମିବାର ଉପକ୍ରମ। ତତ୍‌କାଳୀନ ଆଜ୍ଞାବହ ପୁତ୍ର ବାବାଙ୍କୁ ମୌଖିକ କୌଣସି ପ୍ରତିବାଦ କରି ନାହାନ୍ତି ସତ, ମାତ୍ର ମାନସିକ ସ୍ତରରେ ତାଙ୍କ ପ୍ରତିବାଦ ପ୍ରକ୍ରିୟା ଅତ୍ୟନ୍ତ ତୀବ୍ର ହୋଇଛି। ଏତେ ତୀବ୍ର ହୋଇଛି ଯେ ଯାହାର ଭାରସାମ୍ୟ ସମ୍ଭାଳିବା ତାଙ୍କ ପକ୍ଷରେ ଅସମ୍ଭାଳ ହୋଇ ଉଠିଛି। ମୁଁ ଜନ୍ମ ହୋଇଥିଲି। ସାନ ଭଉଣୀ ଜନ୍ମ ପରେ ପରେ ବାବା ଅଧିକରୁ ଅଧିକ ପାଗଳ ହୋଇ ଉଠିଛନ୍ତି।

ଜେଜେ ପୁଣି ନିଜ ଜାଗାରୁ ବାରିପଦାକୁ ଫେରି ଆସିଥିଲେ। ବଡ଼ପୁଅକୁ ପାଖକୁ ଅଣାଇଥିଲେ। ଚିକିତ୍ସା କରାଇଥିଲେ। ତତ୍ତ୍ୱ ନେଇଥିଲେ। ଅନୁତପ୍ତ ହୋଇଥିଲେ କି କେଜାଣି। ପାଗଳ ପୁଅ ରହିବା ଲାଗି ଲୁହାଛଡ଼ଦିଆ ପକ୍କା ଘର ବନାଇଥିଲେ। ପଛ ସ୍ତ୍ରୀକୁ ଆଣି ପାଖରେ ରଖିଥିଲେ। ତାଙ୍କର ପରେ ପରେ ଚାରିପୁଅ ଦୁଇ ଝିଅ ଜନ୍ମ

ହୋଇଥିଲେ । ମାତ୍ର ଜେଜେଙ୍କର ପ୍ରଥମ ପତ୍ନୀଙ୍କର ସାନପୁଅ ଅର୍ଥାତ୍ ଆମ କକା ତାଙ୍କ ବାରିପଦା ଘରେ ରହି ନଥିଲେ । ତାଙ୍କର କୌଣସି ବାରିପଦା ସମ୍ପତ୍ତି ଛୁଇଁ ନଥିଲେ । ନିଜେ ଜାଗା କିଣି ଘର ବନାଇଥିଲେ । ରାଗରେ ପାଠପଢ଼ା ଛାଡ଼ି ବାରିପଦା ମହାରାଜାଙ୍କ ଅଧୀନରେ ମାଜିଷ୍ଟ୍ରେଟ୍ ଚାକିରି ଗ୍ରହଣ କରିଥିଲେ । କକା ତାଙ୍କ ବାବାଙ୍କ ସମ୍ପତ୍ତି ବାଡ଼ିକୁ "ଅପବିତ୍ର" ମନ୍ତବ୍ୟ କରୁଥିଲେ । ଆମେ ଆସିବା ପରେ ପରେ ମୋ ବାବାଙ୍କର ମୃତ୍ୟୁ ହୋଇଗଲା । ମାଆ ବାବାଙ୍କ ମୃତ୍ୟୁପରେ ଗୋଟିଏ ମାତ୍ର ଏକାଦଶୀ କରିଥିଲେ । ଏକାଦଶୀ ବାସି ଦିନ କଲେରାରେ ତାର କାଳ ହେଲା । ମରିବା ପୂର୍ବରୁ ତାର ଗୋଟିଏ ଉକ୍ତି ମୁଁ ଏ ଯାଏ ଭୁଲି ପାରିନି । କିଏ ତାକୁ ସନ୍ତକ ମାଗିଥିଲା ଅଥବା କାହା ଉଦ୍ଦେଶ୍ୟରେ ସିଏ କହୁଥିଲା ମତେ ଜଣା ନାହିଁ । ମାତ୍ର ତାର ସେ କଥାଗୁଡ଼ା ଏବେ ବି ମୋର ମନେ ଅଛି– ମତେ କିଛି କରିବାକୁ କୁହନି । ମୋ ଛାତି ଭିତରଟା ଜଳୁଛି କୁହୁଳୁଚି । କି ସନ୍ତକ ମାଗୁଚ ମତେ ? ତାର ଦିଟା ସନ୍ତକ ସଂସାରରେ ଅଛନ୍ତି । କାହାକୁ ମୁଁ କି ସନ୍ତକ ଦେବି ? କାହିଁକି ?

ପରଦିନ ସିଏ ମରି ଯାଇଥିଲା । ଜେଜେମା ଆମ ଭଉଣୀଙ୍କ ସହ ସେଇ ଛୋଟିଆ ବାରିପଦା ସହରରେ କକାଙ୍କ ଘରେ ରହୁଥିଲା । ମୁଁ ଜେଜେମାର ପଣତ ଧରି ବାବାଙ୍କ ମୁଣ୍ଡରେ ପଙ୍କ ଲଦା ହେବାର ଦେଖିଥିଲି । କ'ଣ ମୋର ବାଳୁତ ମନଟା ବାପ କୋଡ଼ ପାଇଁ ବାରମ୍ବାର ବ୍ୟାକୁଳ ହୋଇଉଠୁଥିଲା ? ଜେଜେମା ପଣତ କାନିରେ ଆଖି ପୋଛୁଥିଲା । ମୋ ଆଖିରୁ ଲୁହ ଝରୁଥିଲା । କାହିଁକି ଆଖିଦିଟା ମଚାଳି ହେଉଥିଲି ମୁଁ ? କ'ଣ ସତରେ ଏଗୁଡ଼ା ମୁଁ ଦେଖିଛି ! ଅନୁଭବ କରିଛି ! ନା ମୋର ବାପା ମାଆ ଛେଉଣ୍ଡ ବିଷାଦଗ୍ରସ୍ତ ବାଳୁତ ମନର ଚିନ୍ତାରେ ଭାବନାରେ ବ୍ୟାକୁଳତା ଭରି ଏଗୁଡ଼ା ବାରମ୍ବାର ଭାସି ଉଠିଛି ସ୍ୱପ୍ନ ଭଳି ।

ଆମ ଜୀବନର ଗତି ବଦଳିଗଲା ତା ପରେ । ରାତିରେ ଜେଜେମାର ଦୁଇ ଗୋରା ଗୋରା ବାହୁକୁ ତକିଆ ବନେଇ ତା ଦେହକୁ ଲାଗି, ଦୁଇକଡ଼େ ଆମେ ଦୁଇ ଭଉଣୀ ଶୋଉଥିଲୁ । ଦିନ ଯାକ ଖଣ୍ଡେ ନାଲି ଧଡ଼ିଆ ଶୁଆପଖିଆ ସାତହାତୀ ଶାଢ଼ୀ ଗୁଡ଼େଇ ହୋଇ ଏ ଖୁଣ୍ଟ ସେ ଖୁଣ୍ଟ ଉହାଡ଼ରେ ଛିଡ଼ା ହୋଇ ସମସ୍ତଙ୍କୁ ଦେଖୁଥିଲି । ପିଲା ବୁଦ୍ଧିରେ ହୁଏତ ପରଖୁଥିଲି । କେବଳ କକାଙ୍କୁ ଦେଖିଲା ମାତ୍ରେ ଘରେ ପଶି ଯାଉଥିଲି । ଲୁଚି ପଡୁଥିଲି ।

କକା ଖୁଡ଼ୀଙ୍କୁ ଡ଼ାକୁଥିଲେ । ପଚାରୁଥିଲେ – ଉମା ମତେ ଦେଖି ଲୁଚୁଛି କାହିଁକି ? ତା କଥା ବୁଝୁନ କାହିଁକି ?

ଖୁଡ଼ୀ ଉତ୍ତର କରୁଥିଲା – ତାର ତ ଦୁନିଆ ଯାକର ଲାଜ !

କକା ପଡ଼ିଶାଘର ନାନୀ, ମାଉସୀମାନଙ୍କ ପାଖକୁ ନୂଆନୂଆ କିସମର ସିଲେଇ ଶିଖିବାକୁ ପଠାଉଥିଲେ। ସିଲେଇ, ଭଲ ଭଲ ରନ୍ଧା ଓ ଘରକାମ ସବୁକୁ ପଡ଼ିଶା ଘରୁ ଦେଖିବାକୁ ଶିଖିବାକୁ ନିର୍ଦ୍ଦେଶ ଦେଉଥିଲେ। ସ୍କୁଲକୁ ଯାଉଥିଲୁ। ପାଠପଢ଼ା ସାରି ଫେରିଲା ବେଳକୁ ଜେଜେମା ଆମ ପାଇଁ ପଖାଳ, ଶୁଖୁଆପୋଡ଼ା ବାଡ଼ି ଘୋଡ଼ାଇ କବାଟ ଆଉଜାଇ ଅପେକ୍ଷା କରୁଥିଲା। ସ୍କୁଲ ଫେରନ୍ତା କକାପୁଅ ଭାଇମାନଙ୍କ ପାଇଁ ପୁରୀ ମାଲପୁଆ ଛଣା ଯାଉଥିଲା। ଜେଜେମା ଆମକୁ ବୁଝାଇ ଦେଇଥିଲା "ଝିଅ ପରଘରି। ତାଙ୍କ ଜୀବନରେ କୋଉଠି ଶାଶୁଘର ମିଳିବ। କେମିତି କ'ଣ ହେବ ଠିକ୍ ଠିକଣା ନାହିଁ। ଏଣୁ ସବୁଠୁ ଶସ୍ତା ଖାଦ୍ୟରେ ସେମାନେ ଅଭ୍ୟସ୍ତ ରହିବା ନିତ୍ୟାନ୍ତ ଆବଶ୍ୟକ"। କକା କିନ୍ତୁ ନିୟମ କରିଥିଲେ ପ୍ରତିଦିନ ସେ ଖାଇସାରି ଉଠିଗଲେ ତାଙ୍କରି ଖାଇବା ଥାଳିରେ ଆମେ ଦୁଇ ଭଉଣୀ ଖାଇବୁ। ଏବେ ଭାବିଲେ ଦୁଃଖ ଲାଗୁଛି, ଆଖିରେ ଲୁହ ଜକେଇ ଆସୁଛି। ପୁଣି ଖୁସି ଲାଗୁଛି, ଆନନ୍ଦ ଲାଗୁଛି। କକାଙ୍କ ଉଦାରତା ପାଇଁ ଏତେଦିନ ଏତେବର୍ଷ ପରେ ବି କୃତଜ୍ଞତାରେ ଭରି ଉଠୁଛି ମନ। ମୁଁ ଭାବୁଚି କାଳେ ଆମକୁ ସବୁରୁ ସବୁ ଜିନିଷ ମିଳୁଥିବ ନଥିବ, ଏଣୁ ଏ ବ୍ୟବସ୍ଥା। କକା କର୍ତ୍ତା। ତାଙ୍କ ଖାଇବା ଥାଳିରେ ତ ଆଉ କୌଣସି ଖାଇବା ଦରବ ବାଦ୍ ପଡ଼ିବାର ପ୍ରଶ୍ନ ନାହିଁ। ପୁଣି ସବୁ ଗିନାରେ ଥାଳିଆରେ ନିଶ୍ଚୟ କିଛି ବଳକା ଛାଡ଼ି ଥାଆନ୍ତି। ହୁଏ ତ ଖାସ୍ ଆମରି ପାଇଁକି। ସାନ ଭଉଣୀ ଜେମାଟା ଭାରି ଅଝଟ। ଭାରି ନାକ କାନ୍ଦୁରୀ। ମାଛମୁଣ୍ଡରେ ତାର ପ୍ରବଳ ଲୋଭ। ମୁଣ୍ଡମାଛ ଭଜାରୁ କକା ନିଶ୍ଚୟ ଗଡ଼େ ଛାଡ଼ି ଥାଆନ୍ତି। ମାତ୍ର ସେଦିନ ଖାଉ ଖାଉ ହୁଏ ତ ସବୁ ଖାଇ ଦେଇଛନ୍ତି। ଜେମା ଶୋଇ ଯାଇଥିଲା। ଖୁଡ଼ୀ ତାକୁ ଉଠାଇ ଆଣି ଥାଳି ପାଖରେ ବସାଇ ଦେଲେ। ଥାଳିରେ ହାତ ଦେଉ ଦେଉ ସେ କାନ୍ଦ ଆରମ୍ଭ କରିଦେଲା – ଏ ଖୁଡ଼ୀ ! ମୋ ମୁଣ୍ଡ ? ମୋ ମୁଣ୍ଡ କାଇଁଲୋ ଖୁଡ଼ୀ ! ମୋ ମୁଣ୍ଡ ଦେ – ମୁଣ୍ଡ ଦେ ମତେ –

କକା ହସି ଉଠିଲେ। ଖୁଡ଼ୀକୁ ପଚାରିଲେ – ଜେମା କିସ କହୁଛି ? କି ମୁଣ୍ଡ ? କାହାର ମୁଣ୍ଡ ?

ଖୁଡ଼ୀ କହିଲା – ସେ ମାଛମୁଣ୍ଡ ଖୋଜୁଛି।

ସାଙ୍ଗେ ସାଙ୍ଗେ କକା ହୁକୁମ୍ କଲେ – ଦିଅ, ଦିଅ ତାକୁ। ଆଉ ଗୋଟେ ପୂରା ଭଜା ମାଛମୁଣ୍ଡ ତାକୁ ଦିଅ ସେ ଖାଉ।

ଆମପାଇଁ ଏମିତି ଥିଲେ କକା। ମହାରାଜାଙ୍କ ଗୁରୁ ପୁଣି ଧନୀ ପିତା ପଣ୍ଡିତ

ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କର ପକ୍କାକୋଠା ଘରବାଡ଼ି ଛାଡ଼ିଦେଲେ ସେଇ ସହରରେ ଶହେ ପଚିଶଟଙ୍କାରେ ଖଣ୍ଡେ ଘର ଡିହ କିଣି ତହିଁରେ ଘର ବନାଇ ରହିଥିଲେ କକା। ସେଇ ଘରର ବର୍ଣ୍ଣନା ଟିକେ ଦିଏଁ। ଲମ୍ବା ଉଚ୍ଚା ପକ୍କା ପିଣ୍ଡା। ଲାଗି ଲାଗି ଚାରିଟା ଶୋଇବା ଘର ଦକ୍ଷିଣ ମୁହାଁ। ଦକ୍ଷିଣ ପଟେ ଚାରି ବଖରା ମାଟିଘର। ସେଥିରେ ଆମ ଘରଲୋକଙ୍କ ସାଙ୍ଗେ ସାମିଲ ହୋଇ ଯାଇଥିବା ଘରକାମ, କକା ଖୁଡ଼ୀଙ୍କ କାମ ଛଡ଼ା, ରୋଷେଇବାସ କରୁଥିବା ଲୋକ, ସ୍ତ୍ରୀଲୋକ ରହୁଥିଲେ। ପୂର୍ବରୁ ତିନି ବଖରା ଟିଣ ଘର। ମାଟିକାନ୍ଥ, ତଳି ପକା। ପଶ୍ଚିମ ଅର୍ଥାତ୍ ଦାଣ୍ଡ ଆଡ଼କୁ ମସ୍ତ ବଡ଼ ପକ୍କା ମେଲା। ସେଠାରୁ ଦାଣ୍ଡକୁ ବାଟ କିନ୍ତୁ ଝରକା ମାପରେ। ଲମ୍ବା ଅଗଣାଟା ଦୁଇଭାଗ। ଦାଣ୍ଡ ଅଗଣା, ଭିତର ଅଗଣା। ଭିତର ଅଗଣା ମଝିରେ କୂଅ। ସେଇ ଭିତରେ ଅଗଣାରୁ ଛୋଟିଆ ରନ୍ଧାଘର ସାମିଲ। ମେଲା ରନ୍ଧାଘର ଅଗଣାକୁ ବାଟ ଫିଟିଛି। ଓସାର ପିଣ୍ଡା। ସେଠାରେ ଖିଆପିଆ ହୁଏ। ଖୁଡ଼ୀର ସବୁବେଳେ ଛୋଟ ପିଲା। ସେ କାମ କରି ପାରେନି। ସେତେବେଳେ ଜେଜେଙ୍କ ପାଖରେ ଥିବା ଚାରିଟା ଲୋକ ନାଲା, ବାଲା, ଉଦିଆ ଶିକରାରୁ କେବଳ ଉଦିଆ କକାଙ୍କ ପାଖକୁ ଚାଲି ଆସିଥିଲା। ସେଇ ରାନ୍ଧେ। ମେଙ୍କି ନାନୀ, ଗାଁ ଲେଖାରେ ପିଉସୀ ହେବ, ଆମ କଥା ବୁଝେ। ହାରା ମାଆ ଓ ଅନ୍ୟମାନେ ବାକି କାମ କରନ୍ତି। କବାଟ ଝରକା ସାଧାରଣ ହେଲେ ମଧ୍ୟ ଆସବାବପତ୍ର ସବୁ ବହୁତ କୋଟିକମ ବାଲା, ବହୁତ ସୁନ୍ଦର। ମାତ୍ର ଦାଣ୍ଡ ଆଡ଼ୁ ଭିତର ଖଞ୍ଜାକୁ ପଶିବା ବାଟଟି ଝରକା ମାପର ଥିବାରୁ ବାହାରୁ କବାଟ ବୋଲି ମୋଟେ ମାଲୁମ୍ ପଡ଼େନି। ଆଣ୍ଠୁଏ ଉଚ୍ଚ ଡେଇଁ ଅର୍ଗଳୀବାଟେ ଭିତରକୁ ପଶିବାକୁ ପଡ଼େ। ମୋ ବିଭାଘର ପରେ ବୋଧହୁଏ ସେଇଟାକୁ କବାଟ କରି ଦିଆଗଲା। ଗୋଟାଏ ପୁରୁଣା ଆଦବ କାଇଦାର ଅନ୍ତ ହେଲା।

ଆମର ସୁନ୍ଦରିଆ ଛୋଟିଆ ସହରଟାରେ ଖରାଦିନେ ପାଣିର ବହୁତ ଅଭାବ ପଡ଼େ। ଆମ କୂଅଟାରେ କିନ୍ତୁ ଭରା ପାଣି। ଆଦୌ ଶୁଖେନି। ଖୁଡ଼ୀର ଅନୁମତି କ୍ରମେ ପାଖ ପଡ଼ିଶାରୁ କେହି କେହି ଆସି ପାଣି ନେଇ ଯାଆନ୍ତି। ସେଦିନ ପଡ଼ିଶା ବାବୁଘର ଚାକରଟା ଦୁମୁଦୁମିଆ ଖରାବେଳେ ପାଣି ନେବାପାଇଁ ଆସିଥିବା ଅବସ୍ଥାରେ କକାଙ୍କ ହାବୁଡ଼ରେ ପଡ଼ିଗଲା। ଦଣ୍ଡକରେ କକାଙ୍କର ତୋଫା ଗୋରା ମୁହଁଟା ସୁନ୍ଦରୀ ଆମ୍ବ ଭଳି ନାଲି ପଡ଼ିଗଲା। ପାଟି କରି ଘର କମ୍ପାଇଲେ। ସେ ଦରବୁଢ଼ା ଲୋକଟାକୁ କାନ ଧରି ବସଉଠ କରାଇଲେ। ଆଉ ଦିନେ ଦୁଇ ପହରେ ପାଣି ନ ନେବାର ପ୍ରତିଶ୍ରୁତି ଆଦାୟ କରି ଛାଡ଼ିଲେ। ଖୁଡ଼ୀଙ୍କୁ ଶୋଧା ପଡ଼ିଲା – ଘରେ ଝିଅମାନେ ବଡ଼ ହେଉଛନ୍ତି କୁଆଡ଼କୁ ଆଖି ନାହିଁ କି ଆକଟ ନାହିଁ।

ସବୁର କାରଣ ହେଲି ମୁଁ। ମୁଇଁ ହେଲି ବଡ଼ଝିଅ ଏଗାର ପୂରି ବାଆର ଚାଲିଛି।

ତାଙ୍କ ପାଟିରେ, ଗାଳିରେ, ବିନା ଦୋଷରେ ମୁଁ ନିଜକୁ ଚୋରଣୀ ମଣୁଥିଲି। ଏବେ ମୋର ବର୍ଣ୍ଣନା ଟିକେ ଦିଏଁ। ପ୍ରାୟ ପାଞ୍ଚଫୁଟ ପାଞ୍ଚ ଇଞ୍ଚର ଗୋରା ତକତକ ପତଳା ବାଡ଼ିଆ ଢ଼େଙ୍ଗା ଝିଅ ମୁଁ। ନାଲି ଓଠଏ ଚକା ମୁହଁ। ଗହଳ କଳା ମୁଚୁମୁଚୁ ବାଳ ଆଣ୍ଠୁ ସରିକି ଛୁଇଁଥାଏ। ସେଗୁଡ଼ା ମୁଁ କିବା ମୋ ଜେଜେମା କୁଣ୍ଡେଇ ବାନ୍ଧି ପାରୁନି। ମତେ ଟାଣି ଭିଡ଼ି ଘୋଷାଡ଼ି ତାକୁ ବାନ୍ଧେ ବେଣୀକରେ ମେଙ୍କିନାନୀ। ଯିଏ ଦେଖେ କୁହେ ମୁଁ କୁଆଡ଼େ ଭାରି ସୁନ୍ଦରୀ। ପିଲାଟି ଦିନୁ ଅଧିକାଂଶ ବେଳ ଜେଜେମାର ବରାଦ ଅନୁସାରେ ମୋ ପାଇଁକି ନାଲିଧଡ଼ିଆ ଶୁଆପଖିଆ ରଙ୍ଗର ଶାଢ଼ୀ ଆସେ। ସେଇ ଶୁଆପଖିଆ ରଙ୍ଗର ଶାଢ଼ୀ ବେହରଣରେ ମୁଁ କୁଆଡ଼େ ଭାରି ଆଖି ଦୁରୁଶିଆ ଦିଶେ। ଏଣୁ କୌଣସି ବାହାର ଲୋକଙ୍କୁ ଆମ ଘରକୁ ଆସିବା ବାରଣ। କକା ମୋ ଚେହେରା ନେଇ ଗର୍ବିତ ଥିଲେ ବି ମୋ ପାଇଁ ବର ତଲାସରେ ବ୍ୟସ୍ତ ବିବ୍ରତ ଥିଲେ। ଝିଅଟା ହୁ ହୁ ବଢ଼ି ଯାଉଛି ଯେ! ହଠାତ୍ ତାଙ୍କ ଦୃଷ୍ଟିରେ  ପଡ଼ିଲେ ତାଙ୍କରି ଜଣେ ବନ୍ଧୁ ଯାହାର ସ୍ତ୍ରୀ ଯୋଡ଼ିଏ ପିଲା ଛାଡ଼ି ମରି ଯାଇଥାଆନ୍ତି ନଗଦରେ। ଗୋଟିଏ ତିନି ମାସର ଝିଅର ବାପା। ତତ୍‌କାଳୀନ ମହାରାଜାଙ୍କ ଦରବାରରେ ଜଣେ ଜାଗିରଦାର ସର୍ଦ୍ଦାର। ବୟସ ପଇଁତିରିଶି। ଖାଲି ବାଳଗୁଡ଼ା ପାଚି ଯାଇଚି ସିନା। ନହେଲେ ଅତ୍ୟନ୍ତ ସୁପୁରୁଷ। ସର୍ବୋପରି ଦାବି ଦବା କିଛି ନାହିଁ। ତାଙ୍କରି ସହିତ ମୋର ବିଭାଘର ଠିକଣା ହୋଇଗଲା। ଜେଜେମାର ବହୁତ ଦିନରୁ ନେହୁରା ଥିଲା, "ଉମାକୁ ତା ମାଆର ସାତ ନହରିଆ ହାରକି ଛ ଭରିଆ ବାଜୁବନ୍ଧରୁ କିଛି ଦିଅ" କିନ୍ତୁ ତାହା ଆଉ କାର୍ଯ୍ୟକାରୀ ହେବାର ଆବଶ୍ୟକତା ପଡ଼ିଲା ନାହିଁ। ବରର ଖାଲି ଡ଼ାଗର କନ୍ୟାଟିଏ ଦରକାର। ବିଭାଘର ସରିଗଲା ବିନା ଯୌତୁକରେ। ବିଭାଘର ଦେଖିବାକୁ ଆସିଥିବା ଜଣେ ବଙ୍ଗାଳୁଣୀ ମାଉସୀ ମନ୍ତବ୍ୟ କଲେ – ଆହା! ଏତେ ସୁନ୍ଦର! ଦେବୀ ପ୍ରତିମା ପରି ଝିଅକୁ ବୁଢ଼ାବରରେ, ପୁଣି ମଫସଲରେ ? କେମିତି ଦେଲେ ଦିଦି ମୁଁ ହେଲେ ତଣ୍ଟିଚିପି ମାରି ଦେଇ ଥାଆନ୍ତି ସିନା, ଏମିତି ଦିଅନ୍ତି ନି।

ଖୁଡ଼ୀ କହିଥିଲା – ତା ଭାଗ୍ୟ! ପୁରୁଷପୁଅ କ'ଣ ବୁଢ଼ା ହୁଏ ? ଝିଅ ତ ଗୋଟାଏ ଛୁଆରେ ବୁଢ଼ୀ!

କଥାଟା ମୁଁ ଶୁଣିଥିଲି। କିଛି ପ୍ରତିକିୟା କ'ଣ ହୋଇଥିଲା ମୋ ମନରେ? କେଜାଣି ଜୀବନର ଗୋଟାଏ ଅଧ୍ୟାୟରେ ଏଇଠି ଅନ୍ତ ହୋଇଗଲା। ଝିଅ ଜୀବନର ଯବନିକା ପଡ଼ିଗଲା।

ମୋର ଅଶୀବର୍ଷର ଶାଶୁ। ତାଙ୍କ ସମୁଦି ଅର୍ଥାତ୍ ମୋ କକାଙ୍କୁ ଖବର କରିଥିଲେ କି – ବୋହୂକୁ ଟିକେ ଦେଖିବି, ପଠାଇବ। କକା, ତାଙ୍କର ସାତପିଲା ଓ ମୋ ସାନ

ଭଉଣୀ ସହ ନଅ ଭାଇ ଭଉଣୀଙ୍କୁ ଗାଡ଼ି କରି ପଠେଇଥିଲେ ମୋ ଶ୍ୱଶୁରଘର ଗାଁକୁ। ଘରଯୋଗ୍ୟ ହୋଇ ନଥିବାରୁ, ପୁଆଣୀ ହୋଇ ଆସି ନଥିବାରୁ ମତେ ଏକା ଛାଡ଼ି ନଥିଲେ।

ଶାଶୁ ମତେ କରେଇ ଖୁସୁଣୀ ଚୁଲ୍ଲୀ ଦେଖାଇଦେଲେ। ଘଡ଼ିଏ ଗୁଆଘିଅ ବଢ଼େଇ ଦେଲେ, ପଚାରିଲେ - ମୋହନଭୋଗ କରି ଆସେ ?

ମୁଁ ହଁ ମାରିଥିଲି।

ଶାଶୁ କହିଲେ - ତେବେ ଅଟା ମୋହନଭୋଗ ବନାଇ ଦେ। ପିଲାଏ ଖାଇବେ। ମୁଁ କରେଇରେ ଘିଅ ଢ଼ାଳି ଅଟା ଭାଜୁଚି, ଏଇ ସମୟରେ ଜଣେ ବେଉରାବାହାକ ଧାଇଁଧଇଁସଇଁ ହୋଇ ଯାଉଥିଲା। କହିଲା - ଜେଜେମା ! ଜେଜେମା ! ମେଳିଆମାନେ ନଈ ଘାଟଠି ପହଞ୍ଚି ଗଲେଣି। ଛୁଆପିଲାଙ୍କୁ ନେଇ ଘର ଛାଡ଼ି ପଳାଅ ଶୀଘ୍ର।

ଦଣ୍ଡକରେ ଘିଅ କରେଇ ଓହ୍ଲାଇ ଦିଆଗଲା। ପଡ଼ିଶା ଘରଟା ମୋ ଶାଶୁଙ୍କର ବାପଘର। ବାପା ଭାଇ ନାହାନ୍ତି। ଭାଇର ପୁଅ ଅଛନ୍ତି ଦେଶିଆ କବିରାଜ। ଆମ ନଅ ଭାଇଭଉଣୀଙ୍କୁ ନେଇ ତାଙ୍କରି ଜିମ୍ମାରେ ଛାଡ଼ି ଦିଆଗଲା। ସ୍ୱାମୀଙ୍କ ପ୍ରଥମ ପକ୍ଷକ ପୁଅକୁ ନେଇ ଜଣକ ଆଟୁରେ ଘୁମ ତଳେ ଲୁଚାଇବାର ବନ୍ଦୋବସ୍ତ ହୋଇଗଲା। କାମଟୁଣୀ ଚାନ୍ଦ ଶାଶୁଙ୍କୁ ପଳେଇବାକୁ ଡାକୁଥିଲା। ମାତ୍ର ଶାଶୁ ନାରାଜ ହେଲେ - ମଲାମର ! ପୁଅଟା ନାହିଁ। କେମିତି ମୁଁ ଘରଟା ଛାଡ଼ି ଚାଲିଯିବି।

ଦଣ୍ଡକରେ ନିଆଁହୁଳା, ଡେଙ୍ଗା ଡେଙ୍ଗା ଠେଙ୍ଗା, ବର୍ଚ୍ଛା, ଧନୁଶର, କାଣ୍ଡ ବାଉଁଶ - ଧରା, ପାଉଁଶବୋଳା କଉପୁନିମରା ଶହଶହ, ହଜାର ହଜାର ଲୋକ କୁଅ କିଳିକିଳି ମାରି ଗାଁ ଭିତରକୁ ମାଡ଼ି ଆସିଲେ। ସତେ କି ଜନସମୁଦ୍ର ! ଲୋକ ଧାଡ଼ି ପ୍ରାୟ ମାଇଲିଏରୁ ଉର୍ଦ୍ଧ୍ୱ ଥିଲା। କିଏ ଜଣେ ତହିଁରୁ ଆଗେଇ ଆସି ଶାଶୁଙ୍କୁ ପଚାରିଲା- ଏ ବୁଢ଼ୀ ! ତର ପ ? ପ କାଇଁ ? (ଅର୍ଥାତ୍ ତୋର ପୁଅ କାହିଁ ?)

ଶିଖାଇ ଦିଆ ଯାଇଥିବା ଅନୁସାରେ ଶାଶୁ କହିଲେ - ପୁଅ ସାଙ୍ଗେ ମୋର ପଟେନି। ସେ କୁଆଡ଼େ ଯାଇଚି ମୁଁ ଜାଣେନି।

ପ୍ରକୃତରେ ପୂର୍ବଦିନ ଜଣେ ବେଉରା - ବାହାକ, ଗୁପତ ଖବର ଥିବା ଚିଠିଟିଏ ମାଇପି ବେଶରେ ନକଲି ଜୁଡ଼ା ଭିତରେ ପୂରାଇ ଆଣି ଆସିଥିଲା। ସେଥିରେ ଆସନ୍ନ ମେଳିକଥା ଜଣାଇ ଦିଆ ଯାଇଥିଲା। ତୁରନ୍ତ ଗାଁ ଛାଡ଼ି ଚାଲିଯିବାକୁ ଅନୁରୋଧ କରାଯାଇଥିଲା। ସ୍ୱାମୀ ପ୍ରଥମେ ରାଜି ହେଉ ନଥିଲେ। କିନ୍ତୁ ପରେ, ନିର୍ଦ୍ଦେଶ ଅନୁସାରେ

ପାଉଁଶ ବୋଲି ହୋଇ, କଉପୁନି ମାରି, ବସ୍ତାରେ ବନ୍ଧକକୁ ଗୁଡ଼େଇ କମ୍ବଳ ଘୋଡ଼ାଇ ରାତାରାତି ଗାଁ ଛାଡ଼ିଥିଲେ। ବଣରେ ବଣରେ ଚାଲି ଚାଲି ଯାଇ ଦଶବତାର କୋଶ ଦୂରରେ ନିରାପଦ ସ୍ଥାନରେ ଆଶ୍ରା ପାଇଥିଲେ।

ସେମାନେ ଶାଶୁଙ୍କ କଥାରେ ବିଶ୍ୱାସ ଗଲେନି। ଠେଙ୍ଗାରେ ବୁଢ଼ୀଙ୍କୁ ପାହାରେ ପକାଇଲେ। ମାଡ଼ଟା କାନ୍ଧରେ ବାଜିବା ପରେ ଧମକାଇଲେ - ସତକଥା ତା ହେଲେ କହିବୁନି ବୁଢ଼ୀ। ଖାଇବୁ ଆଉ ପହାରେ !

ବାଉଁଶ ଠେଙ୍ଗା। ୮୦ବର୍ଷର ପାଚିଲା ଆମ୍ବଭଳି ଗୋରା ତକତକ ନଇଁବୁଢ଼ୀ। କାନ୍ଧ ଫାଟି ରକ୍ତ ଝରୁଚି। ଲୋକଟା ଶାଶୁଙ୍କର ଚିହ୍ନା। ତାଙ୍କରି ପ୍ରଜା। ଶାଶୁଙ୍କ ଆଖିରୁ ପାଣି ଝରୁଥିଲା। ଯନ୍ତ୍ରଣା କାତର କଣ୍ଠରେ ଲୋକଟାକୁ କହିଲେ - ତତେ ମଣିଷ ଚିହ୍ନା ପଡୁନି କିରେ ମୋଟିରାମ ! ଏଇ ୮୦ବର୍ଷର ବୁଢ଼ୀ ଉପରକୁ ଯୋଉ ହାତ ଉଠେଇଲୁ ସେଇ ହାତରେ ତୋର କୁଷ୍ଠ ହୋଇଯାଉ - ପୋକ ପଡ଼ିଯାଉ।

ଚାନ୍ଦ କାମତୁଣୀ ଶାଶୁଙ୍କୁ ଘୋଷାଡ଼ି ଆଣୁଆଣୁ ପାଟି କରୁଥିଲା - ବୁଢ଼ୀକି କହୁଚି ପଳେଇ ଆ - ପଳେଇ ଆ - ସେ କିସ ଶୁଣୁଚି !

ଶାଶୁ ଯନ୍ତ୍ରଣାରେ ଚିତ୍କାର କରି ଉଠୁଥିଲେ !

ସାଙ୍ଗେସାଙ୍ଗେ ପୁତୁରାବୋହୂ ଗରମ ପାଣିରେ ଲୁଣ ପକାଇ ସେକ ଦେଇଥିଲେ। କିନ୍ତୁ ଆଶ୍ଚର୍ଯ୍ୟ। ପରବର୍ତ୍ତୀ କାଳରେ ମୋଟିରାମକୁ କୁଷ୍ଠ ହୋଇଥିଲା ଏବଂ ପୋକ ପଡ଼ିବା ପରେ ତାର ମୃତ୍ୟୁ ହୋଇଥିଲା। ଅଭିଶାପ ଫଳି ଯାଇଥିଲା।

ମେଳିଆମାନେ ସେମିତି କୁଆ କିଲିକିଲି ମାରି, ଡ଼ିଆଁ ମାରି, କୁଦା ମାରି ଘର ଚାରିପଟେ କେତେ ପେଞ୍ଚା ବୁଲିଗଲେ। ସର୍ଦ୍ଦାରକୁ ଖୋଜି ଲାଗିଲେ। ପାଇଲେନି। ନେତେୟା ! ନେତେୟା ! (ନାହିଁ ନାହିଁ) କହି କୁହାଟିଲେ। ଚିଲ୍ଲେଇଲେ। ସ୍ୱାମୀ ବଡ଼ ଜଣେ ଚାଷୀ ଥିଲେ। ଉତ୍କୃଷ୍ଟ ଆମଦାନୀ ଓ ଭଲ ଚାଷ ସକାଶେ ଏକ୍‌ଜିବେସନ୍ ବେଳେ ମହାରାଜାଙ୍କଠାରୁ ପ୍ରତିବର୍ଷ ସାର୍ଟିଫିକେଟ୍ ଓ ପୁରସ୍କାର ହାସଲ କରୁଥିଲେ। ଆଟୁ ଭର୍ତ୍ତି ମହଣ ମହଣ ଆଳୁ ବିହନ, ଧାଡ଼ିକି ଧାଡ଼ି ଗୁଡ଼ ମାଠିଆମାନ ଥୁଆ ହୋଇଥିଲା। ତିନି ଗୋଡ଼ିଆ ଭଲ କ୍ୟାମେରାଟାଏ ଥିଲା। ମେଳିଆ କିସ ଖାଇଲେ, କେତେ ବୋହିଲେ, ଭାଙ୍ଗିଲେ ବା କୂଅରେ ପକାଇଲେ ତାର କିସ ହିସାବ ଅଛି ! ପୁଣି ହଣ୍ଡା ହାଣ୍ଡି, ମୋ ସଉତୁଣୀଙ୍କ ଗହଣା ଗାଣ୍ଠି ପିଟି ଚେପା କରି ଛିନ୍ ଛତର କରି ଫୋପାଡ଼ିଲେ। ତାପରେ ଆମର ପଦମପୁରୀ ପୁରବନ୍ଦୀ ଚାଳଘରର ଚାରି କୋଣରେ ନିଆଁହୁଳା ଠେକେଇଲେ।

ଦଣ୍ଡକରେ ଘର ହୁ ହୁ ଜଳିଲା। ବାଉଁଶ ଠୋ ଠା ଫୁଟିଲା। ଅଞ୍ଚଳଟା କଳା ଘୁମର ଧୂଆଁରେ ଛାଇ ହୋଇଗଲା। ସେତେବେଳେ ଦଳେ ମେଳିଆ ଆମେ ଥିବା ପଡ଼ିଶା ଘରକୁ ମାଡ଼ି ଆସି, ସ୍ୱାମୀଙ୍କ ମାମୁଁ ପୁଅ ଭାଇଙ୍କୁ କହିଲେ – ଏ କବିରାଜ ବୁଢ଼ା ! ଏ ପିତଳ ହଣ୍ଡାଟାକେ ନେଇକରି ଦଶଟା ଟଙ୍କା ଦେ – ପୁଣି, ସର୍ଦ୍ଦାର ପରା ନୂଆରେ ବାହା ହେଇଚି – ତାର ପୁଅ ମାଏପକୁ ଆମକୁ ଦେଇପକା।

ଦେଢ଼ଶୁର ବହୁତ ନେହୁରା ହୋଇଥିଲେ – ମତେ ପଛେ ମାର। ସେମାନଙ୍କର କିଛି କ୍ଷତି କରନା।

ପୁଣି କବିରାଜ ତ ! ସେମାନଙ୍କୁ କେତେବେଳେ ଚେରମୂଳିକା ଦେଇଥିବେ। ସୁସ୍ଥ କରିଥିବେ। ସେଇଆ ହୁଏ ତ କହିଥିବେ। ଲୋକଗୁଡ଼ା କିନ୍ତୁ କବିରାଜଙ୍କ କଥାରେ ବୁଝିଗଲେ। ତଥାପି ଯିବା ଆଗରୁ ହଣ୍ଡା ବଦଳରେ ଦଶଟା ଟଙ୍କା ନେଇଗଲେ। ନେତେୟା, ନେତେୟା କାଟିକରି, କୁଆ କିଲିକିଲି ସହ ନାଚି ଡ଼େଇଁ କୁଦାମାରି ସଦଳ ବଳ ଗାଁଆରୁ ବାହାରି ଚାଲିଲେ, ହୁଏତ ଆଉ କେଉଁ ସର୍ଦ୍ଦାର ଜାଗିରଦାର ଘରକୁ ଯିଏ ତାଙ୍କ କଥା ମାନିନାହିଁ।

ମହାରାଜାଙ୍କ ବିରୁଦ୍ଧରେ ଏ ମେଳି କିସ ପାଇଁ ହୋଇଥିଲା ମୋତେ ଜଣା ନାହିଁ। ଆଦିବାସୀ ନିୟମ ଅନୁସାରେ ପୂର୍ବରୁ ତାଙ୍କ ସହିତ ମିଶିବା ପାଇଁ କୁଟାରେ ଗୋଟେ ଗଣ୍ଠି ପକାଇ ଜଣେ ଲୋକ ହାତରେ ଆମ ଘରକୁ ପଠାଇଥିଲେ। ସେଇଟା ରଖିଦେଲେ ତାଙ୍କର ସପକ୍ଷ, ଫେରାଇ ଦେଲେ ତାଙ୍କର ବିପକ୍ଷ ବୁଝିବାକୁ ହେବ। ଗଣ୍ଠି ଆସିବା ବେଳକୁ ଘରେ ମୋ ସ୍ୱାମୀ ନ ଥିଲେ। ଘରେ କିଏ ତାଙ୍କର ପୁତୁରା ଜଣେ ଥିଲେ। ମେଳିଆଙ୍କ ପ୍ରସ୍ତାବକୁ ସେ ଅଗ୍ରାହ୍ୟ କରିଥିଲେ, ତତ୍‌ସହିତ କୁଟା ବାହକକୁ ଗାଳି ଦେଇ, ଗଣ୍ଠି କୁଟାରେ ପରିସ୍ରା କରି ତାଙ୍କୁ ୱାପସ କରିଥିଲେ। ଏଇ ଘଟଣା ମେଳିଆଙ୍କୁ ବହୁତ ଉତ୍ତେଜିତ କରିଥିଲା।

ଅଳ୍ପଦିନରେ ମହାରାଜା ସାହେବ ଇଂରେଜ ସରକାରଙ୍କ ଠାରୁ ମଗେଇଥିବା ସୈନ୍ୟ ସାହାଯ୍ୟ ପହଞ୍ଚିଗଲା। ମେଳି ଦମନ କରାଗଲା। ମେଳି ନେତାରୁ କେହି କେହି ଆଜୀବନ ଅର୍ଥାତ୍ ଚଉଦବର୍ଷ ଜେଲ୍‌ଦଣ୍ଡ ଭୋଗିଲେ, କେତେ ଗୁଳିରେ ମଲେ ଅବା କଳାପାଣି – ଆଣ୍ଡାମାନକୁ ରମାନା ହେଲେ। ପୁଣି ସେଇ ପ୍ରଜାମାନେ ଆସି ବେଠିରେ ସେମାନେ ପୋଡ଼ିଥିବା ଘର ସଜାଡ଼ି ମରାମତି କରି ବନେଇ ଦେଇ ଗଲେ। ମାତ୍ର ସେସବୁ ପଛକଥା।

କକା ମାଜିଷ୍ଟ୍ରେଟ। ସେଦିନ କିନ୍ତୁ କଚେରୀରୁ ଖବର ପାଇଗଲେ କି,

ମେଳିଆମାନେ ଦୁର୍ଗାପୁର ସର୍ଦ୍ଦାର ଘର ପୋଡ଼ି ଦେଇଛନ୍ତି । ସମସ୍ତ ପରିବାରକୁ ମାରି ଦେଇଛନ୍ତି । ଆରେ, ମୋ ବଂଶ ବୁଡ଼ିଗଲେ ! ଚିନ୍ତାରେ, ଆଉ ଗୋଡ଼ ହାତ ଧୋଇବେ କିସ ! ଖାଇବେ କିସ ! ସାଙ୍ଗେ ସାଙ୍ଗେ ତାଙ୍କ ଧଳାଘୋଡ଼ାରେ ଚଢ଼ି ବାହାରି ପଡ଼ିଲେ । ଆସିବା ବେଳେ ଜଣେ କାହାକୁ ଗୋଟେ କାର୍ ସହ ଅତି ଶୀଘ୍ର ଆସି ଦୁର୍ଗାପୁର ଗାଁରେ ପହଞ୍ଚିବାର ବରାଦ କରି ଆସିଲେ । କକା ପହଞ୍ଚିଗଲେ । ସମସ୍ତଙ୍କୁ ଜୀବନ୍ତ ଦେଖି ସ୍ୱସ୍ତିରେ ନିଃଶ୍ୱାସ ମାରିଲେ । କାର୍ ମଧ୍ୟ ପହଞ୍ଚିଗଲା । ଆମେ ଫେରି ଆସିଲୁ ପୁଣି ଆମର ଛୋଟିଆ ସହରଟାକୁ ।

ମାତ୍ର ସେଦିନର ସେ ରୋମାଞ୍ଚକର ଅନୁଭୂତି, ଭାଇ ଭଉଣୀମାନଙ୍କର କାନ୍ଦଣା ଭିତରେ ସେ ଅନୁଭୂତିର ଭୟରେ ବିଚିତ୍ର ଅନୁଭବ ଏବେ ବି ମୋ ଛାତିରେ, ମୋ ସାଥିରେ ରହିଛି । ଜୀବନ ଥିବା ଯାକେ କେଭେ କ'ଣ ଲିଭିବ ? ଲିଭି ପାରିବ ?

ଶାଶୁଘରକୁ ଆସିବା ପୂର୍ବରୁ ମୁଁ ଗୋଟିଏ ବର୍ଷ କଟକରେ ରେଭେନ୍ସା ବାଳିକା ବିଦ୍ୟାଳୟରେ ପଢ଼ିବାର ସୁଯୋଗ ପାଇଥିଲି । ହଷ୍ଟେଲରେ ରହିଥିଲି । ସୁବିଧାଟା ମୋତେ ସ୍ୱାମୀଙ୍କ ତରଫରୁ ମିଳିଥିଲା । ସ୍ୱାମୀଙ୍କର ପ୍ରଥମ ପତ୍ନୀ ଆତ୍ମହତ୍ୟା କରି ମରିଥିଲେ । ସ୍ୱାମୀ ସବୁବେଳେ ଅସ୍ଥିର ଚିତ୍ତ ରହୁଥିଲେ । ଭାରତର ସକଳ ତୀର୍ଥ ପର୍ଯ୍ୟଟନ କରି ସମୟ କାଟୁଥିଲେ । ଶାଶୁଘରକୁ ପହିଲି ମୁଁ ଆସିଲି ମୋତେ ଚଉଦବର୍ଷ ବୟସରେ । ଆସୁ ଆସୁ ଅଶୀ ବର୍ଷ ବୟସରୁ ଊର୍ଦ୍ଧ୍ୱ ଶାଶୁ, ଦଶବର୍ଷର ପୁଅ ଓ ଛୋଟ ଝିଅ ସହ ସକଳ ଦାୟିତ୍ୱ ଆସି ପଡ଼ିଲା ମୋରି ମଥାରେ । କକା ଖୁଡ଼ୀ ପୁରୁଣା ବାକ୍ସଟିରେ ଦି ଚାରିଖଣ୍ଡ ନୂଆ ପୁରୁଣା ଲୁଗା ଦେଇ ବିଦା କରିଥିଲେ ମୋତେ ପୁଆଣି ବେଳେ । ମୋ ମାଆର ଛ ଭରିଆ ତାବିଜ, ସାତ ନହରିଆ ସୁନାହାର ବା ଅନ୍ୟ ଅଳଙ୍କାର କିଛି ଆଉ ଦେବାର ଆବଶ୍ୟକତା ପଡ଼ି ନଥିଲା । ତଥାପି ଛୁଆ ବେଳରୁ ଦେଢ଼ଭରିଆ ସୁନାହାରଟିଏ ଥିଲା ମୋ ବେକରେ । ପରେ ଅବଶ୍ୟ ସବୁ ଗହଣା ମୁଁ ଗଢ଼ିଥିଲି । ମୋ ସ୍ୱାମୀ କରି ଦେଇଥିଲେ ।

ମହାରାଜାଙ୍କ ଜନ୍ମଦିନ ଆମ ସହରରେ ଖୁବ୍ ଧୁମ୍‌ଧାମ୍‌ରେ ପାଳନ ହୁଏ । ପ୍ରଦର୍ଶନୀ ହୁଏ । ବାହାର ବାହାର ସହର ମାନଙ୍କରୁ କେତେ ସୁନ୍ଦର ଜିନିଷମାନ ଆସି ବିକ୍ରି ହୁଏ । ରାଜାଘର କାମତୁଣୀମାନେ ବନାରସୀ ଶାଢ଼ୀ ପିନ୍ଧନ୍ତି । ସାନ ଭଉଣୀ ଜେମା କାହା ସାଙ୍ଗେ ଯାଇଥିଲା ଦେଖିବାକୁ । ଫେରିଆସି ଖୁଡ଼ୀକୁ କହିଲା,

-ଖୁଡ଼ୀ ! ମତେ ତୁ ରାଜାଘର କାମତୁଣୀ କରି ଦେ ।

- କିଲୋ କାହିଁକି ?

– ଦେଖୁନୁ – ସେମାନେ କେମିତି ଲୁଗା ପିନ୍ଧିଛନ୍ତି ! ମୁଁ ବି ସେଇ ଲୁଗା ପିନ୍ଧିବି।

ଖୁଡ଼ୀ କକାଙ୍କୁ କହିବାରେ କକା ତା ବିଭାଘରରେ ତାକୁ ଗୋଟେ ବନାରସୀ ପାଟ ଦେଇଥିଲେ।

ହୋମ ପରେ ମତେ କିଏ ଆଣି ବାସର ଘରେ ଛାଡ଼ି ଯାଇଥିଲା ମନେ ନାହିଁ। ସ୍ୱାମୀ ଠିଆ ହୋଇଥିଲେ। ଗୋଡ଼ତଳେ ପଡ଼ିଥିଲି। ସେ କବାଟ କିଳିଲେ। ମତେ ପାଖକୁ ନେଲେ। ଦୁଇ ହାତରେ ମୋ ମୁହଁକୁ ଟୋଳି ଧରିଲେ। ନିର୍ନିମେଷ ନୟନରେ ଘଡ଼ିଏ ଅନାଇ ରହିଲେ। ଛଳ ଛଳ ଆଖି ଥର ଥର ଓଠ। ଅସ୍ପଷ୍ଟ ଧୀର କଣ୍ଠରେ କହିଲେ – ତୁମେ କେତେ ସୁନ୍ଦର। କେତେ ଭଲ ଜାଗାରେ ପଡ଼ି ଥାଆନ୍ତ। ତୁମକୁ ଉଠାଇ ଆଣି ମୁଁ ଉଚିତ୍ କାମ କରିନି। କିନ୍ତୁ କିସ ବା କରି ଥାଆନ୍ତି କୁହ ! ବୁଢ଼ୀ ମାଆ, ସାନ ସାନ ଯୋଡ଼ିଏ ପିଲା। କିସ ଆଉ ଉପାୟ ଥିଲା ମୋର ! ତୁମକୁ ନ ହେଲେ ବି ଯାହାକୁ ହେଲେ ତୁମ ଜାଗାରେ ମତେ ଆଣିବାକୁ ପଡ଼ି ଥାଆନ୍ତା। ତାପରେ ତାଙ୍କର ପ୍ରଥମା ସ୍ତ୍ରୀଙ୍କ କଥା, ସ୍ତ୍ରୀଙ୍କର ଓ ତାଙ୍କ ଭାଉଜଙ୍କର ସବୁଦିନିଆ କଳିକଜିଆ କଥା ବର୍ଣ୍ଣନା କରିଥିଲେ। ଗପିଥିଲେ, ତାଙ୍କ ପ୍ରଥମା ସ୍ତ୍ରୀ କେମିତି ରୂପଗୁଣ ସେବାରେ ସବୁରି ମନ କିଣି ନେଇଥିଲେ। କେବଳ ମାଆ ଛେଉଣ୍ଡିଆ ହୋଇଥିବାରୁ, ମାମୁଁଘରେ ଚାରିମାମୁଁ ସାତ ମାଇଁ (ତିନି ଜଣଙ୍କ ଦୁଇଟା ସ୍ତ୍ରୀ ଏବଂ ଜଣଙ୍କର ଗୋଟିଏ)ଙ୍କର ଅତ୍ୟନ୍ତ ଗେହ୍ଲା ଆଦରରେ ବଢ଼ି ଥିବାରୁ, ବହୁତ ଅଭିମାନିନୀ ଥିଲେ। କାହାରି କଡ଼ା କଥା ସହି ପାରୁନଥିଲେ ଆଦୌ। ସ୍ତ୍ରୀ ରାନ୍ଧିସାରି ରୋଷଘରୁ ବାହାରି ଆସିଲେ, ଭାଉଜ ଯାଇ ସବୁ ତରକାରିରେ ମେଞ୍ଚାମେଞ୍ଚା ଲୁଣ ପକାଇ ଦେଇ ଆସୁଥିଲେ। ଚାଳରେ ଶୁଖୁଥିବା ତାଙ୍କ ଧୁଆଲୁଗାରେ କଳାହାତ ପୋଛି ଦେଇ ଆସୁଥିଲେ। ଯେମିତି ଖାଇଲା ବେଳେ ତରକାରି ଲୁଣିଆ ବୋଲି ତାଙ୍କ ସ୍ତ୍ରୀ ଉପରେ ଗାଳି ପଡ଼ିବ। ପୁଣି ଗାଧୋଇ ସାରି ଲୁଗା ପାଲଟିଲା ବେଳେ ଅପଦସ୍ଥରେ ପଡ଼ିବ। ବାରମ୍ବାର ତିନିଦିନ କଳି ଶୁଣିଶୁଣି ଅତିଷ୍ଠ ହୋଇ ଦୁହିଁଙ୍କୁ ଡାକି ସ୍ୱାମୀ ବିରକ୍ତ ଭରା ମନ୍ତବ୍ୟ କରିଥିଲେ – ଏତେ କଳି କରୁଚ ଯେ, ଗାଁ ଦୁଲୁକୁଚି। ଦୁହିଁଙ୍କ ଭିତରୁ ଜଣେ ମରି ଯାଉନ କାହିଁକି ? କଳି ଛାଡ଼ି ଯାଆନ୍ତା। ଆମେ ଦାଣ୍ଡରେ ଘାଟରେ ଲୋକହସା ହୁଅନ୍ତୁନି। କିସ ? ମରିବାକୁ ଉପାୟ ପାଉନ ? ମୁଁ ବାଟ ବତେଇ ଦଉଚି ଶୁଣ, ଅଫିମ କି ବିଷ ଖାଇଲେ ମରିବ, ଦଉଡ଼ି ଦେଲେ ମରିବ। କୂଅକୁ ଡ଼େଇଁଲେ ମରିବ। ଯା ଭିତରୁ ଗୋଟିକୁ ବାଛି ନିଅ। ଏ ନିତି କଳି ବନ୍ଦ କର ଏଥରକ। ସେଇଦିନ ରାତିରେ ମୋ ସ୍ୱାମୀଙ୍କ ପ୍ରଥମା ସ୍ତ୍ରୀ ବିଷ ଖାଇଥିଲେ।

ଦିନର କାମ ପରେ, ସବୁଦିନର ସଂଜ ପହରଟା ସ୍ୱାମୀ ଭାଗବତଘର ପିଣ୍ଡାରେ

ବସି ସାଙ୍ଗସାଥି ମେଳରେ ତାସ ପାଲି ପକାଇ ସମୟ ବିତାନ୍ତି। ସେ ସନ୍ଧ୍ୟାରେ ବି ତାସ ପାଲି ପଡ଼ିଥିଲା। ସ୍ୱାମୀ କାନ୍ଥକୁ ଆଉଜି ବସିଥିଲେ। ଉଠିବି ଉଠିବି କରୁଥିଲେ। ରାତି ୧୦ଟା ହେବଣି। ହଠାତ୍ ଅନୁଭବ କଲେ ସତେ କି କିଏ ତାଙ୍କ ପିଠିରେ ଶକତ ବିଧାଏ ବସାଇଲା। ପଛକୁ ଫେରି ଚମକି ଚାହିଁଲେ। କିନ୍ତୁ କେହି ନାହିଁ। କାନ୍ଥଟା କେବଳ ଛିଡ଼ା ହୋଇଚି। ଆଉ ଖେଳିବାକୁ ମନ ହେଲାନି ଉଠି ଆସିଲେ। ଘରକୁ ମୁହାଁଇଲେ। ସେଇଟା ଭାଦ୍ରଅ ମାସ। ଅସରାଏ ବରଷା କଚାଡ଼ି ଦେଇ ଗଲାଣି। ଚାନ୍ଦ ବାଦଲର ଲୁଚକାଳି ଖେଳ ଚାଲିଛି। ତାଳ ପିଠା ବେଳ। ସ୍ତ୍ରୀ ବଢ଼ିଆ ତାଳପିଠା କରନ୍ତି। ଖାଇ ବସିଲେ। ସ୍ତ୍ରୀ ମରାକ୍ଷୀର, ତାଳ କାକରା ବଡ଼ା ସାଙ୍ଗକୁ ସନ୍ତୁଳା ବାଢ଼ି ଦେଲେ। ଅନ୍ୟଦିନ ଭଳି, "ଆଉ ଦେବି କି? ପିଠା ଭଲ ହେଇଚି କି?" ନ ପଚାରି କହି ବସିଲେ,

– ଟିକେ ସହଳ ଖାଇନିଅ।

ସ୍ୱାମୀ ତାଙ୍କ ମୁହଁକୁ ଚାହିଁଲେ। ଲୁହ ଡବଡବ ଆଖି। ତୋଫା ମୁହଁଟା ରଙ୍ଗା ପଡ଼ିଚି। ହଠାତ୍ ତାଙ୍କ ମନକୁ ପାପ ଛୁଇଁଲା। ଖାଇବାରୁ ଉଠି ପଡ଼ିଲେ। ମାଆ ବୁଢ଼ୀ ପ୍ରତିଦିନ ଅଫିମ ଖାଆନ୍ତି। ସେଇଦିନ ସକାଳେ ପାଇକ ତାଙ୍କୁ ଭରିଏ ଅଫିମ ଆଣି ଦେଇଚି। ସିଧା ଯାଇ ମାଆଙ୍କ ଅଫିମ ଗୁଟୁଳାଟି ମାଗିଲେ। ଦେଖିଲେ କରାଟଟା ଶୂନ୍ୟ।

ସିଏ ଅଫିମ ଖାଇଥିବା ଜଣା ପଡ଼ିଗଲା। ରାତିସାରା ତାଙ୍କୁ ଶୋଇବାକୁ ନ ଦେଇ ଧରି ଧରି ଚଲାଇବାରେ, ପୁଣି ପାଣି ପିଆଇ ବାରମ୍ବାର ବାନ୍ତି କରାଇବାରେ, ଅନିଦ୍ରାରେ ରାତି ପାହିଗଲା। କିନ୍ତୁ ସେ ବଞ୍ଚିଗଲେ।

ତା ପରେ, ପୁଅ ଝିଅର ମାଆ ହେଲେ। ସବୁ ଠିକ୍ ଚାଲିଥିଲା। ସେତେବେଳେ ପୁଅକୁ ୯ବର୍ଷ, ଝିଅକୁ ୩ମାସ। ପୁଅର ପାଠ ପଢ଼ା ନେଇ ଅଶାନ୍ତି ହେଲା। ସେଦିନ ପୁଅ ହଷ୍ଟେଲରୁ ପଳାଇ ଆସିବାରେ ବାପା ତାକୁ ଚାପୁଡ଼େ ପିଟି, ଦଣ୍ଡସ୍ୱରୂପ ଖରାରେ ଠିଆ କରିଦେଲେ। ମାଆ ପୁଅର ତରଫଦାରୀ କଲେ। ଏଇ କଥାରେ ବଚସା ବଢ଼ିବାରୁ ବିରକ୍ତିରେ ସ୍ୱାମୀ ଯାଇ ଦାଣ୍ଡଘରେ ଶୋଇଲେ। ବାହାରକୁ ଯାଉଚି କହି ତିନିମାସର ଝିଅକୁ ଶାଶୁଙ୍କ ପାଖରେ ଶୁଆଇ, ପୁଣି ଶାଶୁଙ୍କ କରାଟରୁ ଅଫିମ ନେଇ ଖାଇଲେ। ଝିଅକୁ ହୁଏତ ଟୋପାଏ ଚଟେଇ ଦେଇଥିବେ। ନଚେତ୍ ସିଏ ଭୋର ଯାକ ନିଘୋଡ଼ ନିଦରେ ଶୋଇଲା କେମିତି !

ସେତେବେଳକୁ ଫର୍ଚ୍ଚା ହୋଇ ଆସିଲାଣି। ଝିଅର କାନ୍ଦରେ ବୁଢ଼ୀଙ୍କର ନିଦ ଭାଙ୍ଗି ଗଲାଣି। ଅଫିମ ନିଶା ବି ଛାଡ଼ି ଆସିଲାଣି। ଉଠି ପଡ଼ି ଶବ୍ଦ ହାଉଳା ଖାଇ ପୁଅକୁ

ଡ଼କା ପାରିଲେ – ଦଉଡ଼ି ଆରେ ବାବୁ ! ମୋ ଘର ବୁଡ଼େଇ ଦେଲାରେ ! ସବୁ ସାରି ଦେଲା ରେ ! ମୁଁ କି କରିବି ଟି !

ଡାକଶୁଣି ସ୍ୱାମୀ ତରବରରେ ଉଠି ଆସିଲେ । ସ୍ତ୍ରୀ ରୋଷେଇ ଘର କବାଟ ମାରି ଶୋଇଥିଲେ ବିଷ ଖାଇ । ଭିତର ଆଡୁ ଗଁ ଗଁ ଆୱାଜ ଆସୁଥିଲା । ଦଣ୍ଡକରେ ଲୋକ ଲଗାଇ କବାଟ ତଡ଼ା ଗଲା, ଭଙ୍ଗା ଗଲା । ମଶିଣା ପକାଇ ଟେକି ଆଣି ଅଗଣାରେ ଶୁଆଇ ଦିଆଗଲା । କିନ୍ତୁ କିଛି ଆଉ କରିବାର ନଥିଲା । ଅଳ୍ପ ସମୟ ମଧ୍ୟରେ ସବୁ ସରିଗଲା । ଅପମାନରେ ମୁହଁ ନାଲି । ମୁଣ୍ଡ ପୋତି ବସି ରହି ଥାଆନ୍ତି ରଜାଘରର ଜାଗିରଦାର ସରଦାର । ସେଇ ବ୍ୟସ୍ତତା ଭିତରେ ଲୋକ ପଠାଇ ଥାନାରୁ ପୁଲିସ ହାକିମକୁ ଡ଼କାଇ ପଠାଇଥିଲେ । ସବୁ ସତ ସତ କହିଥିଲେ । ହାକିମ ଶବ ଦେଖିଲେ । କିନ୍ତୁ ପୋଷ୍ଟମର୍ଟମ କରିବାକୁ ନ କହି ଦାହ କରିବାକୁ ଅନୁମତି ଦେଇ ଫେରିଗଲେ ।

ସ୍ୱାମୀଙ୍କୁ ଚାହିଁ ହଠାତ୍ ମୁଁ କହି ପକାଇଲି – ଯାହା ବି ହୋଇଯାଉ, ଯେତେ ବି ଗାଳି ଦିଅ । ମୁଁ ଏତେ ଦୁର୍ବଳମନା ନୁହଁ । ମୋର ଛୁଆପିଲା ଛାଡ଼ି କେଭେ ମୁଁ ମରିବିନି । ଆତ୍ମହତ୍ୟା କରିବିନି ।

ସେତେବେଳେ ମୋର ଛୁଆପିଲା ହୋଇ ନଥିଲେ । ସ୍ୱାମୀ ମତେ କରୁଣ ଆଖିରେ ଚାହିଁଥିଲେ । ହସିଥିଲେ । ମୁଁ ଲାଜେଇ ଯାଇଥିଲି ।

ତା ପରେ ମୁଁ ସ୍ୱାମୀଙ୍କର ଜଖମର ମଲମ ହେବାକୁ ଚେଷ୍ଟା କଲି । ତାଙ୍କ ବଡ଼ ପୁଅର ମନ ଜାଣି ଖାଇବା ବନେଇଲି । ଭାବିଲି ସବୁ ସାବତ ମାଆ କୈକେୟୀ ହେବେନି । ଅନ୍ତତଃ ମୁଁ ତ କାଦାପି ହେବିନି । ମାଆ ଛେଉଣ୍ଡ ଝିଅଟାର ସକଳ ଜଞ୍ଜାଳ ସହିଲି । ସବୁ କଥାରେ ହଟ । ସବୁ କଥାରେ ଜିଦି ! ବେଳେ ବେଳେ ମୋର ଗୋଟାଏ ହାତକୁ ଧରି କହିବ – ତୋ ହାତକୁ କାମୁଡ଼ିବି ଲୋ ମାଆ ! ତୋ ହାତକୁ କାମୁଡ଼ିବି ! ସେଦିନ ବାଁ ହାତଟାକୁ ତାକୁ କାମୁଡ଼ିବାକୁ ଧରେଇ ଦେଇ ଡାହାଣ ହାତରେ କ'ଣ କାମ କରୁଥିଲି । ବୁଢ଼ା ଗୁମାସ୍ତା କି ଚାକର ତାକୁ ଜବରଦସ୍ତ ଟେକି ନେଇଗଲେ । ତାର ଦୁଇ ହାତକୁ ଗାମୁଛାରେ ବାନ୍ଧି ଦେଲେ ।

ସେ ଚିତ୍କାର କରୁଥଲା – ଆଜି ମୋ ବାପା ଆସନ୍ତୁ – ମୁଁ କହୁଚି । ମୋ ବାପା ଆସନ୍ତୁ ଆଜି ।

ସତକୁ ସତ ତା ବାପା ପହଞ୍ଚିବା ମାତ୍ରେ ନାଲିଶ ହେଲା – ବାପା ! ବାପା ! ଆଜି ମୋ ହାତ ବନ୍ଧା ଯାଇଥିଲା । ତୁମେ ସେମାନଙ୍କୁ ଗାଳି ଦିଅ – ମାର ସେମାନଙ୍କୁ – ତା

ବାପା ସାଙ୍ଗେ ସାଙ୍ଗେ ନକଲି ଧମକ ଦେଇଥିଲେ – କିଏ ସେ ରେ ? କିଏ ସେ ମୋ ଗେହ୍ଲା ଝିଅର ହାତ ବାନ୍ଧିଲା ?

– ଆଜ୍ଞା ସେ ମାଆଙ୍କ ହାତ କାମୁଡୁଥିଲେ ।

ତା ବାପା ପଚାରିଲେ – ତୁ ମାଆର ହାତ କାମୁଡୁଥିଲୁ ସୁନା !

–ହଁ, ହଁ, । କାମୁଡ଼ିବି । ଆହୁରି କାମୁଡ଼ିବି ।

– ଛିଃ ମାଆ ! ତାକୁ କାଖକୁ ଉଠାଇ ନେଇ ତା ବାପା ବୁଝାଇ ଲାଗିଲେ, ମାଆଟା ପରା ! ସୁନାଝିଅମାନେ କାହାକୁ କାମୁଡ଼ନ୍ତି ନାହିଁ । କାମୁଡ଼ିବା ଖରାପ କଥା – ତାକୁ ବୁଝାଉ ବୁଝାଉ ମୋ ଆଡ଼େ ଚାହୁଁଥିଲେ । ସେ ଚାହାଣୀରୁ ସତେ କି କୃତଜ୍ଞତା ଝରି ପଡୁଥିଲା ।

ଏଣିକି ବାହାରେ ବାହାରେ ବୁଲୁଥିବା ମୋର ଅସ୍ଥିର ଚିତ୍ତ ସ୍ୱାମୀ ଘରମୁହାଁ ହେଲେ । ଧୀରେ ଧୀରେ ପକ୍କା ଗୃହସ୍ଥ ବନିଗଲେ । ମୋର ଦୁଇ ପୁଅ ଦୁଇ ଝିଅ ଜନ୍ମିଲେ । ଜମି କିଣାଗଲା । ସହରରେ ଘର ତିଆରି ହେଲା । ସେତେବେଳେ କିସ ଆଜିକା ଭଳି ଟିଭି ରେଡ଼ିଓ ଥିଲା କି ? ନଥିଲା । କିନ୍ତୁ ଯାତ୍ରା ବା ଥିଏଟର ନିଶା ଭଳି ଥିଲା । ମଝିରେ ମଝିରେ ମତେ ମୋ ସ୍ୱାମୀ ଅନ୍ନପୂର୍ଣ୍ଣା ଥିଏଟର ଦେଖାଇବା ପାଇଁ ଗୋରୁଗାଡ଼ିରେ ନେଇ ଯାଉଥିଲେ । ସେ ନିରାମିଷାଶୀ ଥିଲେ କିନ୍ତୁ ମୁଁ ଭଲ ପାଉଥିବାରୁ ବନିଶୀ ପକାଉଥିଲେ, ମାଛ ଧରୁଥିଲେ । ମୋ ପୁଅଟା ଭାରି ସୁନ୍ଦର ହୋଇଥିଲା । ପୂର୍ଣ୍ଣଚନ୍ଦ୍ର ଭଂଜଦେଓ ମହାରାଜ ହଜୁର କେବେ ତା ବାପ କାଖରେ କୋଉଠି ଦେଖିଥିଲେ କେଜାଣି ! ବାରମ୍ବାର ଦେଖିବାକୁ ଆସୁଥିଲେ । ଯେତେବେଳେ ଏ ଆଡ଼ ଗସ୍ତରେ ଆସୁଥିଲେ ମୋ ପୁଅକୁ ନ ଦେଖି ଯାଉ ନଥିଲେ । ପୁଅକୁ ନେଇ ତା ବାପା ଗୋଟାଏ ମଶିଣାରେ ଲଙ୍ଗଳା ଗଡ଼ାଇ ଦେଉଥିଲେ । ସେ କାଳର କୌଣସି ସାଧାରଣ ପ୍ରଜା ଘରକୁ ମହାରାଜା ହଜୁରଙ୍କ ଆସିବା ବିଧି ନିଷେଧ ଥିଲା । ହଜୁର ଦାଣ୍ଡ ଦୁଆରେ ପିଣ୍ଡା ତଳକୁ ଥିବା ପଥର ଉପରେ ଗୋଟାଏ ଗୋଡ଼ ରଖି ଘଣ୍ଟା ଘଣ୍ଟା ଅନାଇ ଦେଖୁଥିଲେ ହସ ! ବେକରେ ସୁନା ଗୋଠ । ଅଣ୍ଟାରେ ଘାମୁଡ଼ି ଲଗା ଅଣ୍ଟା ବିଛା, ହାତରେ ଖଡୁ, କପାଳ ଉପରେ ଖେଳେଇ ହୋଇ ପଡ଼ିଥିବା ଝାମ୍ପୁରୁ ଝାମ୍ପୁରୁ ବାଳ । ଭାରି କଉତୁକିଆ ଦିଶୁଥିଲା । ଗୋରଚନା ଟିକା ଚହଟୁଥିଲା କପାଳରେ ।

ଦୁଃଖର କଥା, ହଜୁରଙ୍କର ଶେଷ ପର୍ଯ୍ୟନ୍ତ କୌଣସି ଛୁଆପିଲା ହୋଇ ନଥିଲା । ମୋ ପୁଅର ବି ଭାଗ୍ୟ ଖରାପ ! ନିଃସନ୍ତାନ ସେଇ ଲୋକପ୍ରିୟ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଂଜଦେଓଙ୍କ ଅକାଳ ମୃତ୍ୟୁ ହୋଇଥିଲା ଏବଂ ତାଙ୍କ ଗାଦୀ ତାଙ୍କ ସାନଭାଇ ମହାରାଜା ପ୍ରତାପଚନ୍ଦ୍ର ଭଂଜଦେଓ ଅଧିକାର କରିଥିଲେ ।

ମୋ ଜେଜେମାଆ ସେତେବେଳକୁ ଆହୁରି ବଂଚିଥିଲା। ମୋ ଘରକୁ ବେଳେବେଳେ ଆସୁଥିଲା। ମୋ ସ୍ୱାମୀଙ୍କୁ ଲୁଚୁଥିଲା। ତାର ନିଜ ସଉତୁଣୀ ତଥା ଜେଜେଙ୍କ କିରସ୍ତାନୀ ସ୍ତ୍ରୀ ସହିତ ତାର ବନ୍ଧୁତାକୁ ଆମେ ଛିଗୁଲି କହୁଥିଲୁ – "ସିଏ ତୋର ଜୀବନ ମାଟି କଲା। ତୋର ଗେରସ୍ତକୁ ଅଧିକାର କଲା। ଆହୁରି ତା ସାଙ୍ଗେ ତୁ ବନ୍ଧୁତା ବାନ୍ଧୁଚୁ ? ତତେ ରାଗ ଲାଗୁନି ! ଖରାପ ଲାଗୁନି !" ଫିସ ଫିସ୍ କଣ୍ଠରେ ଜେଜେମା ଉତ୍ତର ଦେଇଥିଲା – "କି ? ଖରାପ କିଆଁ ଲାଗିବ ? ତୋ ଜେଜେ ଆଣିଲାକୁ ସିଏ ସିନା ଆସିଲା। ତାର କି ଦୋଷ ! ଯେତେହେଲେ ସିଏ ମୋର ଛୋଟ ସଂସ୍କରଣ। ବଡ଼ଟିଏ ହୋଇ ତାକୁ ସଂଖୁଳିବିନି ? ଛୁଆପିଲାଙ୍କ ବାର୍ତ୍ତା ବୁଝିବିନି ? ସେଗୁଡ଼ା ପରା ମୋରି ପିଲା। ନ ହେଲେ ଏବେ ମୋ ପେଟରୁ ଜନମ। କିସ ହେଲା ସେଉଠୁ ?"

ଆଶ୍ଚର୍ଯ୍ୟ ! ମଫସଲ ଗାଁରେ ଜନ୍ମି ବଡ଼ ହୋଇ, ମୂର୍ଖ ବୁଦ୍ଧି, ମୋ ଜେଜେମାଆର ମନଟା ଏତେ ଉଦାର ହେଲା କେମିତି ?

କକା ଖୁଡ଼ୀ ମଝିରେ ମଝିରେ ମୋ ଘରକୁ ଆସୁଥିଲେ। ଆସୁଥିଲେ ତାଙ୍କ ନାତିକୁ, ମୋର ପୁଅକୁ ପ୍ୟାକେଟବାଲା ଠାକୁରପଟା ଅଶରି ପୋଢୁଆଁ କରିବାକୁ, ମାନୁଥିଲେ। ଶାଶୁ, ଦେଢ଼ଶୁର, ବଡ଼ ମାଆ, ପୁତୁରା ଝିଆରୀ, ଭଣଜା ଭାଣିଜୀ ସମସ୍ତେ ମତେ ଭଲ ପାଉଥିଲେ। ବଡ଼ ନଣନ୍ଦ ତାଙ୍କ ବୋହୂ ପୁଅଙ୍କ ଉପରେ ରାଗ କରି ଦେଢ଼କୋଶ ବାଟ ମୂଷାଗଡ଼ିଆ ଗାଁରୁ ଚାଲି ଚାଲି ପଳେଇ ଆସୁଥିଲେ। ଆସି ଥକ୍କା ହୋଇ, ଦାଣ୍ଡ ବାରଣ୍ଡାରେ ପଡ଼ିଥିବା ବେଞ୍ଚ ଉପରେ ବସି ପଡୁଥିଲେ। ନାନୀ ଆସିଲାଣି, ଏକଥା ତାଙ୍କ ଭାଇଙ୍କ ମୁହଁରୁ ଶୁଣି, ପାଣି ଟୁକୁଣା ନେଇ ଯାଉଥିଲି। ଗୋଡ଼ ଧୋଇ କାନିରେ ପୋଛି, ହାତ ଧରି ଘରକୁ ଆଣୁଥିଲି। ସୁକୁସୁକୁ କାନ୍ଦୁଥିଲେ। ବୋହୂର ଅବିଗୁଣ ବଖାଣୁ ଥିଲେ। ପୁଣି ଦଶ ବାରଦିନ ନ ହେଉଣୁ, ନାତି କଥା ମନେପଡୁଛି ବାହାନା କରି ନିଜ ଘରକୁ ବାହୁଡ଼ି ଯିବାକୁ ବାହାରୁଥିଲେ। ସେତେବେଳେ ମୋଠୁ ପଚିଶ ତିରିଶବର୍ଷ ବଡ଼ ନଣନ୍ଦଙ୍କୁ ବାସ୍ନା ଚାଉଳ, ଡ଼ାଲି, ପରିବାପତ୍ର, କଦଳୀ ନଡ଼ିଆ ହେରିକା ଦେଇ ଝିଅବିଦା କରୁଥିଲି। ନୂଆଲୁଗା ସାଙ୍ଗକୁ ପାଞ୍ଚ ଦଶଟଙ୍କା ବି ହାତରେ ଗୁଞ୍ଜି ଦେଉଥିଲି। ତାଙ୍କ ଭାଇଙ୍କୁ ପଚାରୁ ନଥିଲି। କି ପଚାରିବା ଯେ ଆବଶ୍ୟକ ମନେ କରୁ ନଥିଲି। କିନ୍ତୁ ତାଙ୍କ ନାନୀଙ୍କୁ କିଛି ବି ଦେବାର ଦେଖିଲେ ସେ ଖୁସି ହେଉଥିଲେ। ନାନୀ ମୋ କପାଳ ଆଉଁସି ଦେଉଥିଲେ। କହୁଥିଲେ – ମୋ ମାଆ ବି ଏମିତି ସଜାଡ଼ି ଗୁଛେଇ ମତେ ଦିଏନି କେବେ। ତୁ ବୋହୂ କେଡ଼େ ଭଲ ! ଏତେ ଭଲ ପାଇବା ଭିତରେ, ଏତେ ସୁଖ ଭିତରେ ହଜିଲା ଅତୀତକୁ ମନ ଧ୍ୟାନରେ ବି ଖୋଜା ପଡୁ ନଥିଲା ଆଉ।

ପୁଣି ଧାପେ ଗଡ଼ିଗଲା। ହଜୁରଙ୍କର ଦରବାରରେ କଣ ଥିଲା ଯାଇଥିଲେ ସହରକୁ। ସେଇଠି ରକ୍ତଚାପ ହେତୁ ଶିରା ଫାଟି ଯିବାରୁ ବେହୋସ ହୋଇ ପଡ଼ିଲେ। ଲୋକ ଗାଡ଼ି ଆଣି ଆସି ମତେ ବସିଲାଠୁ ଉଠାଇ ନେଇଗଲେ। ବେହୋସ ସ୍ୱାମୀଙ୍କର ହୋସ ଆସିବାରେ ଚେଷ୍ଟା କଲି। ଡ଼ାକ୍ତରଙ୍କର ନିର୍ଦ୍ଦେଶ ଅନୁସାରେ, ଔଷଧ, ଟୋପାଏ ଟୋପାଏ ଫଳରସ, ଗ୍ଲୁକୋଜ ପାଣି ଘଡ଼ି ଦେଖି ପିଆଇଲି। ଜୀବନ ସାଙ୍ଗରେ ପାରୁ ପର୍ଯ୍ୟନ୍ତ ଲଢ଼େଇ କଲି। ରାତି ପରେ ରାତି ଉଜାଗର ହୋଇ ତାଙ୍କ ଗୋଡ଼ ପାଖେ ଜଗି ବସିଲି। ଶେଷକୁ ଜିତିଲି। ମାତ୍ର ଜିତି କରି ବି ହାରିଗଲି। ତାଙ୍କର ବାମ ଅଙ୍ଗଟା ପଡ଼ିଗଲା। ପକ୍ଷାଘାତ ହେଲା। ସ୍ୱାମୀ ଖଣ୍ଡେ କାର୍ କିଣିଥିଲେ, ମୂଲ୍ୟ ଥିଲା ଶହେ ପଚିଶ ଟଙ୍କା। ବିକ୍ରି ହୋଇଗଲା। ଧୀରେ ଧୀରେ ଆମ ଅବସ୍ଥାର ଅବନତି ଘଟିଲା। କାମର ମଣିଷଟା ପଡ଼ି ରହିବାରୁ ଅଭାବ ଆସିଗଲା। ପୁଣି ବର୍ଷ ତିନିଟାରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ହସ୍ତକ୍ଷେପ ଫଳରେ ସର୍ଦ୍ଦାରୀ ଜାଗିରଦାରୀ ହଟାଇ ଦିଆଗଲା। ସିଏ ନ ପାରିବାଠୁ ମଝିଆଁପୁଅ ସରଦାରୀ ବୁଝୁଥିଲା। ପଇସା ଆସୁଥିଲା। ମାତ୍ର ସର୍ଦ୍ଦାରୀ ହଟିଯିବାଟା ମଧ୍ୟ ମୋ ସ୍ୱାମୀଙ୍କୁ ମାନସିକ ସ୍ତରରେ ବଡ଼ ଧକ୍କା ହେଲା। ଏମିତି ପାଞ୍ଚ ଛଅବର୍ଷର ସେବା ଶୁଶ୍ରୂଷା ଔଷଧ ଇଂଜେକ୍ସନ୍ ସବୁକୁ ଅକାରଣ କରିଦେଇ ମାତ୍ର ଗୋଟିଏ ଦିନର ବ୍ରେନ୍ ମ୍ୟାଲେରିଆରେ ସ୍ୱାମୀ ଚାଲିଗଲେ। ଏ ସଂସାରରେ ମୋତେ ଏକୁଟିଆ କରିଗଲେ।

ବୁଝିଗଲି ଇୟେ ମୋର ଶେଷ ଅବସ୍ଥା ଆସିଗଲା। ଆତ୍ମୀୟ ସ୍ୱଜନରୁ କିଏ କେମିତି ମତେ ଛାଡ଼ି ଚାଲି ଗଲେଣି। ବଡ଼ପୁଅ ବାହାରେ ରେଳବାଇ ଚାକିରି କରେ। କହିଲା - ଚାଲ ମାଆ ମୋ ପାଖେ ରହିବ। ସାନପୁଅ ଡାକ୍ତର ହେଲାଣି। କହିଲା - ମାଆ ମୋ ପାଖକୁ ଚାଲ।

ସର୍ଦ୍ଦାରୀ ଯିବା ପରେ ମଝିଆ ଜମିବାଡ଼ି ଦେଖା ଶୁଣା କରୁଥିଲା। ସବୁଆଡ଼େ ଗଲି, ରହିଲି, ଆଇଲି। ସମସ୍ତେ ମୋ ପାଇଁ ତତ୍ପର ହେଲେ। ତଥାପି ସବୁଠି ଆପଣାକୁ କେମିତି ଗୋଟେ ବହକା ବୋଝ ଭଳି ଅନୁଭବ କଲି। ସ୍ୱାମୀଙ୍କ ସାଙ୍ଗେ ଯୋଉ ମାଟିରେ, ଯୋଉ ଘରେ, ଏତେବର୍ଷ କଟାଇଥିଲି ସେଇଠିକି ଫେରି ଆସିଲି। ସେଇଠି ସ୍ଥାୟୀ ହେଲି। ପ୍ରତ୍ୟେକ ମଣିଷର ହୁଏତ ଅନ୍ନଠୁ, ଅର୍ଥଠୁ ଅଧିକ ଆବଶ୍ୟକ ଆପଣାର ସ୍ୱାଧୀନତା। ସ୍ୱାମୀଙ୍କ କହିବା ଅନୁସାରେ ସଂସାର ଗାଡ଼ିର ଯାତ୍ରୀ ଆମେ, ଆପଣା ମୁକାମ ପହଞ୍ଚିଗଲେ ଓହ୍ଲାଇଯିବାକୁ ମୋର ଆହୁରି କେତେ ବାକି ଅଛି କେଜାଣି !

ପୁଅଘରକୁ ଆସିଥିଲି। ପୁଅ ମାଂସ ଆଣିଥିଲା। ନାତି ହଟ କଲା କି - ଗଦିମା (ଜେଜେମା) ! ତୁମେ ଆଜି ମାଂସ ରାନ୍ଧ। ମାଆ ତୁମ ଭଳି ରାନ୍ଧି ଜାଣୁନି।

ବୋହୂ ତା ପୁଅକୁ ଆକଟ କଲା – ଆରେ ବାବୁ ! ଆଜି ପରା ଏକାଦଶୀ। ଗଦିମା କେମିତି ରାନ୍ଧିବେ କହିଲୁ ?

ସାଙ୍ଗେ ସାଙ୍ଗେ ବୋହୂକୁ ବୁଝାଇଲି, ତିଆରିଲି, କହିଲି – ଆଲୋ ମାଆ ! ଅତିବଡ଼ିଙ୍କର ଭାଗବତ ପଢ଼ିନୁ ?

"ଜୀବ ମାରିଣ ଜୀବ ପୋଷେ
ସେ ଜୀବ ବୈକୁଣ୍ଠରେ ବସେ।"

ମୋରି ପିଲାଏ ଖାଇବେ। ତାଙ୍କ ଆତ୍ମା ଯଦି ସନ୍ତୋଷ ହେଲା, ମୁଁ ନ ରାନ୍ଧିବି କାଇଁକି ? ରାନ୍ଧିବାରେ ଖୁଆଇବାରେ ମୋର ଆନନ୍ଦ। ବିକାର ନାହିଁ।

ସେ ଗେହ୍ଲାନାତି ଆଉ ଦିନେ କିସ କରିଚି ନା ସାଙ୍ଗମାନଙ୍କ ସାଙ୍ଗରେ ବାଲେଶ୍ୱରରେ ସେକେଣ୍ଡ ସୋ ସିନେମା ଦେଖି ଫେରିବା ବାଟରେ ହୋଟେଲ୍ ଢାବା ବନ୍ଦ ଦେଖି ବାଟରୁ ପାଞ୍ଚ ମାଇଲ ଭିତରକୁ ପଶିଚି ଆମ ଗାଁକୁ। ଆସି ମୋତେ ଶୋଇଲାଠୁ ଉଠାଇଚି। କହିଚି – କିସ ଗଦିମା ! ଏଇ ସନ୍ଧ୍ୟା ବେଳୁ ଶୋଇ ପଡ଼ିଲଣି ?

ଆଖି ମକଚି ମକଚି ଉଠିଚି ମୁଁ, ଉତ୍ତର କରିଚି – ଆମେ ଏଇ ପଲ୍ଲୀ ଗାଁଆର ଲୋକଗୁଡ଼ା ଟିକେ ସହଳ ସହଳ ଖାଇଦେଇ ଶୋଇପଡୁ।

– ହଉ, ଉଠ ଉଠ। ମୋ ସାଙ୍ଗମାନେ ତୁମ ହାତରନ୍ଧା ଖାଇବାକୁ ପରା ଆସିଛନ୍ତି। ଯାହା ପାରୁଚ ଚଞ୍ଚଳ ରାନ୍ଧିଦେଲେ ଖାଇକରି ଆମେ ଯିବୁ।

ଉଠିଲି। ଚାକର ପିଲାକୁ ଉଠାଇଲି। କୁକୁଡ଼ା ଘରୁ ସେ କୁକୁଡ଼ାଟିଏ କାଢ଼ିଲା। ମାରିଲା। ମସଲା ବାଟିଲା। ଆଉ ଦୁଇଟା ଚୁଲ୍ଲି ଜଳେଇ ଖେଚେଡ଼ି ଆଉ ତରକାରୀ କଲି। ଅଧଘଣ୍ଟାରେ ବାଢ଼ିଦେଲି।

ଖିଆ ସରିଲା। ହାତ ଧୋଇଲା ବେଳକୁ କୁକୁଡ଼ା ରାବିଲାଣି। ଫୁକିଆ ଫୁଟିଲାଣି। ଚକିତ ହେଲି। ପଚାରିଲି – ହଇରେ ବାବୁ ! ମୋତେ ପରା ସଂଜ ବୁଡ଼ିଚି କହିଲୁ ?

ନାତି ଠୋଠୋ ହସିଲା। କହିଲା – କଟକରୁ ଫେରିଲୁ। ବାଲେଶ୍ୱରରେ ସିନେମା ଦେଖିଲୁ। ହୋଟେଲ୍ ଢାବା ସବୁ ବନ୍ଦ। ଏତେ ରାତିରେ ଘରେ ପହଞ୍ଚିଲେ କିଏ ଦବ ଖାଇବାକୁ ! ଗାଳି ଖାଇବା ସାର ! ସେଇଥି ପାଇଁକି ତୁମ ପାଖକୁ ଆସିଲୁ। ହଉ। ଏଥରକ ଯାଅ। ଆଉ ଟିକେ ଶୋଇପଡ଼। ଆମେ ଚାଲିଲୁ।

ନଟଖଟିଆ ଠାକୁରଙ୍କର ଇୟେ ବି ଏକ ପ୍ରକାର ଲୀଳା ଖେଳା !

ଏବେ ମୋ ଦେହରେ କଣ ଗୋଳମାଳ ଧରିଚି। ମତେ ଡ଼ାକ୍ତରଖାନାକୁ ନେଇ ଆସିଛନ୍ତି। ବୋହୂଟା ରାତିଦିନ ଜଗୁଚି। ମୁଁ ଖାଇ ପାରୁନି କିଛି। ବଡ଼ି ସକାଳୁ ଟୋପେ 'ଡ଼ବଲ ସେଭେନ୍' ପିଉଚି। ସାତଟା ବେଳକୁ ପୁଅ ଆଣି ଦେଉଚି ଗୋଟିଏ ସନ୍ଦେଶ, କି ଗୋଟିଏ ପକୋଡ଼ି, ଚାମୁଚେ ଫଳରସ। ଦୁଇ ପହରେ ମୁଁ କହିବା ଅନୁସାରେ ନାତୁଣୀବୋହୂ କଞ୍ଚାମୁଗ ଖେଚେଡ଼ି, ମଟର ପଲଉ, ସାଦା ପଲଉ ସାଙ୍ଗରେ ପୋସ୍ତକ ବାଇଗଣ ଖଟା କି ଆମ୍ବଡ଼ା ଖଟା ଯାହା ବି ପଠାଉଛି ପାଟି ଛୁଉଁଚି। ଯାହା ଯେତେ ଭଲ ହେଲେ ବି ଖାଇ ହେଉନି। ପୁଣି ବଡ଼ ନାତୁଣୀବୋହୂ ନିତି ତିନିଟା ବେଳକୁ ଆଇସକ୍ରିମ୍, ଝିଅ ନାନା ପ୍ରକାର ପିଠା ଆଣି ଦେଉଛନ୍ତି, କିନ୍ତୁ ସବୁ ଚାଖିବା ସାର। ଖାଇ ପାରୁନି କିଛି। ଡାକ୍ତରପୁଅ କହୁଚି – ଏମିତି ହେଲେ ଲୋକଙ୍କୁ କ୍ୟାନ୍ସର ହୋଇଯାଏ ! ମୋର ତ ପହିଲୁ ଚିକିତ୍ସା ଚାଲିଛି ତେଣୁ ହୋଇ ପାରିନି ସିନା। ଦୁଇବର୍ଷ ଚାରିମାସ ହେଲାଣି। ଏ ଦେହରେ କଳ କବଜା କୋଉଠି କେମିତି ବିଗିଡ଼ି ଯାଇଚି ଯେ ବେଳେବେଳେ ଭାରି ଯନ୍ତ୍ରଣା ଭାରି କଷ୍ଟ ହେଉଚି ମତେ।

ଆରେ ତୁମର ସ୍କୁଟର, ଘଣ୍ଟା, ସାଇକେଲ ସବୁର କଳକବଜା ତ ବେଳେ ଅଧେ ବିଗୁଡ଼ିଚି। ଏ ଦେହଟା ବି ଠାକୁର – ତିଆରି ଯନ୍ତ୍ରଟାଏ। ଦିନେ ଅଧେ ବିଗିଡ଼ିବି କି ବିଚିତ୍ର ! ବୁଝାଇ କହିବାରେ ପିଲାମାନେ ଏବେ ମତେ ମୋ ଗାଁଆକୁ ମୋ ଘରକୁ ଘେନି ଆସିଛନ୍ତି। ଏବେ ମୁଁ ମୋର ଗାଁ ଘରେ ରହୁଛି। କେଜାଣି ହୁଏତ ଦିନ ଗଣୁଛି। କେବେ ସରିବ ?

(ପ୍ରିୟ ପାଠିକା, ଏଇ ସତ ଗଳ୍ପର ନାୟିକା ସେଇ କ୍ୟାନ୍ସରରୋଗରେ ୧୯୮୦ ମସିହାରେ ରଥଯାତ୍ରା ଦିନ ଜଗନ୍ନାଥଙ୍କର ହରିହର ବୋଲ ନାଦରେ ରଥରେ ଚଳିବା ସମୟରେ ହିଁ ପ୍ରାଣତ୍ୟାଗ କଲେ।

ଏଇଟା ଗୋଟେ କାହାଣୀ ନୁହେଁ। ଏଇଟା ମୋର ମାତୃପ୍ରତିମା ଶାଶୁଙ୍କ ମୁହଁରୁ ଶୁଣୁଥିବା ଶ୍ରୁତିକଥା ମାତ୍ର !)

*(ସୁନେଲି ସ୍ମୃତିର ସୁରଭି, ପୃଷ୍ଠା ୧୨୬ -୧୪୭)*

* * *

# ମନ୍ଦାକିନୀ ଦାସ

**(୧୯୨୮-୨୦୦୯)**

ମନ୍ଦାକିନୀ ଦାସ ୧ ଏପ୍ରିଲ ୧୯୨୮ ମସିହାରେ ଗଞ୍ଜାମର ଗୋବରାଠାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ବାଞ୍ଛାନିଧି ପଟ୍ଟନାୟକ ଓଡ଼ିଶାର ଜଣେ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ଥିଲେ। ମନ୍ଦାକିନୀ ଦାସ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ ଏବଂ ନିଜ ଉଦ୍ୟମରେ ସଂସ୍କୃତ ଭାଷାରେ ଦକ୍ଷତା ହାସଲ କରିଥିଲେ। ପିଲାଦିନେ ସେ ଜଣେ ଗୁରୁଙ୍କଠାରୁ ଘରେ ଓଡ଼ିଶା ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିଲେ। ସଂଗୀତରେ ତାଙ୍କର ପ୍ରତିଭା ପାଇଁ ତାଙ୍କୁ "ବାଣୀ ବିନୋଦିନୀ" ଆଖ୍ୟା ଦିଆଯାଇଥିଲା। ଗୀତ ଗାଇବା ବ୍ୟତୀତ ସେ କବିତା ଏବଂ ଗୀତ ଲେଖିବାରେ ମଧ୍ୟ ସମୟ ଦେଇଥିଲେ। ତାଙ୍କର ଗୀତଗୁଡ଼ିକ ଆକାଶବାଣୀ, କଟକରେ ଅନେକବାର ପ୍ରସାରିତ ହୋଇଛି। ସେ ୧୯୪୪ ମସିହାରେ କଟକର ଜଣେ ପ୍ରଖ୍ୟାତ ଓକିଲ ନବ କିଶୋର ଦାସଙ୍କୁ ବିବାହ କରିଥିଲେ। ସେ ଚାରି ପୁଅ ଏବଂ ଚାରି ଝିଅଙ୍କର ମାତା ଥିଲେ।

ମନ୍ଦାକିନୀ ଦାସଙ୍କ "ସ୍ମୃତି ସୁରଭି" ୨୦୦୮ରେ ବାଞ୍ଛାନିଧି ସ୍ମୃତି ପ୍ରତିଷ୍ଠାନ ଦ୍ୱାରା ପ୍ରକାଶିତ ହୋଇଥିଲା। ଏଥିରେ ସେ ସେହି ବ୍ୟକ୍ତିମାନଙ୍କର ଚିତ୍ର ଉପସ୍ଥାପନ କରିଛନ୍ତି ଯେଉଁମାନଙ୍କୁ ସେ ଅତି ଭଲ ପାଉଥିଲେ। ଏକ ଫଟୋ ଆଲବମର ପୃଷ୍ଠା ଓଲଟାଇବା ପରି ସେ ବହିରେ ଜଣକ ପରେ ଜଣଙ୍କ କଲମ-ଚିତ୍ର ପ୍ରଦାନ କରିଛନ୍ତି। ଏଥିରେ ନାରୀମାନେ ଆନୁଷ୍ଠାନିକ ଶିକ୍ଷାପ୍ରାପ୍ତ ନହୋଇ ବି ସାଂସ୍କୃତିକ ଅଭିଜ୍ଞତା ବହନ କରୁଥିବା ଜ୍ଞାନସମୃଦ୍ଧ ମଣିଷ ଭାବରେ ସାମନାକୁ ଆସନ୍ତି। ନିମ୍ନ ଉଦ୍ଧୃତାଂଶରେ ତାଙ୍କ ପରିବାର ଲୋକଙ୍କ ଅନୁରୋଧ କ୍ରମେ ତାଙ୍କୁ ଓଡ଼ିଶୀ ଗୀତ ଗାଉଥିବାର ଦେଖାଯାଏ। ଏହା ବ୍ୟତୀତ ସେ ତାଙ୍କ ଦାଦାଙ୍କ ବିଷୟରେ ଲେଖିଛନ୍ତି, ଯାହାଙ୍କର ବୈଷ୍ଣବ ଜୀବନଶୈଳୀ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା।

# କଞ୍ଚାମାଟିର ଗାର, ମୋ ଦଦା ମୋ ଗୁରୁ

କଞ୍ଚାମାଟିରେ ଗାର ଲିଭେନା। ପିଲାଦିନର ଏପରି କେତେ ଘଟଣା ଛୋଟ ବଡ଼ ଥାଏ। ଘଟଣା ସମଷ୍ଟି ହୁଏତ ଜୀବନ। ଏମିତି କେତେ ଘଟଣା ବି ଥାଏ ସେସବୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭୁଲି ହୁଏନା। ସଂଧ୍ୟା ସମୟରେ ଦୂର ଉପବନକୁ ମଲ୍ଲୀ କିମ୍ବା ହେନା ଫୁଲର ମଧୁର ବାସ୍ନା ପବନରେ ଭାସି ଆସି ଦେହ ମନକୁ ସତେଜ ଆଉ ପ୍ରଫୁଲ୍ଲିତ କରିଦିଏ। ପବନରେ ଭାସିଆସି ତୁମକୁ ସ୍ପର୍ଶ ସୁଖ ଦେଇ ଯାଉଥିବା ସୁବାସକୁ କିଏ ଦେଖିଛି ନା ଛୁଇଁଛି ? ଖାଲି ଅନୁଭବ କରିହୁଏ।

ହାରମୋନିଅମ୍ ଶିଖୁଥାଏ ନୂଆ ନୂଆ। ପ୍ରାୟ ଖିଆପିଆ ସରିଗଲେ ଦିନ ଦୁଇଟାରୁ ତିନିଟା ଭିତରେ ନନା ସୂତା କାଟନ୍ତି। ମୁଁ ହାର୍‌ମୋନିୟମ୍ ଧରେ । ପୁରୀଦଦା ମୃଦଙ୍ଗ ଧରି ଗୀତର ଅଭ୍ୟାସ ଆରମ୍ଭ ହୁଏ। ନନାଙ୍କର ବରାଦୀ ଗୀତ ଚମ୍ପୁ 'ଭଙ୍ଗା ଚାହାଁ' ଗୀତ। ମାଆ କହେ ଆସି 'କେଶକୁଞ୍ଜ ଶେଯରେ'- ଗାଇଲୁ। ପିଲାମାଆର 'ନାମ ବୋଇଲୁ ତୁହି ଗୋ।' ବୋଉର ପ୍ରିୟ ଗୀତ- 'ଦୁତୀ କର ଧରି ହରି ବୋଇଲେ କିଶୋରୀ'- 'ଆରେ ନାଉରୀ ଏ ଘାଟରେ ନବାନ୍ଧ ତରୀ'- ଗାଇଲୁ ଝିଅ- ଭୁଲାଦଦା କହନ୍ତି। ସବୁ ସଂଗ୍ରହାଳୟରେ ରଖିଲା ପରି ମୋ ମନ ଭିତରେ ସାଇତା ହୋଇ ରହିଛି। ଦିନ ଥିଲା ବୟସ, ଜଞ୍ଜାଳ, ଭବିଷ୍ୟତ ଚିନ୍ତା କର୍ତ୍ତବ୍ୟ କର୍ମରେ ବ୍ୟତିବ୍ୟସ୍ତ ଜୀବନ ଭିତରେ ଏସବୁ କଥା କେବେ କେମିତି ମନେ ପକାଇବାକୁ ଇଚ୍ଛାହୁଏ ଅବସର ସମୟରେ।

ଆଜି ସେଦିନ ହୁଏତ ପାହାଚ ତଳକୁ ତଳକୁ ହଜିଗଲା ପରି ମାଟିରେ ପୋତି ହୋଇଯାଉଛି। ଏ ବୟସରେ ସବୁକଥା ମନେ ପଡ଼ିବାର ଗୁରୁତ୍ୱ ବେଶି। ସ୍ମୃତି ମନକୁ ସରସ କରି ଶାରୀରିକ ମାନସିକ ଅବସାଦ ଅସହାୟରେ ଭାଙ୍ଗିପଡ଼ିବା ବେଳେ ବହୁତ ସାହାଯ୍ୟ କରି ପିଠି ଥାପୁଡ଼େଇ ଧୈର୍ଯ୍ୟ ଧରିବା ପାଇଁ କହେ। ଏ ବୟସ ଖାଲି ଅପେକ୍ଷାର ଦିନ। ଶୂନ୍ୟ ସାର ସୁଆଁଳିଆ ଜୀବନଟା ସ୍ମୃତିର ଆଶ୍ୱାସନାରେ କିଛିକ୍ଷଣ ପାଇଁ ସତେଜ ସହଜ ହୋଇଉଠେ। ଆଶ୍ଚର୍ଯ୍ୟ କଥା ଏବେ ଖାଲି ମନ ହେଉଛି ମୁଁ ଗୀତ ଗାଆନ୍ତି। ସୁରର ପରଶରେ ପ୍ରତି ମନର ଫୁଲ ଫୁଟାନ୍ତି। ହେଲେ ଅସମ୍ଭବକୁ ସମ୍ଭବ ଭାବିଲେ ପରିହାସର ପାତ୍ର ହେବାକଥା। ତଥାପି ରୋକି ମନକୁ ପାରେନି। ମନ ହେଉଛି ଏମିତି ଗାଉ ଗାଉ କଣ୍ଠର ଗୀତ ନ ସରୁଣୁ ମୁଁ ଶୋଇ ଯାଆନ୍ତି, ଟଳି ପଡ଼ନ୍ତି।

ଦଦା ମୋର ଗୁରୁ। କହୁଥିଲି ନା ମୁଁ ଗୀତ ଗାଇଲେ ଦଦା ମୃଦଙ୍ଗ ଧରନ୍ତି। ପୁରୀ ଦଦା। ଗୋରା ପତଳା ଡେଙ୍ଗା ଚେହେରା। ଥରେ ଦେଖିଲେ ସବୁଦିନେ ମନେ ରହିଲା ପରି ଚେହେରାଟିଏ। ଖୁଡ଼ୀ ମଧ୍ୟ ସେଇପରି। ସୁନ୍ଦରୀ ସରଳା। କଥାବାର୍ତ୍ତା ସୀମିତ,

ବହୁତ ଚୁପ୍‌ଚାପ୍ ସବୁବେଳେ କର୍ମରତା। ଜଣେ ଘରେ ଅଛି ବୋଲି ଜାଣିପାରିବେ ନାହିଁ। ଦଦାଙ୍କ ଝିଅ ଡାକରେ ଅମୃତ ବର୍ଷା ହୁଏ। ମତେ ଭାରି ଭଲ ପାଆନ୍ତି। ସଂପର୍କ ରକ୍ତର, କିନ୍ତୁ ଦଦାଙ୍କ ସହିତ ସଂପର୍କ ବହୁତ ଉଚ୍ଚରେ। ସେ ସଂପର୍କ କିମିତି ଅଙ୍କୁରିତ ହୋଇ ଗଛ ଡାଳରେ ପରିଣତ ହୋଇଥିଲା ତାକୁ ହୁଏତ ଦଦା ଅନୁଭବ କରିପାରିଥିବେ।

ଥରେ ଆମ ଗାଁକୁ ଗୌଡ଼ୀୟ ବୈଷ୍ଣବମାନେ ଆସିଥିଲେ। ଆମ ମେଲାଘରେ ରହୁଥିଲେ। ଭଜନ କୀର୍ତ୍ତନ ମହାମନ୍ତ୍ରପାଠ ହୁଏ। ଦଦା ଗୌଡ଼ୀୟ ଧର୍ମରେ ଦୀକ୍ଷିତ ହେଲେ। ଦଦାଙ୍କ କଣ୍ଠରେ ତୁଳସୀମାଳ, କପାଳରେ ତିଳକ, ତାଙ୍କ ସୁନ୍ଦର ଚେହେରା ଆଉରି ସୁନ୍ଦର ଦେଖାଗଲା। ଧୋତି ପିନ୍ଧା ପରିପାଟୀ, କାନ୍ଧରେ ଚଦର ଦେଖିଲେ ସତେକି ଗୌରାଙ୍ଗଙ୍କ ପ୍ରତିଛବି ଆଖି ଆଗରେ ନାଚିଉଠେ। ମୋ ବୟସ ସେତେବେଳେ ଏମିତି ଆଠଦଶବର୍ଷ ଭିତରେ। ଦଦା ପ୍ରତିଦିନ ରାଧାକୃଷ୍ଣଙ୍କ ଫଟୋ ଓ ଶ୍ରୀଚୈତନ୍ୟ ନିତ୍ୟାନନ୍ଦ ମହାପ୍ରଭୁଙ୍କ ଫଟୋ ପୂଜା କରନ୍ତି। ଧୂପ ନୈବେଦ୍ୟ ଫୁଲମାଳରେ ସବୁବେଳେ ସଜ୍ଜିତ ହୋଇଥାନ୍ତି। ପ୍ରତିଦିନ ସକାଳ ସଂଧ୍ୟାରେ ଦଦା ପୂଜାପାଠ କରନ୍ତି। ମହାମନ୍ତ୍ର ସୁନ୍ଦର ସୁଲଳିତ କଣ୍ଠରେ ଜପ କରନ୍ତି।

ମନେ ଅଛି ଗିନି ଧରି ଗାଆନ୍ତି 'ହରି ହରୟେ ନମୋ କୃଷ୍ଣ ଯାଦବାୟ ନମୋ, ଯାଦବାୟ ମାଧବାୟ କେଶବାୟ ନମୋ' ଇତ୍ୟାଦି। ପ୍ରତିଦିନ ଫୁଲ ଯାହା ପାଏ ଦଦାଙ୍କୁ ଦିଏ। ଦଦା ଖୁସି ହୁଅନ୍ତି। ଜନ୍ମାଷ୍ଟମୀ ଉପବାସ ଦଦା ଖୁଡ଼ୀ ଉଭୟେ କରନ୍ତି। ନନ୍ଦ ଉତ୍ସବ ଦିନ ଭୋଜି ଭାତ ହୁଏ। ଦୁଇଦିନ କୀର୍ତ୍ତନ ମୁଖରିତ ହୋଇଉଠେ ଆମ ଘର।

ପ୍ରାୟ ମାସେ ଦୁଇମାସରେ ଦୁଇତିନିଦିନ ପାଇଁ ନବଦ୍ୱୀପରୁ ବୈଷ୍ଣବ ସାଧୁମାନେ ଆସନ୍ତି। ଗାଁ ଦାଣ୍ଡରେ ଦରି ବିଛଣା ପଡ଼େ। ସାଧୁ ମହାରାଜ ପ୍ରବଚନ ଦିଅନ୍ତି। ଆରମ୍ଭରୁ ଶେଷଯାଏ ମୁଁ ବସି ଶୁଣେ। ମହାମନ୍ତ୍ର କୀର୍ତ୍ତନ ଶୁଣେ। ଧୀରେ ଧୀରେ କ୍ରମେ କ୍ରମେ ତାହା ମୋ ମନକୁ ଗଭୀର ଭାବରେ ସ୍ପର୍ଶ କରିଥିଲା ଯାହାର ସତ୍ତା ମୋ ମାନସିକ ଜଗତକୁ ଆଲୋକରେ ଉଦ୍‌ଭାସିତ କରି ରଖିଛି। ମୁଁ ବି ସେତେବେଳେ ଜାଣିପାରି ନଥିଲି। ବହୁତ କମ୍ ବୟସରେ ମୋ ବିବାହ ହୋଇଗଲା। ସେ ମଧ୍ୟ ଦୈବନିର୍ଦ୍ଦେଶ ବୋଲି ଧରିନେବାକୁ ହେବ। ବିବାହବେଳେ ଝିଅକୁ ଦାନ ଯୌତୁକ ଦିଆଯାଏ। କିଏ କ'ଣ ଦେଇଥିଲେ ସେ ସବୁ କଥା ମନେ ନାହିଁ କି ସେସବୁ ଆଉ ମୋ ପାଖରେ ନାହିଁ, କିନ୍ତୁ ଦଦାଙ୍କ ଠାରୁ ମୁଁ ଯେଉଁ ଦାନ ପାଇଛି ସେ ଦାନର ମୂଲ୍ୟାଙ୍କନ କରିବା ଧୃଷ୍ଟତା ହେବ।

ଏମିତି ତ ମୋ ଜୀବନଯାତ୍ରା ଆରମ୍ଭରୁ ଶ୍ୱାପଦ ସଂକୁଳ। ଘୋର ସଂସାର ଅରଣ୍ୟର ଅଙ୍କାବଙ୍କା କଣ୍ଟକିତ ଅନ୍ଧକାର ରାସ୍ତାକୁ ଅତିକ୍ରମ କରିବାକୁ ଦଦାଙ୍କ ଅପୂର୍ବ ମଣିଦୀପଟି ମୋ ଅନ୍ତର ମଧ୍ୟରେ ସଦା ଦେଦୀପ୍ୟମାନ। ସେଇ ଆଲୋକରେ ମୁଁ ସମସ୍ତ ବାଧାବିଘ୍ନ ବିପଦଆପଦ ପୂର୍ଣ୍ଣ ଅନ୍ଧକାର ରାସ୍ତା ଅତିକ୍ରମ କରି ଏବେ ଯାତ୍ରାର ଶେଷ ସ୍ଥାନରେ ହେବା ଉପରେ ପହଞ୍ଚିଛି।

ସେଥିପାଇଁ କହୁଛି କଞ୍ଚାମାଟିରେ ଗାର କାଟିଦେଇ ଥିଲେ ମୋର ପୁରୀଦଦା। ସେ ମୋର ଗୁରୁ। ଜୀବନର ପ୍ରଥମ ଗୁରୁ।

*("ସ୍ମୃତି ସୁରଭି" ପୃଷ୍ଠା ୨୧-୨୩)*

* * *

# ରମା ଦେବୀ

## (ଜନ୍ମ: ୧୯୨୮)

ରମା ଦେବୀ ୮ ଅଗଷ୍ଟ ୧୯୨୮ ମସିହାରେ ଶ୍ରୀରାମଚନ୍ଦ୍ରପୁର, ପୁରୀରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ନୀଳକଣ୍ଠ ଦାସ ଜଣେ ପ୍ରସିଦ୍ଧ ଓଡ଼ିଆ ଜାତୀୟତାବାଦୀ ନେତା ଥିଲେ। ରମା ଦେବୀ ପୁରୀ ବାସିନ୍ଦା ଦ୍ୱାରକାନାଥ ଦାସଙ୍କୁ ବିବାହ କରିଥିଲେ।

ରମା ଦେବୀ ପୁରୀ ନାରୀ ସେବା ସଂଘ, ଗୌରୀ ଦେବୀ ସେବାଶ୍ରମ, ଜିଲ୍ଲା ଖାଉଟି ସମାଧାନ ମଞ୍ଚ, ପୁରୀ ମହିଳା ବ୍ୟାଙ୍କ, ଜିଲ୍ଲା ରେଡ଼କ୍ରସ୍ ସମିତି, ପୁରୀ ଜିଲ୍ଲା ସାକ୍ଷରତା ସମିତି, ଜିଲ୍ଲା ଶିଶୁ କଲ୍ୟାଣ ସମିତି, ଚିକିତ୍ସାଳୟ ଉନ୍ନୟନ ସମିତି, ଜିଲ୍ଲା ଆଇନ ସହାୟତା ସମିତି ଆଦିରେ ଜଣେ ସଂକଳ୍ପବଦ୍ଧ ନିଷ୍ପାପର ସମାଜ ସେବୀ ଭାବେ କାମ କରିଛନ୍ତି। ତାଙ୍କୁ ଉତ୍କଳ ସାହିତ୍ୟ ସମାଜ, ପୁରୀ ନାରୀ ସେବାସଂଘ, ପ୍ରଗତିଶୀଳ ଯୁବ ସଂଗଠନ ଆଦି ଅନୁଷ୍ଠାନ ତରଫରୁ ସମ୍ମାନିତ କରାଯାଇଛି।

ରମା ଦେବୀଙ୍କ ସ୍ମୃତିଲେଖ "ପର ପଦାର୍ଥ" ୧୯୯୮ ମସିହାରେ ପ୍ରକାଶିତ ହୋଇଥିଲା। ଏହି ସ୍ମୃତିଚାରଣରେ ଦୁଇ ଗ୍ରାମ୍ୟ ନାରୀଙ୍କ ମଧ୍ୟରେ ଥିବା ବନ୍ଧୁତାକୁ ବର୍ଣ୍ଣନା କରାଯାଇଛି; ସେ ଦିହେଁ ପରସ୍ପର ଉପରେ ନିର୍ଭରଶୀଳ ଥିଲେ। ସେ ଦିହିଁଙ୍କ ଭିତରୁ ଜଣେ ବିଧବା ଏବଂ ଅନ୍ୟ ଜଣଙ୍କର ସ୍ୱାମୀ ଜଣେ ବ୍ୟସ୍ତ ସ୍ୱାଧୀନତା ସଂଗ୍ରାମୀ ଥିଲେ। ରମା ଦେବୀଙ୍କ ଆଖିରେ ସେମାନେ ଦିହେଁ ଏକ ଐଶ୍ୱରୀୟ ବନ୍ଧନରେ ବାନ୍ଧି ହୋଇଯାଇଥିଲେ। ସେହି ପଡ଼ୋଶୀ ମାଉସୀଙ୍କ ପାଇଁ ରମା ଦେବୀଙ୍କ ସମ୍ମାନ ଓ ଆଦର ଆତ୍ମଚରିତର ମୁଖ୍ୟ ଆବେଦନ।

"ପର ପଦାର୍ଥ"ର ଭାଷା ଅତ୍ୟନ୍ତ ଗୀତିମୟ ଏବଂ ଓଡ଼ିଆ କଥିତ ଭାଷାର ବୈଚିତ୍ର୍ୟମୟ ଦିଗକୁ ପ୍ରତିଫଳିତ କରେ। ତାଙ୍କ ଛୋଟ ସ୍ମୃତିଲିପି ଏକ ଅନୁରୂପ ପୁରୁଣା

ଜଗତରେ ମଣିଷମାନଙ୍କର ବ୍ୟକ୍ତିଗତ ଜୀବନ ଉପରେ ଗୁରୁତ୍ୱ ଦେବାର ଅନିଚ୍ଛାକୁ ପ୍ରକଟିତ କରେ।

# ପର ପଦାର୍ଥ

ସେଇ ନିଦହଜା ରାତ୍ରିର ଯନ୍ତ୍ରଣା ମୋତେ ଟାଣିନିଏ କାହିଁ କେତେ ଦୂରକୁ। କିଶୋରୀ ମନଟା ଖୋଜିବୁଲେ ଏ ଘର ସେ ଘର। ସଙ୍ଗାତ ଘରେ କେତେବେଳେ ପଶିଯାଏ ତ, କେତେବେଳେ ପୁଣି ପହଞ୍ଚିଯାଏ ବଉଳ ଘରେ। ବାଡ଼ିଆଡ଼େ ଠିଆହୋଇ ଡାକ ପକାଏ, "ଅଶୋକା, ଅଭଡ଼ା, ଆସ ଲୋ; ଗାଧୋଇଯିବା ନଈକି।" ସେଇ ରତ୍ନଚିରା ନଈ ଯାହାର କାଚକେନ୍ଦୁ ପରି ନିର୍ମଳ ପାଣିରେ ସୁନ୍ଦରୀ କଇଁ ଶୀତ ଦିନେ ନିଜର ମୁହଁ ଦେଖୁଥାଏ। ସେଇ ପୁଣି ବର୍ଷାଦିନେ ଗୋଳିଆ ପାଣିରେ ବିଲାତି ଦଳକୁ ଧରି ଘରକରଣାରେ ନିପୁଣା ବୋହୂଟି ପରି ଖରତର ଦଉଡ଼ିଥାଏ। ଆଉ ଖରାଦିନେ ଶୀର୍ଣ୍ଣ କଳେବର। ବୃଦ୍ଧାଟି, ଗ୍ରୀଷ୍ମତାପରୁ ରକ୍ଷା କରିବାକୁ ତାର ସୀମିତ ବକ୍ଷକୁ ମେଲାଇ ଧରିଥାଏ। ଆମପରି ଝିଅମାନଙ୍କର ରତ୍ନଚିରା ସତେ ଯେପରି ସକାଳ ଆଉ ସନ୍ଧ୍ୟାର ଏକ ରଣକ୍ଷେତ୍ର। ତାରି ଶରୀରକୁ ବିଦୀର୍ଣ୍ଣ କରି କ୍ଷତବିକ୍ଷତ କରିବାରେ ଦୁଇ ଓଳିର ଅଧିକାଂଶ ସମୟ କଟିଯାଏ ତାରି କୋଳରେ।

ସେତେବେଳର ମଫସଲି ଝିଅଙ୍କର ନଈକୂଳ ଗୋଟିଏ ଏବର କ୍ଲବ୍ ବା ସମିତି କହିଲେ ଅତ୍ୟୁକ୍ତି ହେବନି। ପୁଣି ରାତ୍ରି ଅନ୍ଧାରର ଯିବା ଆସିବା ବେଳଟା ସନ୍ଧ୍ୟା ଆଉ ପାହାନ୍ତିଆ ଯୁବତୀ ଝିଅ ଆଉ ନୂଆ ବୋହୂମାନଙ୍କର ଗୋଟିଏ ଆକର୍ଷଣୀୟ ବେଳ। ସେତେବେଳ କିଶୋରୀ ଦଳଙ୍କୁ ବୁଢ଼ୀମାନଙ୍କର ତ ଭାରି ରାଗ । ମାଇପି ତୁଠ ବାଦ୍ ନଈରେ ଆଉ ତିନୋଟି ତୁଠଥାଏ। ଭଲ ପଥର ପାହାଚ ପଡ଼ିଥାଏ। ମିଣିପି ତୁଠ, ସବୁଠାରୁ ବଡ଼ିଆ। ସେଥିରେ ସ୍ତ୍ରୀ ଲୋକମାନଙ୍କର ପ୍ରବେଶ ନିଷେଧ। ସେହିପରି ଶୂଦ୍ର ତୁଠ। ସେଥିରେ ନଡ଼ିଆଗଡ଼ି ପଡ଼ିଥିବ। ସେଠାକୁ ସବର୍ଣ୍ଣଙ୍କୁ ଯିବା ମନା। ଅଣତୁଠରେ ଓହ୍ଲାଇବାର କୌଣସି ବ୍ୟବସ୍ଥା ନଥାଏ। ଶୁଦ୍ଧଘର ପରି ଅକ୍ରିୟା କାମଯାକ ଅଣତୁଠରେ ହୁଏ। ତେଣୁ ମାଇପି ତୁଠଟି କିଶୋରୀଠାରୁ ବୁଢ଼ୀ ପର୍ଯ୍ୟନ୍ତ ଆମ ସବୁରି। ବୁଢ଼ୀମାନଙ୍କର କିଶୋରୀ ଦଳଙ୍କ ଉପରେ ଭାରି ବିରକ୍ତ। ଯେଣୁ ମାଇପି ତୁଠରେ ଝିଅଙ୍କର କାରବାର। ଘଣ୍ଟା ଘଣ୍ଟା ଗରା କି ମାଠିଆଟେ ଧରି ଚାଲିଥାଏ। ଖରାଦିନେ ପାଣିରେ ବୁଡ଼ି ବୁଡ଼ି ଦେହକୁ ନନ୍ଦା ପକାଇ ମାଛ ଧରା, କାନି ଖିଅରେ ଧରିଥିବା କୁନି କୁନି ମାଛକୁ ପାଣି ଶିଆଳି ପତ୍ରରେ ପୁଡ଼ାକରି ଘରକୁ ଆଣି ଭାଜି ପଖାଳ ଖାଇବାର ସ୍ୱାଦ ମରିଯାଏ ବୋଉ ଗାଳିରେ। ବୋଉ ରାଗିଯାଇ କହେ, "ଦିନକୁ ଦିନ ବେଶି ଉତ୍ପାତ ହେଉଛୁ ନା, ବୁଢ଼ୀ

ହେଲୁଣି, ସକାଳ ପହରୁ ଗାଧୋଇ ଯାଇ ପାଣିପଙ୍କ ଏକାକାର କରୁଛୁ। ରାଧାମାଆ ମୋତେ ପଡ଼ଚୋଇ ଗଲାଣି । ଫୋପାଡ଼ ସେ ମାଛ।" ଲାଜ ଆଉ ଅପମାନରେ ମାଛ ପୁଡ଼ାଟି ସେଇଠି ଫିଙ୍ଗି ମୁଣ୍ଡପୋତି ଯାଇ ଲୁଗା ପାଲଟି ଆସି ଖାଇ ବସିଲା ବେଳକୁ ମାଉସୀ ବୋଉକୁ ଆଡୁଆଳ କରି କରଚୁଲି ସହିତ ସେହି ମାଛଭଜା ଥୋଇଦିଏ ପଖାଳ ସାଙ୍ଗକୁ। ବୋଉ ଥରେ ମାଛକୁ ଆଉ ଥରେ ମାଉସୀକୁ ଚାହିଁ ଅଳ୍ପ ହସି ଲୁଚେଇ କହିବ, "ତୁ ଏ ଝିଅଟାକୁ ନଷ୍ଟ କରିଦବୁ।" ମାଉସୀ ମୁହଁ ବି ଛଳ ରାଗରେ ଭରପୂର। ମୋ ଆଡ଼େ ଆଖିମାରି କହିବ, "ଆଉ ଦିନେ ଏମିତି କରିବୁନି। ଏମିତି ଅଣ୍ଡିରାଚଣ୍ଡି ହୋଇ ମାଛ ଧରିଲେ ଶାଶୁଘରେ ନାଁ ପଡ଼ିଯିବ।" ପୁଣି ମନ ଭିତରେ ଭାସିଉଠେ କେତେ ଯେ ବାସ୍ତବ କାହାଣୀ। ମୁଁ ମନ ତରାଜୁରେ ଗୋଟି ଗୋଟି ଓଜନ କରେ ସେ କାଳ ଆଉ ଏକାଳ। ସେତେବେଳର ଏମିତି ଗୋଟିଏ ଗୋଟିଏ ଚରିତ୍ର ଯାହା ଆସ୍ତେ ଆସ୍ତେ ବିରଳ ହୋଇଯାଉଛନ୍ତି । ସେଇ ମାଉସୀର ଲେଖା ଯୋଖା ଜାଆ ବିମଳା ମାଉସୀ। ମନେ ପଡ଼ିଯାଏ ବୋଉର ସେଇ ବାଣୀ –

"ଏ ମନ ପାଞ୍ଚୁଥାଇ ଯାହା,
କାଳେ ପ୍ରାପତ ହୁଏ ତାହା।"

ଜଣକୁ ପ୍ରାପ୍ତ ହେଲେ ବି ଆଉ ଜଣକର ଏପରି ଦୁର୍ଦ୍ଦିନ ଭଗବାନଙ୍କ ଛଡ଼ା କେହି ପାଞ୍ଚି ନଥିଲେ। ସେ ଦୁର୍ଭାଗ୍ୟର ଶିକାର ହୋଇ ବିମଳା ଫେରିଥିଲେ ଗାଁକୁ। ଆସନ୍ନା ପ୍ରସବା ପୁଣି କୋଳରେ ତିନୋଟି ପୁଅ ଧରି ବଇଁଶୀ ଦାସଙ୍କ ସ୍ତ୍ରୀ। "ବଇଁଶୀ ଦାସେ" ମାଉସୀର ଜଣେ ସମ୍ପର୍କୀୟ ଦିଅର। ସେ ସଂସ୍କୃତ ପଣ୍ଡିତ ଥିଲେ। ଟିକିଟି ରାଜାଙ୍କ ଅଧୀନରେ ଟୋଲ୍‌ରେ ପାଠ ପଢ଼ାଉଥିଲେ। ପୂର୍ବରୁ ସେ ଓ ତାଙ୍କ ସ୍ତ୍ରୀ ବେଳେବେଳେ ତିନି ପୁଅଙ୍କୁ ଧରି ଗାଁକୁ ଆସନ୍ତି। ସେତେବେଳେ ସାଧାରଣ ସ୍ତ୍ରୀ ଲୋକଙ୍କ ଦେହରେ ସୁନା ଗହଣା ଅତି ସାମାନ୍ୟ ଦେଖାଯାଏ। ବିମଳା କିନ୍ତୁ ଦେହରେ କିଛି ଦେଖିଲା ପରି ସୁନା ଗହଣା ପିନ୍ଧିଥାନ୍ତି। ବେକରେ ରାମାଭିଷେକ ମଉଡ଼ ଲାଗି ଚାପସରି, ହାତରେ ବାଡ଼ିଆ ଖଡୁ, ଡେଣାରେ ତାଉତ, କାନ ନାକ ହେଇ ସେବର ଶସ୍ତା କାଳକୁ ବେଶ୍ କିଛି ଆଖିଦୃଶିଆ ସୁନା ଦେହରେ ଥାଏ। କିନ୍ତୁ କ'ଣ ହେବ? ଭାଗ୍ୟଦେବୀ ବିମୁଖ ହେଲେ ମଣିଷ ବାଟ ଚାଲିବାକୁ ବାଧ୍ୟ ହୁଏ ନିୟତିର ନିର୍ଦ୍ଦେଶରେ।

ଦିନେ ରାଜାଙ୍କର ଜଣେ କର୍ମଚାରୀ ଗର୍ଭିଣୀ ମାଆ ଆଉ ତିନିପୁଅଙ୍କୁ ଆଣି ଗାଁରେ ଛାଡ଼ିଦେଇ ଗଲେ। ଗାଁ ସାରା ଚହଳ ପଡ଼ିଗଲା। ବନ୍ଦ ହୋଇଥିବା ଘରର କୋଲପ ଫିଟିଲା। ଗାଁ ଲୋକ ଜାଣିଲେ ବିମଳା ଦେବୀରୁ, ଦିବ୍ୟା ହୋଇଯାଇଛନ୍ତି।

ବିମଳା ଦିବ୍ୟା ତିନି ପୁଅ ଧରି ସେ ଘରେ ପଶିଲେ। ମନବୋଧ କରି କାନ୍ଦିବାକୁ ସମୟ ମିଳିଲାନି। କୁଟୁମ୍ବଙ୍କ ସହ ଗାଁର ମୁଖିଆ ଆସି ପହଞ୍ଚିଗଲେ। ବିଚାର ହେଲା ଆଗ ଦଶ ଖପରାରୁ ପାର ହେଲେ ପଛେ ଯେଉଁ କଥା । ଚତୁର୍ଥର କ୍ରିୟା ଧରିବାର ବ୍ୟବସ୍ଥା ହେଲା। କାରଣ ଏଡ଼େ ବଡ଼ ପଣ୍ଡିତଙ୍କର ସଜ କ୍ରିୟା ହେବାର ତ ଉପାୟ ନାହିଁ। ଆସିବାକୁ ଦୁଇଦିନ ବିତିଗଲାଣି। ନାରେ ଧରି ଦଶରେ ପକାଇଲେ ପଣ୍ଡିତଙ୍କ ଆତ୍ମା ତୃପ୍ତ ହେବନି। ଗାଁର ତଥାକଥିତ ପଣ୍ଡିତମାନେ ବିଚାର ଦେଲେ। କାହାରି ମନରେ ଚିନ୍ତା ନଥିଲା ଯେ ସେ ପେଟରେ ଥିବା ଆତ୍ମା ମିଶି ଏ ବଡ଼ ପଞ୍ଚଆତ୍ମାଙ୍କ ଅବସ୍ଥା କାଲି କ'ଣ ହେବ। ତେଣୁ ଚତୁର୍ଥ ଦିନ ଦାଣ୍ଡରେ ତିନିଖଣ୍ଡ ଫୋପଡ଼ା ପୋତା ହୋଇ ଘଟଟିଏ ବସିଗଲା। ବଡ଼ ପୁଅକୁ ବୟସ କମ୍ ହୋଇଥିବାରୁ କୁଟୁମ୍ବର ଜଣେ ଭାଇ କ୍ରିୟା ଧରିଲେ। ବିମଳାଙ୍କୁ ପଇସା ପତ୍ର ପଚାରିବାରେ ସେ ରାଜାଙ୍କ ଘରୁ ଯାହା ସମ୍ବଳ ଆଣିଥିଲେ ସେତିକି ସବୁ କାଢ଼ି ଦେଇଦେଲେ। କିନ୍ତୁ ମୁଖିଆଙ୍କ ବରାଦ ମୁତାବକ ସେ ପଇସା କୁଳେଇନି। ବେଙ୍କର ଚାପସରିରୁ ମଉଡ଼ଟି କଢ଼ାହୋଇ ବିକ୍ରି ହୋଇ ଭଲରେ ଭଲରେ ଶୁଦ୍ଧକ୍ରିୟା ସରି ଆସିଲାବେଳକୁ ଦଶଦିନ ସକାଳୁ ପୁଣି କୁଆଁ କୁଆଁ ରଡ଼ିରେ ଘର ଫଟେଇ ବଇଁଶୀ ଦାସେ ପହଞ୍ଚିଗଲେ। ସମସ୍ତେ କହିଲେ, ପଣ୍ଡିତେ ସର୍ପାଘାତରେ ଯାଇଥିଲେ ତ, ଘର ଲୋଭ ଛାଡ଼ିନି, ପୁଣି ପୁଅ ରୂପରେ ଲେଉଟି ଆସିଲେ । ଏତେ କଥା ପରେ ବି ପୁଅକୁ ଦେଖି ବିମଳାଙ୍କ ଛାତି ଫାଟି ଯାଉଥାଏ। ବିପଦ ଉପରେ ପୁଣି ବିପଦ।

ସମସ୍ତେ ଦଶ ଦିନରେ ଶୁଦ୍ଧ ହେବାପରେ ପୁଣି ବାରଦିନ ପରେ ବାରଯାତ୍ରା ଦିନ ବିମଳାଙ୍କ ପାଳି ପଡ଼ିଲା। ଏକା ଏକା ବାରିକାଣୀ ସାଙ୍ଗେ ତୁଠକୁ ଗଲାବେଳେ ବିମଳା ଅନୁଭବ କଲେ ସତେ ଅବା ଆଉଥରେ ତାଙ୍କର ସଦ୍ୟ ବିଧବାର ପୁନରାବୃତ୍ତି ହେଲା। ବିମଳାଙ୍କୁ ଚାରିଦିଗ ଶୂନ୍ୟ ଦେଖାଯାଉଥାଏ। ଏଣେ ଅଭାବ ଅନାଟନ ସାଙ୍ଗକୁ କୋଳରେ ଅତି ଦୁର୍ବଳ ପୁଅ ପିଲାଟି ପାଇଁ ମାଆ ବକ୍ଷରେ ଅମୃତ ବା କାହିଁ? ସେ ତ ପାଣି ଫାଟି ସବୁବେଳେ ଆଖିରୁ ଝରୁଛି । ପିଲାଟା ଖାଇବ କ'ଣ ? ଖାଇବାକୁ ନପାଇ ପିଲାଟି ଶୁଖି ଶୁଖି ଗଲା। ସବୁବେଳେ ବିକଳ ଚିତ୍କାର କରୁଥାଏ। ଖାଦ୍ୟ ବିନା ମାଆ ଆଉ ପିଲା ତିନିଟି ବି ତଦ୍ରୂପ।

ପୁଣି କହନ୍ତି ପରା ଯିଏ ପିଣ୍ଡଦିଏ ସିଏ ବି ମଣ୍ଡଦିଏ, ସେତିକିବେଳେ ଦେବ ଦୂତ ପରି ମାଉସୀ ତା ପାଖରେ ଠିଆ ହୋଇଗଲା। ପିଲାଟି ପାଇଁ ଛେଳି ଦୁଧ ଖଞ୍ଜା କରି ତାକୁ ବଞ୍ଚେଇ ଦେଲା। ତା ଗଙ୍ଗାପାଣି ବି ସେହିଦିନଠାରୁ ସେ ପିଲାଟି ଉପରେ ଆଖିରଖି ପ୍ରାଣପଣେ ମାଉସୀକୁ ସାହାଯ୍ୟ ସହାନୁଭୂତି ଦେଉଥାଏ। ବିମଳା ଦିବ୍ୟାଙ୍କର ଆଉ ଯାହା ଜିନିଷ ଦି ଖଣ୍ଡ ଥିଲା ତାକୁଇ ବିକି ଭାଙ୍ଗି ଚଳିଲେ।

ଯାହାର ମନ ଯେଡ଼େ ତାହାର ପ୍ରଭୁ ସେଡ଼େ, ଭାଗ୍ୟକୁ ବଡ଼ଟିକୁ ଛାଡ଼ି ବାକି ଦୁଇଜଣ ବଡ଼ ମଝିଆଁ ପୁଅକୁ କୁଟୁମ୍ବର ଦୁଇଜଣ ଭାଇ ପୋଷ୍ୟପୁତ୍ର କରି ନେଇଗଲେ। ବଡ଼ ମଝିଆଁଟି ଦୂରକୁ ଯିବାକୁ ମଙ୍ଗିଲାନି। କନ୍ଦାକଟା କଲା। ତାର ହୃଦୟବାନ ପୋଷ୍ୟ ପିତା ତାକୁ ତା ବୋଉ ପାଖରୁ ନ ନେଇ ସେଇଠି ରହିବାର ବନ୍ଦୋବସ୍ତ କରିଦେଲେ ଏବଂ ତାର ସମସ୍ତ ଖର୍ଚ୍ଚ ବହନ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଦିନକୁ ମୁଠେ ଭାତର ଆଉ ଅଭାବ ରହିଲାନି। ଆସ୍ତେ ଆସ୍ତେ ବଡ଼ ପୁଅଟି ବି ମାଇନର୍ ପାଶ୍‌କରି ଟ୍ରେନିଂ ନେଇ କୁନି ମାଷ୍ଟ୍ରଟିଏ ହୋଇ ଘର ସମ୍ଭାଳିଲା।

ଏଣେ ଗଙ୍ଗାପାଣି କିନ୍ତୁ ନଛୋଡ଼ବନ୍ଧା। ଖାସ ମାଉସୀ ସାଙ୍ଗେ ଲଗେଇଥାଏ, "ତୁ ତ ସାନଟିକୁ ବଞ୍ଚେଇଛୁ, ସେଇଟିକୁ ତୁ ପୁଅ କର।" ମାଉସୀ ବେଳେ ବେଳେ ଭାରି ଅଭିମାନ କରି କହେ, "ତା ହେଲେ କଣ ତୋ ପିଲେ ମୋର କେହି ନୁହନ୍ତି ?" କିନ୍ତୁ ତା ଗଙ୍ଗାପାଣି ତାକୁ କୌଶଳକ୍ରମେ ବୁଝାଇ ଦେଲା ଯେ, "ତୁ ତ ସବୁରି। ସମସ୍ତେ ତୋର। ଏଇ ସଂସାରରେ ଏମିତି କୌଣସି ଶକ୍ତି ନାହିଁ ଯାହା ମୋଠାରୁ ତୋତେ ଛଡ଼ାଇ ନେଇ ଅଲଗା କରିବ। ତୁ ଏଠି ବଞ୍ଚିବା ଯାକ ରହିବୁ। ମୋ ପିଲେ ତୋତେ ମାଆଠାରୁ ବେଶି ମାଉସୀ ବୋଲି ଖାତିର କରନ୍ତି। ହେଲେ ଏମାନେ ପିଣ୍ଡ ଦେଲେ କଣ ତୁ ପାଇବୁ ? ସେଇଟିର ପାଠପଢ଼ା ବୟସ ହେଲାଣି। ସେଇଟିକୁ ମଣିଷ କରିଦେ। ତୋର ବହୁତ ପୁଣ୍ୟ ହେବ। ଆମର ବ୍ରାହ୍ମଣ ଘର, ତୋର ପୁଣି ଏତେ ନିଷ୍ଠା ଯେ କହୁଛୁ - ଏକାଦଶୀରେ ମଲେ କାନରେ ସିନା ଟୋପେ ପାଣି ଦେବୁ। କିନ୍ତୁ ପାଟିରେ ନୁହେଁ। ପିଣ୍ଡ ନ ପାଇଲେ କଣ ତୋ ଆତ୍ମା ମୁକ୍ତି ହେବ ? ତୋ ବଖରାକରେ ଦୁଆର ଫିଟିବ ଆଉ ସତ୍ୟ ସେଠି ଦୁଆର ପୂଜା ବାଡ଼ିବ। ନ ହେଲେ ସେ ବଖରାକ କୋଠକୁ ନେଇଯିବେ। ତୁ ତାକୁ ପୁଅ କଲେ ସେ ତା ବଦଳରେ ଦୁଆର ଖୋଲି କୂଳଦୀପଟିଏ ବସାଇବ। ତା ପିଲେ ପୁଣି ତାଙ୍କ ପିଲେ ଦୀପଟିକୁ ଜଳାଇ ରଖିବେ। ତୋର ଯାହା ଦି ପଇସା ଅଛି ତାକୁ କଣ ତୁ ମୁଣ୍ଡେଇ କରି ଯିବୁ ? ଜାଣି ଗୋଟିଏ ମଣିଷ ଗଛ ପୋତି ଦେ। ଦେଖିବୁ କେତେ ଭଲ ମଣିଷ ଫଳିବ।" ସେଇଆ ହେଲା। ଦିନକ ପାଇଁ ସୁଦ୍ଧା ମାଉସୀ ତା ଘରକୁ ଯାଇନି। ଗୁରୁବାକ୍ୟ ପରି ଗଙ୍ଗାପାଣି କଥା ଅକ୍ଷରେ ଅକ୍ଷରେ ପାଳନ କଲା।

ସତକୁ ସତ ସତ୍ୟ ଭଲ ପଢ଼ିଲା, ଭଲ ଚାକିରି ଖଣ୍ଡିଏ ବି କଲା। ଦିବ୍ୟ ସୁନ୍ଦରୀ ବୋହୂଟିଏ ବି ମିଳିଗଲା। ଯେମିତି ରୂପ ସେମିତି ଗୁଣ। ବୋହୂକୁ ଦେଖିସାରି ନିଜ ଜନ୍ମିତ ଶାଶୁ ଇହଲୋକରୁ ବିଦାୟ ନେଲେ। ପୋଷିଆଁ ଶାଶୁତ ଘରକୁ ଗଲେନି। ବୋହୂ କିନ୍ତୁ ଦି ଗଙ୍ଗାପାଣିରେ ଗେହ୍ଲା ବୋହୂ ହୋଇ ପ୍ରାୟ ଆମ ଘରେ ଚଳିଲା। ଯିଏ

ପଚାରିଲେ "ମୁଁ ତାଙ୍କ ବୋହୂ" ଗଙ୍ଗାପାଣିଙ୍କୁ ଦେଖାଇଦିଏ । ବୋହୂର ପୁଣି ଯୋଡ଼ିଏ ପୁଅ ଆଉ ଗୋଟିଏ ଝିଅ ହେଲା। ସମସ୍ତେ ଯୋଗ୍ୟ ବି ହେଲେ। ଗୋଟିଏ ପୁଅ ଡାକ୍ତର, ଆରଟି ଓଡ଼ିଶା ସରକାରଙ୍କର ବଡ଼ ଅଫିସର। ଝିଅଟି କିରାଣୀ, ଜୋଇଁ ବି ଇଞ୍ଜିନିୟର। ଗୋଟିଏ ବୋହୂ ମାଷ୍ଟ୍ରାଣୀ ତ ଆରଟି କଲେଜରେ ଲେକ୍‌ଚରର୍। ଏମିତି ଗୋଟିଏ ଭରପୂର ସୁନ୍ଦର ସଂସାର।

ଆମେ ସବୁ ତ ଯିଏ ଯୁଆଡ଼େ ଗଲୁ। ମୋର ଦି ଭାଇନା କଟକରେ ରହିଗଲେ। ନନା ବି ଶେଷବେଳକୁ ବେମାର ପଡ଼ି କଟକରେ ରହିଲେ। ବୋଉ ସମସ୍ତ ଘରର ଦାୟିତ୍ୱ ମାଉସୀ ମୁଣ୍ଡରେ ଲଦି ଦେଇ, ଗୁମାସ୍ତା ହଳିଆଙ୍କୁ ତା ଜିମା କରିଦେଇ, ପ୍ରାୟ ଆସି କଟକରେ ରହିଲା ନନାଙ୍କ ସେବାରେ। ମଝିରେ ମଝିରେ ଘରକୁ ଆସି ନନାଙ୍କ ଚିକିତ୍ସା ପାଇଁ ପଇସା ସଂଗ୍ରହ କରିନିଏ। ନନାଙ୍କ ଚିକତ୍ସାରେ ବି ବହୁତ ଖର୍ଚ୍ଚ ହେଉଥାଏ। ମାଉସୀ କିନ୍ତୁ ଘରର ସମସ୍ତ ଆୟ କୋଡ଼ି କୋଡ଼ି କରି ଗଣି ରଖିଥାଏ। ପଇସେ କାହାକୁ ଛୁଆଁଇ ଦିଏନି । ଯଦି ହଳିଆ ମୂଲିଆ କାହାର ଶୁଦ୍ଧଘର କି ନିମିତ୍ତ ଘର ପଡ଼ିଯାଏ, ତେବେ ତାକୁ କଟକ ଯାଇ ପଇସା ପାଇଁ ବୋଉଠାରୁ ଅନୁମତି ଆଣିବାକୁ ହୁଏ। ବୋଉର ଭାରି ଫସଲ କରିବାର ସଉକ ଥିଲା। ତାର ବାଡ଼ିଆଡ଼େ ମଧୁବନ ବୋଲି ପୋଖରୀ ସହିତ ଗୋଟିଏ ବଡ଼ ବଗିଚା ଥାଏ। ଜାମୁରୋଳ, ଆମ୍ବ, ପଣସ, ସପେଟାଠାରୁ ଆରମ୍ଭ କରି ବହୁତ ଫଳଗଛ ସାଙ୍ଗରେ, ଜହ୍ନି, କାକୁଡ଼ି, କଖାରୁ, ଝୁଡ଼ଙ୍ଗ, ଦେଶୀଆଳୁ, ତରଡ଼ା ଇତ୍ୟାଦି ପ୍ରଚୁର ପରିବା ହୁଏ। ମାଉସୀ ଲୋକ ଲଗାଇ ପାରୁ ପର୍ଯ୍ୟନ୍ତ ତାକୁ ବି ସମ୍ଭାଳିଥାଏ।

ପୁଣି ପ୍ରତ୍ୟେକ ଫସଲକୁ ଗାଈଜଗା ଲୋକ ହାତରେ ବିକ୍ରି କରିଦିଏ। ନଡ଼ିଆ ପୋଲାଙ୍ଗ, ଗୁଆ, ଆମ୍ବ, ପଣସ, ଧାନ, ମୁଗ, ବିରି ସାଙ୍ଗରେ ସେ ପଇସାକୁ ବି ରଖି ବୋଉକୁ ଦିଏ।

ଦିନେ ବୋଉ ଭାରି ବ୍ୟସ୍ତହୋଇ କହିଲା, "ଆଲୋ, ଇଏ କଣ କରୁଛୁ ? ବଗିଚାର ଚାଉଳିଆ, ଜହ୍ନି, କାକୁଡ଼ି ବିକୁଛୁ ?" ଦେଖ ତ ମାଉସୀର ବିଶ୍ୱରୂପ ! ରାଗିଯାଇ କହିଲା, "କିଲୋ, ମୁଁ କ'ଣ ଚୋରୀ କରୁଛି କି ? ବୁଢ଼ା ତାଙ୍କ ଜୀବନରେ ସବୁ ତ୍ୟାଗ କରିଛନ୍ତି। ଏତେ ପାଠପଢ଼ି ସରକାରୀ ଚାକିରିକୁ ଗୋଡ଼ରେ ଆଡ଼େଇ ଦେଇଛନ୍ତି। ଦେଶସେବା କରିଛନ୍ତି। ମୁଁ ଜଣେ ଗାଁ ଚାଷୀ ବୋଲି କହି ସହରରେ ଜମି ଖଣ୍ଡେ ବି କିଣି ନାହାନ୍ତି। ମୁଁ ତାଙ୍କ ବଗିଚାର ଫସଲ ବିକିଛି। ତାଙ୍କର ସେବା ପାଇଁ ତାଙ୍କର ଔଷଧ ଖର୍ଚ୍ଚ ହେବ। ଆମେ ଯେତେବେଳେ ଦାଣ୍ଡରେ ହାତକଡ଼ି ପଡ଼ି ଜେଲ୍ ଗଲେ ସେତେବେଳେ ତ ଲାଜ ମାଡ଼ିଲାନି ? ଆଉ ଏବେ ଲାଜ ମାଡ଼ିବ ? ବୁଢ଼ାଙ୍କ ପାଇଁ

ବେତା ମୁହଁରେ ଟଙ୍କା ଖର୍ଚ୍ଚ ହେଉଛି। କୋଉଠୁ ଆସିବ ଭାବୁନୁ। ତାଙ୍କର କ'ଣ ପେନ୍‌ସନ୍ ଅଛି ନା କୋଉଠି ଜମା କରିଛନ୍ତି ?" ବୋଉ ମାଉସୀର ଯୁକ୍ତି ପାଖରେ ହାର ମାନିଗଲା। ସେଇ ଦିନଠାରୁ ମାଉସୀର ଆରମ୍ଭ ହେଲା ଜଣେ ମହାନ୍ ଦେଶସେବକଙ୍କ ପାଇଁ ପରୋକ୍ଷରେ ସେବା। ବୋଉକୁ ଦିନକ ପାଇଁ ବି ଘରେ ରଖେଇଦେଇନି। କହେ, "ତେଣେ ବୁଢ଼ା ତୋତେ ଖୋଜୁଥିବେ। ତୁ ଚଞ୍ଚଳ ଯା।"

ନନା ଚାଲିଯିବା ପରେ ପୁଣି ଆରମ୍ଭ ହେଲା ଦୁଇ ଗଙ୍ଗାପାଣିଙ୍କର କର୍ମମୟ ଜୀବନ। ଆମ ପଡ଼ିଶା ଘର କକେଇ ରହୁଥାନ୍ତି ପୁରୀରେ। ତାଙ୍କ ଘର ଥାଏ ମାଉସୀ ଜିମା । ସେଇଥିରୁ ବଖରେ ହେଲା ପୋଖତି ଘର। କେହି ଅଭାବି ଲୋକ ଅସୁବିଧାରେ ପଡ଼ିଲେ ମାଉସୀ ସିଧା ସେଇଠିକୁ ନେଇ ଆସେ।

ତାପରେ ରୋଗୀର ସମସ୍ତ ଚିକିତ୍ସା ଭାର ସାଇଯାକ ମାଇପି ମିଶିକରି ବହନ କରନ୍ତି। ଯିଏ ଯେମିତି ପାରିଲା ସାହାଯ୍ୟ କରେ। କିଏ ପିଲା ଜନ୍ମବେଳେ ପାଖରେ ରହି ଗରମ ପାଣି, ତୁଳା, କଇଁଚି ମାଉସୀ ହାତକୁ ବଢ଼ାଇଦିଏ ତ, କାହାଘରୁ ବାଲି, ଶାଗୁ, ପଥି ଆସିବ। କିଏ ଗଣ୍ଡିଏ ଚୂଡ଼ାଭଜା କି ମୁଢ଼ି ମୁଠେ ଆଣି ଦେଲାଣି ତ କିଏ କ୍ଷୀର ଗିଲାସେ ଗରମ କରି ଦେଇ ଗଲାଣି। ସବୁ ସେଇ ମାଉସୀର ପ୍ରଭାବ। ସେ ସୃଷ୍ଟି କରିଥାଏ ସାଇମାଇପିଙ୍କ ଭିତରେ ତ୍ୟାଗର ଆଭାସ। ସମସ୍ତେ ପର ପାଇଁ କିଛି କିଛି ସାହାଯ୍ୟ କରିପାରିଲେ ନିଜକୁ ଧନ୍ୟ ମଣୁଥାନ୍ତି।

ଏବେ ସେଇ ମାଙ୍କଡ଼ ଗୋପାଳ ଘରଠାରୁ, ନନ୍ଦି ବଳିଆ ଘର ପର୍ଯ୍ୟନ୍ତ ଅର୍ଦ୍ଧାଧିକ ଗାଁର ଶୂନ୍ୟ ଘର ଗୁଡ଼ିକର ନିସ୍ତବ୍ଧତା ମନେପଡ଼ି ନିଦଭିଜା ଆଖିରେ ବନ୍ୟା ଉଚ୍ଛୁଳି ଉଠେ। ପୁଣି ପାଣିରେ ପ୍ରତିବିମ୍ବ ପରି ମନେପଡ଼େ – କାର୍ତ୍ତିକ ପୂର୍ଣ୍ଣମୀର ପୂର୍ବ ରାତ୍ରି। ଗହଳିରେ ସାଇ ଫାଟି ପଡୁଥାଏ। କଦଳୀ ବାସୁଙ୍ଗା ଡଙ୍ଗା ଭିତରେ ଚାଉଳ, ମୁଗ, ବିରି, ପାନ, ଗୁଆ ଥୋଇ ତାକୁ ହାତରେ ଧରି ନିଆଁ ହୁଳାଠାରୁ ଟର୍ଚ୍ଚ ଆଲୁଅ ପର୍ଯ୍ୟନ୍ତ ଧରି ପିଲାରୁ ବୁଢ଼ିଯାଏ କୋଡ଼ିଏ ତିରିଶ ଲୋକର ଧାଡ଼ିଟିଏ ହୁଳହୁଳି ଶଙ୍ଖଧ୍ୱନି ସାଙ୍ଗେ 'ଆ, କା, ମା ବୈ ପାନ ଗୁଆ ଥୋଇ' କହି ଡଙ୍ଗା ଭସାଇ ସେଇ ଶୀତ ରାତିର ଶୀତଳ ପାଣିରେ ବୁଡ଼ି ଓଦା ଲୁଗାରେ ଘରକୁ ଫେରିବାର ଦୃଶ୍ୟ। ପୁଣି ମନେପଡ଼େ – ଦ୍ୱିତୀୟା ଓଷାର ଭୋର। ସବୁରି ହାତରେ ତାଟ, ଗଜାମୁଗ, ନଡ଼ିଆ, କାକୁଡ଼ି, ତାଳଗଜା, ଦୀପ, ଧୂପ, ଫୁଲ ସହିତ ଗୋଟିଏ ଲମ୍ବା ମାଇପି ଧାଡ଼ିର ଆଗରେ ପଛରେ ଭୋଗେଇ ଧରି ଅସଂଖ୍ୟ ପିଲା ଜାତି ବର୍ଣ୍ଣ ନିର୍ବିଶେଷରେ ଚିଲ, ଶିଆଳ ପୂଜା ସାରି, ପିଲାଙ୍କୁ ଭୋଗ ବାଣ୍ଟି ଘରେ ଆସି ଗଜାମୁଗ ତିଅଣ ରନ୍ଧାହୁଏ। ପୁଣି ବାଲିତୃତୀୟା ଦିନ ଗୋଧୂଳି ବେଳାରେ ଉପାସୀମାନଙ୍କ ଶୁଖିଲା ମୁହଁ। ହଳଦୀ ଲଗା, ଗାଧୁଆ। ପାଣି

ଛଟାଛଟି ଆନନ୍ଦ ସାଙ୍ଗେ ଓଦା ଲୁଗାରେ ଦୁଇହାତ ଛନ୍ଦି ନଈର ବାଲି ଆଣି ନଈ କୂଳରେ ପଡ଼ିଥିବା ମୁରୁଜ ଉପରେ ଫୁଲ ଚନ୍ଦନ ସିନ୍ଦୂର ଦେଇ ସତେ ଅବା ପାର୍ବତୀ ମାନଙ୍କର ଶିବଙ୍କୁ ସନ୍ତୁଷ୍ଟ କରିବାର ପ୍ରକ୍ରିୟା। ସବୁ ମୁହଁ ପ୍ରାୟ ହଜିଗଲାଣି ସ୍ରୋତରେ। ସେଇ ହଜିଲା ମୁହଁ ସବୁ ଦୁଶିଯାଏ ଗୋଟିଏ ପଛକୁ ଗୋଟିଏ। ଶୁଭ ବୋଉ ଭାଉଜ, ମହୀ ବୋଉ, ସୁଶୀଲା ବୋଉ, ନୟନ ବୋଉ, ରମା ଭାଉଜ ଏମିତି କେତେ ଯେ ଭାଉଜଙ୍କର ଥଟ୍ଟାଳିଆ ମଜାକଥା ତତେଇ ଦିଏ ଦେହ ମନକୁ। ସମସ୍ତଙ୍କ ଦେହରେ କିନ୍ତୁ ଅଳ୍ପେ ବହୁତେ ମାଉସୀର ଆଦର୍ଶର ଛିଟା ବାଜିଥାଏ।

ମାଉସୀ ଜୀବନର ସନ୍ଧ୍ୟାରେ ଦିନେ ତା ପୁଅ ସତ୍ୟ ଆସି କହିଲା, "ସାନ ବୋଉ ! ମୁଁ ଦିଟା ଫର୍ମ ଆଣିବି। ଏବେ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ମିଳୁଛି। ତୁମେ ଦୁଇ ଗଙ୍ଗାପାଣି ଦସ୍ତଖତ କରିଦେବ। ବାକି ଯାହା ମୁଁ କରିବି।" ମାଉସୀ ହସି ହସି ତା' ଗଙ୍ଗାପାଣିକୁ ଡାକି କହିଲା, "ଶୁଣଲୋ ! ଆମ ଦେଶସେବାର ମୂଲ ମିଳୁଛି।" ଗଙ୍ଗାପାଣି ତାର ଯଥାଯଥ ଉତ୍ତର ଦେଇଥିଲା। ହଇରେ ସତ୍ୟ – ଆମେ କ'ଣ ଏଇଥି ପାଇଁ ଦେଶକୁ ସ୍ୱାଧୀନ କରିଥିଲୁ ? ଯାହାତ ଲୋକେ ଭୋଗୁଛନ୍ତି ଆମେ ଆଖିରେ ଦେଖୁଛୁ। ସରକାର ଗଣ୍ଡେ ଗଣ୍ଡେ ପଇସା ଦେଇ ସଂଗ୍ରାମୀଙ୍କ ମୁହଁ ବାନ୍ଧିଦେଲେ ଆଉ ଯାଙ୍କ ବିରୁଦ୍ଧରେ କିଏ ସଂଗ୍ରାମ କରିବ ? ସେହି ସଂଗ୍ରାମୀ ଭତ୍ତାକୁ ଦୁଇ ଗଙ୍ଗାପାଣି ଗର୍ବର ସହିତ ପ୍ରତ୍ୟାଖ୍ୟାନ କରିଥିଲେ। ସେତେବେଳର ଦୁଇ ଗଙ୍ଗାପାଣିଙ୍କ କଥା ଭାବିଲେ ମୁଣ୍ଡ ଲଇଁଯାଏ, ଜଣେ ସ୍ୱଳ୍ପ ଶିକ୍ଷିତା ଆଉ ଜଣେ ନିରକ୍ଷର ନାରୀର ବିଚାର ଦୂରଦୃଷ୍ଟି କି ମହତ୍। ସ୍ୱାଧୀନ ଦେଶର ସରକାର ଭତ୍ତାନୁହେଁ ଟଙ୍କା ଦେଇ ମୁହଁ ବାନ୍ଧୁଛନ୍ତି। ସେମାନେ ଦୁର୍ନୀତି କଲାବେଳେ ମୁହଁ ଖୋଲିବାକୁ କାହାର ଶକ୍ତି ନ ଥିବ। କେତେ ନିରାଟ ସତ୍ୟ କଥାକୁ ସେମାନେ ସେ କାଳରୁ ଉପଲବ୍ଧି କରିପାରୁଥିଲେ।

ମାଉସୀ କିନ୍ତୁ ଗର୍ବର ସହ ଗ୍ରହଣ କରିଥିଲା ଆଉ ଏକ ପୁରସ୍କାର। ଗାଁର ଲିଙ୍ଗରାଜ ମିଶ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଥିଲାବେଳେ ସାକ୍ଷୀଗୋପାଳ ଡାକ୍ତରଖାନାରେ (ଯେଉଁଠି ମାଉସୀ ଟ୍ରେନିଂ ପାଇଥିଲା) ଗୋଟିଏ ସ୍ୱାସ୍ଥ୍ୟକେନ୍ଦ୍ର ଖୋଲି ଦୁଇଟି ଶଯ୍ୟା ବିଶିଷ୍ଟ ଗୋଟିଏ ଗୃହକୁ ଧାନମଣି ମାତୃମଙ୍ଗଳ କେନ୍ଦ୍ର ନାମରେ ନାମିତ କରିଥିଲେ। ସେ ହିଁ ମାଉସୀ ଜୀବନର ଚରମ ତୃପ୍ତି ଓ ପରମ କୀର୍ତ୍ତି। ମାଉସୀ ତାର ଜୀବନର ଶେଷ ପର୍ଯ୍ୟନ୍ତ ତାର ଦଦରା କାନ ଯୋଡ଼ିକ ସଜାଗ କରି ଝରକା ମୂଳେ ଖଟଟି ଉପରେ ବସି ରହିଥାଏ କାଳେ କିଏ ଡାକିଦବ ବୋଲି। କାଳେ କାହା ଝିଅ ବୋହୂ ଯନ୍ତ୍ରଣାରେ ଛଟପଟ ହେଉଥିବେ କି ? ସେଇ ଚିନ୍ତାରେ ସେ ନିଜର ଅବସ୍ଥାକୁ ସମ୍ପୂର୍ଣ୍ଣ ଭୁଲିଯାଇଥାଏ ଏବଂ ଭୁଲି ଯାଇଥାଏ ମଧ୍ୟ ତାର ଅପାରଗତା ଓ ଚଳତ୍‌ଶକ୍ତି ରହିତାବସ୍ଥାକୁ।

ଦିନେ ମୁଁ ଖବର ପାଇଲି ମୋ ବୋଉକୁ ଭାରି ଜ୍ୱର। ଜ୍ୱର ଜମା ଛାଡୁନି। ମୁଁ ସଙ୍ଗେ ସଙ୍ଗେ ଯାଇ ପହଞ୍ଚିଲି ବୋଉକୁ ପୁରୀ ଆଣିବାକୁ। ମାଉସୀର ସେଇ ଦିନର ସେଇ କୋରଡ଼ିଆ ଆଖିର କରୁଣ ଛଳ ଛଳ ନିବେଦନ ମୋର ହୃଦୟରେ ଆଙ୍କିହୋଇ ଚିରସ୍ମରଣୀୟ ହୋଇ ରହିଗଲା, ସେ କହିଥିଲା, "ଏତେବେଳେ ଆଉ ମୋ ଗଙ୍ଗାପାଣିକୁ ମୋ ପାଖରୁ ନେ ନା ଲୋ; ସେ ମୋତେ ଟିକିଏ ଦାଣ୍ଡ ପିଣ୍ଡାକୁ ଥୋଇଦେବ କି, ତୁମେ ତାକୁ ଏ ଘରୁ ନେଇଯିବ।" ତାର କରୁଣତା ଭରା ଏପରି ଅନୁରୋଧ ଯାହାକି ଏଡ଼ିବାର ନୁହେଁ। ମୁଁ ଫେରିଲା ବେଳକୁ ବୋଉର ଦାୟିତ୍ୱ ସତ୍ୟବାଦୀ ଡାକ୍ତରଙ୍କୁ ଦେଇ ଆସିଥିଲି।

ଚାରିଦିନ ପରେ ପୁଣି ଖବର ପାଇଗଲି। ବୋଉ କହିଲା, "ସବୁବେଳେ ତ ଏମିତି ବସିରହି ଚାରିଆଡ଼କୁ ଜୁଳୁ ଜୁଳୁ କରି ଚାହୁଁଥିଲା। କଣ ଭାବୁଥିଲା କେଜାଣି, କାଳେ କିଏ ଡାକିଲେ ଶୋଇପଡ଼ିଲେ ଉଠି ପାରିବନି ବୋଲି କି କଣ ? ଆଜି ଭୋରରୁ ବୋହୂ ଆସି ଦାନ୍ତ ଘଷେଇ ଚା କପେ ପିଆଇ ଦେଇଗଲା। ମୁଁ ଏ ଖଟରୁ ଯେତେ ଡାକିଲି କିଛି ଉଁ ଚୁଁ ନ କହି ବସିରହିଲା । ମୁଁ ଉଠିଯାଇ ହାତ ମାଇଲା ବେଳକୁ ଗଡ଼ିପଡ଼ିଲା। ଦେହ ସେମିତି ଉଷୁମ ଥାଏ। ମୋତେ ଛାଡ଼ି କୁଆଡ଼େ ଗଲାଭାରି । ସତରେ ଆଉ ଉଠିଲାନି ଲୋ।"

ଗାଁ ଦାଣ୍ଡ ଗହଳିରେ ଭାଙ୍ଗି ପଡୁଥାଏ। କେତେ ଯେ ପୁଅ କୁଆଡୁ ଆସି ପହଞ୍ଚିଲେ ତାର ସୀମା ନାହିଁ। ସମସ୍ତେ କାନ୍ଧ ଲଗେଇବାକୁ ବିକଳ। ବୋଉ ଜଣକ ହାତକୁ କିଛି ଗୁଆଘିଅ, ଚନ୍ଦନ କାଠ, ତୁଳସୀ କାଠ ଚଢ଼େଇଦେଇ, ସିରିକାପଡ଼ା ସାଙ୍ଗରେ ଶବାଧାରରେ ଫୁଲ ମାଳଟିଏ ଦେଇ, ହାତ ଲଗାଇ ତା ପୁଅମାନଙ୍କ କାନ୍ଧକୁ ଟେକିଦେଲା। ଆମମାନଙ୍କ ସହିତ ତା ନାତି ନାତୁଣୀ ଏବଂ ଆହୁରି ଅନେକ ଅଣନାତି ନାତୁଣୀ ଘିଅ ଦୀପ ଦେଖାଇ ମାଉସୀର ସ୍ୱର୍ଗକୁ ଯିବା ଆଲୋକ ପଥକୁ ଆଲୋକିତ କରିଥିଲୁ ଅଧିକରୁ ଅଧିକ। ସତ୍ୟ ମୁଖାଗ୍ନିର ଅଗ୍ନିଶିଖାକୁ ଧରି ଆଗେ ଆଗେ ଚାଲିଲା। ରାମନାମ, ହରିନାମରେ ଗାଁ ଦାଣ୍ଡ ଉଛୁଳି ପଡ଼ିଲା। ଶବାଧାର ଗାଁ ପରିକ୍ରମା କଲା। ବଙ୍ଗଳା ବାଟରୁ ଆଣି ଶେଯ ଘୋଡ଼େଇ ଦେଲାପରି ଲୋକଙ୍କ ହାତର ଫୁଲତୋଡ଼ାଟିଏ ପୁଣି ଘୋଡ଼ିହୋଇ ମାଉସୀ ଚାଲିଲା ତାର ଶେଷ ଯାତ୍ରାରେ। ସେ ଥିଲା ଆଶ୍ୱିନ ମାସର ଗୋଟିଏ ସକାଳ।

ବୋଉ ସେଇ ଜ୍ୱରରେ ମୁଣ୍ଡଧୋଇ ଗାଧୋଇଲା। ବୋଉ ମାଉସୀଠାରୁ ବୟସରେ ଦୁଇବର୍ଷ ସାନ ବୋଲି ସେଇଦିନ ଜାଣିଲି। ମୁଁ ବୋଉକୁ ଧରି ପୁରୀ ଚାଲି

ଆସିଲି। ତା ପରେ ବୋଉ ଆଉ ଗାଁକୁ ଯାଇନି। ବୋଉର ଗୋଡ଼ଭାଙ୍ଗି ସେଥିରେ ଲୁହାଛଡ଼ ଦେଇ ମରାମତି କରାହୋଇଥିଲା। ସେଥିରେ ବୋଉ ବେଶ୍ କାର୍ଯ୍ୟକ୍ଷମ ଥିଲା କିନ୍ତୁ ମାଉସୀ ଗଲା ପରଠାରୁ ଆସ୍ତେ ଆସ୍ତେ ନିସ୍ତେଜ ହୋଇଗଲା। ଇନ୍‌ଭାଲିଡ୍ ଚୌକିରେ ଚଳପ୍ରଚଳ ହେଲା। ଆସ୍ତେ ଆସ୍ତେ କଥାବାର୍ତ୍ତାରେ ବାଚାଳତା ଦେଖାଗଲା। ଠିକ୍ ଦୁଇବର୍ଷ ପରେ ସେମିତି ଗୋଟିଏ ଆଶ୍ୱିନର ଶୀତଳ ସକାଳରେ ବୋଉ ମୋତେ ଡାକି କହିଲା, "ଦେଖିଲୁ, ଗଙ୍ଗାପାଣି ମୋତେ ଡାକି ଦେଲା କି, ମୁଁ ଉଠୁ ଉଠୁ ବାଡ଼ି ଆଡ଼କୁ ପଳେଇଲା। ଏଇ ପଳାଉଛି। ତାକୁ ଡାକେ। ମୁଁ ତା ସାଙ୍ଗରେ ଯିବି।" ମୁଁ ବୋଉ ଛାତିରେ ମୁହଁ ଗୁଞ୍ଜି କାନ୍ଦିଉଠିଲି। କହିଲି, "ନାଇଁ ବୋଉ; ସେ ତୋତେ ଜମା ଡାକିବନି। ସେ ତୋର କଣ? ଆମକୁ ଛାଡ଼ି ତୁ ତା ସାଙ୍ଗେ କାହିଁକି କୁଆଡ଼େ ଯିବୁ? ବୋଉ ମୋ ପିଠିକୁ ଧୀରେ ଧୀରେ ଆଉଁସି କହିଲା "ସେ ପର ଯେ, ହେଲେ ତା ବର ମୋତେ ସମର୍ପି ଦେଇ ଯାଇଥିଲା। ଗୋଟିଏ ଦେଉଳ ଗଢ଼ିବା ସହଜ ସିନା ହେଲେ ଗୋଟିଏ ମଣିଷ ଗଢ଼ିବା ଭାରି କଷ୍ଟ।" ପୁଣି ପର ପଦାର୍ଥକୁ ଆପଣାର କରି ଗଢ଼ିବା, ମୋର ସେଇ ବୋଉଠୁ ଶୁଣିଥିବା ଲୋକା ବୋଉ ଦେଠେଇ କଥା ମନେପଡ଼ିଗଲା, "ପର ପଦାର୍ଥରେ ନୁହେଁ ହଲାଇ, ଟାକରା ମାରିଲେ ନେବେ ଛଡ଼ାଇ।" ଛ ବର୍ଷରୁ ଛୟାଅଶୀ ବର୍ଷ ପର୍ଯ୍ୟନ୍ତ ବନ୍ଧୁତ୍ୱ। ବିଧାତା ଛଡ଼ା ଆଉ କେହି ବ୍ୟାଘାତ କରିପାରିନଥିଲା। ପୁଣି ଠିକ୍ ଦୁଇ ବର୍ଷ ପରେ ବୋଉ ଯାଇ ତାର ଅପେକ୍ଷାରତ ଗଙ୍ଗାପାଣି ପାଖେ ପହଞ୍ଚି ଯାଇଥିବ ସେଇ ଆଶ୍ୱିନ ସନ୍ଧ୍ୟାରେ। ପୁଣି ଗଙ୍ଗାଯମୁନାର ଦୁଇଧାର ମିଶି ଯାଇଥିବେ। ସ୍ୱର୍ଗରେ କି ମର୍ତ୍ତ୍ୟରେ ପୁଣି କେଉଁଠି କେଜାଣି ସୃଷ୍ଟି ହୋଇଥିବ ସଙ୍ଗମର ପୂଣ୍ୟତୀର୍ଥ ପ୍ରୟାଗ।

*("ପର ପଦାର୍ଥ", ପୃଷ୍ଠା ୫୫-୬୫)*

* * *

# ସଂଘମିତ୍ରା ମିଶ୍ର

**(ଜନ୍ମ: ୧୯୫୩)**

ସଂଘମିତ୍ରା ମିଶ୍ର ୨୦ ଜୁନ୍ ୧୯୫୩ ମସିହାରେ କଟକ ଜିଲ୍ଲାର ଖଣ୍ଡସାହିରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ବଂଶୀଧର ମିଶ୍ର ଜଣେ ସ୍ୱାଧୀନତା ସଂଗ୍ରାମୀ ଏବଂ ମାତା ଶ୍ରୀମତୀ ଦେବୀ ଜଣେ ଧର୍ମପରାୟଣା ମହିଳା ଥିଲେ। ସଂଘମିତ୍ରା ପ୍ରାଣନାଥ ମହାବିଦ୍ୟାଳୟ, ଖୋର୍ଦ୍ଧାରେ ଅଧ୍ୟୟନ କରିଥିଲେ। ୧୯୭୦ ମସିହାରେ ମାତ୍ର ସତର ବର୍ଷ ବୟସରେ ସେ ଡାକ୍ତର ଜଗନ୍ନାଥ ମହାପାତ୍ରଙ୍କୁ ବିବାହ କରିଥିଲେ, ଯିଏ ପରବର୍ତ୍ତୀ ସମୟରେ ଭୁବନେଶ୍ୱର ମ୍ୟୁନିସିପାଲ କର୍ପୋରେସନର ଚେୟାରମ୍ୟାନ୍ ଭାବରେ କାର୍ଯ୍ୟ କରିଥିଲେ। ବିବାହ ପରେ ମଧ୍ୟ ସଂଘମିତ୍ରା ଅଧ୍ୟୟନ ଜାରି ରଖିଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରରୁ ଓଡ଼ିଆରେ ସ୍ନାତକୋତ୍ତର ପରୀକ୍ଷାରେ ଶୀର୍ଷରେ ରହିଥିଲେ। ସେ ମନୋରଞ୍ଜନ ଦାସଙ୍କ ନାଟକ ଉପରେ ଗବେଷଣା କରି ୧୯୮୬ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ହାସଲ କରିଥିଲେ। ୧୯୯୬ ମସିହାରେ ଓଡ଼ିଆ ଓ ହିନ୍ଦୀ ସାହିତ୍ୟରେ ପ୍ରତୀକ ବ୍ୟବହାରର ତୁଳନାତ୍ମକ ଅଧ୍ୟୟନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡିଲିଟ୍ ପ୍ରଦାନ କରିଥିଲା।

ସଂଘମିତ୍ରା ୧୯୭୭ ମସିହାରେ ବିଜେବି ସନ୍ଧ୍ୟା ମହାବିଦ୍ୟାଳୟରେ ଓଡ଼ିଆରେ ଅଧ୍ୟାପିକା ଭାବରେ ତାଙ୍କର କର୍ମଜୀବନ ଆରମ୍ଭ କରିଥିଲେ। ସେ ୧୯୮୬ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ଅଧ୍ୟାପିକା ଭାବରେ ଯୋଗଦେବା ପୂର୍ବରୁ ରମାଦେବୀ ମହିଳା ମହାବିଦ୍ୟାଳୟରେ ଶିକ୍ଷାଦାନ କରିଥିଲେ। ସେ ୨୦୧୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରୁ ପ୍ରଫେସର ଭାବରେ ଅବସର ନେଇଥିଲେ। ଜଣେ ଗବେଷକ ଏବଂ ସମାଲୋଚକ ଭାବରେ ସଂଘମିତ୍ରା ଓଡ଼ିଆ ନାଟକର ବିବର୍ତ୍ତନ ଏବଂ ଅଭିବୃଦ୍ଧି ଉପରେ ବହୁ ପୁସ୍ତକ ଲେଖିଛନ୍ତି। ଗବେଷଣାଧର୍ମୀ ପୁସ୍ତକ ବ୍ୟତୀତ ସେ

କବିତା, କ୍ଷୁଦ୍ରଗଳ୍ପ ଏବଂ ଜୀବନୀ ମଧ୍ୟ ଲେଖିଛନ୍ତି। ତାଙ୍କୁ ପ୍ରାୟ ଚାଳିଶଟି ପୁସ୍ତକ ଏବଂ ବହୁ ସଂଖ୍ୟକ ପ୍ରବନ୍ଧର ଶ୍ରେୟ ଦେବାକୁ ପଡ଼ିବ।

୨୦୦୭ ମସିହାରୁ ୨୦୧୧ ମସିହା ମଧ୍ୟରେ ସପ୍ତାହକୁ ଥରେ "ସମ୍ବାଦ କଳିକା" ଖବରକାଗଜରେ ତାଙ୍କ ସ୍ମୃତିଚାରଣ ଧାରାବାହିକ ରୂପେ ପ୍ରକାଶ ପାଉଥିଲା। ତାଙ୍କ ପିତା ନିଜ ପତ୍ନୀ ଏବଂ ଶିଶୁ କନ୍ୟା କୃଷ୍ଣବଲ୍ଲଭିଙ୍କୁ ୧୯୨୮ ମସିହାରେ ହଠାତ୍ ଛାଡ଼ି ଚାଲିଯାଇଥିଲେ ଓ ଘରକୁ ପଚିଶ ବର୍ଷ ପରେ ଫେରିଥିଲେ। ଏହି ଘଟଣା ପରେ ତାଙ୍କ ମାଆଙ୍କ ଦୁଃଖମୟ ଦିନଗୁଡ଼ିକର ସ୍ମୃତି ସଂଘମିତ୍ରାଙ୍କ ଆତ୍ମଚରିତର ଗୁରୁତ୍ୱପୂର୍ଣ୍ଣ ଅଂଶ ଅଟେ। ସଂଘମିତ୍ରା ଓଡ଼ିଶାର ତିନୋଟି ଉଚ୍ଚ ଶିକ୍ଷା ଅନୁଷ୍ଠାନରେ ଓଡ଼ିଆ ସାହିତ୍ୟର ଅଧ୍ୟାପିକା ଭାବରେ ନିଜର କର୍ମଜୀବନ ବିଷୟରେ ମଧ୍ୟ ଲେଖିଛନ୍ତି। ନିମ୍ନ ଉଦ୍ଧୃତାଂଶରେ ସେ ତାଙ୍କ ବଡ଼ ଭଉଣୀ କୃଷ୍ଣ ବଲ୍ଲଭି ରଥଙ୍କ ସହ ତାଙ୍କର ସମ୍ପର୍କକୁ ଅନୁସନ୍ଧିତ୍ସୁ ମନ ନେଇ ଦେଖିଛନ୍ତି। ଜଣେ ବ୍ୟକ୍ତିର ଜୀବନରେ ସ୍ଥାୟୀ ପ୍ରଭାବର ଉତ୍ସ ଭାବରେ ମାନବୀୟ ସମ୍ପର୍କ ଉପରେ ତାଙ୍କର ଗୁରୁତ୍ୱ ଏହି ଲେଖାରେ ଲକ୍ଷ୍ୟ କରାଯାଇପାରେ।

## ସତରେ ତାକୁ କଳନା କରିବା କଷ୍ଟ

ନାନୀ କହିଲେ ମୋ ପାଇଁ ଏକମାତ୍ର ଖୋଲା ଝର୍କା। ସେଠୁ କାହାର ଦୃଶ୍ୟ ଦେଖିହୁଏ ଯେ ଖୁବ୍ ସନ୍ତର୍ପଣରେ। ନାନୀ ତ ସାଙ୍ଗ ନୁହେଁ ସେ ମାଆ ଭଳି। ମୋଠୁ ମାତ୍ର ପଚିଶ ବର୍ଷ ବଡ଼ ବୋଲି ଆଗରୁ କହିଛି। ନାନୀ ସନ୍ତାନହୀନା। ତେଣୁ ମୋତେ ସେ କେତେ ଭଲ ପାଏ, ତାହା ମୁଁ ଆଜିଯାଏଁ ବୁଝି ପାରିନି ବା କେଉଁଦିନ ବୁଝି ପାରିବି ନାହିଁ। ମୋ ପିଲାଦିନେ ସେ ଯେତେବେଳେ ଖଦି ବୋର୍ଡ଼ରେ ଚାକିରି କରିବ ବୋଲି ଗଲା, ମୁଁ ଖୁବ୍ ଦୁଃଖ କରିଥିଲି। ପାଠ ପଢ଼େଇବା ବେଳେ ନନା ନିଶ୍ଚେ ରାଗିବେ। କିନ୍ତୁ ନାନୀ ପ୍ରତିଥର ଘରକୁ ଆସିଲା ବେଳେ ମୋ ଲାଗି ବହୁତ ଜିନିଷ ଆଣେ। ରଣପୁରରେ ସେ ଥିଲାବେଳେ ଥରେ ଯାଇଥିଲି ତା ପାଖକୁ। ରଣପୁରର ଜଗନ୍ନାଥ ମନ୍ଦିର, ମଣିନାଗ ପର୍ବତ ଓ ଠାକୁରାଣୀ ମତେ ଭଲ ଲାଗିଥିଲେ। ମୋର ଭବିଷ୍ୟତ ମଧ୍ଧ ରଣପୁର ସହିତ ଯୋଡ଼ି ହୋଇଗଲା। ତେବେ ସେ କଥା ପରେ। ନାନୀ ଭୁବନେଶ୍ୱର ଆସିଲା। କେଦାରଗୌରୀ ପାଖରେ ଗୋଟେ ଦୋ ମହଲା ଘରେ ତାଙ୍କର ଖଦି ଗ୍ରାମୋଦ୍ୟୋଗର ଟ୍ରେନିଂ ସେଣ୍ଟର ଥାଏ। ସେଠି ସେ ରହିଥାଏ। ସାଙ୍ଗରେ ଥାଆନ୍ତି ସୁଖନାନୀ ବୋଲି ଜଣେ ଝିଅ। ସୁଖନାନୀ ନାନୀର ଉପର ହାକିମ। କିନ୍ତୁ ନାନୀକୁ ସେ ନାନୀ ଭାବନ୍ତି ଓ ଅନୁରୂପ ସମ୍ମାନ ମଧ୍ଧ କରନ୍ତି। ଟ୍ରେନିଂ ନେଉଥିବା ଝିଅମାନେ ନାନୀକୁ 'ଦିଦି' ଡାକୁଥିଲେ ଓ ନାନୀ ତାଙ୍କୁ ଦିଦି ନୁହେଁ 'ଗୁରୁଜୀ' ଡାକିବାକୁ ଅନୁରୋଧ କରିଥିଲା। ସେ ଗୁରୁଜୀ ଡାକ ହିଁ ଲୋକପ୍ରିୟ ହୋଇଗଲା।

ନାନୀର ସବୁ କାମ ବେଶ୍ କଳାତ୍ମକ। ସେ ଚିତା ଲେଖା ହେଉ, ପିଠା ଗଢ଼ା ହେଉ କି ଛୁଞ୍ଚି କାମ ହେଉ, ସେ ଖୁବ୍ ଚଟାପଟ କରିପାରେ। ଏମିତି ବି ଏକୁଟିଆ ଘରର ସବୁ କାମ କରି ସାରି ସେ ପାଠ ପଢ଼େ, ଗପ ଲେଖେ, ଗୀତ ବି ଗାଉଥିଲା ଯେ କ୍ରମେ ଛାଡ଼ି ଦେଲା। ନାନୀ ଘରକୁ କେବେ ଆସିଲେ ବୋଉ ଆରିସା ପିଠା ତିଆରି କରେ। କିଛି ନହେଲେ ପୁର ପିଠା ତ ନିଶ୍ଚେ କରିଥାଏ। ନାନୀ ବେଳେବେଳେ ଗପେ ତା ଅଫିସ୍ କଥା। ସେତେବେଳେ ଚାକିରି କରୁଥିବା ମୁଷ୍ଟିମେୟ ଝିଅଙ୍କ ସ୍ଥିତି। କିନ୍ତୁ ଏ ସବୁ ଭିତରେ ତାର ସାଦା ପିନ୍ଧି ଓଢ଼ଣା ପକାଉଥିବା ରୂପ, ମଥାର ଛୋଟିଆ ସିନ୍ଦୂର ଟୋପା ତାର ପରିଚୟ ଥିଲା ଓ ଉପରିସ୍ଥ ହାକିମମାନେ ସୁଦ୍ଧା ତାକୁ ସମ୍ମାନ କରୁଥିଲେ। କ୍ରମେ ସେ ସୁପରଭାଇଜର ହେଲା। ସାରା ଓଡ଼ିଶାରେ ଥିବା ଖଦି ସେଣ୍ଟରମାନଙ୍କୁ ଟୁର୍‌ରେ ଗଲା ଆଉ ନିଜର କର୍ମ ଦକ୍ଷତା ପ୍ରମାଣ କରିବାର ସୁଯୋଗ ମଧ୍ୟ ପାଇଲା।

ଗାଁର ଅନେକ ଅଭାବୀ ଓ ଅଭାଗିନୀ ଝିଅ, ବୋହୂଙ୍କୁ ଅମ୍ବର ଚରଖା କାମ ଶିଖାଇ ନାନୀ ଉପାର୍ଜନକ୍ଷମ କରାଇ ପାରିଥିଲା। ସେ ଭିତରୁ ଜଣେ ଥିଲେ ଆମର ଅତି ଆପଣାର ମନ୍ଦାକିନୀ ଅପା। ନାନୀ କହେ ପତ୍ରକୁଟା ଜାଳି ଧାନ ଉଷାଉଁ ଥିବା 'ମନ୍ଦିରୀ'କୁ ସେ ଭେଟିଥିଲା ଓ ଆଠଅଣା ପଇସାର ଅମ୍ବର ଚରଖା ଟ୍ରେନିଂ କେନ୍ଦ୍ରରେ ତାଙ୍କ ନାଁ ଲେଖାଇ ଦେଇଥିଲା। 'ମନ୍ଦିରୀ' ନାନୀରୁ କଲମରେ ପାଲଟିଗଲେ 'ମନ୍ଦାକିନୀ' ଆଉ ରୁଗ୍ଣ ସ୍ୱାମୀ ତଥା ଏକମାତ୍ର କନ୍ୟା କଥା ବୁଝି ନିଜ ବ୍ୟକ୍ତିତ୍ୱ ବଳରେ ଏକାନ୍ନବର୍ତ୍ତୀ ପରିବାରର ମୁରବିର ମାନ୍ୟତା ପାଇଥିଲେ। ମୋ ନନା ବୋଉଙ୍କୁ ନନା ବୋଉ ଡାକୁଥିଲେ। ନନାଙ୍କ ଦେହ ଅସୁସ୍ଥ ହେଲେ ଅକୁଣ୍ଠିତ ଭାବରେ ତାଙ୍କ ସେବା ଯତ୍ନ ମଧ୍ୟ କରୁଥିଲେ।

ସେତେବେଳେ ଡାକ୍ତର ରାଧା ଦେବୀଙ୍କ ସମ୍ପାଦନାରେ ବାହାରୁଥିଲା ମହିଳା ପତ୍ରିକା 'ଯୁଗନାରୀ'। ସେ 'ଯୁଗନାରୀ'ରେ ନାନୀର ଗପ ବାହାରେ। ଗୋଟେ ଗପ ଥିଲା 'ବିଭ୍ରାନ୍ତି ଚୌକ'। ଗୋଟେ ଦିଗରେ ବିଜ୍ଞାନର ବିପୁଳ ଭଣ୍ଡାର, ଆଉ ଗୋଟିଏ ଦିଗରେ ପରମ୍ପରାରେ ପ୍ରସାରିତ ପଥ। ଅନ୍ୟ ଦିଗରେ ତେଲଲୁଣର ହାହତାଶ ଆଉ ଅନ୍ୟ ଦିଗଟି କାମନା ବାସନାର ପଙ୍କିଳ ପଥ। ନାରୀ ପାଇଁ କେଉଁ ପଥ ଠିକ୍ ତାହା ସେ ଗପର ପ୍ରଶ୍ନବାଚୀ ଥିଲା। 'ଯୁଗନାରୀ'ରେ ପ୍ରକାଶିତ କେତୋଟି ଗପ ନେଇ ନାନୀ 'ସପ୍ତପୁଷ୍ପ' ଶୀର୍ଷକ ଗପ ବହି ଛପାଇ ଥିଲା। ସେ ଗପ ବହିରୁ ଖଣ୍ଡିଏ ମୋ ପାଖରେ ଅଛି। 'ଗ୍ରାମୋଦୟ'ରେ ମଧ୍ୟ ନାନୀର ଗପ ଓ ଏକାଙ୍କିକା ବାହାରୁ ଥିଲା। ଗୋଟିଏ ଏକାଙ୍କିକାରେ ଜଣେ ସନ୍ନ୍ୟାସୀ ଗାଉଥିଲେ।

"ଥରେ ବଜା କାହ୍ନୁ ନୀଳାଚଳ ଧାମୁଁ

ତୁମରି ମୋହନ ବଇଁଶୀ
ଟିକି ଗାଁ ଏ ମୋର ସବୁରି ହୃଦୟେ
ସେ ବଇଁଶୀ ଯାଉ ପରଶି।

କାହ୍ନୁ ହେ,
ତୁଟି ଯାଉ ସବୁ ବିଷାଦ
ହସି ଉଠୁ ମୋର ପ୍ରିୟ ଗାଁ ମାଟି
ନ ପଡୁଟି କିଛି ପ୍ରମାଦ।"

ତା ପର ପଦ ହେଉଛି:
"ତୁମେ ତ ଜାଣିଛ ଗ୍ରାମୋଦୟ ପାଇଁ
ବାପୁଜୀ ଦେଇଛି ଜୀବନ
ତୁମେ କି ଜାଣିନ ସେହି ସତ୍ୟ ଲାଗି
ଗୋପବନ୍ଧୁ ଦେଲା ପରାଣ।

କାହ୍ନୁ ହେ,
ଅତୃପ୍ତ ତାଙ୍କରି ବାସନା
ତୃପ୍ତ ହେବ ତେବେ ଫଳିବଟି
ଯେବେ ଗାଏଁ ଗାଏଁ ତୁମ କରୁଣା।"

ଏ ପଦ ଭିତରେ ସମୟର ଆହ୍ୱାନ। ସେତେବେଳେ ଖାଲି ମୁଖସ୍ଥ କରିବା ଛଡ଼ା ଆଉ କଣ ବା ମୁଁ ଜାଣିଥିଲି। ଛାଡ଼। ସମୟ କେତେ ଶୀଘ୍ର କଡ଼ ଲେଉଟାଏ ! ଦେଖୁ ଦେଖୁ ଦିନ ସରିଲାଣି। ନାନୀର ଗପ ଏକାଙ୍କିକା ପଢ଼ି ମୋର ମନେହୁଏ ଆହା ମୋର ଏମିତି ଗପ ଗୀତ ଛାପା ଅକ୍ଷରରେ ବାହାରନ୍ତାନି। ଏ କଥା ମୁଁ କହିବି କାହାକୁ ? ମନର କେଉଁ କୋଣରେ ଆଶାର ଦୀପଟିଏ ମୁଁ ତେଜି ଦେଉଥାଏ ବାରମ୍ବାର। ନାନୀ ବହୁତ ଗପ କହେ। ତା ଶାଶୁଘର ଗପ। ତା ଘରକରଣା କଥା। କିନ୍ତୁ ମୋ ଦେଖାରେ ସେ ମାତ୍ର ଦୁଇ/ତିନିଥର ଭାଇନାଙ୍କ ସାଙ୍ଗରେ ଆମ ଘରକୁ ଆସିଥିବ। ଥରେ ଶୀତଦିନେ ଆସିଥିଲା ଯେ ବହୁତ କୋବି, ଟମାଟୋ ଆଉ ମିଠା ନେଇ। ନାନୀ ଆଣିଥିବା ବହି, ରିବନ, କଲମ, ପେନ୍‌ସିଲ୍, ଚପଲ ଓ ଖାତା ଦେଖି ମୁଁ ମୁଗ୍ଧ। ମୁଁ କୋଉ ଜାଣି ପାରୁଥିଲି ସେ ଏକୁଟିଆ ଆସୁଛି କି ଭାଇନା ତା ସାଙ୍ଗରେ ଆସୁଛନ୍ତି। ବହୁତ ଦିନ ପରେ ମୁଁ ଏ ଅସୁବିଧା ପ୍ରତି ସଚେତନ ହେଲି। ସେତେବେଳକୁ ମୋ ଭିଣୋଇ (ଭାଇନା) ଶଯ୍ୟାଶାୟୀ ଆଉ ମୋ ନାନୀ ଅତନ୍ଦ୍ର ଭାବରେ ତାଙ୍କ ସେବା କରିବାରେ ବ୍ୟସ୍ତ। ଭାଇନା

ନିଜେ ମତେ କହିଛନ୍ତି, "ମୁଁ କଡ଼ ଲେଉଟାଇଲେ ତୋ ନାନୀ ନିଦ କେମିତି ଭାଙ୍ଗି ଯାଉଛି । ସେ କଣ ଲକ୍ଷ୍ମଣଙ୍କ ସାଙ୍ଗ କି ?" ସେ କଥା ଆଜିର କଥା ନୁହେଁ । ନାନୀ ଖୁବ୍ ଭଲ ଘରଣୀ ହୋଇ ପାରିଥାଆନ୍ତା, ହେଲାନି । ଖୁବ୍ ଭଲ ଲେଖାଲେଖି କରି ପାରିଥାଆନ୍ତା । ତା ବି ହେଲାନି । ଖୁବ୍ ଆଡ଼ମ୍ବରପୂର୍ଣ୍ଣ ଜୀବନ ବଞ୍ଚି ପାରିଥାଆନ୍ତା ଭାଇନାଙ୍କ ସହିତ । ତା ବି ତା ଭାଗ୍ୟରେ ନଥିଲା । ବୋଉ କହେ "ଖିରି ବୋଲ ପିଠା ବୋଲ ଭାତର ତଳ, ଆଈ ବୋଲ ଭାଇ ବୋଲ କାଚର ତଳ ।" ସେହି କାଚ ମଧ୍ୟ ତାଠାରୁ ଦୂରକୁ ଚାଲିଗଲା ଅଦିନରେ । ତଥାପି ସେ ଦମ୍ଭ ଧରି ସବୁ ଦୁଃସ୍ଥିତିର ମୁକାବିଲା କଲା । ଦିନେ କାଳେ ନିଜ ଘର ବୋଲି ଦାବି କରି ନ ଥିବା ଜଟଣୀ ଘରର ସର୍ବମୟ କର୍ତ୍ତ୍ରୀ ପାଲଟିଗଲା । ହଁ, ନାନୀ ଭଲ ବୁଣାବୁଣି କରେ । ସେ ଗୋଟେ କନାରେ ଫୁଲ ପତ୍ର ଇତ୍ୟାଦି ବୁଣି ମଝିରେ ଲେଖିଥିଲା । "ବିଶ୍ୱନାଥ ଦୁର୍ଗା ବଂଶୀ ଶ୍ରୀମତୀ, ତାଙ୍କ ଶ୍ରୀଚରଣେ ରହୁ ମୋ ମତି । ତାଙ୍କରି ସେନେହ ଆଶିଷ ଧାରା, ମୋ ମଥାରେ ଝରୁ ଜୀବନ ସାରା ।" ଯାହାକୁ ସେ ଫଟୋ ବନ୍ଧାଇ ଯତ୍ନରେ ଟାଙ୍ଗି ଥିଲା । ଥରେ ସେ କାଚ ଭାଙ୍ଗି ଯାଇଥିଲା । ମୁଁ ଦେଖିଛି ସେ ଛୁଞ୍ଚିବୁଣା । ମୁଁ ପଚାରି ବୁଝିଥିଲି ଯେ, ବିଶ୍ୱନାଥ ଓ ଦୁର୍ଗା ତା ଶାଶୁ ଶ୍ୱଶୁରଙ୍କ ନାଁ ଥିଲା । ଏ କଥାଟି କିନ୍ତୁ ମୋତେ ପ୍ରଭାବିତ କରିଥିଲା । ପିତୃପୁରୁଷଙ୍କ ପାଇଁ କେତେ ଶ୍ରଦ୍ଧା ଥିଲା ତାର । ଅଥଚ ତାକୁ ନିମ୍ନତମ ସୌଭାଗ୍ୟ ମଧ୍ୟ ମିଳିଲାନି । ତାର ଅନ୍ତିମ କଥା ମନେପଡ଼ିଲେ ହିଁ ମୋତେ ଖୁବ୍ ବିଚିତ୍ର ଲାଗେ ।

*("ମୋ ନାନୀର କଥା", ସମ୍ବାଦ କଳିକା, ୧୦ ଏପ୍ରିଲ ୨୦୦୯ ଓ ୨୩ ଏପ୍ରିଲ ୨୦୦୯)*

* * *

## ପୁସ୍ତକ ସୂଚୀ

### ଓଡ଼ିଆ ନାରୀ ଆତ୍ମଜୀବନୀ


ଅନ୍ନପୂର୍ଣ୍ଣା ମହାରଣା, "ଅମୃତ ଅନୁଭବ", ଭୁବନେଶ୍ୱର: ଶିକ୍ଷାସନ୍ଧାନ, ୨୦୦୩

ଗୀତା ହୋତା, "ସବୁ ସ୍ମୃତି ମଧୁର", ଭୁବନେଶ୍ୱର: ଓଡ଼ିଶା ଲେଖକ ସମବାୟ ସମିତି, ୨୦୦୦

ଦୁର୍ଗାବତୀ ତ୍ରିପାଠୀ, "ସୁନେଲି ସ୍ମୃତିର ସୁରଭି", ବାଲେଶ୍ୱର: ସୁବର୍ଣ୍ଣଶ୍ରୀ ପ୍ରକାଶନୀ, ୨୦୦୮

ନିରୁପମା ରଥ: "ଅଲିଭା ସ୍ମୃତି ଅଭୁଲା ଅନୁଭୂତି", କଟକ: ସ୍ଫୁଟନିକ, ୨୦୦୪

ପ୍ରତିଭା ରାୟ, "ପଦ୍ମ ପତ୍ରରେ ଜୀବନ", ଓଡ଼ିଶା: ଆଦ୍ୟା ପ୍ରକାଶନୀ, ୨୦୧୪

ପ୍ରତିଭା ଶତପଥୀ, "ଶୈଶବରୁ ସଂସାର", ଭୁବନେଶ୍ୱର: ଅପୂର୍ବା, ୨୦୦୯

ମନ୍ଦାକିନୀ ଦାସ, "ସ୍ମୃତି ସୁରଭି", ଭୁବନେଶ୍ୱର: ବାଞ୍ଛାନିଧି ସ୍ମୃତି ପ୍ରତିଷ୍ଠାନ ୨୦୦୮

ବୀଣା ଦେଇ, "ଅକିଞ୍ଚନାର ଜୀବନସ୍ମୃତି", କଟକ: କାହାଣୀ, ୨୦୦୧

ବୀଣାପାଣି ମହାନ୍ତି, "ବିତିଯାଇଥିବା ଦିନ", ଭୁବନେଶ୍ୱର: ପଶ୍ଚିମା, ୨୦୧୬

ବୀଣାପାଣି ସିଂହ, "ଚାଲି ନଜାଣି ଚାଲୁଛି ମୁଁ", କଟକ: ବିଦ୍ୟାପୁରୀ, ୨୦୨୨

ରତ୍ନପ୍ରଭା ଦେବୀ, "ଉନେଇଶ ମସିହାରୁ ୟେ ପର୍ଯ୍ୟନ୍ତ", ଭୁବନେଶ୍ୱର: ରାଜୀବ ସିଂହଦେଓ, ୧୯୯୭

ରମାଦେବୀ ଚୌଧୁରୀ, "ଜୀବନ ପଥେ", କଟକ: ଗ୍ରନ୍ଥ ମନ୍ଦିର, ୧୯୮୪

ରମା ଦେବୀ, "ପର ପଦାର୍ଥ", ପୁରୀ: ନିଜସ୍ୱ ପ୍ରକାଶନ, ୧୯୯୮

ରାଧା ଦେବୀ, "ମୋ ଜୀବନ ମୋ ସମୟ", ବାଲେଶ୍ୱର: ସୁବର୍ଣ୍ଣଶ୍ରୀ ପ୍ରକାଶନୀ, ୨୦୦୭

ଶାନ୍ତିପ୍ରିୟା ବେହେରା, "ମୋ କଥା", ଭୁବନେଶ୍ୱର: ଶାନ୍ତିପ୍ରିୟା ବେହେରା, ୨୦୦୪

ସୀତାଦେବୀ ଖାଡ଼ଙ୍ଗା, "ମୋର ଜୀବନ ସ୍ମୃତି", କଟକ : ଲାର୍କ ବୁକ୍ସ, ୧୯୭୮

ସୁମନୀ ଝୋଡ଼ିଆ, "ମୁଇଁ ସୁମନୀ କହୁଚେ", ମହାରାଷ୍ଟ୍ର: ନୀଳକଣ୍ଠ ରଥ, ୨୦୦୫

ସଂଘମିତ୍ରା ମିଶ୍ର, "ସଦିଚ୍ଛାର ସହସ୍ରଧାରା", କଟକ: ଫ୍ରେଣ୍ଡସ୍ ପବ୍ଲିଶର୍, ୨୦୧୫

ହେମଲତା ମାନସିଂହ, "ପ୍ରିୟ ପରମ", କଟକ: ଗ୍ରନ୍ଥ ମନ୍ଦିର, ୨୦୦୪

## ଓଡ଼ିଆ ନାରୀ ଆତ୍ମଜୀବନୀ (ଆଂଶିକ)

ଅପର୍ଣ୍ଣା ଦେବୀ, "ନାରୀକବି ଅପର୍ଣ୍ଣା ଦେବୀ"- "ଝଙ୍କାର", ସଂଖ୍ୟା ୧୧, ୧୯୬୧

ଅନ୍ନପୂର୍ଣ୍ଣା ଦାସ, "ମୋ ପିଲାଦିନ ଆଖିରେ ଭଦ୍ରକ"- "ଶିଖା", ଜୁନ୍, ୨୦୦୪

ଇଲା ଦାସ, "ଜୀବନ ଉପରେ ରୂପର ପ୍ରଭାବ" - "ଡଗର", ଭାଗ ୧୭, ସଂଖ୍ୟା ୫, ନଭେମ୍ବର ୧୯୫୩

ଗୋଦାବରୀ ଦେବୀ, "ପୁଣ୍ୟ ସ୍ମୃତିରୁ ଖିଏ"- "ପୁଣ୍ୟବତୀ ଗୋଦାବରୀ", ବିରାଜ ମୋହନ ଦାସ (ସଂକଳନ) ଭୁବନେଶ୍ୱର: ସୁଦୀପ୍ତା ପ୍ରକାଶନୀ, ୧୯୯୭

ପୀତାମ୍ବରୀ ଦେବୀ, "ଦୁଃଖ କହିବି ନା ସୁଖ କହିବି"- "ଇସ୍ତାହାର", ସଂଖ୍ୟା ୬୭, ଜୁନ ୧୯୯୬, ଭୁବନେଶ୍ୱର

ପ୍ରତିଭା ରାୟ, "ଅମୃତ ଅନ୍ୱେଷା"- "ଅମୃତାୟନ", ନଭେମ୍ବର ୨୦୦୮, ପୃଷ୍ଠା ୧୨-୧୪

ସରଳା ଦେବୀ, "ମୋ ଜୀବନର ଏକ ସ୍ମରଣୀୟ ଘଟଣା", ସରଳା ଦେବୀଙ୍କ ଅପ୍ରକାଶିତ କାଗଜପତ୍ର, ୨୦୧୦

ସଂଘମିତ୍ରା ମିଶ୍ର, "ମୋ ନାନୀର କଥା"- "ସମ୍ବାଦ କଳିକା", ୧୦ ଅପ୍ରେଲ ୨୦୦୯, ୨୩ ଅକ୍ଟୋବର ୨୦୦୯

ସ୍ନେହଲତା ମହାପାତ୍ର, "ମୋ ପିଲାଦିନ", ଭୁବନେଶ୍ୱର: ଚାରିକୋଣ, ୨୦୦୮

## ନିର୍ବାଚିତ ଓଡ଼ିଆ ଆତ୍ମଜୀବନୀ


ଉଦୟନାଥ ଷଡ଼ଙ୍ଗୀ, "ଗାନ୍ଧୀ ମହାରାଜଙ୍କ ଶିଷ୍ୟ", କଟକ: ଓଡ଼ିଶା ବୁକ୍ ଷ୍ଟୋର୍, ୧୯୮୧

ଗୋଦାବରୀଶ ମିଶ୍ର, "ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ", କଟକ: ଗ୍ରନ୍ଥ ମନ୍ଦିର, ୧୯୫୮

ଗୋପବନ୍ଧୁ ଦାସ, "ବନ୍ଦୀର ଆତ୍ମକଥା", ଗୋପବନ୍ଧୁ ରଚନାବଳୀ, କଟକ: ଗ୍ରନ୍ଥ ମନ୍ଦିର, ୧୯୯୪

ଗୋପାଳ ଚନ୍ଦ୍ର ପ୍ରହରାଜ, "ପ୍ରହରାଜ ପରିକ୍ରମା", କଟକ: ଓଡ଼ିଶା ପୂଜ୍ୟପୂଜା ସଂସଦ, ୧୯୭୦

ଫକୀରମୋହନ ସେନାପତି, "ଆତ୍ମଜୀବନ ଚରିତ", କଟକ: ଫ୍ରେଣ୍ଡସ୍ ପବ୍ଲିସର୍ସ୍, ୧୯୨୭

ଦୀନନାଥ ପାଠୀ, "ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ", ଭୁବନେଶ୍ୱର: ସୁନନ୍ଦା ପାଠୀ ଫାଉଣ୍ଡେସନ, ୧୯୯୦

ଦୀନବନ୍ଧୁ ଦାସ, "କଳାକାରର କାହାଣୀ", କଟକ: କାହାଣୀ, ୨୦୦୦

ମାୟାଧର ମାନସିଂହ, "ଶିକ୍ଷାବିତ୍‌ର ଗାଥା", କଟକ: ଓଡ଼ିଶା ବୁକ୍ସ ଷ୍ଟୋର୍, ୧୯୬୫

ଭୁବନେଶ୍ୱର ବେହେରା, "ଗାଁର ଡାକ", କଟକ: ଫ୍ରେଣ୍ଡସ୍ ପବ୍ଲିଶର୍ସ୍, ୧୯୮୭

ନିଶାକର ଦାସ, "ଖରସୁଆଁରୁ କୁଲାବିରି", ଭୁବନେଶ୍ୱର: ଶିକ୍ଷାସନ୍ଧାନ, ୨୦୦୫

ନୀଳକଣ୍ଠ ଦାସ, "ଆତ୍ମଜୀବନୀ", କଟକ: କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, ୧୯୮୬

ବିନୋଦ କାନୁନ୍‌ଗୋ, "ପାଠ ପଛେ ପଛେ ଅପାଠୁଆ", ଭୁବନେଶ୍ୱର: ବସୁନ୍ଧରା ପବ୍ଲିକେଶନସ୍, ୧୯୮୭

ବିନୋଦ କାନୁନ୍‌ଗୋ, "ଋଣ ପରିଶୋଧ", କଟକ: ପବ୍ଲିକେଶନ ଇନ କର୍ପୋରେଟେଡ୍, ୧୯୮୩

ବୈରାଗୀ ଚରଣ ମିଶ୍ର, "ସ୍ୱଭାବ ନିୟତେ ଜୀବନ ଯୁଦ୍ଧ", ଭୁବନେଶ୍ୱର: ମୟୂର ପବ୍ଲିକେଶନ, ୧୯୯୯

ବୈଷ୍ଣବ ପାଣି, "ପାଣିକବିଙ୍କର ଆତ୍ମକାହାଣୀ", କଟକ: ରାମକୃଷ୍ଣ ପୁସ୍ତକାଳୟ, ୧୯୫୫

ଶରତ ଚନ୍ଦ୍ର ମହାରଣା, "ଅନୁଭବମାଳା", ଭୁବନେଶ୍ୱର: ଶିକ୍ଷା ସନ୍ଧାନ, ୨୦୦୫

ଶ୍ରୀଧର ଦାସ, "ସୁଅ ମୁହଁର ପତର", ଭୁବନେଶ୍ୱର: ଉତ୍କଳ ୟୁନିଭରସିଟି, ଶ୍ରୀଧର ଦାସ ସ୍ମାରକୀ ପ୍ରତିଷ୍ଠାନ, ୧୯୮୯

ଶ୍ରୀବତ୍ସ ପଣ୍ଡା, "ଶ୍ରୀବତ୍ସ ଜୀବନ ଚରିତ", କଟକ: କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୯୬

ସୁରେନ୍ଦ୍ର ମହାନ୍ତି, "ପଥ ଓ ପୃଥିବୀ", ଭୁବନେଶ୍ୱର: ଇଷ୍ଟର୍ଣ୍ଣ ମିଡ଼ିଆ ପ୍ରାଇଭେଟ୍ ଲିମିଟେଡ୍, ୧୯୮୪

ହରେକୃଷ୍ଣ ମହତାବ, "ସାଧନାର ପଥେ", କଟକ: ହରେକୃଷ୍ଣ ମହତାବ ଫାଉଣ୍ଡେସନ, ୧୯୮୭

ଲକ୍ଷ୍ମୀନାରାୟଣ ସାହୁ, "ମୋ ବାରବୁଲା ଜୀବନ", କଟକ: ଓଡ଼ିଶା ବୁକ୍ ଷ୍ଟୋର୍, ୧୯୬୮

## ଓଡ଼ିଶା ସମ୍ବନ୍ଧୀୟ ଗବେଷଣାତ୍ମକ ବହି

ପ୍ୟାରୀମୋହନ ଆଚାର୍ଯ୍ୟ, "ଓଡ଼ିଶାର ଇତିହାସ" (ଦ୍ୱିତୀୟ ପ୍ରକାଶନ) କଟକ: ଉତ୍କଳ ସାହିତ୍ୟ ପ୍ରେସ୍, ୧୯୨୫

ବିନୋଦ କାନୁନ୍‌ଗୋ, "ବାପୁଜୀଙ୍କ ଉତ୍କଳରେ ପଦଯାତ୍ରା", କଟକ: ଗୋପବନ୍ଧୁ ସାହିତ୍ୟ ମନ୍ଦିର, ୧୯୫୦

ଲାବଣ୍ୟ ନାୟକ, "ଓଡ଼ିଆ ଚରିତ ସାହିତ୍ୟ", କଟକ: ଫ୍ରେଣ୍ଡସ୍ ପବ୍ଲିଶର୍ସ୍, ୧୯୮୮

ସୁଦର୍ଶନ ଆଚାର୍ଯ୍ୟ, ଭାଗ୍ୟଲିପି ମଲ୍ଲ, ଗୌରାଙ୍ଗ ଚରଣ ଦାଶ ( ସଂପାଦନା) "ଅନ୍ତଃପୁରର ଅଭିଲେଖ, ମଧ୍ୟକାଳର ନାରୀ ପ୍ରତିଭା", ଭୁବନେଶ୍ୱର: ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ୨୦୧୫

Acharya, Pritish. *National Movement and Politics in Orissa, 1920-29*. USA &UK& New Delhi: Sage Publication, 2008.

Beams, John. *Essays on Orissan History and Literature*. Odisha: Prafulla, 2004.

Das, Chittaranjan. *A Glimpse into Oriya Literature*. Bhubaneswar: Orissa Sahitya Akademi, 1982.

Das, Shoila Bala. *A Look Before and After*. Cuttack: S.B. Das, 1956.

Hans, Asha et al, *Women Reinventing Development: The Odisha Experience*. London & New York: Routledge, 2022.

Kulke, Hermane & Ann Charlott Eschmann & Gaya Charan Tripathy. *The Cult of Jagannath and the regional Tradition of Orissa*. New Delhi: Manohar, 1978.

Mazumdar, B.C. *Orissa in the Making*. Calcutta: University of Calcutta, 1925.

Mishra, Pritipuspa. *Language and the Making of Modern India: Nationalism and the Vernacular in Colonial Odisha, 1803–1956*. Cambridge: Cambridge University Press, 2020.

Mohanty, Bidyut. *A Haunting Tragedy Gender, Caste and Class in the 1866, Famine of Orissa*. London & New York: Routledge, 2022.

Nanda, Chandi Prasad. *Vocalizing Silence: Political Protests in Orissa, 1930-42*. New Delhi & UK: Sage Publication, 2008.

Nayak, J. K. & A. Mohapatra. *Critical Discourse in Odia*. UK: Routledge, 2022.

Padhy, Subash Chandra & Susmita Mohapatra. *Social Movement in Orissa (1936 -76)*. Kolkata: RN Bhattacharya, 2008.

Pati, Biswamoy. *South Asia from the Margins: Echoes of Orissa*, 18002000. UK: Manchester University Press, 2012.

Pati, Biswamoy. *Identity, Hegemony, Resistance: Towards a Social History of Conversions in Orissa, 1800-2000*, New Delhi: Three Essays Collective, 2003.

Patnaik, Gorachand. *The Famine and Some aspects of the British Economic Policy in Orissa, 1866-1905*. Cuttack: Vidyapuri, 1980.

Patnaik, Nihar Ranjan. *Brahmo Movement in Orissa*. Delhi: Indian Publication, 2004.

Rangachari, Devika. *From Obscurity to Light: Women in Early Medieval Orissa (Seventh to Twelfth Centuries AD)*. UK & New

Delhi: Routledge & Manohar, 2020.

Samal, J. K. *History of Education in Orissa*, 1905-1936, Kolkata: Punthi Publication, 1984.

## ଇତିହାସ, ଆତ୍ମଜୀବନୀ ଓ ନାରୀ ସାହିତ୍ୟ ସମ୍ବନ୍ଧୀୟ ପ୍ରବନ୍ଧ

Allender, Tim. *Learning femininity in colonial India, 1820–1932*. UK: Manchester University Press, 2016

Anagol, Padma. *The Emergence of Feminism in India, 1850–1920*. UK: Routledge, 2016.

Anderson, Linda. *Autobiography*. London: Routledge, 2001.

Arnold, David and Stuart Blackburn (eds). *Telling Lives in India: Biography, Autobiography and Life History*. New Delhi: Permanent Black. 2004.

Aquil, Raziuddin & Partha Chatterjee (ed). *History in the Vernacular*. India: Permanent Black, 2012

Adichie, Chimamanda Ngozi. *We Should All be Feminists*. USA: 4th Estate, 2014.

Benstock, Shari (ed). *The Private Self*. London: Routledge, 1988.

Bhatia, B.M. *Famines in India: A Study of Some Aspects of the Economic History of India (1860-1965)*. New Delhi: Asia Publishing House, 1963.

Bhattacharya, Malini and Abhijeet Sen (eds). *Talking of Power: Early Writings of Bengali Women from the Mid-Nineteenth Century to the Beginning of the Twentieth Century*. Kolkata: Stree, 2003.

Bhuyan, Krushn Chandra. *Odishara mahiyasi mahila*. Bhubaneswar: Orissa Sahitya Akademi, 2009.

Blackburn, Stuart & Basudha Dalmia. *India's Literary History. Essays on the Nineteenth Century*. Permanent Black, 2004.

Bose, Sugata & Ayesha Jalal. *Nationalism, Democracy and Development: State Politics in India*. Delhi: Oxford University Press, 1997.

Boynton, Victoria et al (eds). *Encyclopaedia of Women's Autobiography*. Greenwood: Greenwood Press, 2005.

Chakrabarti, Uma. *Gendering Caste: Through a Feminist Lens*. India: Sage & Stree, 2018.

Dirks, Nicholas B. *Castes of Mind: Colonialism and the making of Modern India*. Princeton: Princeton University Press, 2001.

Disch, Lisa & Mary Hawkesworth. *The Oxford Handbook of Feminist Theory*. New York: Oxford University Press, 2016.

Forbes, Geraldine. *Women in Modern India: The New Cambridge History of India. Volume IV. 2*. Cambridge: Cambridge University Press, 1996.

Frykenberg, Robert Eric (ed.). *Christians and Missionaries in India: Cross-Cultural Communication Since 1500*. London & New York: Routledge, 2003.

Gamble, Sarah. *The Routledge Companion to Feminism and Post Feminism*. London & New York: Routledge, 2006.

Guha, Ranajit. *Elementary Aspects of Peasant Insurgency in colonial India*. Durham & London: Duke University Press, 1999.

Harris, Ranjana. *Indian Women's Autobiographies*. Arnold Publishers: New Delhi, 1993.

Henitiuk, Valerie & Supriya Kar. *Spark of Light: Short Stories by Women Writers from Odisha*, Canada: Athabasca University Press, 2016.

Henitiuk, Valerie & Supriya Kar. *One Step towards the Sun: Short Stories by Women Writers from Orissa*, Bhubaneswar: Rupantar, 2010.

Hooks, Bell. *Feminism is for Everybody: Passionate Politics*. Cambridge MA: South End Press, 2000.

Hossain, Rokeya Sekhawat. *Sultana's Dream and Padmarag*. Barnita Bagchi (Tr.). India: India: Penguin Books, 2005.

Jackson, Elizabeth. *Feminism and Contemporary Indian Women's Writing*. UK:  Palgrave Macmillan, 2010.

Jelinek, Estelle C. *The Tradition of Women's Autobiography from Antiquity to the Present*. Massachusetts: Twayne Publishers, 1986.

Jensz, Felicity. *Missionaries and Modernity: Education in the British Empire, 1830-1910*. USA: Manchester University Press, 2022.

Karlekar, Malavika. *Voices from Within*: *Early Personal Narratives of Bengali Women*, Delhi: Oxford University Press, 1991.

Kasturi, Leela and Veena Mazumdar (eds). *Women and Indian Nationalism*. New Delhi: Vikas Publishing House, 1994.

Kaviraj, Sudipta. *The imaginary institution of India: politics and ideas*. New York: Columbia University Press, 2010.

Kenneth. W. Jones. *Socio-religious reform movements in British India* (The New Cambridge History Series). UK: Cambridge University Press, 1989.

Kopf, David. *The Brahmo Samaj and the Shaping of the Modern Indian Mind*. New Jersey: Princeton University Press, 1979.

Kumar, Dharma (ed.). *The Cambridge Economic History of India. Vol. 2: c.1757 – c.1970.* New York: Cambridge University Press, 1983.

Kumar, Radha. *The History of Doing: An Illustrated Account of Movements for Women's Rights and Feminism in India, 1800-1900*. New Delhi: Kali for Women, 1993.

Macfarlane, Iris. *Daughters of the Empire*: *A Memoir of Life and Times in the British Raj*. New Delhi: Oxford University Press. 2006.

Malinar, Angelika & Johannes Beltz (ed.) *Text and context in the history, literature and religion of Orissa*. New Delhi: Manohar, 2004.

Mazumdar, Rochona & NC Durham. *Marriage and Modernity: Family Values in Colonial Bengal.* Duke University Press, 2009.

Misch, George. *History of Autobiography in Antiquity, Vol. I & Vol. II*. London: Routledge and Kegan Paul, 1950.

Mohanty, Sachidananda (ed). *Early Women's Writings in Orissa: A Lost Tradition*. New Delhi: Sage Publications, 2004.

———————. *Gender and Cultural Identity in Colonial Orissa*. Hyderabad: Orient Longman Private Limited, 2008.

———————. *The Lost World of Sarala Devi, Selected Writings*, New Delhi: Oxford University Press, 2016.

Mohapatra, Himansu S. & P S Pierre. *Basanti*: *Writing the New Woman*. New Delhi: Oxford University Press, 2019.

Murshid, Ghulam. *Reluctant Debutante: Response of Bengali Women to Modernization 1849-1 905*. Bangladesh: Rajshahi University Sahitya Samsad, 1983.

Olney, James. *Metaphors of Self: The Meaning of Autobiography*. Princeton: Princeton University Press, 1972.

Pascal, Roy. *Design and Truth in Autobiography*. London: Routledge and Kegan Paul, 1960.

Paik, Shailaja. *Dalit Women's Education in Modern India: Double Discrimination*. London & New York: Routledge, 2014.

Roy, Anindyo. *Civility as Empire: Literature and Culture in British India 1822- 1922*. London & USA: Routledge, 2005.

Roy, Tirthankar. *Traditional Industry in the Economy of Colonial India*. UK & USA: Cambridge University Press, 2004.

Sarkar, Sumit & Tanika Sarkar. *Women and Social Reform in Modern India: A Reader (Vol. I &II)*. India: Permanent black, 2007.

Sengupta, Papia. *Language as Identity in Colonial India: Policies and Politics*, Palgrave Macmilan, 2018

Singh, Bijayananda (ed). *Atmajeevanee prasanga*. Cuttack: Cuttack Student's Store, 2004.

Smith, Sidonie and Julia Watson (eds). *Women, Autobiography, Theory*: *A Reader*. Wisconsin: University of Wisconsin Press, 1998.

Sreenivas, Mytheli. *Wives, Widows, and Concubines: The Conjugal Family Ideal in Colonial India*. Bloomington: Indiana University Press, 2008.

Sutton, Amos. *A Narrative of the Mission to Orissa*. Boston: David Mark, 1833.

Walsh, Judith E. *Domesticity in Colonial India*: *What Women Learned when Men Gave them Advice*. USA: Rowman & Littlefield Publishers, 2004.

Whitehead, Anne. *Memory.* London and New York: Routledge, 2008.

## ଓଡ଼ିଶା ସମ୍ବନ୍ଧୀୟ ଗବେଷଣାତ୍ମକ ପ୍ରବନ୍ଧ

Acharya, Pritish. "Anticolonial Resistance in Odisha: 1767-1857." *Odisha Review*, August 2021, pp 14-23.

Acharya, Pritish. "Harekrushna Mahtab and the Gadajat movements in Odisha." *Odisha Review*, November 2020, pp. 1-7.

Acharya, Pritish. "The Linguistic Movement in the 19th Century Orissa." *Orissa Historical Research Journal*. Vol. XLVII, No. 1. pp. 83-89.

Barik, Sujata. "The Peasant Movements in Odisha 1936 -1990." *Odisha Review*, April- May 2020, pp. 18-25.

Boulton, John. "Autobiography in Oriya: 1917-1976," *Essays on Oriya Literature*, Orissa: Prafulla, 2008.

Choudhury, Janmejaya. "Birth of I.N.C and Role of Odia Leaders." *Odisha Review*. January 2020, pp. 24-27.

Choudhury, Janmejaya. "Sketch on First Ministry in Odisha." *Odisha Review*, January 2021, pp. 23-25.

Dash, Kailash C. "Participation of Women in the Freedom Movement and Feminist Consciousness in Colonial Odisha," *Odisha Review*, August 2012.

Forbes, Geraldine. "Caged Tigers: 'First Wave' Feminists in India." *Women's Studies Int. Forum*. Vol. 5, No. 6, pp. 525-536, 1982.

Ghadai, Balabhadra. "Formation of the Province of Odisha." *Odisha Review*, April 2022, pp. 28-34.

Hota, Priyambada "Role of Women in the Freedom Movement in Western Odisha: Some Reflections." *Odisha Review*, August 2016, pp. 26-31.

